ଗୋପୀନାଥ ମହାନ୍ତି

# ଶ୍ରେଷ୍ଠ ଗଳ୍ପ



# ଶ୍ରେଷ୍ଠ ଗଳ୍ପ

## ଗୋପୀନାଥ ମହାନ୍ତି

ସଂପାଦନା :

ଯତୀନ୍ଦ୍ର ମୋହନ ମହାନ୍ତି



ଚତୁରଙ୍ଗୀ ପ୍ରକାଶନୀ
ଭୁବନେଶ୍ୱର

# ଶ୍ରେଷ୍ଠ ଗଳ୍ପ


ଲେଖକ :
ଗୋପୀନାଥ ମହାନ୍ତି

ସମ୍ପାଦନା :
ଯତୀନ୍ଦ୍ର ମୋହନ ମହାନ୍ତି

ପ୍ରଥମ ପ୍ରକାଶ :
ଅକ୍ଟୋବର, ୧୯୯୬

ପ୍ରକାଶକ :
ଚତୁରଙ୍ଗ ପ୍ରକାଶନୀ
ଭୁବନେଶ୍ୱର-୯

ପ୍ରଚ୍ଛଦ ଶିଳ୍ପୀ :
ଅସିତ୍ ମୁଖାର୍ଜୀ

ପରିବେଷକ :
ଗ୍ରନ୍ଥାଳୟ
ସି-୧୭, ବାଣିଜ୍ୟ ଭବନ
ୟୁନିଟ୍-୨, ଭୁବନେଶ୍ୱର-୯

ମୁଦ୍ରଣ :
କଳିଙ୍ଗ ମୁଦ୍ରଣୀ
ନିମଚଉଡ଼ି, କଟକ-୨

ମୂଲ୍ୟ : ଟ ୮୦-୦୦
ଶୋଭନ : ଟ ୯୦-୦୦


# SRESTHA GALPA


Author :
**Gopinath Mohanty**

Edited by :
**Jatindra Mohan Mohanty**

First Edition
**October, 1996**

Publisher :
**Chaturanga Prakashani**
Bhubaneswar-9

Cover Design :
**Asit Mukherjee**

Distributor :
**GRANTHALAYA**
C-17, Banijya Bhawan
Unit-2, Bhubaneswar-9

Printed at :
**Kalinga Mudrani**
Nimchouri, Cuttack-2

Price : Rs. **80-00**
Deluxe : **90-00**

# ସୂଚୀପତ୍ର



—o—

# ଘର

—୧—

ଦକ୍ଷିଣରେ ରେଲଗାଡ଼ିରୁ ଜିନିଷପତ୍ର ପିଲାପିଲି ଓହ୍ଲାଇ ନେଇ ରାଜଧାନୀକୁ ନୂଆ ବଦଳି ହୋଇଥିବା କର୍ମଚାରୀ ସଦାଶିବ ଯେତେବେଳେ ଷ୍ଟେସନ ଫାଟକ ଟପି ପଦାକୁ ଆସିଲା, ସେତେବେଳେ ଝିଅ ମନ୍ଦାକ୍ରାନ୍ତା ଆହୁରି ଥରେ ପଚାରିଲା,—"ବାପା ଆମ ଘର ?" ତାଠୁଁ ଦୁଇବର୍ଷ ସାନପୁଅ ଶାର୍ଦ୍ଦୂଳ ବିକ୍ରୀଡ଼ିତ ଉଲ୍ଲାସରେ ଷ୍ଟେସନ ଘର ଭିତରେ କୁଦା ମାରିଲା ପାଟି କରି କରି,—"ଆମ ଘର, ଆମ ଘର।" ସାନ ପୁଅ ଅନୁଷ୍ଟୁପ୍ ଓ ସାନଝିଅ ଗାୟତ୍ରୀ ଏତିକିରୁ ବୁଝିଲେ ଯେ, ଏ ଉତ୍ସବ ପାଳିବା ଉଚିତ। ତେଣୁ ଦୁହେଁ ବେକରେ ହାତ ଛନ୍ଦାଛନ୍ଦି ହୋଇ ତେଇଁ ତେଇଁ ବୁଲିଲେ ପାଟି କରି କରି—"ଆମ ଗଳି, ଆମ ଗଳି।" ପଛରେ ଆସୁଛନ୍ତି ତାଙ୍କ ମା, ଦମୟନ୍ତୀ, କହିଲେ—"ପାଣି ସୋରେଇଟା କଣ ରେଲରେ ରହିଗଲା କି ?"

"ନା, ଅଛି ଚାଲ," ସଦାଶିବ କହିଲା। ପିଲାଙ୍କୁ ଆକଟି କହିଲା, "ହେଇ, ପାଟି କରନା।"

ଲୋକେ ଚାହିଁଛନ୍ତି। ଚାହିଁବାର ବି କଥା, ମାଲ ବହୁତ। "ବାବୁ, ଗାଡ଼ି ?" ବାବୁ ? କହି ଗାଡ଼ିବାଲାମାନେ ଯେତେବେଳେ ଘେରିଗଲେ, ମନ୍ଦାକ୍ରାନ୍ତା ଆଉ ଥରେ ପଚାରିଲା,—"ବାପା ଆମ ଘର ଏଠୁ କେତେଦୂର ?

ସଦାଶିବ କିଛି ଜବାବ୍ ଦେଲାନାହିଁ। ଜିନିଷପତ୍ର ପଠାପଠି କରିଦେଇ ପିଲାଙ୍କୁ ଧରି ଗୋଟିଏ ଘୋଡ଼ାଗାଡ଼ିରେ ବସି ଯାତ୍ରା ଆରମ୍ଭ କରିଦେଲା।

ଗାଡ଼ି ଭିତରେ ସ୍ତ୍ରୀକୁ ଚାହିଁଲା, ସେ ଆସନ୍ନ-ପ୍ରସବା। "କେମିତି ଅଛ ?"

"ଭଲ।"

"ଆରେ ପିଲାଏ ବୋଉ ଉପରେ ମାଡ଼ି ହୁଅ ନାହିଁ।"

ଶାର୍ଦ୍ଦୂଳ-ବିକ୍ରୀଡ଼ିତ ସ୍ଲୋଗାନ ଦେଲା,—"ଆମ ଘର।"

ସଙ୍ଗେ ସଙ୍ଗେ ସମସ୍ତେ ମିଶି ସମସ୍ୱରରେ ଚିତ୍କାର,—"ଆମ ଘର, ଆମ ଘର।"

ଦି' ପାଖ ସିଟ୍‌ରୁ ସ୍ୱାମୀ ସ୍ତ୍ରୀ ମୁହଁ ଚାହାଁଚାହିଁ ହେଲେ, ଦମୟନ୍ତୀ ହସିଲା, ସଦାଶିବ ମୁହଁ ପୋତିଲା।

ବାରବର୍ଷ ପରେ ସେ ରାଜଧାନୀକୁ 'ବଦଳି' ହୋଇଛି। ମଝିରେ ବର୍ଷେ ଦି ବର୍ଷରେ ଥରେ ଅଧେ ନ ଆସିଛି ନୁହେଁ, କିନ୍ତୁ ସଂସାର ସମେତ ବଦଳି ଏଇ

ପ୍ରଥମ । ଏଇ ସେଇ ପୁରୁଣା କଟକ, ତାର ବାଲ୍ୟର, ଯୌବନର । ଆଉ ଏଠୁ ଗୃହକୋଣ ଦୂରରେ ନଈ ସେପାଖ ସାନ ଗାଁଟିଏ, ଯେଉଁଠି ସେ ଜନ୍ମ ହୋଇଥିଲା ।

ଜନମମାଟିର ଛାତି ଉପରେ ଲଙ୍କାମରିଚ ବାଇଗଣ ଲଗିଥିବ ତହିଁବାଇଗଣ ଭଲ ଫଳୁଥିବ ।

ଆଉ ଥିବ କଲାମିଶ୍‌ମିଶ୍‌ କଖାରୁ ଡଙ୍କ, ତାର ଚେକା ଚେକା ଝାଉଁଯିଆ ପତ୍ର ।

—୨—

କୋଠା-କୋଠା-କୋଠା ଠିଆ ହୋଇଛି, ତିଆରି ଚାଲିଛି, ଇଟା ଗଦା ହେଉଛି, ବାଲି ଗଦା ହେଉଛି । ଇଟା ବୋଝେଇ ହୋଇ ଲୁହାଛଡ଼ ବୋଝେଇ ହୋଇ ବିକଟ ବେଗରେ ଚାଲିଛନ୍ତି ଟ୍ରକ୍ ମାଳ ମାଳ । ମଟର ଚାପି ହୋଇ ମରିଗଲା ବା କିଏ,—ଏମିତି ମରି ନ ଥାନ୍ତା ଯେମିତି ମରନ୍ତା,— ପ୍ରଗତି ଅଟକୁ ନାହିଁ । ଭଁ ଭାଁ ମଟରଗାଡ଼ି, କେତେ ବଡ଼ଲୋକ । ଉଦ୍‌ବୃଦ୍ଧ କଟକ, ସମୃଦ୍ଧ କଟକ । ଜାତି ଜାତି ଲୋକ । ଗହଳି ସହର ।

ବାରବର୍ଷ ତଳେ ଏଠୁ ଯାଇଥିଲା ସେ । ଜିଲ୍ଲାରେ ଜିଲ୍ଲା ବିଶାଳ ଓଡ଼ିଶା । ମହାକାନ୍ତା ବାଲେଶ୍ୱରରେ ଜନ୍ମ, ଶାର୍ଦ୍ଦୁଳବିକ୍ରୀଡ଼ିତ କୋରାପୁଟର, ଅନୁଷ୍ଟୁପର ଜନ୍ମଭୂମି ବୋଡ଼ାସମ୍ବର, ଗାୟତ୍ରୀ ଭଂଜଭୂମିର ଝିଅ, ଜନ୍ମ ରସଲକୁଣ୍ଡାରେ, ଆଉ ଯେଉଁଟି ଜନ୍ମ ହେବାରେ ଅଛି, ତାର ପରିକଳ୍ପନା ସୁଦୂର ଅରଣ୍ୟାନୀ ଭିତରେ ମାଙ୍କଡ଼ନଗ୍ର ସବ୍‌ଡ଼ିଭିଜନରେ—ସେ କଟକରେ ସୂର୍ଯ୍ୟ ଦେଖିବ ।

କିନ୍ତୁ କେଉଁଠି ? କାହିଁ ତା ପାଇଁ ଘର ।

"ଏ ସହର ବଡ଼ଲୋକଙ୍କର," ସଦାଶିବ ସ୍ତ୍ରୀକୁ କହିଲା, "ଆମପାଇଁ ଏଠି ସ୍ଥାନ ନାହିଁ ।"

"ଚାଲ ତ—" ସ୍ତ୍ରୀ କହିଲା ।

"ସମସ୍ୟାଟା କଣ ଜାଣ ?" ଦୁଃଖିତ ହୋଇ ସଦାଶିବ କହିଲା,—"ଯେଉଁ ଯୁଗରେ ଯେଉଁମାନେ ମରିଯିବା ଉଚିତ, ସେମାନେ ମରନ୍ତି ନାହିଁ ।"

"ଏତେ ବେସ୍ତ ହେଲେ କଣ ହେବ କହିଲ ?" ଦମୟନ୍ତୀ ବୁଝେଇଲା, "ଘର ଖଣ୍ଡେ ମିଳିଯିବ ନାହିଁ ଯେ—।"

"ମିଳିବ ନିଶ୍ଚୟ," ଦାନ୍ତ ଚିପି ଚିପି ସଦାଶିବ କହିଲା, "କିନ୍ତୁ ଡେରି ଅଛି ।"

ତାର ଜଳନ୍ତା ଦୃଷ୍ଟି ଆଉ ଗରମ ଦୀର୍ଘଶ୍ୱାସ କମ୍ପିଲା ରାଗରେ ଆକ୍ରମଣ କଲା ରାସ୍ତା ଧୂଳିକୁ ।

ମଟର ପଛରେ ମଟର ଚାଲିଛି, ମଟର ଚାଲିଛି ।

—୮—

ଗନ୍ତବ୍ୟ ଲକ୍ଷ୍ୟ ବନ୍ଧୁ ରତ୍ନାକରର ଘର; ରତ୍ନାକରର ମୁଟ୍‌ଷ୍ଟୋଭର ବଜାରରେ ଲୁହା ବ୍ୟବସାୟ କରେ । ଅଣଓସାର ବାଟଘରକୁ ଗ୍ରାଉଣ୍ଡ୍ ଷ୍ଟେପ୍ ସାନ ଗୋଟିଏ ଖୁଲଘର ଖଟକୁ ଖଟ ଯୋଡ଼ି ଚଳେ ଜିନିଷପତ୍ର ଗଦେଇ ରଖି ଶିକାଟୁ ଓହ୍ଲେଇ ବାକି ଯେତିକି ସ୍ଥାନ ଫାଙ୍କା ରହିଲା, ସେତିକକୁ ରତ୍ନାକର ତାର ଓ ନିଜର ପିଲମାନଙ୍କ ପାଇଁ ନିଶ୍ୱାସ ଗ୍ରହଣ କରେ । ପିଲି ତାର ବି ପାଞ୍ଚୋଟି ସ୍କୁଲଯାତ୍ରୀ, ସ୍ତ୍ରୀ, ସେ ଓ ଗୃହର ବାକର । ତା'ଛଡ଼ା ଘରେ କୁକୁର ବିଲେଇ, ମୂଷା ଓ ଗାଈଗୋରୁ ।

ଏପରି ଅବସ୍ଥାରେ ରତ୍ନାକର ଯେ ଦୂରାଗତ ବନ୍ଧୁର ଅଭ୍ୟର୍ଥନାର ଭାର ନେବ ଏଥିରେ ଆଶ୍ଚର୍ଯ୍ୟ ହେବାର କଥା, କିନ୍ତୁ ଏ ସଂସାରରେ ଆଶ୍ଚର୍ଯ୍ୟ ଅପ୍ରତ୍ୟାଶିତ ସମ୍ଭବ ହୋଇଥାଏ,—ଅପ୍ରତ୍ୟାଶିତ ଉଦାରତା, ଅପ୍ରତ୍ୟାଶିତ ନିଷ୍ଠୁରତା ଓ ଆକସ୍ମିକ ଘଟଣା, ବିଶେଷତଃ ସଦାଶିବ ସେହିପରି ଯୁକ୍ତି କରେ, କହେ ଆକସ୍ମିକତାରେ ବିଶ୍ୱାସ ନ ରଖିଲେ ଜୀବନ ରଖିବାର ପ୍ରୟୋଜନ ନାହିଁ ।

କାରଣ ନିଜର ଅବସ୍ଥା ଓ ରୋଜଗାରକୁ ଚାହିଁ ଯେଉଁ ପ୍ରକାର ସେ ଅଙ୍କ କଷୁ, ସେ ଦେଖେ ଅଙ୍କର ଫଳ କେବଳ ଅନାହାର, ଋଣ, ଇନ୍‌ସଲଭେନ୍‌ସି, ତାପରେ ଅନ୍ଧକାର, ଯଦି ଆକସ୍ମିକ କିଛି ନ ଘଟିବ । ସେ ସଂସ୍କାରରେ ଗ୍ରୀକ୍ ଟ୍ରେଜେଡ଼ିରେ ଆସ୍ଥାବାନ ।

ତେଣୁ ରତ୍ନାକର ଚିଠିରେ ଅଣ୍ଟାଭିଡ଼ିଥିଲା,—"ରହି ମାସେ ପକ୍ଷେ, ମୋର ଆପତ୍ତି ନାହିଁ ।"

ତାର ରେଂକଗାଂକ ବସାକୁ ଲଗି ପଦାରେ ଖଣ୍ଡିଏ ଗୃଳଆ ଥିଲା, ଯାହା ଠିକ୍ ସଦାଶିବକୁ ହିଁ ଅପେକ୍ଷା କଲାପରି ରହିଥିଲା ।

ଝାଟିମାଟିର କାନ୍ଥ, ଉପରେ ଚୂଳ, ଝରକା ନାହିଁ, ମେଲି ମେଲି ବାଉଁଶ ଜାଲିର ଦୁଆର କବାଟ, ଭିତରେ ଲୁହାର ଯନ୍ତ୍ରପାତି କିଛି, କିଛି କାଠ ଗଡ଼ବଲି ଓ ଅନ୍ୟାନ୍ୟ ଅଦରକାରୀ ଜିନିଷ, ପିଲଙ୍କ ବହି ଆଲମାରି ଗୋଟିଏ, ଯୋଡ଼ିଏ ଟେବୁଲ, ପାଞ୍ଚଟି ଚୌକି ।

ତଥାପି ଗୋଟିଏ ଖଟ ପଡ଼ି କିଛି ଖାଲିଯାଗା, ଦୁଇ କରରେ କିଛି ଖାଲିଭୂଇଁ ।

"ଏଇ ଘର !" ସଦାଶିବ କହିଲା ।

ରତ୍ନାକର ଆଗେଇ ଆସିଲା । ପଛେ ପଛେ ତାର ସ୍ତ୍ରୀ ।

ଦୁଇପକ୍ଷର ପିଲା ଦୁଇ ପକ୍ଷଙ୍କୁ ଅନାଇଁ ରହିଲେ ।

—୪—

ଅନ୍ଧାର, ପ୍ରବଳ ବର୍ଷା ।

ଖଟ ଉପରେ ବିଛଣା ବିଛେଇ ସମସ୍ତେ ଶୋଇଛନ୍ତି ।

ହଠାତ୍ ସଦାଶିବର ନିଦ ଭାଙ୍ଗିଗଲା । କାହିଁକି ସେ ଜାଣେ ନାହିଁ । ପଦାକୁ ଚାହିଁଲା । ଲାଗିଲା, ଏମିତି ଜୀବନ, ପଦାରେ ଅନ୍ଧାର ଓ ମେଘ, ଶୀତରେ ପାଣିରେ ମରିବାରହିଁ କଥା, ତଥାପି ଲୋକ ମରେ ନାହିଁ,—କୌଣସି ପ୍ରକାରେ ଆକଣ୍ଠି କ ଆଶ୍ରୟତଳେ ମୁଣ୍ଡଲୁଞ୍ଚି ପଡ଼ି ରହେ ।

ଭାଗ୍ୟପ୍ରତି କୃତଜ୍ଞତା ଜଣାଇଲା, ପୁଣି ରତ୍ନାକର ପ୍ରତି । ଚିନ୍ତାରେ ମନ ଦେଲା,—ସ୍ତ୍ରୀ ପରେ କଣ ? ସ୍ତ୍ରୀ ପରେ କଣ ?

ହାତ ଉପରେ ଗୋଟିଏ ମୂଷା ଦଉଡ଼ି ପଳେଇବାର ଅନୁଭବ କଲା, ଚମକି ଉଠିଲା । ଏ ଘରେ ମୂଷାମାନଙ୍କର ଅବାଧ ଗତି ସେ ଜାଣେ, ଆଲୁଅ ଥାଇ ବି ସେମାନେ ଖେଳ କସରତ୍ କରନ୍ତି, ଆତଯାତ ହୁଅନ୍ତି । ଅନ୍ଧାରରେ ନିଘାକଲା ଘର ଭିତରେ ନାନାଜାତି ଶବ୍ଦ ଲାଗିରହିଛି । ତା ପରେ ଆରମ୍ଭ ହେଲା ଗୋଟାଏ ଖଡ଼୍ ଖଡ଼୍ ଖଡ଼୍ ଖଡ଼୍, ଠିକ୍ ତାର ଶୋଇବା ଖଟତଳେ, ତା ସଙ୍ଗେ ସଙ୍ଗେ ଗୋଟାଏ କଣ ଗନ୍ଧ ।

ମୁଣ୍ଡତଳୁ ଟର୍ଚ୍ଚଲାଇଟ୍ କାଢ଼ି ଜାଳି ଦେଖିଲା, ଖଟତଳେ ଗୋଟାଏ ବୁଢ଼ା କୁକୁର, ନାକ ଅଗଠୁ ଲାଞ୍ଜ ଅଗ ଯାକେ କେଉଁଠି ଗୋଟିଏ ବୋଲି ଲୁମ ନାହିଁ, ସବୁ ଉପୁଡ଼ି ଯାଇଛି ।

ସ୍ତ୍ରୀର ବି ଏ ଘରେ ଦଖଲ ଅଛି ।

କିନ୍ତୁ—

ମଣିଷପଣ ବିସ୍ତାର କରି ଆତିଥେୟତାର ପ୍ରତିଦାନ ଦେବାକୁ ଯାଇ ସଦାଶିବ କୁକୁରକୁ ମାରି ଗୋଡ଼ାଇଲା । କୁକୁର ବି ଦୃଢ଼-ପ୍ରତିଜ୍ଞ ସେ ଅନ୍ଧାରକୁ ବର୍ଷାକୁ ଯିବନାହିଁ । ଏକର ସେକର ଗୋଡ଼େଇ ଯାଉ ଯାଉ ଅନେକ ପ୍ରତିବନ୍ଧକ, ଖଟ, ଆଲମାରି, ଚୌକି, ଜିନିଷପତ୍ର । ଲାଗିଗଲା "ମତେ ଛୁଁ" ଖେଳ, ଏପାଖୁ ସେପାଖ ସେପାଖୁ ଏପାଖ । କୁକୁର ପ୍ରଚୁର ଆଗ୍ରହରେ ଯୋଗଦେଲା ।

ଅଧଘଣ୍ଟାଏ ଏକର ସେକର ହୋଇ ସଦାଶିବ ବିଛଣାରେ ମୁହଁ ମାଡ଼ିଲା । କୁକୁର ବି ଆଉ କୁଣ୍ଠେଇ ହେଲା ନାହିଁ, କେବଳ ମଝିରେ ମଝିରେ ଫଁ ଫଁ ସଁ ସଁ ଦୀର୍ଘଶ୍ୱାସ, ଆଉ ତା ଦେହର ଗନ୍ଧ ଯେଉଁଥିପାଇଁ ସେ ଦାୟୀ ନୁହେଁ ଆଦୌ ।

ଜୀବନର ସାଲିସ ଗ୍ରହଣ କରି ନେଇ ସଦାଶିବ ବର୍ଷାର ଧ୍ୱନିକୁ କାନ ଡେରିଦେଇ କେତେବେଳେ ଶୋଇ ପଡ଼ିଲା ।

ଆରଦିନ ସକାଳ । ଅଳ୍ପ ଖରା ପଡ଼ିଛି ।

ଲାଗିଲା ଯେପରି କି ଦୁନିଆଁ ତାକୁ କୁମ୍ଭକର୍ଣ୍ଣ ବୋଲି ଠଉରେଇଛି ଓ ତାର ନିଦ ଭାଙ୍ଗିବାକୁ ଚାରିଆଡ଼ୁ ପଡ଼ୁଛି କାନଫଟା ପାହାର ।

ସହରର ରାସ୍ତାରେ ପହିଲି ସକାଳର ପ୍ରଥମ ସମ୍ବୋଧନ ଶୁଣିଲା, ଲୁହାପିଣ୍ଡ ଲାଗିଛି ।

ମୁଣ୍ଡ ଟେକି ଅନେଇଲା, ଫଳେ ମେଣ୍ଢା ଓ ଦଶଟା ବଳଦ ତାର ଗାଲି ଦୁଆରମୁହଁ ବାଟେ ପଶି ଆସୁଛନ୍ତି । ଅପେକ୍ଷା କଲା ନାହିଁ ।



ଘର ଖୋଜିବାକୁ ଅଣ୍ଟା ଭିଡ଼ିଛି ସଦାଶିବ, ପକେଟ୍‌ରେ ଡବାଏ ପାନ, କଟାଏ ବିଡ଼ି ଓ ଗୋଟିଏ ଦିଆସିଲି । ସାମ୍ନାରେ ଗୋଟାଏ ରବିବାର । ଏ ଦେଶ ବ୍ୟକ୍ତିଗତ ଉଦ୍ୟମର ଦେଶ, ତେଣୁ ଏଠି ଅବସ୍ଥା ବ୍ୟକ୍ତିର ବ୍ୟକ୍ତିତ୍ୱକୁ ଆବିଷ୍କାର କରିବାକୁ ସୁଯୋଗ ଦିଏ । ସଦାଶିବ ମନକୁ ମନ ସ୍ଥିର କଲା, ସାଇକ୍ଲ ଧରି ଗସ୍ତ କଲା । ଅନିର୍ଦ୍ଦିଷ୍ଟ ଉଦ୍ୟମରେ । ରାଜଧାନୀକୁ ସେ ମନେ ମନେ ବାଣ୍ଟି ନେଲା ଚାରିଖଣ୍ଡ କରି । ଚାରିଦିନର ଯୋଜନା ।

ପାନ ଦୋକାନ, ଖଲିଫା, ପ୍ରତି ଗଳିରେ ସ୍ଥାନେ ସ୍ଥାନେ ଯୋବଧାଉଳିଆ କେହି ହାବୁଡ଼ିଲେ କେହି ଚହଲା ଲୋକ, ହୁଏତ ସମ୍ବାଦ ଦେବେ ଏହିମାନେ, ତାଛଡ଼ା ରାଜ କର୍ମଚାରୀ ବନ୍ଧୁମାନେ ।

ଅନେକ ତଥ୍ୟ ସଂଗ୍ରହ କଲା, ଅନେକ ନୂଆ ଘରର ସନ୍ଧାନ ମିଳିଲା ଓ ନୂଆ ମଣିଷଙ୍କ ପରିଚୟ । ଖବର ପାଇବା ମାତ୍ରେ ଖାତାରେ ଟିପିନେଇ ସେ ସାଙ୍ଗେ ସାଙ୍ଗେ ଧାଇଁଯାଏ ।

ଘର ନାହିଁ ।

“ହେଇ ତ ଖାଲି ଘର ।”

“ଜଣେ ବାବୁ କଥା କରି ସାଇଛନ୍ତି !”

“ସେଠି ଯେଉଁ ନୂଆ ଘରଟି ତୋଳା ହେଉଛି, ସରିଲେ ମିଳିବ ?”

“ଆଗରୁ ଭଡ଼ା ଟଙ୍କାରେ ଇଟା କିଣା ହୋଇ ନହିଁ ପଡ଼ିଥିଲା ।”

ଘର ନାହିଁ ।

କିନ୍ତୁ ସହରର ଭୂଗୋଳ ବିଷୟରେ ଧାରଣା ହେଲା ପ୍ରଚୁର । କେତେ ସହର ! କେତେ ଗଳି ! କେତେ ବଡ଼ !

ସହର ବଡ଼ ହୋଇଛି । ସଦାଶିବ ଯେତେବେଳେ ତାର 'କର୍ତ୍ତବ୍ୟ କାର୍ଯ୍ୟ'ରେ ବୁଲୁଥିଲା, ଅରଣ୍ୟରୁ ଅରଣ୍ୟାନ ଯେତେବେଳେ ଏ ସହରର ଲୋକେ ଘର

ତୋଳିଛନ୍ତି । ଗୁମ୍ପା ପକେଇଛନ୍ତି । ଯୁଦ୍ଧ ବଜାର, କଣ୍ଟ୍ରୋଲ କାଳ, ଲକ୍ଷ୍ମୀ ଏ ହାତରୁ ସେ ହାତ ହୋଇଛନ୍ତି ଅନ୍ଧାରେ ଅନ୍ଧାରେ । ସହରରେ ଅସଂଖ୍ୟ ବଡ଼ଲୋକ । ତା ପାଇଁ ଘର ନାହିଁ ।

ଯେଉଁ ଆଡ଼କୁ ଦେଖିଲେ ସହର ଉଠୁଛି ଖୁବ୍ ବଡ଼ ବ୍ୟସ୍ତ ପରି, ଟିକିଏ ସ୍ଥାନ ନାହିଁ, ତେଣୁ ସହରର ଚଉହଦି ବଢ଼ୁଛି । ଯେଉଁଠା ଥିଲା ପୋଖରୀ; ହଂସ ଖେଳୁଥିଲେ, ସେଠି ଦୋତାଲା କୋଠା । କେତେ ଥିଲା ଜଳାଭୂଇଁ, କରେ କରେ ନାଗଅଳେଇ ବଣ, ସେଠି ବସ୍ତି । ଅଣ୍ଟାଏ ପାଣିରେ ବି ଅଦ୍ୟାପି କୋଠା ଠିଆ ହୋଇଛି, କାମ ଚାଲିଛି । ସବୁ ଯେପରିକି ସଦାଶିବକୁହିଁ ଉପହାସ କରି ତାଳିମାରି ଉଠୁଛି,—"ଆମେ ସବୁ ମାଡ଼ି ବସିଲୁଁ । ମଜୁରିଆର ଏଠି ସ୍ଥାନ ନାହିଁ, ଫେରି ଯା·—"

ଏଇ ସହରରେ ଥିଲା ତାର ବସା ଘର ।

ବାଟରେ ଗଲେ ପୁରୁଣା ସ୍ମୃତି ଫେରିଆସେ ।

ହେଇ ତ ସେ ନିମ୍ବଗଛ ! ବହୁଦିନର ଧାଉଡ଼ିଏ ତାହାରି ତଳେ ଥିଲା । ଆଗମୁହଁ କିଛି ପରିବର୍ତ୍ତନ ହୋଇଛି । ହେଇ ସେ ଘର । ଦୁଆରମୁହଁରେ ଟହଲିଲା । ହୋମିଓପ୍ୟାଥି ଡାକ୍ତରଖାନା ଖୋଲିଛି । ଭିତରୁ ସମ୍ଭାଷଣ,— "ଆପଣ କାହାକୁ ଖୋଜୁଛନ୍ତି, ଆଜ୍ଞା ?"

"ନା, ଏମିତି ।"

ଏ ଘର ତାର ନୁହେଁ, ତାର ଅନ୍ତରର ।

ଆଉ ଗଳିରେ ଆହୁରି ଗୋଟିଏ ଘର, ସେଠି ସେ ଥିଲା ଗୁରିବର୍ଷ । ଦୁଆର ମୁହଁରେ ଠିଆହେଲେ ଭିତରଟା ଯାକ ସବୁ ମନେ ପଡ଼େ । ଆଉ ପହିଲି ଯୌବନର ଦୃଶ୍ୟ କିଛି ।

ପଡ଼ାଘର, ସେପାଖେ ପଢ଼ଣାଘର; ଜଲ୍ଲିରୋଡ, ହାର୍ମୋନିୟମ୍ ସହିତ ଗୋଟିଏ ଝିଅର ଗଳା ।

ଦୁଆର ମୁହଁରେ ଠିଆହେଲା ।

ଭିତରୁ ଟହଲି ପଡ଼ିବ, ଦେହ ବଙ୍କେଇ ବଙ୍କେଇ ନାଚ କରି କରି ଦଉଡ଼ି ଆସିବ ତାହାର ପୋଷା କୁକୁର 'ଖିଲୁ' । ଖିଲୁ ପେଡ଼ାଖାଏ ।

"କାହାକୁ ଖୋଜୁଛନ୍ତି ?" ଅତି କର୍କଶ ଗଳାରେ ରୂଢ଼ ସ୍ୱରେ ଗର୍ଜି ଉଠିଲେ ଜଣେ ମୋଟା ସୋଟା ଭଦ୍ରଲୋକ । ସଦାଶିବ ଚମକି ପଡ଼ିଲା ।

"ସଦାଶିବ ବାବୁ ଏଠି ଥାଆନ୍ତି ?"

"ନା, ହେଇ ଆଗରେ ଦେଖନ୍ତୁ ।"

ମୁଣ୍ଡ ନୁଆଁଇ ଆଗକୁ ଚାଲିଲା । ଚେତା ପଶିଲା,—କାହାକୁ ଖୋଜୁଛି ବୋଲି କହିଥିଲା ? ନିଜକୁ ତ ! ଆଗରେ ନାହିଁ ପଛରେ କେଉଁଠି । ପଛରୁ

ମାଡ଼ି ଆସୁଛି ମଟରଗାଡ଼ି । କାନ୍ଥ କରକୁ ଲେପ୍‌ଟି ଯାଉ ଯାଉ ମଟର ଚକର ଆଘାତ ଖାଇ ରାସ୍ତାର ଗୋଳପାଣି ପିଚକାରି ମାରିଦେଲା ତାହା ଉପରକୁ । ଧସ୍ ଦେହରୁ ଫାଲେ ଗଲା । ମଟରରେ ଗଲେ ଧୋବ ଲୁଗା ଧୋବ ପଞ୍ଜାବୀ ପିନ୍ଧା ଗୋଲ୍ ଗାଲ୍ ଭଦ୍ରଲୋକ । ସେ କଣ ଜାଣିଥିବେ ? କେବେ ନୁହେଁ । ହୁଏତ ତାଙ୍କ ବେଉସା ଚିନ୍ତାରେ ମଗ୍ନ । ମଟରର ଦାସ, ମଟର ଭିତରେ ଥିବା ମନୁଷ୍ୟ । ମଟରରେ କ୍ଷତଗ୍ରସ୍ତ ରାସ୍ତାର ପଦାତିକ । ଦୁହେଁ ଦୁହଙ୍କୁ ଚିହ୍ନନ୍ତି ନାହିଁ । ମଟର ଚଳେ ।

ରାସ୍ତାର ଅସନାପାଣି ଲୁଗାରେ ବାଜିବାକୁ ଖିରୁକପଣ ଉଭେଇଗଲା । ଏଇ ସହରରେ ଅନେକ ସ୍ଥାନରେ ଥିଲା ତାର ଘର । କେବଳ ଏ ସହରରେ କାହିଁକି, ଏ ଦୁନିଆରେ ଅନେକ ଠିଁ ।

କେଉଁଠି ତାପାଇଁ ଜଳୁଛି ଚୁଲି, କେଉଁଠି ବସି ସେ ଝାଳ ପୋଛୁଛି, ବିଶ୍ରାମ କରୁଛି, ବାହାର ପ୍ରକୃତିକୁ ଆବୋରି ନେଇ ନିଜର ଚିନ୍ତାକୁ ନିଜର ଜୀବନକୁ ରୂପ ଦେଉଛି ।

ତା ପରେ ତା ଯାଉଛି ।

ଥରେ ମାଟି ଛୁଇଁଲା ପରେ କେତେଥର କେତେଠିଁ ସେ ନିଶ୍ଚିହ୍ନ ହୋଇଛି, ପୁଣି ନୂଆ ମାଟିରେ ପଲ୍ଲବ ଉଠିଛି, କେତେଥର ମରିଛି, ପୁଣି ବଞ୍ଚି ଉଠିଛି ।

ଶୋଚନା ନାହିଁ ।

ବୁଲି ବୁଲି ସଞ୍ଜରେ ଫେରିଲା ବେଳକୁ ମେଘ ଢଳ ଢଳ ଆକାଶ, ଗୋଟାଏ ଦିନ ଶେଷ ହୋଇଛି । ଘର ମିଳିନାହିଁ ।



ଚାରିଦିନ ସହରଯାକ ଏମୁଣ୍ଡ ସେମୁଣ୍ଡ ପାନିଆଁରେ କୁଣ୍ଡେଇବା ଶେଷ କରିସାରି ସଦାଶିବ ତାର କାର୍ଯ୍ୟରେ ଯୋଗ ଦେଲା । ଯୋଗ ଦେଲା କେବଳ କାଗଜରେ, ବସିବାକୁ ସ୍ଥାନ ନାହିଁ । ମହୁ ଫେଣା ପରି କାର୍ଯ୍ୟାଳୟ ମହୁମାଛି ପରି କର୍ମୀ । କେତେ ମାଛି ଉଡ଼ି ଆସନ୍ତି କେତେ ଯାଆନ୍ତି ଉଡ଼ି—ଏମିତି ଅବହମାନ କାଳରୁ । ତାଙ୍କର ଭିତରେ କେଉଁ ମାଛି ଟିକିଏ ବଡ଼, ଟିକିଏ ମୋଟା, କିଏ ଟିକିଏ ସାନ, ଟିକିଏ ସରୁ । କିଏ ଘାଉଁ ଘାଉଁ ଟିକିଏ ବେଶୀ, କିଏ ଟିକିଏ କାମୁଡ଼ା, ଆଉ କେତେ—ସେମାନଙ୍କ ସମବେତ ସାନ ସ୍ୱର ଶୁଭେ କ୍ଷୀଣ କରୁଣ ଆଳାପ ପରି ।

ବହୁ ଆୟାସରେ ଯୋଗାଡ଼ କରି ପାରିଲା ସାତ ହାତର ଖଣ୍ଡେ ପିଣ୍ଡା, ବାବୁଆନିର ଭେକ ରଖିବାକୁ ଖଣ୍ଡେ ଟେବୁଲ, ଖଣ୍ଡେ ଚଉକି, ସାମ୍ନାରେ ଖଣ୍ଡେ ବେଞ୍ଚ୍ ।

ଚଉକିରେ ବସି ଟେବୁଲରେ ହାତ ରଖି ଅଣ୍ଟା ସଳଖେଇ ବଡ଼ ବଡ଼ ଆଖିକରି ସଦାଶିବ ସାମ୍ନାକୁ ଚାହିଁଲା। ସେ କର୍ମଚାରୀ। ଏଠି ତାର ଆଧିପତ୍ୟ।

ଚାରିଆଡ଼କୁ ନଜର କଲା। ଛେଳି ଲଣ୍ଡି ପଡ଼ିଛି। କିଛି ଗୋବରର ଚିହ୍ନ। ଛେଳି ଗନ୍ଧ ପରିଷ୍କାର ପ୍ରତିଷେଧକ କହନ୍ତି, ଗୋମୟ ଡିସିନ୍‌ଫେକ୍‌ଟାଣ୍ଟ। ଅନୁଭବ କଲା—ଏଠି ବି ସେ ଏକଛତ୍ର ନୁହେଁ।

କିଛି ସମୟ ପରେ କୁତୂହଳୀ ହୋଇ ଆସି ପହଞ୍ଚିଲେ ଗୋଟିଏ ଛେଳି ଓ ତାର ତିନୋଟି ଛୁଆ। ଆଶ୍ଚର୍ଯ୍ୟ ହୋଇ ଚାହିଁ ରହିଲେ ମୁହାଁମୁହିଁ।

—୨—

ସଦାଶିବ ଘର ପାଇଁ ଖଣ୍ଡିଏ ଆବେଦନ କରିଥିଲା ତାର କାର୍ଯ୍ୟାଳୟରେ। ଉପରିକ ଉତ୍ତର ଦେଇଥିଲେ,—"ସେ ଦାୟିତ୍ୱ ଆମର ନୁହେଁ।" ତାପରେ ପୁଣି ବ୍ୟକ୍ତିଗତ ଉଦ୍ୟମ। ପରାମର୍ଶ ମିଳିଥିଲା,—ବ୍ୟକ୍ତିଗତ ଉଦ୍ୟମରେ କମ୍ପାନୀ ବସେ, କୋଠା ତୋଳା ହୁଏ, ଚାଲେ ଆମଦାନୀ ରପ୍ତାନୀ ବେପାର। ତେବେ ଅସମ୍ଭବ କଣ ? ନ ମିଳିଲେ ଉଦ୍ୟମର ଅଭାବ, ଅଳସପଣ, ନହାତ ନ ହେଲେ ଭାଗ୍ୟର ଦୋଷ।

ପଚାରିଲେ ପ୍ରତିଶ୍ରୁତି ମିଳେ, ବଡ଼ ସହରର ଭଦ୍ରଲୋକ ମାନେ ଯେପରି କି ସାହାଯ୍ୟ କରିବାକୁ ବ୍ୟାକୁଳ ସମସ୍ତେ। ପାଟିରେ ପାନ ଓ ହସ, ବ୍ୟବହାରରେ ଶିଷ୍ଟାଚାର,—"ଆଜ୍ଞା ମୁଁ ନଜର ରଖିଲି। ଆପଣଙ୍କ ପାଇଁ ମିଳିବ ନାହିଁ ଖଣ୍ଡେ ଘର ?"

ଆରଦିନ ଦେଖାହେଲେ ପୁଣି ନୂଆ ହୋଇ ପ୍ରସ୍ତାବ।

"କଣ ବୁଝିଲେ ଆଜ୍ଞା ?"

"କେଉଁ କଥା ?"

"ଘର ଖଣ୍ଡେ ବୁଝି ଦେଉଥିଲେ ପରା ?"

"ଓ, ସେ କଥା ! ବୁଝୁଛି ଆଜ୍ଞା। ପାଇଲେ କହିବି ଯେ—"

ପ୍ରତିଶ୍ରୁତି ମିଳେ। ଘର ମିଳେ ନାହିଁ।

ରତ୍ନାକର ସହିଯାଏ।

ପ୍ରତ୍ୟହ ସଞ୍ଜବୁଡ଼େ, ଦମୟନ୍ତୀ ପଚାରେ,—"ଘର କଥା କଣ ହେଲା ?" ନୂଆ ଶିଶୁ ପ୍ରକାଶ ପାଇଁ ଚହଲ ପକାଏ, ତାର ଘର ଦରକାର ଏହିପରି ଦିନେ, ହୁଙ୍କାର କଲା ଦମୟନ୍ତୀ।

ତାର ପ୍ରସୂତି କାର୍ଯ୍ୟ ପାଇଁ ଦରଖାସ୍ତ କରି ଡାକ୍ତରଖାନାରେ ମିଳିଗଲା ଖଣ୍ଡିଏ ବଖୁରିକିଆ ବସା। ସଦାଶିବ ସଦଳବଳେ ସେଠିକି ଉଠିଗଲା।

ଶାର୍ଦ୍ଦୂଳ-ବିକ୍ରୀଡ଼ିତ ପରମ ଆନନ୍ଦରେ ବସା ସାମ୍ନାର ଘାସ ଅଗ୍ରିକରେ ନୃତ୍ୟ ଆରମ୍ଭ କରଦେଲ,—"ଆମ ଘର, ଆମ ଘର ।" ଅନୁଷ୍ଟୁପ୍, ମନ୍ଦାକ୍ରାନ୍ତା ଓ ଗାୟତ୍ରୀ ସେହି ଘରେ ଡେଇଁ ଲଗିଲେ । ସୁନ୍ଦର ଘାସ, ସୁନ୍ଦର ନୁଆଁଣିଆଁ ଖଡ୍ ।

ପିଣ୍ଡାରୁ ଦମୟନ୍ତୀ ହସୁଛି ।

ସଦାଶିବ ମେଘକୁ ଅନାଇଛି, ଭାବୁଛି ଏଥର ଯେ ଜନ୍ମ ହେବ କଣ ହେବ ତା ନାଁ ?

ସେ ପାଙ୍କର ଖଞ୍ଜାର କବାଟ ଖୋଲିଲା, ବାହାରିଗଲା ଗୋଟାଏ ମୁଷୁର ପଟୁଆର । ସଦାଶିବ ଚମକି ପଡ଼ି ପାଟିକଲା—"ହେ ପିଲେ, ଭିତରକୁ ଚାଲ, ଭିତରକୁ ଚାଲ ।"



# ପରିଚୟ

ନାଲିସଡ଼କଠୁ ଦଶ କୋଶ ଦୂରରେ ଚଇଁତା ନଈ ପାରି ହୋଇ ବାଲି ପାଟ ଡେଇଁ ଯୋଇଆ ଭିତରେ ଗଣ୍ଡ ମଫସଲ ଭିତରେ ଗୋଟିଏ ଗାଁ । ଭାରତବର୍ଷ ଗଣଭୋଟ ପର୍ବ ଭିତରେ ସେଠି ଗୋଟିଏ ଭୋଟ-କେନ୍ଦ୍ର ହୋଇଛି ।

ଭୋଟ ଦିନ । ପେମୀବୋଉ ଆଜି ଭୋଟ ଦେବେ । ସକାଳୁ ଗାଡ଼ିଆରେ ବୁଡ଼ପକାଇ ଆସି ଘର ଦୁଆରମୁହଁକୁ ଉଡ଼ୁଆଳ କରି ଓଳିତଳେ ଚାଳକୁ ଓଦା ଲୁଗା ଓହ୍ଲାଇଦେଲେ । ଆର ବଖରା ଦୁଆରମୁହଁ ପାଖେ ବସି କୋଥଳି ଖୋଲି ନିର୍ମାଲ୍ୟ ପାଇଲେ, ସିନ୍ଦୂର ନାଇଦେଲେ ।

ଆରିସିରୁ ଯେଉଁ ମୁହଁଟି ତାଙ୍କୁ ଚାହିଁ ହସିଦେଲା ଗାଁ ଗହଳିରେ ସେ ଗୋଟିଏ ସାଧାରଣ ମୁହଁ, ପଇଁଚାଳିଶି ବର୍ଷୀୟା ପ୍ରୌଢ଼ାଙ୍କର; ସେପରି ମୁହଁ, ଯାହାକୁ ଦେଖିଲେ କେହି ନିଜକୁ ପଚାରେ ନାହିଁ କେଉଁଠି ଦେଖିଛି ବୋଲି; ଅଭାବ, ପରିଶ୍ରମ, କେତେ କେତେ ବେଳେ ରୋଗ, ସନ୍ତାନ ଜନ୍ମ, ସନ୍ତାନ ଲାଳନପାଳନ, ଆପଣା ସୁଖ କଥା ପାସୋରିପକାଇ ସବୁବେଳେ ଅନ୍ୟମାନଙ୍କ ଭଲ ପାଇଁ ଖଟି ଖଟି ଦେହ ଯୋରହେବା, ଦୁନିଆର ନିୟମ ମାନୁ ମାନୁ ସେ କ'ଣ ଭାବିବ ସେ କଣ ଭାବିବ ବୋଲି ମନରେ ଧରି ଦୁନିଆକୁ ଡରି ଡରି ପାଦ ଗଣି ଗଣି ଚଲନ୍ତି—ଏଥିରେ ଅସାଧାରଣ ବୋଲି କିଛି ନ ଥିଲା । ସେ ସମାଜରେ ଗାଁରେ ଏପରି ସବୁ ଘରେ ମିଳିବେ । ଚେହେରାରେ ଟିକିଏ ଉଣେଇଶି ବିଶି, ନ ହେଲେ ଏକା କାଟର; ଯେପରିକି ଏକା କାରଖାନାର ଏକା ଫଳ । ଦି'ଜଣଙ୍କ ମୁଣ୍ଡ ମଧ୍ୟ ଅନବରତ ମାସେ କାଳ ବଥାଇବ, ଜଣେ ଗୋରା ଲୋକ ଦିହେଁ ଦି' ବର୍ଷର ହେଲେ ବି ଯେମିତି ମୁହଁର ଠାଣି ଏକା ପ୍ରକାର ଦିଶିବ, ସେମିତି ସାଧାରଣ ସେ ପେମୀବୋଉଙ୍କ ମୁହଁର ଛବି ।

ଟିପରେ ସିନ୍ଦୂର ନେଇ କପାଳରେ ଆଠଣି ଆକାରର ଏକ ବୁଲୁଡ଼ି ଭିତରେ ସୂର୍ଯ୍ୟ ନେଇ ଥୋଇଲାବେଳକୁ ହସି ହସି ଚାହିଁଲା ଗୋଟିଏ ମୁହଁ ତାଙ୍କୁ । ମୁହଁ ଗୋଟାଳିଆ ନୁହେଁ, ଫାଳିକିଆ, ଯେମିତି ପାଚିଲା କଖାରୁ ଚକ୍ଳୁଡ଼ାଏ, ଜହ୍ନୀରୁ ଚକ୍ଳୁଡ଼ାଏ । ଲମ୍ବାଳିଆ ହୋଇ ଶୁଖିଲା ଗାଲ ଦି'ଫାଳ, ମଝିରେ ବ୍ୟବଧାନ ଚାରି ଆଙ୍ଗୁଳ । ଉପର ଓଠ ତଳ ମଢ଼ିଆ ପଦାକୁ ଠେଲେଇଛି, ତା ତଳେ ଚାରୋଟି ବଡ଼ ବଡ଼ ଦାନ୍ତ ଉପର ଓଠକୁ ସମ୍ଭାଳିନେଇ ପୁରି ଆଙ୍ଗୁଳେ ଲେଖା ପଦାକୁ ବାହାରିଛି, ଯେମିତି ଭାଙ୍ଗିପଡ଼ୁଥିବା ଚାଳିଆ ତଳେ ତା'ର ପାଣିଖିଆ ବାଉଁଶ ଚୁଅ ।

ଆଖି ଦୋଟି ଡବ୍ଡୁଆ ଡଗ୍ଡୁଆ, ନରମା; ଦେଖିଲେ ତୃପ୍ତି ହୁଏ, ଜୀବନଯାକ ସେ ଆଖି କାହା ଉପରେ ନଆଁ କୁଢ଼େଇ ନାହିଁ, ଅନେଇଛି, ସହିଛି, ନ ପାରିଲେ କାନ୍ଦିଛି, ତା ଭିତରେ ହସ ବି ନିହାତି ନରୁଟିଆ, ଯେପରିକି ସେ ଆଖି ନିବୁଜ ଅଥଳ ପାଣି, କେବେ କ୍ୱଚିତ୍ ଜଳିଯାକେ ଆଲୁଅ ଚମକିଯାଏ, ନ ହେଲେ ନାହିଁ। ମୁଣ୍ଡରୁ ବାଳ ଉପୁଡ଼ି ଉପୁଡ଼ି ପାତଳ ପଡ଼ିଲାଣି, କିନ୍ତୁ ଟାଙ୍ଗି ଛାଲି ଉପରେ ବୁଦୁବୁଦିକିଆ ବଣ ଭିତରେ ଫରଚା ନାଲିସଡ଼କ ପରି ସଳଖେ ଚାଲିଛି ଓସାର ହୋଇ ଯାଇଥିବା ସୁନ୍ଥା। ତା'ର ଦାଗ୍ବିଲସ୍ତରେ ମାଟିଆ-ପାଉଁଶିଆ ବଉଦ ଛାଙ୍କୁଣି ପରି କାନି; ତା'ର ନେଳି ଫୁଲ୍ଧଡ଼ି ବାରମ୍ବାର କଚା ହୋଇ ଫିକା ପଡ଼ିଗଲାଣି। ସେଇ ମୁହଁ ଆରଶୀକୁ ତାଙ୍କୁ ଚାହିଁ ହସୁଛି।

ସେ ଆଜି ଭୋଟ ଦେବାକୁ ଯିବେ—ସେ ପେମୀବୋଉ।

ସ୍ତ୍ରୀ ନୁହେଁ ଯେ ସେ କେହି ନୁହନ୍ତି; ଜୀବନଯାକ ମୁହଁ ଆଡ଼େଇ ଆଡ଼େଇ ଦାନ କଟେଇ ଦେଇଥିବା ଗ୍ରୁଥ ପରି ମାଇପିଟିଏ। ଯାହା ଗୁଣ୍ଡରେ ହେଲେ ଶୁଣିବ—"ମାଇପିଲୋକଙ୍କ କଥା ଗୁଡ଼। ସେଥିରୁ କ'ଣ ମିଳିବ?" ପିଲାଏ ହସିଦେବେ, କହିବେ, "ବୋଉର ଫେର୍ ଗୋଟାଏ କଥା ନା?" ପେମୀବାପା କହିବେ, "ଶେଷେଇ କର, ପାନ ଭାଙ୍ଗ, ପିଲାଙ୍କୁ ଖାଇବାକୁ ଦିଅ; ଆଉ ମାଇକିନିଆଙ୍କର କୋଉ କଥାରେ କ'ଣ କହିବାର ଅଛି?" ପୋଖରୀକୂଳେ ପୁନିଅଁ ପରବକୁ ଯାନିଯାତକୁ ସମବୟସୀ ଭଦ୍ରମହିଳାମାନେ ଏକାଠି ହେଲେ ସେହି ଗୋଟିଏ କଥା ଘିଙ୍କାନ୍ତ ହୁଏ ବାରମ୍ବାର, "ଆଲୋ ମାଇକିନିଆ ଜନମ ଲୋ, ମାଇକିନିଆ ଜନମ ତ ପାଇଥାଇଁ, ଆଉ ପାଟିରୁ ଶ୍ରି କରିବ କୋଉ କଥାରେ? ଏଣୁ ଖୁନ୍ଦାଏ ମାରିଲେ ହୁଁ, ତେଣୁ ଖୁନ୍ଦାଏ ମାରିଲେ ହୁଁ, ତେଣିକି ଉଁ ନା ଚୁଁ?"

ଆପଣାକୁ ନିଭେଇ ଦେଇ ଅନ୍ୟମାନଙ୍କ ପଛରେ ଗୋଡ଼େଇ ଗୋଡ଼େଇ ପାଣି ଲଗୋଉଥା; ଗାଁ ନିଶାପ କରି, ଝଗଡ଼ା ନିଶାପରେ ବି କେହି କେବେ ପଚାରି ନାହିଁ ପେମୀବୋଉ ମତଟା କଣ। କେବେ କିଏ ଧିଧା ଧିଧା କୋଉ କଥା ପଚାରିଦେଲେ ଆପଣା କାନକୁ ପୁଲାଏ ଫାଳେ ପାଟିରେ କାମୁଡ଼ି ଧରି କବାଟ କଣକୁ ଆଉଜିଯାଇ ମନ ବୁଝିବାକୁ କବାଟ ପଟାରେ ତଳୁ ଉପରକୁ ନଖରେ ଗାର ପକାଇବା କଥା। ମତ ଦେଇଦେଲେ ପଟ ହୋଇଯିବ ବୋଲି ସେ ଜୀଭଟାକୁ ଯଥାସାଧ୍ୟ ଅନ୍ଧାର କରି ପାଟି ଭିତରର ପାନ ଭିତରେ ମାଡ଼ି ରଖନ୍ତି। କିନ୍ତୁ ଆଜି ତା ନୁହେଁ।

ଲୋକ ଦେଖୁଥିବେ, ସେ ଯିବେ, ଭୋଟ ଦେବେ। ଗାଁକୁ ଯେଉଁ ତିନି ପକ୍ଷ ଆସିଥିଲେ, ପରସ୍ପର ବିରୁଦ୍ଧରେ କେତେ କଥା କହିଗଲେ। ତହିଁରୁ ଦି' ପକ୍ଷ ତ ଭେଟାଭେଟି ହୋଇଗଲେ ଯେ ଗୋଇ ଖୋଲାଖୋଲି ହେଉ ହେଉ ବାଳ ମାଟି ଫୋପଡ଼ାଫୋପଡ଼ି ହେଲେ। ଗାଳି କଜିଆ ତ ସହଜେ। ସେମାନେ ବଡ଼ ପାଟିରେ

ସମସ୍ତିଙ୍କି ସବୁ ବୁଝେଇଦେଇ ଯାଉଥିଲେ, "ମା ଭାଇ ଓ ଭଉଣୀମାନେ, ଆପଣମାନେ ଜାଣନ୍ତି ଭୋଟଦାତା ହିସାବରେ ଆପଣମାନଙ୍କ କ୍ଷମତା କେତେ ? ଆମେ ବୁଝାଉଚୁଁ, ଶୁଣନ୍ତୁ ।"

ସେଦିନୁ ସେ ବୁଝିଛନ୍ତି, ଭୋଟ ଦେବା କ୍ଷମତାଟା ତାଙ୍କର ଅଛି । ସେ କ୍ଷମତାଟା ଏତେ ବଡ଼ ଅସ୍ତ୍ର ଯେ ତାକୁ ଭିକ ମାଗିବାକୁ ପଞ୍ଝା ପଞ୍ଝା ହୋଇ ସହରିଆ ବାବୁମାନେ ଏ ଗଣ୍ଡ ମଫସଲକୁ ଧାଇଁଆସିଛନ୍ତି । କେତେ ନେହୁରା ହୋଇ ମାଗିଥିଲେ, କେତେ ପ୍ରକାର ବୋଧଶୋଧ କରି ବୁଝାଇ ସୁଝାଇ ଗଲେ ।

ସେ ବୁଝିଛନ୍ତି, ତାଙ୍କଠି ବି ଏପରି ଶ୍ରେଷ୍ଠ କ୍ଷମତା ଅଛି ଯାହା ବଳରେ ଏ ଦେଶରେ କିଏ ଗୋଟାଏ ରଜା ହେବ, ନଈବନ୍ଧ ଅଟକିବ, ଚାଉଳ ଭାଉ କମିବ, କନ୍ଥାର କାଳ କଟିବ, କ୍ଷେତରେ ଭଲ ଧାନ ହେବ, ମଶା ଡାଆଁଶ ମରିବେ, ଜର ହେବ ନାହିଁ, ଇସ୍କୁଲ ଘର ତୋଳା ହେବ, ବରଗଛ ତଳେ, ଲୋକେ ଯେଉଁଠି ବସନ୍ତି, ସେଠି ପକା ହେବ, କଳ ସବୁ କଣ ବସିବ, ଝଙ୍କଣା କମିବ, ଏମିତ କେତେ ଭଲ ଭଲ କଥା ହେବ । ସେ କ୍ଷମତାଟା ତାଙ୍କଠି ବି ଅଛି, ଖାଲି ମଣିଷ ବାଛିବା-ପାଇଁ କାଗଜ ଖଣ୍ଡେ ଗଳେଇଦେଇ ଆପଣା ମତ ଜଣାଇଦେବା କଥା, ସେଇଠୁ ସେହି ପଞ୍ଝାକ ଟାଙ୍କିଆଁ ସବୁ ଭଲ ଭଲ କଥା କରିଦେବେ । ଭାଗବତ କହୁଛନ୍ତି, ସକଳ ଘଟେ ନାରାୟଣ ଅଛନ୍ତି; ସେ ତ ଖାଲି ବହିପୁରାଣ କଥା । କେହି ତାଙ୍କ ପାଖକୁ ତାଙ୍କ ନାରାୟଣଙ୍କୁ ସଂଖୋଳିବାକୁ ଆସିନାହିଁ । କିନ୍ତୁ ଏ ଯେଉଁ ଭୋଟଶକ୍ତି ତାଙ୍କଠି କହୁତ ରହିଛି, ତାକୁ ସଂଖୋଳିବାକୁ ଧନ ପଞ୍ଝା ଆସି କୁହାପୋଛା କରିଯାଉଛନ୍ତି । 'ମୁଁ' ପଣ ସତେକି ପଥର ତଳୁ ମୁଣ୍ଡ ଟେକିଛି ଏତେଦିନକେ ।

ଆଜି ତାଙ୍କର ଦିନ, ସେ ଭୋଟ ଦେବେ ।

ତେଣୁ ସିନ୍ଦୂର ଟୋପା ନାଉଥିଲାବେଳେ ସେ ଆପଣାକୁ ଚାହିଁ ଫାଇଁକିନା ଟିକିଏ ହସିଦେଇଥିଲେ । ମୁହଁର ଚମ ସିନ୍ଧି ସେକ୍ରେଇ କାଳିଚା ପଡ଼ିଯାଇଛି ସତ, ଆଜି ଆଉ ସେଦିନ ନାହିଁ ଯେତେବେଳେ ତାଙ୍କ ଗୋରା ରଙ୍ଗ ବିଷୟ କହି କେହି କେହି ଅନ୍ୟ ବୋହୂମାନଙ୍କୁ ଉଲୁଗୁଣା ଦେଉଥିଲେ । ମୋଟେ ଚଉରାଳିଶିଟା ବର୍ଷ ଯାଉଛି, ହେ ଚମ ଢିଲ ହୋଇ ଆସିଲଣି । ତଥାପି ହସି ଅନାଇଁଲେ ଲାଗୁଛି, ଓଟାରିହେଲେ ଚମର ରଙ୍ଗଟା ଏବେ ବି ବାରିହୁଏ ।

ପୁଅ, ଝିଅ, ସ୍ୱାମୀ, ଦିଅର କେହି ଦେଖିବାକୁ ନାହାନ୍ତି ଯେ ସେମିତିହୋଇ ସିନ୍ଦୂର ନାଉ ନାଉ ମନକୁ ମନ ହସୁଛନ୍ତି, ମନକୁ ମନ ଅନୁଭବ କରୁଛନ୍ତି—ଏ ଦେହରେ ଜୀବନ ଅଛି, ଏ ଘଟରେ ଭୋଟଶକ୍ତି ଅଛି, 'ମୁଁ' ପଣର ଟେକ ଅଛି, ମନର ବଳ ଅଛି । ଆପଣା ସଙ୍ଗେ ଚହଲାଚହଲି ର ସେହି ବିଚିତ୍ର ମୁହୂର୍ତ୍ତ ଆସିଛି । ହସ ଅଟକୁନାହିଁ ।

"ହେଇ, ଏବେ ନୁହେଁ, ତବେ ଯମ ହସୋଉଛୁ କଲେ ! ସନ୍ନ୍ୟାଳ, ସନ୍ନ୍ୟାଳ"—ସେ ଆପଣାକୁ ଆକଟୁଛନ୍ତି ! କନ୍ଦୁ ହସ କର କର ବୋହିଯାଉଛୁ ।

ହଠାତ୍ ଚାଉଁକନା ନଭିଗଲା ସେ ହସ । ମୁଣ୍ଡ ଉପରେ ହାତରେ ଆଉଁସି ପରଖିନେଲେ, ତେଲୁଲଆ ବସ୍ତ୍ର ପର ଚଗ୍ଭ ସିଲେଇଟା ଟିକ୍ ମୁଣ୍ଡ ଉପରେ ଶୋଇଛୁ, ଯେମିତ ତାକୁ ସମସ୍ତେ ଦେଖି ବୁଝିପାରବେ, ସ୍ୱେ ମାଇପିଟା ପୁରୁଣା ଚଗ୍ଭ ଲୁଗା ଖଣ୍ଡେ ପିନ୍ଧ ଆସିଛୁ । ଆଉ ତା ସଙ୍ଗେ ତଙ୍ଗେ ଖବନେବେ ତାଙ୍କ ହୀନଅବସ୍ଥା କଥା ଯେ, କାହାଘର ଝିଅ କାହାଘର ବୋହୂ । ଆଉ ଅଣମସ୍ତ ଚଗ୍ଭ, ବସ୍ତ୍ର ବାଳଆ ସିଲେଇ ହୋଇଛୁ । କୋଉଠି ଲୁଚବ ନାହିଁ । ଆଉ ନାହିଁ । ଯାହା ଅଛୁ, ସେ ଚଗ୍ଭ, ନ ହେଲେ ମଇଳା । ସୁତରାଂ ଏତକ ମୋଟେ । ଗଲେ ଏଇଥିରେ ଯିବାକୁ ହେବ । ଆରସୀକୁ ମୁହଁ ଆଉ ତାଙ୍କ ଚାହିଁ ହସିଲ ନାହିଁ ।

ଏଥର ଆଉ ପାଖେ ଆଖକ ଦଶିଲା । ଜମିଦାରୀ ଉଚ୍ଛେଦ ହୋଇସାରଛୁ । ଯେମୀ, ଚେମୀ ବାହାହେଲେ, ଜମି ବକା ହେଲା । ଆଉ ଯାହା, ସେତକ ଖରଚାପାଣି କରୁଛନ୍ତି ; ଧନ ଖଗଲୁ ଖଗେ ଯେ ସେ କାହିଁକ ପାଏ ? ଘର ଚଳବକୁ ଯେମୀବୋପାଙ୍କ 'ହମିପାଥି' ନା 'ହୀନପାଥି' ବେଉସା, ମଫସଲରେ ସେଥିକ ବା କଣ ମିଳେ ? 'ହମିପାଥି' ଔଷଦ ଖାଇ କଏ ମଦ ପିଆଳ ଦ'ଅଣ୍ଡା ଦେଲା, କଏ ଦେଲଣି ଆଳୁ ସେରେ, କଏ ବା ମୁଗ ଅଧସେର, କେବେ କଦବା ଟଙ୍କାଏ ମସାଏ । ଦ'ପୁଅ ପଞ୍ଚୁଆ ଆଉ ମୂଷା ଯେ, ପଞ୍ଚୁଆଟି ସହରରେ ବେପାରୀ ଗୋଦାମରେ ହସାବ ଲେଖେ, ତା କମେଇଁ ତାକୁ ନଅଣ୍ଟ ; ମୂଷାଟି ପାଠ ପଢ଼ିଲା ନାହିଁ, ଟିପଚନ୍ଦ୍ର ମହାବଳ, ଚେହେରା ବଳରେ ଠାଏ ଲୁଗାକଳରେ ଦଶୁଆନ କାମ ଖଣ୍ଡିଏ ଏବେ ପାଇଛୁ, ତା'ର ବି ଆପେ ଖାଇବାକୁ ନଅଣ୍ଟ । ବାହାକୁ ଆସ୍ଥ ନାହିଁ, ଅବସ୍ଥା ଦନୁଁଦନ ଯାଉଛୁ ତଳକୁ ।

ସେଇ ପଟଟା ଦଶିଲ, ଗ୍ଭଲିଲ ଦୀର୍ଘନିଶ୍ୱାସ, ଆଉ ଆରସୀକୁ ଅନେଇଁ ହେଲ ନାହିଁ ।

ଏଠି କେବେ କଂସା କବଟା ପଡ଼ୁଥିଲେ ଝଣ୍‌ଝଣ୍‌କନା କୋଣ କୋଣ ବାଟକୁ ଶବ୍ଦ ହେଉଥିଲା, ହେଇ ଜମିଦାର ଘର କବାଟ ପଡ଼ିଲା । ଆଉ ଆଜ ହେଇ ଦଶୁଛୁ ଶହେ ହାତ ଦୂରରେ ପାଚେରୀ ପରବର୍ତ୍ତେ ଗୋଟାଏ କଣିବାଡ଼, ତା ତଳେ ଭଙ୍ଗା ଧୂଳଆ ପିଟା ଘରଗୁଡ଼ାକର ସ୍ତୂପ ଧର କୁଦ ; ଉହରେ ବାଇଗଣ ଲଗାନ୍ତୁ ନାହିଁ ବୋଲ ବାଇଗଣ ଲଗିନାହିଁ ସିନା, ଅସ୍ତାଏ ଅସ୍ତାଏ ଖଡ଼ା ଲଗିଛୁ । ଏ ଶହେ ହାତଟାକ ସଫା, ଖାଲି ଠାଏ ଠାଏ କୁଦ, ବେଦୀ, ଢିପ ; ଘରସବୁ ଖାଲି ପଡ଼ିଯାଇଛୁ, ତା ନୁହେଁ, ମାଟି ମାଟିରେ ମିଶିଯାଇଛୁ । ସେଇ ସେତେ ଦୂରରେ ଗୋଟିକଆ ବାଟଘର ଟୁଙ୍ଗୀଟିଏ, ପଇସା ଅଭାବରୁ ଛପର ହୋଇନାହିଁ, ଗ୍ଭରେ ବଡ଼ ବଡ଼ କଣା । ସେହି ଘରେ କବ୍ରିପିନ ପଟାର ଅଳମାରୀ ଭିତରେ ହୋମିଓପ୍ୟାଥି

ବାକ୍ସ ଅଛି । ପେମୀବାପା ବ୍ରଜକିଶୋର ଭ୍ରମରବର ରାୟ ମହାପାତ୍ରଙ୍କର ସେ ଫେଣ୍ଟ୍ରିକ 'ହୋମିଓପାଥି ଡାକ୍ତରଖାନା' । ତା ତଳେ ବାହାରେ ବଡ଼ ପକା ଘୋଷରା ପାହାଚ, ଆଉ କମକୁଟ ହୋଇ ପଥରର ପୁଟୁଷେ ଉଞ୍ଚ ଚଉରା, ପୁଚୁଣା କାରଗରୀ କାମ, ସତେ କି ଗୋଟିଏ ଟିକି ଦେଉଳଟିଏ, ଉପରେ ଦନ୍ଧନଉଡ, ସେଥିରେ ଲୁଟେଣ୍ଡ୍ରେ ଉଞ୍ଚ ସବୁ ବୃନ୍ଦାବତୀ ଗଛଟିଏ ଅଦ୍ୟାପି ଶୁକୁଶୁକୁ ହୋଇ ବଞ୍ଚିଛି ।

ଏ ପାଖର ଘର ଦୁ'ବଖରା ସେପଟେ ଆଉ ଯେଉଁ ତିନି ବଖରା ଘର ଅଛି ତା ଅବସ୍ଥା ଟିକିଏ ସ୍ୱାଠୁ ଭଲ । ଏଠା ପରି କାନ୍ଥର ଚମ ନଙ୍ଗ'ଳା ଦିଶୁନାହିଁ । ସେଠି ଲିପାପୋଛା ହୋଇ କାନ୍ଥ ସୁନ୍ଦର, ଚୂନ ବହଳ ଛୁଆଣି । ଆଉ ବର୍ଷେ ବର୍ଷେ ତୋଳା ହେଉଛି ଯେ କାନ୍ଥ ଟେକା ହେଉଛି ; ବାଉରୀ ମୂଲିଆଣୀମାନେ କାମ କରିବାକୁ ଆସିଲେଣି । ସେ ଘରଟା ଶମ୍ଭୁ ପଟ, ତାଙ୍କ ଦାଦାର ଭକ୍ତକିଶୋରଙ୍କ ଘର । "ବ ତଳକୁ ଭ" । ପେମୀବୋଉ ଭାବନ୍ତି, ଭଲ ନାଁ ଦେଇଥିଲେ ଶଶୁରେ ଶାଶୁଏ, ଯେମିତି ପଟ ପଡ଼ିବ, କଛ ହେବ, ବ୍ରଜକିଶୋର ତଳକୁ ଭକ୍ତକିଶୋର, ଦୁ' ଭାଇ ମିଳାମିଶି ରହିବେ ଯେ, ଓଲଟି ସେ ହେଲେ ଶମ୍ଭୁ । ହେଉ, ଝମର ଝମର ହୋଇ ଭଜିଆ ଭାଉଜ ଏ ବାଟେ ଗଲା । ମଝି ଦୁଆରେ ଠିଆ ହୋଇ ଅଣ୍ଟାରେ ହାତ ଦେଇ ବୋବାଳି ଛାଡ଼ୁଛି, "ଇଲୋ ପାଲୁଣୀବୋଉ, କଲୋ, ଧଅସି କାମ ସାର ଆଜ ପର୍ବ ସ୍ରେଥଟ ।" ତା ପିଲାଏ ପାଟି କରୁଛନ୍ତି, ଖିଦ୍‌ଖିଦିଆ ହୋଇ ଦଉଡ଼ୁଛନ୍ତି । ତାର ଅଭାବ ନାହିଁ । ଭଜି ତ ସହରରେ କାଠଗୋଲା ଖୋଲିଛନ୍ତି ଯେ କୁଆଡ଼େ ପଇସା ଓଟାରୁଛନ୍ତି । ଦି ଦୁଅ କରାମି, ବାପ ପାଖେ ରହନ୍ତି । ଝିଅ ତିନିହେଁ କେଡ଼େ କେଡ଼େ ଘରେ ପଡ଼ିଛନ୍ତି ଯେ ଜଣେ ବର ମାଟିକାମ କାଣ୍ଟ୍ରାକ୍ଟି, ଜଣେ ଇସ୍କୁଲ ବିଭାଗ ସବ୍‌ଇନ୍‌ସ୍‌ପେକ୍ଟର ତ ଆଉ ଜଣେ ଅବକାରୀ ସବ୍‌ଇନ୍‌ସ୍‌ପେକ୍ଟର । ରଙ୍ଗାବୋଉ ଭାରି ପାରିବାର ମଣିଷ । ଭଜି ତା କାନରେ ବନ୍ଧା ! କାଠଗୋଲା ହିସାବ ସେ ନିଜେ ଦେଖି କରେ । ସହରରେ ଥାନ୍ତି ଯେ, ଘରକୁ ଆସିଛନ୍ତି ଅଧିକରୁ ଅଧିକ ଘର ତୋଳେଇବେ, ବାଡ଼ି କରିବେ, ଜମି କିଣିବେ ବୋଲି । ପାଲୁଣୀବୋଉ ଆଉ ଏକ ଅଂଶ ; ତାଙ୍କ ବର ନନ୍ଦ ଲେଖାରେ ଦାଦାର ହେବେ । ସେ ମଟର ଡ୍ରାଇଭର ।

ପେମୀବୋଉ ଦୁନିଆ କଥା ଭାବି ମନେ ମନେ ଝିଙ୍ଗାସିଲେ—ଦୁନିଆଟା ଏଇ । ରଙ୍ଗାବୋଉ ଯିନା ମାସେ ହେବ ସହରରୁ ଆସିଛି, ସେ ନିଜେ ତ ଏଇ ଘରେ ଏଇ ଗାଁରେ ଅଛନ୍ତି କାଲକାଠାକ, ପାଲୁଣୀବୋଉର କେତେ ଉପକାର କରି ନ ହୋଇଛି । ଏବେ ବି ତ ମାସକ ତଳେ ତା ସାନ ଝିଅ ମଙ୍ଗଳବାର ରାତିରେ ବାନ୍ତି ଉଠେଇଲା ଯେ ନାକ ବାଟେ ପାଟି ବାଟେ ଭକ୍‌ଭକ୍, ପିଲାଟା ଦେକ ଭାଙ୍ଗି ଦେଲା । ସେତେବେଳେ କୋଉ ରଙ୍ଗୀବୋଉ ଥିଲା ପିଠିରେ ପଡ଼ିବାକୁ ? ସେଇ ପେମୀବାପା ଗଲେ, ଦେଖିଲେ, ସେଉଠୁ ତିନିପାନ ହୋମିପାଥି ଔଷଧରେ ଠିକ୍ ।

ବୁଢ଼ିଆ ଭୁଲିଯାଏ। ପାଲୁଣୀବୋଉ ଭୁଲିଛି। ସେ ଆଉଜିଛି ରଙ୍ଗାବୋଉ ପଟେ। ଏପରିକି ରଙ୍ଗୀବୋଉଠୁ ସେଥର ସେ ଝାଡ଼ା ବନ୍ଦ କରିବା ଔଷଧ ବି ନେଇ, ହୁମିପାଥି ଶାସ୍ତ୍ରକୁ ନିନ୍ଦା କଲା। ଏବେ ସେନ୍ଥ ଆରପଟେ ତାର ବସାଉଠା, ତାଙ୍କର ପାଇଁ ତାର ଘୃରପଣ, କିଏ କେଉଁଠି କଣ କଲା, ଯାଇ ଫୋଡ଼ିବାକୁ। ଭୋଟ କ୍ଷମତାଟା ତାର ବି ରହିଛି। ଏଇ ଭଙ୍ଗା ଖଣ୍ଡା ଭିତରେ ଠା ଠା ହୋଇ ଆହୁରି ତିନି ଘର ଅଂଶ ଅଛନ୍ତି, ଦି ଭାଇ ସଦେଇ ଗଦେଇ, ଆଉ ଜଣେ ସେ ଫାଗୁବୋଉ ଘର। ସଦେଇ ଘର, ଫାଗୁବୋଉ ଘର ଗୋଟାସୁଦ୍ଧା ରଙ୍ଗୀବୋଉର ଆଶ୍ରିତ ହେଲେଣି; ଖିଆପିଆ, ବସାଉଠା ଚାଲିଛି। ସଦେଇ ତ ତାଙ୍କ ଜମିକୁ ଅଧେ ରଙ୍ଗୀବୋଉକୁ ଯାଚିଲେଣି କିଣିବାକୁ। ସେ ବି ତାଙ୍କ ପଟେ। ସେ ବି ଭୋଟ ଦେବେ। ଓଃ! ହିଂସାରେ ଜଳିଯାଉଛି ଦେହ ଗୋଟାକ। ମୁହଁକୁ ବାଁ କାନ୍ଧକୁ ଡାହାଣ କାନ୍ଧକୁ ମୋଡ଼ି ଦେଇ ପେମୀବୋଉ ଠିଆ ହେଲେ। ରଙ୍ଗାବୋଉ ଡାକ ଡାକ ଭେଲୋଉଛି, "ଆସ ଲୋ ହେ, ଭୋଟଦେଇଯିବା, ଉଚ୍ଛୁର କର ନାହିଁ।" କେଉଁପଟେ ଭୋଟ ଦେବେ ସେମାନେ, ଜାଣିପାରିଲେ ସେଥିରେ ମନ ଦେଇ ପେମୀବୋଉ ଆଉ ଭିନେ ପନ୍ଥାକୁ ଭୋଟ ଦିଅନ୍ତେ।

ଗଦେଇ ଆସି ପହଞ୍ଚିଲେ। ପେମୀବୋଉ ଖୁସି ହେଲେ। ହାଡ଼ୁଆ ହୋଇ ଟିକି ମଣିଷଟିଏ, ତ୍ରିପଣ୍ଡ କଳା, ମୁଣ୍ଡଟି ଚନ୍ଦା ଚକ୍ ଚକ୍, ଧୂଆଁ କୁହୁଳିଲା ଫେରି ସାନ ସାନ ଆଖି ମୋଡ଼ିକି, ମୁହଁଟି ତଳକୁ ଚାଏ।

"ଆସ ଗଦେଇ! ରହ, ପାନଡାଲିଟା ଆଣେ। ତମ ଭାଇ କୁଆଡ଼େ ରୋଗୀ ଦେଖି ଯାଇଚନ୍ତି।"

"ହୁଁ, ଗଲେ ମଲିକ ସାହି ଆଡ଼େ। ଆଜି ଭୋଟ ପର୍ବ! ମତେ କହିଦେଇ ଗଲେ ତମକୁ ସାଙ୍ଗରେ ନେଇ ଭୋଟଠେଇଁକି ଯିବାକୁ। ଯିବା ଆସ।"

"ରହ, ପାନ ଭାଙ୍ଗେ।" ଭାରି ବୁଦ୍ଧିଆ ଏ ଗଦେଇ। ତାଙ୍କର ସମବୟସ ହେବ। ଆପଣା ବୁଦ୍ଧି ବଳରେ ଖାଲି ମୁଣ୍ଡ ଖଟେଇ ଖଟେଇ ଚାଲିଛନ୍ତି। ତାଙ୍କ ନାହା ଏଡ଼େ ବଡ଼ ଦୁର୍ଦ୍ଦିନରେ ବି ବୁଡ଼ିନାହିଁ। କଣ୍ଟ୍ରୋଲ ବେଳେ ଗାଁରେ ଚିନି କିରାସିନ ଦୋକାନ ଆରମ୍ଭ ହୋଇଥିଲା; ଏବେ ସେ ଦୋକାନଟି ଗାଁ ଭିତରେ ଗୋଟିଏ ବଡ଼ ଦୋକାନ, ମାସକୁ ପଚିଶ ଶହେ ହୁଏ। ଭୋଟବାଲା ତାଙ୍କୁହିଁ ଧରିଥିଲେ ବେଶି। ଭଜଙ୍କର ଗଦେଇଙ୍କର ପଡ଼େ ନାହିଁ। ଭଜ ଗଦେଇଙ୍କ ଦୋକାନ ପାଖିକି କୁଆଡ଼େ ବି ଶହେ ଟଙ୍କା ଦେଇଥିଲେ। ଆଶା ଥିଲା, ଗଦେଇ ତାଙ୍କୁ ଜମି ବିକିବେ। ଗଦେଇ ଜମି ଦେଲେ ନାହିଁ କି ଟଙ୍କା ଦେଲେ ନାହିଁ; କହିଲେ, "ମୋର ବଳ ନାହିଁ ତ କଣ କରିବ? କୋର୍ଟ କଣ ନବ, ନିଅ, ମୁଁ ନାହିଁ କରୁନାହିଁ।" ସେଇଥିପାଇଁ ଭଜ କେତେ ଉପାୟ ପାଞ୍ଚିଲେଣି, କିନ୍ତୁ ଗଦେଇ କିଛି କାଗଜ କରିଦେଇନାହାନ୍ତି ଯେ ତାଙ୍କ ଲକ୍ତ ସ୍ପେ ପାଇବେ।

ଗଦେଇଘର ଭିତରେ ଗ୍ରାଇ ମାଡ଼ନ୍ତି ନାହିଁ । ଗାଁ ଲୋକେ ଗଦେଇଙ୍କି ଝରଣି କହନ୍ତି, ଝାଉଁଟର କହନ୍ତି, ଅନ୍ୟତଃ ଭଜିଆ ଖରପାକୁ ଚିତା କାଟିଥିବାରୁ ପେମୀ-ବୋଉଙ୍କର ତାଙ୍କ ପାଗଳପଣ ପ୍ରତି ବିଶ୍ୱାସ ଅଛି ।

ପାନ ଖାଇ ଖାଇ ପେମୀବୋଉ କହିଲେ, "ତାଙ୍କର କାହାକୁ ଦେବେ ଜାଣିଚ ଗଦେଇ ?"

"କାହିଁ ନାହିଁ ତ ।"

"ସେତିକ ତୁମର ଜାଣିବାକୁ ପଡ଼ିବ । ସେ ତାଳଗଛକୁ ଭୋଟ ଦେଲେ ଆମର ଦବା ଆମ୍ବଗଛକୁ, ସେ କୁକୁଡ଼ାକୁ ଭୋଟ ଦେଲେ ଆମର ଦବା କଣ୍ଟାସକୁ ।"

"ତାଳଗଛ, ଆମ୍ବଗଛ, କୁକୁଡ଼ା, କଣ୍ଟାସ—ଏମିତି ନାହିଁ ତ ଭୋଟ ଚିହ୍ନ, ନୂଆବୋଉ ତୁମକୁ କିଏ କହିଲା ?"

"କେହି କହିନାହିଁ ଯେ ମୁଁ କଥାକୁ କହୁଚି । ନଇଲେ ଦେଖ ତାଙ୍କର କେଡ଼େ ଉଦୁଲୁ ! ମୋ ହାତଅନ୍ଧ ସେପଟେ ସଫା ତିନି ହାତ ଜାଗା ମାଡ଼ିବସି ଘରେ ପୂରେଇଦେଲେ । ସବୁଜାଗା କହୁଚନ୍ତି ମୋର ମୋର । ସ୍ୱେ ତ ନମ୍ବରୀ ଦୁଷ୍ଟ, ସେଥିପାଇଁ ତାଙ୍କର ସବୁ ମାଡ଼ିବସୁଛନ୍ତି । ଆଉ କେମିତି ଧନଦରବ ସବୁ ଦେଖେଇ ହଉଚନ୍ତି ଦେଖ ଟିକିଏ ।"

ଗଦେଇ ତଳକୁ ଗୁହିଁ ହସିଦେଲେ । କହିଲେ, "ଭୋଟ ନଦେଇଥା କଣ ପେମୀବୋଉ ରଙ୍ଗୀବୋଉ ଏ ଦି ଭାଉଜଙ୍କ ଭିତରେ ହବ ? ହେଲେ ତେମେ ତାଙ୍କୁ ପାରିବନାହିଁ, ରଙ୍ଗାବୋଉ କୋପାଷ୍ଟା ।"

"ନବଜ ରଖିଥା । ନାଇଁ, ସତରେ । ସେ ଯାହାକୁ ଭୋଟ ଦେବେ ଆମେ ସବୁ କେମିତି ତାକୁ ଭୋଟ ଦେବା ?" କଥା ଅଟକଗଲା, ଭଜିଙ୍କ ଘର କାମ ବନ୍ଦ କରି ସାତଜଣ ବାଉରାଣୀ ସେବାଟେ ବାହାରିଲେ, ଭୋଟ ଦେବାକୁ ଯିବେ । ଆଗେ ଆଗେ ଚାଲିଗଲା ପେମୀବୋଉଙ୍କ କୋଠିଆ ଗନ୍ଧଅ । ଗଦେଇ କହିଲେ, "କିଲୋ, ତେମେ କାହାକୁ ଭୋଟ ଦବ ?" ଏକାଠି ଦି ଚାରିଜଣ କହିଲେ, "କାଇଁକି, ଆମ ଖାଉନ୍ଦକୁ । ଯାହାର ଖାଉଁ, ଯାହା ଘରେ ମୂଲ ଲାଗୁଁ, ସେ ଯାହା କହିବେ ଆମେ କଣ ତାଙ୍କ କଥାରୁ ବାହାର ହବୁଁ ? ତାଙ୍କର ଯୁଆଡ଼େ ଆମର ସିଆଡ଼େ, ।"

"ହେଇ ଶୁଣ", ଗଦେଇ କହିଲେ, "ଯେ ତୁମ ଖଗଗଣ୍ଡାକ ବଢ଼େଇ ଦ'ପାରୁ ତିନି ପା କଲା, ଯେ ତୁମକୁ ଏତେ ପ୍ରକାରେ ହୃପାଜତ କଲା, ତାକୁ ତେମେ ଭୋଟ ଦବନାହିଁ ?"

"କେଜାଣି ଲୋ ବାପା, କିଏ କଣ କଲା, ଆମେ ତ ଜାଣୁ ସବୁ ମହାପ୍ରଭୁ କଲା । ଘାଇ ଯଦି ସେଇ ଭଙ୍ଗୋଉଚି, ଚୁଡ଼ା ଚୁଉଲ ସେଇ ମହାପ୍ରଭୁ ବଣ୍ଟୋଉଚି, ଖଗ ପା'କ ତିନି ପା ସେଇ କରୁଚି । ଆମର ସେଥିରେ କଣ ଅଛି ? ଆମୁକୁ

ଯେ ମୂଳ ଦଉଚି, କରଜ ଦଉଚି, ତାରି କଥାରେ ଆମର ଚଳଣି । ସେ ଯାହା କହିଲା, ଆମେ ସେଇଆକୁ ଦଉଁ ।”

“କାହାକୁ ?”

“ସେ କଥା କହିବାକୁ ମନା କରିଚନ୍ତି ଲୋ ବାପା ମା, ତେମେ ସେଥିରୁ କି ପାଇବ ? ତମ କାମ ତେମେ କର ।”

ସେମାନେ ଚାଲିଗଲେ । ପେମୀବୋଉ କହିଲେ, “କି କାଳ ହେଲା ଲୋ ମା, ଦେଖ ବହପ ।” ଗଦେଇ କହିଲେ, “ସ୍ଥା ନା କଳିକାଳ ।”

ଗାଁ ଇସ୍କୁଲଘର ଭୋଟଘରରେ ପରିଣତ ହୋଇଛି । ସଳଖେ ଦକ୍ଷିଣୁ ପୂର୍ବପଟେ ପାଏ ବାଟ ଦୂରରେ ଯେଉଁ ଧୋବାଘର ପାଖ ଝଙ୍କା ଓସ୍ତଗଛ, ଯେଉଁଠି ଖାପି କଟାହୁଏ, ତା ତଳେ ଗୁମୁଣ୍ଡିଆ ହୋଇଛି, ସେଠି ଗୋଟାଏ ପତାକା ମରି ହୋଇଛି, ଆଉ ପାଖେ ପାଏ ବାଟରେ କେଳାସାହି, ସେଠି ଶତୁରି କେଳାର ଗୁଛା ଛହିରେ ଗୋଟାଏ ଗୁମୁଣ୍ଡିଆ ହୋଇଛି, ସେଠି ବି ତାନା ମରି ହୋଇଛି, ସେ ଆଉ ଗୋଟାଏ ଦଳଙ୍କ ଆସ୍ଥାନ । ତୃତୀୟ ବିରୋଧୀଦଳଟି ଇସ୍କୁଲ ସଳଖେ ପାଏ ବାଟ ଦୂରରେ ପଛଆଡ଼େ ଠିକ୍ ମଶାଣିଦାଢ଼ରେ ଗୁମୁଣ୍ଡିଆ ବାନ୍ଧିଛି । ସେଠି ତାର ଲୋକ ବାକ, ମାଟିଆ ଜିପ୍ ଗାଡ଼ି, କଲକୁହା ବଡ଼ପାଟିଆ ଯନ୍ତ୍ର, କଲବାଜା—ସବୁ ଅଛି । ଉଦୁଉଦିଆ ଖରାବେଳେ ଧୂଳି ଉଡ଼େଇ ଜିପ୍ ଗାଡ଼ିମାନ ଗାଁଗହଳି ଭିତରେ ଖେଳି ବୁଲୁଥିଲା, ଖାଲି ସେହି ମଶାଣିପାଖ ଦଳଆଙ୍କର ନୁହେଁ, ଖାପିକଟା ଓସ୍ତତଳିଆ ଦଳଙ୍କର ମଧ, ଶତୁରି କେଳା ଉହିପାଖେ ବସା ବାନ୍ଧିଥିବା ଦଳଙ୍କର ବି ଯେ, ସେ ଦୁଇଦଳ ଗାଡ଼ି ଆସି ବୁଲିଦେଇ ଫେରିଗଲା, କିନ୍ତୁ ମଶାଣି ପାଖ ଦଳଆଙ୍କ ଗାଡ଼ି ସାତଦିନ ହେଲା ଏ ଗାଁରେ ରହିଛି । ଗୋଠ ଗୋଠ ଗାଁପିଲାଙ୍କୁ ମାଗଣାରେ ନେଇ ଗୋହିରି ବାଟେ ହୋଇ ଦଣ୍ଡା ବାଟେ ହୋଇ ମହାଦେବଙ୍କ ଆଡ଼ୁ ଫିଆଡ଼େ ସେମିତ ମହାବୀରଙ୍କ ଦେଉଳପାଖେ କେତେ ଘେରି ବୁଲେଇ ଆଣିଥିଲା । ପଛେ ପଛେ ଧରି ଲଟକ ଓହଳ ଠେଲ ଆହୁରି ପିଲାମାନେ ଟିକେ ଦୂର ଗୋଡ଼େଇ ଯାଇଥିଲେ । ଗଉଡ଼ସାହିଆ, କେଉଟସାହିଆ ବେଶି ଲୋକ । ଜିପ୍‌ଗାଡ଼ି ତାଙ୍କୁ ବି ମାଗଣାରେ ଥୋଡ଼ାଏ ବୁଲାଇଥିଲା । କଲ ବାଜାରେ ତ ଗାଁ ଅଡ଼ପାଖ ଅଞ୍ଚଳ ବି କମ୍ପି ଥିଲା ।

ଜାଣିବା ଲୋକେ କହିଲେ, “ସେ ଭଲ କାମ ହେଲା, ମଶାଣିପାଖ ହେବାରୁ ମଲା ଜୀଅନ୍ତା ସମସ୍ତେ ଗୀତ ଶୁଣିଲେ, ନାଙ୍କରି କଣ ?”

ସେହି ଦଳଟା ଆଜ୍ଞା ବଢ଼ିଆ ଦଳ ପରି ପେମୀବୋଉଙ୍କୁ ଲାଗୁଥିଲା । ଖାସା ଜାଣିବା ବୁଝିବା ଦଳ, କେଡ଼େ ସୁନ୍ଦର ଗାଉଥିଲା ତାଙ୍କ କଲବାଜା “ବିନାଶୁ ନାସା ଶ୍ରବଣ ସୁର୍ପଣଖା ପ୍ରବେଶ ଲଙ୍କାର—” । ଧୋବା ସାହି ଖାପିହଣା ଓସ୍ତତଳ

ସେଇଁ ଦଳକ, ତାଙ୍କ ତରଫରୁ ଗାୟକ ଗାଉଥିଲା "ଯୋଡ଼ା କୃଷ୍ଣ ଅଶ୍ୱମାନ ସେ, ରଥେ ଚଢ଼ି ଦଶାନନ, ଶ୍ରୀରାମ ରଥ ସମ୍ମୁଖେ ରଥ କରି ଶର ବର୍ଷେ ଘନ ଘନ ସେ—ଝୁଣ୍ଟିଲ ।" ମାଇପି ଦଳରେ କଥା ଚାଲିଥିଲା, ଏ ଗାୟକ ସ୍ୱର ଗାଇଲାବାଲା, ଗଳାରୁ ଭଲ ଝଡ଼ପଡ଼ିବ, ଏମିତ ବୋଲୁଛି । ହେଲେ ସେ ଆରକ ଯୋଉଁ ସୂର୍ପଣଖା ନାସାଦାନ ଗାଉଛି, ସେ ସ୍ୱର ବିକଳ କାନ୍ଦଣା ନାଦ, ଗଳାରୁ ଭଲ ନ ହେଉ, ପରର ଝଲମଲ ସେ ଟକଲଟେ ।"

ସମସ୍ତେ କୁହାକୋହି ହୋଇ ପ୍ରଶଂସା କରୁଥିଲେ, ତେଣୁ ତାଙ୍କର ସଙ୍କେତରେ ଭୋଟ ଗଲେଣିବୋଲି ପେମୀବୋଉଙ୍କର ଟିକିଏ ଟିକିଏ ମନ ହେଉଥିଲା । କିନ୍ତୁ ରଙ୍ଗୀବୋଉ, ଫଲ୍ଗୁଣୀବୋଉ ଆଉ ଦଶରଥର ଜେଜେ ସେତେବେଳେ ଏକାଠି ଦଳ ହୋଇ ଭୋଟ ଦେବାକୁ ଚାଲିଗଲେ, ଯୋଗୀ ପଧାନ ଝିଅ ଟେଣ୍ଟେଇ ତାଙ୍କ ପଛେ ପଛେ ଯାଉଥିଲା, ଭୁମା ଭୁମା କହିଦେଇଗଲା, "ସେ ଚାଲିଲେ ସେଇ ମଣାଣି ଚଳିଆଙ୍କୁ ଭୋଟ ଦେବେ ।"

ପେମୀବୋଉ ଦେଲେ ପୁଳାଏ ଚମୁଟି ଗଦେଇଙ୍କ ବାହାରେ । ଗଦେଇ ଚମକିପଡ଼ି ଅଟକି ବାହା ସାଉଁଳିଲେ । ସବୁ ସାହିରୁ ଲୋକ ଚାଲିଛନ୍ତି ଭୋଟ ଦେବେ ।

"ଶୁଣ ଗଦେଇ, ତାଙ୍କର ସେଇଆଙ୍କୁ ଭୋଟ ଦେବେ ।"

"ଦେଉନ୍ତୁ ଯାହାର ଯାହାକୁ ମନ ।"

ଗଦେଇଙ୍କ ହାତକୁ ହାତମାନେ ଚପିଧରି ପେମୀବୋଉ କହିଲେ, "ଆମର ତେବେ ଆଉ କାହାକୁ ଦବା,—"ମନେ ପଡ଼ିଗଲା କେଳାସାହିରେ ଯେ ଗୁରୁଣୀ ପକାଇଛନ୍ତି ତାଙ୍କର ମଝିର ନାହିଁ ସତ, କିନ୍ତୁ ସେନୁଡ଼ା ଛନଛନିଆ ଟୋକାନୁଡ଼ାକ, ପଞ୍ଝାଏ, ଆସୁ ଆସୁ ସ୍ୱା ତା ପିଣ୍ଡାରେ ବସିପଡ଼ି ଗୋବିଣି ମାଗି ପିଇ ବନ୍ଦନା କରିନେଇଥିଲେ, ତାଙ୍କ ଗୀତ ବଡ଼ପାଟିଆ କଲ ବାଟେ ନୁହେଁ, ସେମାନେ ଖାଲିପାଟିରେ ଭଲ ଗୀତ ବୋଲନ୍ତି, କିଏ ଖଞ୍ଜଣି ବଜାଏ, କିଏ ଧୁଡୁକି, କିଏ କେନ୍ଦରା, କିଏ ବା ହାଣ୍ଡି ପଛଆଡ଼େ ପିଟି ପିଟି କେଡ଼େ ସୁନ୍ଦର ବାଜା ବଜାନ୍ତି । ଅନ୍ୟପଟଙ୍କୁ ଗାଳି ଉଡ଼େଇଲାବେଳେ ଦେଖିବା କଥା, ଏମିତି କେହି ପାରିବାର ନାହିଁ । କହିଲେ, "ଗଦେଇ, ଆମର ସେହି କେଳାସାହିଆ ପଞ୍ଝାଙ୍କ ଦଳକୁ ଦବା ।"

"ଚୁପ୍ ଚୁପ୍, ବାଇଆ ହେଲ ନୂଆବୋଉ, ସେନୁଡ଼ା ତୁଚ୍ଛା ବଲୁଲିଆ-ନୁଡ଼ାକ ପରା ! ଆମର ସେହି ଧୋବା ଖାପିହଣା ଓସ୍ତଭଲ ଲୋକଙ୍କୁ ଦେବା । ସାଇ ବି କହୁଛନ୍ତି, ସେମାନେ ଏ ରାଜ୍ୟ ଚଳେଇଲେ ଭଲ । ହେଇ ଦେଖ, କେମା ବ ଭୋଟ ଦେବାକୁ ଯାଉଛି । ହେଇ କେମା, ଆ ଶୁଣ ।"

କେମ୍ପା ଧାନକୁଟିଲା ଭଙ୍ଗୀରେ ଚାଲୁଥିଲା । ତାର ସରୁ ସରୁ ଦୁଇ ହାତ ଦୋହଲି ହଲାଇ ହଲାଇକା, ପାଦରେ ସତେକି ମୁଣ୍ଡକୁ ଧାଡ଼ି ଦେଲା ପରି ଆଗକୁ ଟଳି, ଡାହାଣ ଗୋଡ଼ଟି ବଙ୍କା ହୋଇ ଯାଇ, ପାହୁଣ୍ଡେ ଗଲେ ପଛ ଗୋଡ଼ଟି ଆପେ ତେରେଇ ହୋଇପଡ଼େ କାଠ ତେରିଲା ପରି । ତାଙ୍କ ସରୁ ସରୁ ବାହାରୁ କହୁଣୀ ପାଖକୁ ହାତ କେମ୍ପା ହୋଇଯାଇଛି ନେ ହାତ ହଲେଇ ହଲେଇ ଚାଲିଲା ବେଳକୁ ଡେଣା ହଲେଇ ପହଁରିଲା ପରି ଲାଗେ । ପୁଣି ତା ମୁହଁର ଡାହାଣ ଫାଳକ ବଙ୍କା । ତା ଖଇମା ଲୁଣ ତେଲ ପସରା ବୁଲେଇ ବିକ ମାହା ପାଏ, ସେଇଥିରେ ଦୁହେଁ ଚଳନ୍ତି । ଲୋକେ ତାକୁ କେମ୍ପା ବୋଲି ଡାକନ୍ତି, ସେ ଛଳ କରେ ନାହିଁ । କେମ୍ପା ବି ଚାଲୁଛି ଭୋଟ ଦେବ ।

"କେମ୍ପା, ଶୁଣ ମ, ଏମିତି ଧପାଳକୁ କାହିଁକି ?" ଗଦେଇ କହିଲେ । କିନ୍ତୁ କେମ୍ପାର ଉତ୍ସାହରେ ବାଧା ପଡ଼ିଲା, ସେ ଚହିଁକଉଠିଲା । ସେପରି ବି ତାର କେବେ କେବେ ହୁଏ । ଟିକିଏ ଚିଲମୁଣ୍ଡିଆ । କହିଲା, "କାହିଁକି ପଣ୍ଡଟାକୁ ଡାକଦେଲ ? ଏଁଃ, କେମ୍ପା କେମ୍ପା କେମ୍ପା, ସତେ ଯେମିତି କେମ୍ପା ସ୍ୱାଙ୍କ ବାଡ଼ିତଳେ ଘର କରିଚ ଆଉ !" ତା ପାଟି ଶୁଣି ଲୋକ ମାଡ଼ିଆସିଲେ । ଗଦେଇ ତାକୁ ବୁଝେଇବାକୁ ଚେଷ୍ଟା କଲେ, "ଆରେ, କାହିଁକି ଚିଡୁଚୁ ? ତତେ କିଏ କଣ କହିଲା ?"

"ଆରେ ଯା'ମ, କହନ୍ତି ଆଉ କଣ, ପଛକୁ ଡାକଦେଲ, ପାଗ ଭଣ୍ଡୁରି କଲ, ଆଉ କହନ୍ତି କଣ ଛେନାଟା ?"

ରାଧୁ ବାରିକ ଉପରେ ପଡ଼ି କହିଲା, "ଆରେ ଯେତେହେଲେ ସେ ଆମର ସାଆନ୍ତ, ତେତେ ଡାକଟାଏ ଦେଲେ ବୋଲି ଏମିତି ତେଜ ମୋର ଦେଖାଉଛୁ ?"

କେମ୍ପା ତା ଯାନ ଗୋଡ଼ଟା ଆଗକୁ ମାଡ଼ି ତା'ର ଆଡ଼କୁ ଆସି ତାକୁ ହାବୁକାଏ ମାରିଲା, କହିଲା, "ଆରେ ଯା'ମ, ସାଆନ୍ତ ଦେଖାଉଚ ତୋ ସାଆନ୍ତ ତତେ ବଡ଼, ତାଙ୍କ ଅଇଁଠା ଚାଟିବୁ ଯା, କଣ୍ଟାବାଡ଼ରେ ଲୁଗା ପକେଇ କାଳିଆ କରୁଛି ?"

ରାଧୁ ବାରିକ ବି ତାତିଗଲା । କହିଲା, "ଦେଖିବୁ ଅଇଚ୍ଛା ?"

"କଣ କରି ପାରିଲୁ କରେ ?" କେମ୍ପା କହିଲା, "ଅରେ ରଜାର ବି ଗୋଟାଏ ଭୋଟ, ପରଜାର ବି ଗୋଟାଏ ଭୋଟ ; ନେହେରୁଙ୍କର ଗୋଟାଏ ଭୋଟ, ମୋର ବି ଗୋଟାଏ ଭୋଟ । ତୁ କାହାକୁ ନାଲି ଆଖି ଦେଖାଉଛୁ ବେ ?"

"ଆବେ, ରଖିଦେ ତୋ ଭୋଟ, ଠାଇ ଠାଇ ବସେଇଦେଲି ରାଧୁ ବାରିକ, ଭୁଲିଗଲା, ସେଇଟା କେମ୍ପାଟା, କହିଲା, "ଆରେ ଭୋଟ ମୋର ବି ଅଛି, ନେ ନେ ଆହୁରି ନେ—"

କେମ୍ପା ବରଗଛ ତଳେ ପଡ଼ି ହାଉଳିକେଲା । ଲୋକ ଧାଇଁପଡ଼ିଲେ । ଗୋଟାଏ ଗାଁର ନୁହନ୍ତି, କେତେ ଗାଁର । କୁଆଡ଼ର ମାଇପିଟିଏ ଆପଣା ଦସ୍ତା ସମ୍ଭାଳି ନ ପାରି କିଛି ନ ଦେଖି ପାଟି କରି କରି ଗଲା, "ଇଲେ, ମାରିପକେଇଲା ଲୋ ! ମୁଁ କଣ କରିବି, କୁଆଡ଼େ ଯିବି ଟି ?"

ସେ ଗଲା ଠିକ୍ ବାଟେ ବାଟେ, କିନ୍ତୁ ତା ପାଟି ଶୁଣି ଶାନ୍ତିରକ୍ଷକମାନେ ଠେଙ୍ଗା ଉଞ୍ଚାଇ ଧାଇଁ ଆସିଲେ । ଦୁ'ଜଣ ନାଲିପଗଡ଼ିପିନ୍ଧା ବୀର, ତାଙ୍କ କାମ ମିଳିଗଲା ! କିନ୍ତୁ ସେମାନେ ଧାଇଁଆସିବା ଦେଖି ମାଇପେ ପଞ୍ଝାଏ ଦଉଡ଼ି ପଳେଇଲେ । ତା'ପରେ ଲାଗିଲା ଆଉ ପ୍ରକାରେ ବଚସା । ତିନି ଦଳ ଭୋଟ ପ୍ରାର୍ଥୀଙ୍କ ପ୍ରତିନିଧିମାନେ ଓ ସମର୍ଥକମାନେ ଦୁଇ ପୁଲିସଙ୍କୁ ଆପତ୍ତି କଣାଇଲେ, "ବାବୁ, ତୁମେମାନଙ୍କ ପେଇଁ କେଜାଣି କେତେ ଭୋଟଦାତା ଭୋଟ ନ ଦେଇ ଫେରିଗଲେ । ତେମେ ଦେଖେଇଲ ଠେଙ୍ଗା, ଆମ ଭୋଟସଂଖ୍ୟା କମିଲା, ଏକଥା ଉପରକୁ ଯିବ, ଏଠି ଅଟକିବ ନାହିଁ ।"

"ନଇଲେ ଶାନ୍ତିଭଙ୍ଗ ହୋଇଥିଲେ କିଏ ପାରିଥାନ୍ତା ?"

"ଶାନ୍ତିଭଙ୍ଗ କଲବାଲା ତମେ ନା ଆଉ କିଏ ? ଭୋଟ ଦିନ ଆଜି, ତମେ ଲୋକଙ୍କୁ ଭଡ଼ିକେଉଚ ?"

"ଭାଇମାନେ, ଏକଜୁଟ୍ ହୁଅ, ଏ ଅନ୍ୟାୟର ପ୍ରତିବାଦ ଦରକାର ।"

"ଚାଲ, ଏଠୁ ଉଠି ପଳେଇବା ।"

"ଆରେ ପଳେଇବ କଣ, ମାଡ଼ଖାଅ, କଥାଶୁଣା ହବା ନାନାପ୍ରକାର ମତବାଦ ।" ଗାଁ ଲୋକେ ଥାଟପଟାଳି, ସତେକି ମେଳଣ ପଡ଼ିଆ । କେମ୍ପା ଇତ୍ୟବସରରେ ଭୋଟ ଦେବାକୁ ଗଲାଗଲାଣି । କିଛି ସମୟ ପରେ ସେ ବାହାରିଆସି ସେଇବାଟେ ଗଲା, ତାର ହାତରେ ଲାଗିଥିବା ସନ୍ତକ କାଳିଦାଗକୁ ଚୁମି ଚୁମି । ଲୋକେ ପଚାରିଲେ "କାହାକୁ ଦେଲୁ ? କାହାକୁ ଦେଲ ?" କେମ୍ପା ଗଡ଼ର ଗଡ଼ର ହୋଇ ଗଲା, କହିଲା, "ମୋ ମନ, ମୁଁ ଯାହାକୁ ଦେଲି । ଜାଣିଥିଲେ ପାଞ୍ଚ ବର୍ଷରେ ଫେର୍ ଆଉ ଥରେ । ଆରେ ଏତେକଥାରେ କି ଯାଏ ? ଶାହାସ୍ତ୍ର କହୁଚି, ଯାହାର ଖାଇବ, ତା'ର ଗାଇବ, ନା ଆଉ କଣ ଖାଇବା ପତରରେ ଝାଡ଼ା ଫେରିବ ? ଆରେ, ଆମକୁ କିଏସେ ଖାଇବାକୁ ଦବ ? କିଏ ପଚାରିବ ? କିଏ ଏ ଦେଶକୁ ଭଲରେ ଚଳେଇବ ? ଯେ ତା କରିବ ମୁଁ ସେଇଆକୁ ଭୋଟ ଦେଇଚି । ସେଇ ଜିତିବ, ତେମେ ଦେଖିବ—" ଆହୁରି କେତେ କଣ । ସେ ଗଲାଣି ଚାଲି । ବାହାରେ କଳିଆ ବି ଭାଙ୍ଗିଲାଣି, ଶାନ୍ତି ରକ୍ଷକମାନେ ଅବସ୍ଥା ଦେଖି ବ୍ୟବସ୍ଥା କରି ଆମ୍ବଗଛ ଛାଇରେ ଆପଣା ସ୍ଥାନକୁ ଲେଉଟି ଆସିଲେଣି ।

ପେମୀବୋଉ ଆସିଗଲେ । ଚାରିଆଡ଼କୁ ଅନାଇଁଲେ । ବଳା ବଳା ଲାଗିଲା । କେତେ ଗାଁରୁ କେତେ ଲୋକ ଆସିଛନ୍ତି, ସ୍ତ୍ରୀ ପୁରୁଷ । ଗହଳି ଦେଖି

ସତକୁ ସତ ବଜାର ବସିଯାଇଛି । ଲୋକ କେତେପ୍ରକାର କୁହାକୋହି ହେଉଛନ୍ତି । କିଛି ମୁଣ୍ଡରେ ପଶୁନାହିଁ, ଯେମିତି ଏତେ ପ୍ରକାର ବକ୍ତୃତା ବି ମୁଣ୍ଡରେ ପଶୁ ନ ଥିଲା, ୟା ଆଗରୁ ଭିନ୍ନପନ୍ଥୀ ବିବାଦୀ ଦଳ ଯେତେବେଳେ ଅଲଗା ଅଲଗା ସଭା କରି ବୁଝୋଉଥିଲେ, କିଏ କେତେ କଥା କହୁଥିଲେ କଣ ସବୁ—ଭାରତ, ପାକିସ୍ତାନ୍, କାଶ୍ମୀର ସମସ୍ୟା, ସୀମା ଆନ୍ଦୋଳନ । କଣ ସବୁ ଏ ପାଟି, ସେ ପାଟି, ପୁଞ୍ଜି ଦାବୀ, ଇସ୍ତାହାର, ବାଦୀ, କେତେ ନୂଆ ଶବ୍ଦ ।

ତିନି ଦଳ ଭିତରୁ ଗୋଟାଏ ଦଳ ବେଶି ଭୋଟ କାଗଜ ପାଇଲେ ଏ ଦେଶର ହାନିଲାଭ ବୁଝିବ । କେଉଁ ଦଳ କଣ ସେ ତା ଜାଣିନାହାନ୍ତି, କଣ ଏ ରାଜନୀତି ଫାଜନୀତି ସେ ଜାଣିନାହାନ୍ତି । କାହାକୁ ଦେବା ମତ ହେବ ? ସ୍ୱାମୀ କଣ କହୁଥିଲେ, ଗଦେଇ ବି କଣ କହୁଥିଲେ, ମନେ ପଡୁ ନାହିଁ । ଠିଆପୋତା ବାଉଁଶକୁ ବାଉଁଶ ସୂତୁଲି ବନ୍ଧା ହୋଇ ବାଟ ଦି ଭାଗ ହୋଇଛି । ସ୍ତ୍ରୀ ପୁରୁଷଙ୍କ ପାଇଁ ଅଲଗା ଅଲଗା ବାଟ । ତା ପଛକୁ ତା ପଛ ହୋଇ ମାଇପେ ଧାର ଲାଗିଛନ୍ତି । ଚହ୍ନା ଅଚହ୍ନା ମିଶି କେତେ ମଣିଷ । ସେଇ ବାଟେ ହାବୁଡ଼େଇ ଦେଇ ଗଦେଇ କହିଲେ, "ଯାଅ, ଭୋଟ ଦିଅ, ଭୁଲିବ ନାହିଁ ।"

କେମିତି ଛୁଟ୍ କରି ବାଟ ସରିଗଲା । ଚହ୍ନା ଇସ୍କୁଲ ଘର, କିନ୍ତୁ ନୂଆ ମଣିଷ, ନୂଆ ସାଜସଜ୍ଜା ଦେଖି ଆବାକାବା ଲାଗୁଛି ।

ଟୁଲ୍ ଉପରେ ଆଠ ନଅ ବର୍ଷର ଝିଅଟିଏ ବସିଛି, ଅଚହ୍ନା । ଚଉକି ପକାଇ ଦି ଜଣ ବସିଛନ୍ତି, ପାଇଜାମା ଆଉ କୁର୍ତ୍ତାପିନ୍ଧା ବାବୁ । ଜଣକର ଦାଢ଼ି ଅଛି । ମୁଣ୍ଡରେ ଫୁଲପକା ଧଳା ଟୋପି, ଆଖିରେ ଚଷମା, କେଡ଼େ ଢଙ୍ଗା ଲୋକଟାଏ । ସରୁ ପାଉଁଶିଆ ମଣିଷ, ସତେକି ବାଉଁଶରେ ତିଆରି, ଧଳା କାମିଜ ଧଳା ପାଇଜାମା ଯେଇ ବାଉଁଶରୁ ଓହଳିଛି । ଆଉ ଜଣେ ତାଙ୍କ କଡରେ ଯେ ଓଡ଼ଲ ଡାଉଲ ଚେକା ମୁହାଁ, ମୁହଁରେ ଦେହରେ ବହୁତ ବେଶି ମାଉଁସ ଯେମିତିକି ପାଖରେ ବସିଛି ଯେଉଁ ଜଣକ ତାକୁ କିଛି ବାଣ୍ଟି ଦେଲେ ଦି ଜଣଙ୍କର ଭଲ ହୁଅନ୍ତା, ୟାର ସରନ୍ତା ନାହିଁ, ତାର ଲାଭ ହୁଅନ୍ତା । ଭଜଆ ଘରଯା କଥା ମନେ ପଡ଼ିଲା ।

ଏଇ ଭୋଟ ଦେବା ସ୍ଥଳୀରେ, ଯେଉଁଠି ଦିଶୁଛି ଦୁଆରମୁହଁ ସେ ପାଖେ ତିନି ପ୍ରତିନିଧି କାଗଜ ମେଲେଇ ବସିଛନ୍ତି, ଘର ଭିତରେ ତିନିଠା ହୋଇ ଅଚହ୍ନା କର୍ମଚାରୀ ଦି ଦି ଜଣ ବସିଛନ୍ତି, ଯାଞ୍ଚ କରୁଛନ୍ତି, କାଳିବୁନ୍ଦା ବୁଡ଼େଇ ଆଙ୍ଗୁଠି ତଳେ ମାରୁଛନ୍ତି, ବିଧାନସଭା ପାଇଁ ଲୋକସଭା ପାଇଁ ଅଲଗା ଅଲଗା ଭୋଟକାଗଜ ଦେଉଛନ୍ତି, ଭୋଟ ବଖରାକୁ ବାଟ ଦେଖୋଉଛନ୍ତି, ଏଇ ସ୍ଥଳୀରେ ଯେଉଁଠି ପବନଟା ବି ଯେମିତିକି କଚଶିଆ କଚଶିଆ, ନାଲି ପଗଡ଼ି ଆଉ ମାଟିଆ ପୋଷାକ ପିନ୍ଧା ପୁଲିସ୍ ଟହଲୁଛନ୍ତି, ଛକ ବସିଲା ପରି ଧୋବଧଉଳିଆ ଅଚହ୍ନା ବାବୁମାନେ ଆପଣା ଆପଣା ଜାଗାରେ ବସିଛନ୍ତି, ଏଠି କେଉଁ କଥାରୁ କେଉଁ କଥା ହେଲାପରି

ଭଜଆ ଭାରତୀ କଥା ମନେ ପଡ଼ିଲ, ଆଉ ମନେ ପଡ଼ିଲ, ଭଜଙ୍କର ଅଇଛୁ ଏତେ ଭଲ ଅବସ୍ଥା, ଧନୀଛ ଏକାଠି ହୋଇ ବାଣ୍ଡି କୁଣ୍ଡି ଚଲାଲେ କଣ ନାଁ କରୁ ହୁଅନ୍ତା ? ସେଇଠୁ ମନେ ପଡ଼ିଲ, ଆପଣା ମୁ ଣ୍ଡ ଉପରେ ଲୁଗାରେ ତଫାଟା ଦିଲେଇ ହୋଇ ପଡ଼ିଛୁ ପରା ।

ମୁ ଣ୍ଡ ଉପରକୁ ହାତଟା ଗ୍ଲଲେ । ଏଇ ଏମାନେ କେତେଲୋକ ଏମାନେ ସବୁ ସେଇଆକୁ ଗ୍ହିଁଛନ୍ତି ପରା ! କଣ ଭାବୁଥିବେ ? ଛି, ଛି, କେଡ଼େ ଲାଜ କଥା । ଆଗରେ ଯେଉଁ ସ୍ତ୍ରୀଲୋକ କଣକ ଆସିଥିଲେ, ଦଣ୍ଡୀ ନାଇଥିବା ବୁଢ଼ୀ ଜଣେ, ସେ ଭୋଟ ଦେଇସାରି ଗଲେଣି । ପଛୁ ଆଉ ଦୁ'ଜଣ ମାଇପେ ଆସିଲେଣି । ସେମାନେ ବି ଅନ୍ଧା । ସେ ନିଜେ ସେମିତି ଖାଲିଟାରେ ଠିଆ ହୋଇଛନ୍ତି ।

ହଠାତ୍ ଦାଢ଼ୀଥିବା ଜଣେ ହାତରେ ଠାରି ପାଖକୁ ଡାକଲେ । ପଗ୍ଚରଲେ, "ନାଁ କଣ ?"

ପେମୀବୋଉଙ୍କ ସାହସ ପାଣି ହୋଇଗଲ । ଭାବଲେ—ଭଲ ଅଇଲ ମଣିଷ, ଏତକ ବେଲକୁ ସେ ମଣିଷଟା କୁଆଡ଼େ ଗଲ ? ଠାକୁର ଦେଉଳ ଭିତରକୁ ଯିବା ଅଭିଜ୍ଞତା ତାଙ୍କର ଅଛି, କିନ୍ତୁ ସେଠି ଠାକୁର କଥା କହନ୍ତି ନାହିଁ ବୋଲି । କଥା କହୁଥିଲେ କଣ ମଣିଷ ସତେ ଏତେ ଧାଇଁଯାଉଥାନ୍ତେ ?

"ନାଁ କଣ କହନ୍ତୁ, ବେଳ ଗଲ ଯେ—" । ତାଙ୍କୁ ସାହାଯ୍ୟ କରିବାକୁ ତିନି ପ୍ରାର୍ଥୀଙ୍କର ତିନି ପ୍ରତିଦ୍ୱନ୍ଦୀ ଜଣ ଜଣ ହୋଇ କହଲେ, "କହି ଦିଅନ୍ତୁ ମା, ଆପଣଙ୍କ ନାଁ କଣ, କହିଦିଅନ୍ତୁ ।"

କେଉଁକାଳୁ ସେ ନାଁଟା କେହି ଧରିନାହିଁ । ବାପଘରେ ଝିଅହୋଇ ସେମିତି ଅରଖ ନୂଆ ହୋଇ ରହିଛି । ପିଲାଦିନେ ବାପା ଗରଧାରେ ଡାକୁଥିଲେ 'କୋଉଲ୍ଗ' ବୋଲି । ସେ ନାଁର ଏଠି ପ୍ରୟୋଜନ ନାହିଁ । ଶାଶୁ ଘରେ ଖାଲି 'ବୋହୂ', 'ନୂଆବୋଉ', ଏମିତିଆ ନାଁସବୁ । ନାଁ ଧରି ଯେ ଡାକନ୍ତେ ସେ ଖାଲି ଏକ ସମ୍ବୋଧନପଦ କହନ୍ତି—"ହଇହୋ, ହେ, କହୋ,—"ପେମୀ ଜନ୍ମ ହୋଇ ସଂସାରରେ ଚଳାଇ ଭଲି ନାଁଟିଏ ଦେଲ, "ପେମୀବୋଉ" । କିନ୍ତୁ ନାଁ ପଗ୍ଚରଲେ ଏସବୁ କହିଅନ୍ତା ନାଁ ଚଳିବ ନାହିଁ, ତାଙ୍କର ଦରକାର ସେହି ଅଦରକାରୀ ନାଁଟା, ଯାହା କେହି ପାଟିରେ ଧରେ ନାହିଁ, ସେ ନାଁ—"ଶରଧା ସୁନ୍ଦରୀ ।"

ଟେବୁଲରେ ସତେକ ଚହଲୁ ପ୍ର ପାଙ୍ଗ୍ତି ଖୋଲିହୋଇ ପଡ଼ିଛି । ଦାଢ଼ୀଥିବା ଭଦ୍ରଲୋକ ମିଳେଇ ଦେଇ କହଲେ "ହେଇତ, ଶରଧା ମଞ୍ଜରୀ, ସ୍ୱାମୀଙ୍କ ନାଁ ଭଜକଶୋର କୁମରବର ସାହୁ ମହାପାତ୍ର । ଆପଣଙ୍କ ସ୍ୱାମୀ ଭଜକଶୋର ?"

କାନମୁ ଣ୍ଡା ଜଳିଗଲଣି । ରାଗରେ, ଅପମାନରେ ତଣ୍ଡିରୁ ବଚନ ବାହାରୁନାହିଁ, ମୁ ଣ୍ଡକୁ ଜୋରରେ ଝାଙ୍କି ଝାଙ୍କି ସଙ୍କେତରେ ପ୍ରକାଶ କଲେ, ନାହିଁ, ତା ନୁହେଁ । ସ୍ୱାମୀ ନାଁଟା କେମିତ ପାଟିରେ ଧରିହେବ ? କିଏ କହିଦେବ ? କେହି ଦିଶୁନାହିଁ ।

"ଆରେ ! ସ୍ୱାମୀ ଭଜକିଶୋର ନୁହେଁ ।" ସେଇ ଦାଢ଼ୀ ରଖିଥିବା ବାବୁଟି ଯେପରିକି ଅବିଶ୍ୱାସରେ କହିଲେ, ତାଙ୍କ ସାଙ୍ଗ ଜଣେକ ତୀକ୍ଷ୍ଣ ଦୃଷ୍ଟିରେ ଛପା ତାଲିକା ଗୁଡ଼ାକୁ ପଢ଼ିଲାଗିଛନ୍ତି, ଠାଏ ପେନ୍‌ସିଲ୍‌ର ପିଠି ମୁଣ୍ଡ ଠକ ଠକ କରି ବାଡେଇ ସୂଚନା ଦେଲେ, ମୁହଁଟେକି ଗମ୍ଭୀରଭାବେ କହିଲେ, "ସ୍ୱାମୀ ଲକ୍ଷଣ ମଲିକ ? ହୋଇଛି, ଲେଖା ହୋଇଛି ।"

ଏଥରକ ପୃଥ୍ୱୀ ପ୍ରଳୟ । ମନେ ମନେ ବିଶେଷଣଗୁଡ଼ାକ ରେଳଗାଡ଼ି ଡବାମାନ ଚାଲିଗଲା ପରି ଚାଲିଛି ଯେ—ହେ ସାପଖିଆର ପୁଅ, ହେ ବାଡ଼ିପଡ଼ା, ହେ ଗାତପଣା, ଆରେ ଯୋଗିନୀଖିଆ, ଥୁଃ—ଏତକବେଳକୁ ପାଟିରେ ପାନ ପିକ ଭାରି କଡ଼ା ଲାଗିଲା ଯେ ସେଇଠି ଗଳ୍‌କିନା ଗାଳି ପକାଇଲେ, ସେହି ପବିତ୍ର ବିଦ୍ୟାନୁଷ୍ଠାନର ବଚାଣ ଉପରେ, ତା'ପରେ ସଙ୍ଗେ ସଙ୍ଗେ ତାକୁ ଗୋଡ଼ରେ ଘେଷେଇ ଚକଟି ମକାଇଲେ, ଯେପରିକି ସେମିତି କଲେ ସେ ଲୁଚିଯିବ । ସହରିଆ ବାବୁମାନେ ବାବା ହୋଇ ଅନେଇଁ ଠିଆ ହୋଇଥାନ୍ତି । ମନେ ମନେ ଏତେ ଗାଳି ଦେଲେ ବି ପାଟିରୁ କଥା ବାହାରୁନାହିଁ ।

ଡେଙ୍ଗା ଦାଢ଼ିଆ ଲୋକଟି ମୁହଁ ଟେକିଦେଇ ତ୍ରସ୍ତ ହୋଇ ପଚାରିଲେ, "କଣ କହୁଚ, ସ୍ୱାମୀ ଲକ୍ଷଣ ମଲିକ ?"

ଆଖି ମିଟି ମିଟି କରି ପଦାକୁ ବାହାରି ଆସିଥିବା ଉପରପାଟି ଦାନ୍ତଗୁଡ଼ାକୁ ତଳ ପାଟି ଦାନ୍ତରେ ଠକ ଠକ କରି ବାଡ଼େଇ ଦାନ୍ତ ଫାଙ୍କରେ ସାଁ ସାଁ କରି ସେ କହିଲେ—

"ଆମ ଘର କାହିଁକି ନଖେଣ ମଲିକ ହେବ ?" ଆଉ କାହା ଘର ହଉନାହିଁ ।"

"ଏଁ !"

"ତମ ବୋଉ ଘର ହଉନାହିଁ ନଖେଣ ମଲିକ । ନଖେଣ ମଲିକ ! ଭକ୍ତକିଶୋର !"

"ତେବେ କଣ ମାଉସୀ, ଚିଡ଼ୁଚ କାହିଁକି ?"

"ମୋ ଗରଜ ପଡ଼ିଚି, ସ୍ୱାଙ୍କ ମାଉସୀ ହବାକୁ ଯାଉଚି !"

ବୁଲିପଡ଼ି ଦି ପାହୁଣ୍ଡ ନେଲେଣି ଲେଉଟିଯିବେ ବୋଲି । ଆଗକୁ ଯାଇ ଜଣେ ହାତ ଫରକଟେଇ ବାଟ ଓଗାଳିଲା, କହିଲା, 'ଥ, ଥ, ଥ—ଯାଅ ନା, ଶୁଣ—"

ମୁହଁ ମୋଡ଼ିଦେଇ କହିଲେ, "କଣ, ଥ ଥ ଟ, ଧ ଧ ଧ କହୁଚୁ ମ, ମୁଣ୍ଡକୁ ପିତ୍ତ ଉଠିଲା କରେ ? ବଡ଼ ପାଟି କରି କହିଲେ, "ହେ କେହି କଣ କୁଆଡ଼େ ନାହାନ୍ତି କରେ ? ଦେଖିବଟି ମଜା କେମିତି କହୁଚନ୍ତି ସ୍ୱାମୀ ଭଜକିଶୋର,

ଲକ୍ଷଣ ମଲିକ ? ହେ, ଦେଖିବଟି, ଟିକିଏ ବୁଝ ମ ସ୍ୱାଙ୍କ କଥା । ଆ—ସ୍ୱେ ଭଜକିଶୋର ମୋ ଦଅରଷ୍ଟା, ତା ଭାରିଯା ରଙ୍ଗୀବୋଉ ମନ କଲେ ଆସୁଥିବ ଅଲଗୁ, ନଇଲକ୍ଷଣ ମଲିକ କଣ୍ଡିବ, ତାଙ୍କ ଘର ହଳଆ, ମତେ କହୁଚନ୍ତି ତାଙ୍କ ସ୍ତ୍ରୀଷ୍ଟ । ଏଁ 'ତାଙ୍କ ସ୍ତ୍ରୀଷ୍ଟ' ହେ କହୁଚନ୍ତି ତାଙ୍କ ମୁହଁ ପୋଡ଼ିଯାଉନାହିଁ ! ତାଙ୍କ ମୁଧିନା ଫାଟିଯାଉନାହିଁ । ଆମ ଜମି ଜମିଦାରୀ ଗଲା ବୋଲି କଣ ଏମିତିଆ ପାଇଲ ତମେ ଆମକୁ ? ନ ହେଲା, ଆମ ଭେଷ୍ଟ ଦଅ, ଆମ ଘରେ ଆମେ, ତମ ଘରେ ତେମେ । ହେଇଟିତ ରଙ୍ଗା ବୋଉ, ପାଲୁଣୀ ବୋଉ ଆଇଲେଣି, ଇଲେ, ଦେଖିବଟି ଲେ ! ରଙ୍ଗା ବୋଉ ସିନା ନାଁ ଧରିବ ନାହିଁ, ପାଲୁଣୀବୋଉ ରୁ କହିଦବଟି ଲେ !

ଆଉ ଯେମାନେ ଶତ୍ରୁ ପର ଦଶୁନାହାନ୍ତି, ଯେମାନେ ପରମ ବନ୍ଧୁ । ଦାହିଁକିଦବେଁ ମୁହଁ ତମ ତମ କରି ଆସିଛନ୍ତି ପେମୀ ବୋଉକୁ ଉଚୁଆଳ କରି ଠିଆ ହେଲେ । ପଦାରେ ହୋ ହୋ ହେବା ଉପରେ, ଲୋକ ସବୁ ଧୀରେ ଧୀରେ ଏଣେ ଗଡୁଛନ୍ତି ।

ଯେଉଁ ଦାଢ଼ିଥିବା ଲୋକ ଜଣକ ଠିଆ ହୋଇପଡ଼ି ହାତ ଯୋଡ଼ିଲେ, କହିଲେ, "ଆଜ୍ଞା, ଦୋଷ ଥିଲେ ମାଫ୍ କରିବେ । ଆମେ ଆପଣଙ୍କର ପିଲା, ଆପଣ ଆମର ମା । ଲେକିନ୍ ଆମର ଆଉ କସୁର କଣ, ଛପାରେ ଯେମନ୍ତ ହଟିଛି, ଆମେ ତେମନ୍ତ କହୁଛୁ । ଛପାରେ ଭୁଲ୍ ଥିବ, ଆମେ କଣ କରିବୁ, ଆମେ ତ ଆଉ ସ୍ୱାକୁ ଲେଖିନାହୁଁ, ଉପରୁ ମିଳିଛି । ବର୍ତ୍ତମାନ ଆପଣ ଦୟା-ପୂର୍ବକ ଆପଣଙ୍କ ସ୍ୱାମୀଙ୍କ ନାମ୍ କୌଣସି ଉପାୟରେ ଜଣାନ୍ତୁ ନଇଲେ ଲେଖିଦଅନ୍ତୁ । ଶୀଘ୍ର କାର୍ଯ୍ୟ ଖତମ୍ ହେବ ।"

ପାଲୁଣୀବୋଉ କହିଲା, "ତାଙ୍କ ସ୍ୱାମୀଙ୍କ ନାଁ ବ୍ରଜକିଶୋର ।"

"ତା' କହନ୍ତୁ । ଆମେ ସେଟା କେମିତି ଜାଣିବୁଁ ? ଆଚ୍ଛା, ଟିକିଏ ସତାଉନ୍ତୁ । ଡକାଓ ଚଉକିଆକୁ ।"

ଚଉକିଆ ଗଙ୍ଗା ମଲିକ ଆସିଲା । ପଚରା ହେଲା, "ସେ କାହା ସ୍ତ୍ରୀ, କହ ଚଉକିଆ ।"

"ହଜୁର୍, ସ୍ୱାମୀ ବ୍ରଜକିଶୋର ଭ୍ରମରବର ରାଏ ମହାପାତ୍ର, ଆମ ଇଠା ଜମିଦାର ଖାଉନ୍ଦ । ଗାଁରେ ଅଛନ୍ତି ।"

"ଠିକ୍ ଜାଣୁ ?"

"ହଜୁର୍, ସତ । ଆମ ଖାଉନ୍ଦାଣୀ, ସାଆଁନ୍ତାଣୀ । ଏବେ ସିନା ଜମିଦାରୀ ଗଲା, ଘର ବସିଗଲା, ନଇଲେ ରାଏ ମହାପାତ୍ର କହିଲେ ଗର୍ଭିଣୀ ଗାଈ ବାଛୁରୁ ଗୁଡ଼େ । କଂସା କବାଟ । ଯୋଡ଼ ମଶାଲ, ଘୋଷରା ପାହାଚ । କଂସା କବାଟ ପଡ଼ିଲେ ଉନକୋଶକୁ ଶୁଭେ । ବରଜକିଶୋର ସାଆନ୍ତ ବଡ଼ ପୁଅ, ସେ କେନାମଣି । ତାଙ୍କର ଘର ଭାତ ତୋରାଣିରେ ଆମ ସାତ ପୁରୁଷ ମଣିଷଙ୍କ ପିଣ୍ଡ

ଗଢ଼ା ହୋଇଛୁ । ସାଆନ୍ତାଣୀଙ୍କି ଚହ୍ନିବ ନାହିଁ ? ଆଖି ବାଲ ପାଚଲ ବୋଲି କଣ ମୋ ଆଖି ଫୁଟିଚ ? ଅଛନ୍ତି ସାଆନ୍ତେ । ଅଇଗ୍ଗ ଆସୁଥିବେ ଯେ । ତାଙ୍କ ବାହାଘରକୁ ମୁଁ ଯାଇଥିଲି ଯେ କେଡ଼େବଡ଼ ଫାଇଜଦାଙ୍ଗଟାଏ ନ ହେଲ ! ତରୁଣୀ ଜଣ ମଣିପ ଖଣ୍ଡି ଆଖୋଉଡ଼ା ହୋଇଥିଲେ । କାଲି ପରି ଲାଗୁଛି, ଦେଖିଲି ବେଳକୁ ପଚିଶି ବରଷ ହେଲାଣି—''

''ହଉ ହଉ, ଥାଉ, ଚଢ଼ଇକଥା ! ହାତରେ ଟିକିଏ କାଳିବୁନ୍ଦା ଲଗାହେବ । ଦୟା କରି ଟିକିଏ ହାତ ଦେଖାନ୍ତୁ । ଦେ, ଲଗା ଲେ ଝିଅ !''

ଟୁଲ୍ ଉପରେ ବସିଥିବା ପ୍ରଥମାଟି ଦେହ ହାତ ଖୋଲାଇଲା । ବୁଢ଼ା ଆଙ୍ଗୁଠି ତଳେ କାଳିବୁନ୍ଦାଟିଏ ଲଗାଇଦେଲା । ଭୋଟ କାଗଜ ବଢ଼ାଇଦେଲେ । ବାଛ ଦେଖାଇଦେଲେ ।

ଏତେ କଥା ଶୁଣିସାରିଲା ପରେ, ମନଟା ଶୀତଳେଇ ଆସିଥିଲା । ମୁଣ୍ଡ ଉପରେ କାନରେ ତେଲୁଳିଆ ବସ୍ତ୍ର ପରି ଯେଉଁ ସିନେଇଟା ଆପଣା ପ୍ରତି ଲୋକଙ୍କର ଅବଜ୍ଞା ଓ ଅନାଦର ମନେ ପକାଇଦେଉଥିଲା, ତେଣୁ ଅଭିମାନ ବଢ଼ାଇଦେଉଥିଲା, ସେ ଆଉ ମନେ ପଡ଼ିଲା ନାହିଁ । ଆପଣା ପ୍ରତି ସୂଚକର ହୋଇଥିବା ଏକ ପରିସ୍ଥିତିକୁ ଚେତନାରେ କଳ୍ପନା କରିନେଇ ବ୍ୟକ୍ତିତ୍ୱ ସୁଖରେ ଫୁଲିବାକୁ ଲାଗିଲା ।

ସେଠି ବଡ଼ ଜମିଦାର ଘର, ଗର୍ଭିଣୀ ଗାଈମାନେ ବାଛ ଗୁଡ଼ନ୍ତି, ଆଉ କେତେ କଣ ହୁଏ, ସେଠି ଖାଲି ସାଆନ୍ତ ଆଉ ସେବକ, ସ୍ତୁତିକାରୀ ଆଉ ସ୍ତୁତି ଶୁଣିବା ଲୋକ, ଝାଳ ନାଳ ହୋଇ ଖଟି ଫସଲ ଉପୁଜେଇ ଆପଣା କାନ୍ଧରେ ବୋହିଆଣି ପହଞ୍ଚାଇଦେବା ଲୋକ, ମନେ ବସି ଖାଇବା ଲୋକ, ମନେ ସେଇଠି ସେ ରାଣୀ, ସାଆନ୍ତାଣୀ ଶ୍ରେଣୀରେ, ସେହି ନାହିଁ ନ ଥିବା ଘରର ଉଚ୍ଚ ପିଣ୍ଡା ଉପରେ ପଟା ତେରା ହେଲା ପରି ଯେଉଁ ଘୋଷରା ପାହାଚ ତା ତଳେ ଗଙ୍ଗା ମଳିକ ଚୌକିଦାର, ବେକରେ ଗାମୁଛା ପକାଇ ହାତ ଯୋଡ଼ି ଅଣ୍ଟା ଭାଙ୍ଗି ଠିଆ ହୋଇଛି, ଝରା ଜାକର ସନ୍ଧବା ପାଇଁ ତାର ଖୋଲ ପିଠି, କାଦୁଅ ଚକଟିବା ପାଇଁ, କଣ୍ଟା ମାଡ଼ିବା ପାଇଁ, ନିଆଁ ମାଡ଼ିବା ପାଇଁ ତାର ଖାଲି ପାଦ, ଆଉ ଯେତେ ଖଟିବା ଲୋକଙ୍କର । ରଙ୍ଗାବୋଉ ପାଲୁଣୀବୋଉଙ୍କ ସଙ୍ଗେ ତାଙ୍କର ବାଦ ନାହିଁ, ସେମାନେ ତାଙ୍କର ଜାତର, ତାଙ୍କର ଶ୍ରେଣୀର, ତାଙ୍କୁ ସ୍ୱୀକାର କରିଛନ୍ତି, ସେତକି ହେଲେ ହେଲା, ରାଜା ରାଜାର ମାନ ବୁଝେ, ଜମିଦାର ଜମିଦାରର, ପୁରୋହିତ ପୁରୋହିତର, ସେମାନେ ତାଙ୍କର ଏକା ଗୋଷ୍ଠୀ, ଠିକଣାବେଳେ ତାଙ୍କ ଇଜ୍ଜତ ରଖିଛନ୍ତି ।

ଭୋଟ ଦେବା ଅଧିକାରଟା ଅଧିକାର ପରି ଲାଗିଲା । ସେମିତି ତ ଥିଲା ପରା ଆଗକାଳେ—ତରତର ହୋଇ ସବୁ ହୋଇଗଲା, ଭୋଟ ନ ଥିଲେ ବି

କ୍ଷମତାଟା ଥିଲା, ଆପେ ଅଭିଷେକ ହେବା, ରଜାଙ୍କୁ ଅଭିଷେକ କରେଇ ଦିବା । ସେହିପରି ସେ ଆଜି କ୍ଷମତାଟା ପ୍ରୟୋଗ କରିବେ, ଯେ—ପେମୀବୋଉ ।

ପଛକୁ ଅନାଇଁଦେଲେ, ମାଇପୀ ଲୋକଙ୍କୁ ଆସିବାକୁ ଛଡ଼ା ହେଉଛି । ଆଗେ ଆଗେ ତାଙ୍କ ଧୋବଣୀ ବୁଢ଼ୀ ବୁଧିଆବୋଉ, ତା ସଙ୍ଗରେ ବୁଧିଆ ଘରବା, ସହରିଆଣୀ ଝିଅ, କେଡ଼େ ସୁନ୍ଦର ଶାଢ଼ୀ ପିନ୍ଧିଛି, ତା ତଳେ ଜାମା, ମୁହଁ ଯେମିତି ଦର୍ପଣ । ବୁଧିଆବୋଉ ବାସିଧୋବ ଶାଢ଼ୀ ପିନ୍ଧି ଆସିଛି । ହେଇ ଆସିଛି ସୋଦଶିମା ହାଡ଼ିଆଣୀ, ନାଲି ଛିଟର ନୂଆ ଶାଢ଼ୀ ଖଣ୍ଡେ ପିନ୍ଧି ଆସିଛି, ସେଥିରେ କାଗଜ ଖଣ୍ଡିକ ତଥାପି ଲାଗିଛି, କେଡ଼େ ସୁନ୍ଦର ଜିକିଜିକି ସୁନ୍ଧା, କପାଳଯାକ ଟେଲିଆ । "ଆମେ ଭୋଟ ଦବୁ, ଆମେ ଭୋଟ ଦବୁ—" ସେମାନେ ପାଟି କରୁଛନ୍ତି ।

ଅନେଇ ଦେଖିବାକୁ ତର ନାହିଁ । ଘର ଭିତରେ କର୍ମଚାରୀମାନେ ତର ତର କଲେଣି, "ଆପଣ ସାରଲେ ଫେର୍ ଆଉ ଜଣେ ଯିବେ । ପାଆନ୍ତୁ, ଚଉଦୋଟି ବାକ୍ସ ଥୁଆହୋଇଛି, ତା ଉପରେ ଫାଟ, ବାକ୍ସରେ ଛବି ଚିହ୍ନ ମରା ହୋଇଛି । ଆପଣ ଯାହାକୁ ଭୋଟ ଦେବାକୁ ମନ କରିବେ ତାଙ୍କର ଚିହ୍ନ ଯେଉଁ ବାକ୍ସରେ ଥିବ ସେଇ ବାକ୍ସରେ କାଗଜ ଗଳେଇଦେଇ ଚାଲି ଆସିବେ ।

ଭୋଟ ଗମ୍ଭୀରରେ ପଶିଲେ ।

ଆପଣା ପାଖେ ଆପଣା ଦେହଟାକୁ ସଙ୍କୁଚିତ ହୋଇଯାଇଥିଲା । ଅଭିମାନ ଲାଗିଲା—ବିହ୍ୱଳ ହୋଇ ଭାବିଲାଗିଲେ, ଅଘୋର ବୁଢ଼ାଆଣି ସମସ୍ତିଙ୍କର ଭୋଟ ! ବୁଧିଆବୋଉ ଧୋବଣୀ, ସୋଦଶି ମା ହାଡ଼ିଆଣୀ, କେମିତି ଶ୍ରେଷ୍ଠା ସମସ୍ତିଙ୍କର ! ତେବେ ତାଙ୍କ ବଡ଼ପଣଟା ଫେର୍ କୋଉଠି ରହିଲା ?

ନାଃ, ହବ ନାହିଁ ଏ କାଳ ! ସେ ଭାବିଲେ ! କଏସେ ଏ ଲୋକଙ୍କର ମୁହଁ ଉପରକୁ କଲା ? କଏ ବୁଡ଼େଇଲା ପାଆନ୍ତ ଗୋଷ୍ଠୀର ପାଉଁଚୁକ୍ତି ବଡ଼ପଣ, ହାକିମୀ, ଅଧିକାର ? ଭଲ କଲା ନାହିଁ । ବାକ୍ସ ଚଉଦୋଟି ଭିନ୍ନ ଭିନ୍ନ ସଙ୍କେତ ଛବି ମରା ହୋଇ ଥୁଆ ହୋଇଛି । ଇଚ୍ଛାହିଁଦେଇ ଯାଇ ଗୋଟାକରେ କାଗଜଟି ଗଳେଇଦେଲେ, ବାହାର ଆସିଲେ ।

ରଙ୍ଗୀବୋଉ ଭୋଟ ଗମ୍ଭୀରକୁ ଗଲେ । ଆପେ ଆର ଟେବୁଲରେ ଯାଇ ଆଉ ଖଣ୍ଡିଏ ଭୋଟ କାଗଜ ନେଇ ଆରପଟେ ଆଉ ଗୋଟିଏ ଭୋଟ ବଖରାକୁ ଗଲେ, ସେଠି ଚିହ୍ନ ଦେଖି କାଗଜ ଗଳେଇ ପଦାକୁ ବାହାରିଲେ ।

ମଣିଷ ପିମ୍ପୁଡ଼ି ପରି ଧାର ଲାଗିଛନ୍ତି । କେତେ ଗାଁରୁ କେତେ ଲୋକ ଆସିଛନ୍ତି । ଉପରେ ଆକାଶରେ ଏକ ଉଡ଼ାଜାହାଜ ଉଡୁଛି । କେତେ ଲୋକ

ତେଣିକି ଅନାଇଁଛନ୍ତି । କିନ୍ତୁ ତାଙ୍କର ଆଉ ଉତ୍ସାହ ନ ଥିଲା । ମୁଣ୍ଡ ଝିମ୍ ଝିମ୍ ଲାଗୁଥିଲା । ଏକମାତ୍ର ଇଚ୍ଛା, ଖାଲି ଘରକୁ ଲେଉଟିଯିବା । ବାଟ କଡ଼ରେ ଆମ୍ବଗଛ ତଳେ ବସିପଡ଼ିଲେ । ଶିର ଶିର ପବନ ବହୁଛି । କେତେ ଆମ୍ବକଷି ବଉଳ ସଙ୍ଗେ ଝୁଲି କଳାପତ୍ର ଗଛ ତଳେ ଟିଡ଼ିଚାହୁଁଛି । ଗୋହିରୀ ସେପଟେ ପଧାନ ସାହି । ବଡ଼ ବଡ଼ ବାଡ଼ି । ଟେଣ୍ଡାଲାଗା ଚୂଆ । କଦଳୀ, ସଜନା ବଣ ପରି ବଢ଼ିଛି । ବଡ଼ ବଡ଼ ପାଳଗଦା, ଗୋବରଖାତ, ଘସିଗଦା । ଭାବିଲେ, ଭଗବାନ ତାଙ୍କୁ ଦେଇଛି । ଦୀର୍ଘଶ୍ୱାସ ଉପରେ ଦୀର୍ଘଶ୍ୱାସ ଆସିଲା । କିଛିବେଳ ପରେ ରଙ୍ଗୀବୋଉ ପାନ୍ଲୁଣୀବୋଉ ଆସିଲେ । ତାଙ୍କୁ ଦେଖି ଖୁସି ଲାଗିଲା, ସେହି ଏକା ଶ୍ରେଣୀ, ଏକା ଦଶା । ରଙ୍ଗୀବୋଉ ବ ସେଆଡ଼ୁ ହସି ହସି ଆସୁଛନ୍ତି, "କାହାକୁ ଭୋଟ ଦେଲୁ ଅପା, କୋଉ ପଞ୍ଝାକୁ ?"

"ପାନ ଖଣ୍ଡେ ଅଛି, ଦବୁଟି ଲୋ, କେତେବେଳୁ ପାଟିଟା ଠାକୁ ଠାକୁ ହଉଚି ।" ରଙ୍ଗୀବୋଉ କାନିରୁ ଗଣ୍ଠି ଫିଟେଇଲେ । ବଡ଼ ପାନବଟା ଖୋଲି ବଢ଼େଇଦେଲେ । କହିଲେ, "ଦି ଖଣ୍ଡ ନିଅ, ଅପା ;" ଏକାଠି ଦି ଖଣ୍ଡ ପାନ ପାଟିରେ ପକାଇଦେଇ ଖୁସିଟାଏ ହୋଇ ପେମୀବୋଉ କହିଲେ, "ଓହୋ, ପ୍ରାଣ ରଖିଲୁ ।"

"କାହାକୁ ଭୋଟ ଦେଲୁ, କହ ଅପା !"

ପେମୀବୋଉ କହିଲେ ।

କିନ୍ତୁ ସେ କଥା ଗୋପନୀୟ ।



# ପିମ୍ପୁଡ଼ି

ଧୀରେ, ଧୀରେ, ଧୀରେ—ଯବା ଉପରେ ପହଞ୍ଚିବାକୁ ଆଉ ବାର ହାତ ବାକି ଅଛି, ଗୋଟାକ ପଛେ ଗୋଟାଏ ହୋଇ ଉପରକୁ ଉପରକୁ ଚାଲିଛି ପାଦ ଦ'ଟା, ଗୋଡ଼ର ପେଣ୍ଡା ଓ ଜଙ୍ଘ ଯେପରିକି ଫାଟିପଡ଼ିଲାଣି । ଛାତି ଭିତରେ ଧଡ଼ମୁଣ୍ଡ୍ ଚାଲିଛି । ମୁଣ୍ଡର ଟୋପି ଫାନ୍ଦରେ ଝାଳବୁଡ଼ାକ ଝୁଲୁଛି ଓଳିରୁ ବର୍ଷାପାଣି ପରି, ହାଫ୍‌ପ୍ୟାଣ୍ଟ ହାଫ୍‌କାମିଜ ଓଦା ସର ସର, ତଥାପି ଟେକି ହେଲପରି ଚାଲିଛି ଦେହଟା, ଲାଗୁଛି ସତେକି ପବନରେ ଆଉଜିଛି । ପର୍ବତର ମହୁଡ଼ ହୋଇଗଲା, ରମେଶ ଅଟକିଲା ।

ବଡ଼ ଗଛର ବଣ କାହିଁ ତଳେ ରହିଲାଣି, ଉପରୁ ଦିଶୁଛି କଳାଧୂମର, ଯେପରିକି ପାତାଳକୁ ଓହ୍ଲେଇଯାଇଛି ଅଗନାଗି ବନସ୍ତ । କିନ୍ତୁ ଉପରେ ଲଣ୍ଡା ଚଟାଣ, କରେ କରେ ଘାସ, ଚାରିପାଖେ ଆକାଶ ।

ପର୍ବତ ଚଢ଼ିବା ଖୁବ୍ କଷ୍ଟ । ସେ ଆପଣା ପାଖେ ସ୍ୱୀକାର କଲା, ଦଳର ଅନ୍ୟମାନଙ୍କ ଆଗରେ ସେ କଥା କହିବାକୁ ଲାଜମାଡ଼େ । ବୟସରେ ସେହି ତ ଟୋକା, ସେମାନେ ବୁଢ଼ା ବା ଦରବୁଢ଼ା, ତା' ଛଡ଼ା ସେ କର୍ମଗୁଣ୍ଣ ଅଧିକାରୀ, ଲୋକ, ତେଣୁ କଷ୍ଟପାଉ ଭଳି ଓଠରେ ଦାନ୍ତ ମାଡ଼ିଦେଇ କାଠପରି ରହିବା ତା'ର କର୍ତ୍ତବ୍ୟ । ଓଲଟି ସେମାନଙ୍କୁ କହେ "କ'ଣ ତୁମେ ଏତିକିରେ ଥକିଗଲ ?" ସନ୍ତୁଆ ନହକା ହେଣ୍ଡ୍ରି ଆଟଲକେ, ଜୋତା ମଡ଼ା ପାଦରେ ଦାଢ଼ୁଆ ଗୋଜିଆ ପଥର ଉପରେ ଖଟ୍ ଖଟ୍ ଡେଇଁ ଆଗେ ଆଗେ ଚାଲିଯାଏ ।

ଇଞ୍ଜିନ ପରି ସାଁ ସାଁ ହୋଇ ଉପରକୁ ଉଠିଆସୁଛି ଚପରାସୀ ବଳୁ, ଓଡ଼ିଆ ରମେଶ ଉପରେ ଠିଆହୋଇ ଅପେକ୍ଷା କଲା । ବଳୁର ପ୍ରକାଣ୍ଡ ଠେକା ଧୀରେ ଧୀରେ ବଡ଼ ହୋଇ ହୋଇ ଉପରକୁ ଉଠୁଛି, ଯେପରିକି ଗୋଟାଏ ମାଟିଆ ବର୍ଣ୍ଣର ଅତିକାୟ ଛତୁ । ତା' ତଳେ କଳା ମିଶ୍ ମିଶ୍‌ଗେଟମ ଗାଟମ୍ ଲୋକଟି । ନାକରେ କାନରେ ସୁନାନୋଳି, ଦେହରେ କୋଟ୍ ପ୍ୟାଣ୍ଟ, ବନ୍ଧୁକ ବୋହିଛି ଓ ପିଠିରେ ଫ୍ଲାସ୍କ ଝୁଲେଇଛି । ବଳୁ ଉପରେ ଆସି ଠିଆହୋଇ ହାଁ ହାଁ ହେଲା । ପାଟିକଲା—"ଏଇ ତେରେବେରେ ଓ୍ୱାହୁଡ଼େ" । ରମେଶ ପଛଆଡ଼େ ତା'ର ସାଇନ୍‌ବୋର୍ଡ ପରି ଠିଆହୋଇ ରହିଲା ଚପରାସୀ ।

ତଳୁ ସମସ୍ୱରରେ ଗୀତ ଶୁଭୁଛି, ଗୀତର ଗହଳି ଘୋଷା ଲହରେଇ ଉଠୁଛି, "ହାଇଲେ,—ହାଇଲେ—" ।

ଆଗ ଜଣେ, ତା'ପରେ ଦି ଜଣ, ତା'ପରେ ଏକାଠି ଆଠଜଣ [illegible]ଆଙ୍କ ଚେହେରା ଫୁଟି ବାହାରିଲା ଚେଙ୍ଗା ଘାସ ବୁଦାଉଡ଼ୁ କୌପୀନ ପିନ୍ଧା କନ୍ଧ ଲୋକ, ଖାଲି ଦେହ। ଗୀତ ବନ୍ଦହେଲା। ବଲୁ ପାଟିକଲା, "ଖାଲି ଅଳସୁଆ ଗୁଡ଼ାକ, ଯେତେବେଳେ ଗାଳିଦେଲେ ଖାଲି ପଛରେ ପଡ଼ିଥିବେ।" "ବୁଢ଼ା ହୋଇଗଲୁଁ ବେ ଆଜ୍ଞା!" ଜଣେ କିଏ ଉତ୍ତର ଦେଲା, ଲାଗିଲା ତାଙ୍କର ହସ, ସେମାନେ ଖଣ୍ଡେ ଖୁଣ୍ଟ ବସିପଡ଼ି ପିଙ୍କା ଲଗାଇଲେ।

ବଲୁ ଫ୍ଲାସ୍କ ଖୋଲି ଚା' ଦେଲା। ଗୋଟିକିଆ ଅଁଳା ଗଛତଳେ ବସିପଡ଼ି ରମେଶ ଚା ପିଉ ପିଉ ପଚାରିଲା, "ଆଉ କେବେ ଏବାଟେ ଆସିଥିଲୁ ବଲୁ ?"

"ଆଉ ଥରେ ଆସିଥିଲି ଦି'ବର୍ଷ ତଳେ, ତା ଆଗରୁ ତ ଅନେକଥର।"

"ଆଉ କେହି ଅଧିକାରୀ ଏବାଟେ ବୁଲି ବୁଲି ଆସିଥିଲେ ?"

"କେତେ ଆସିଥିଲେ ଆଜ୍ଞା! ଏ ତ ହାଟକୁ ଯିବାକୁ ପାଖବାଟ, ଯାଆସ ହୁଏ।"

ରମେଶର ଆତ୍ମାଭିମାନ ଦବିଗଲା। ପିଲାଦିନୁଁ ଏପର୍ଯ୍ୟନ୍ତ ସବୁଠୁ ବେଶି ଆନନ୍ଦ ସେ ପାଇଆସିଛି ସମସ୍ତିଙ୍କ ଆଗରେ ରହିବାରେ। ଆଉ ସେଇ ତ' ଉପାସ୍ୟ ସମ୍ମାନ ପାଇଁ, ପ୍ରତିଷ୍ଠା ପାଇଁ। ଉତ୍ତର ବାଲେଶ୍ୱରର କାନ୍ଥି ଏକ ଖଣ୍ଡ ମଫସଲରେ ଗୋଟିଏ ଦରିଦ୍ର ପରିବାରରେ ତା'ର ଜନ୍ମ। କେତେ ସାଙ୍ଗୀ ଅଟକିଗଲେ ଗାଁ ଚାଟଶାଳରେ, କେତେ ପୁଣି ରହିଗଲେ କଲେଜ୍ ଏପାଖେ, ତା' ଗାଁରୁ ସେ ଏକା କଲେଜ ଅତିକ୍ରମ କଲା, ତା ବି ସମ୍ଭବ ହେଲା ସ୍କଲାରସିପ୍ ବଳରେ। ପ୍ରତିବର୍ଷ ପ୍ରାଇଜ ବହି, ପରୀକ୍ଷାରେ ଫଳ ସ୍କଲରସିପ୍, ମେଡାଲ, ଜୀବନର ବାଙ୍କେ ବାଙ୍କେ ଗଢ଼ଜିତା ସାଫଲ୍ୟ ଏତକ, ରମେଶ ତା'ର ସ୍ମୃତିରେ ଗର୍ବିତ। ତା'ପରେ ଦିନେ, ସେ ଚାକିରିରେ ଯୋଗଦେଲା, ଅଚିହ୍ନା ଲୋକ ଚିହ୍ନା ହେବାକୁ ଆସି ଦଣ୍ଡବତ କଲେ, ଚପରାସୀ ସଲାମ ହେଲା, ସଞ୍ଜବୁଡ଼େ ଇନ୍‌ସୁ୍ୟରେନ୍‌ସ ଏଜେଣ୍ଟ ଜଗିବାକୁ ଆସି ଚା' ଖାଇବାକୁ ନିମନ୍ତ୍ରଣ କରିଦେଇ ଗଲେ, ବିବାହର ସମ୍ବନ୍ଧ ଆସିଲା, ସାଙ୍ଗ ପଢୁଆ ଉମେଶ ଆସି ହୃଷ୍ଟ ପଚାରିଗଲା, "ଭାଇ ତୋ ବାହାଘର ବିଷୟରେ କାହା ସଙ୍ଗେ କଥାବାର୍ତ୍ତା ହେବା କହିଲୁ ଠିକଏ।" ଦଣ୍ଡବତ, ଦଣ୍ଡବତ, ଚାରିଆଡ଼େ ଦଣ୍ଡବତ। ବ୍ୟକ୍ତିଗତ ଉଦ୍ୟମର ପରଖା-ପରଖିରେ ପ୍ରଥମ ଜିତା ଜିତ ତା'ର ଆତ୍ମାଭିମାନ ପାଲଟିଲା ଆତ୍ମବିଶ୍ୱାସ, ରମେଶ ବୁଝିଲା, ସେ ଜଣେ କେହି।

ତା'ର ପଟ୍ଟଭୂମିରେ ସେଇ ଅଗଣିତ ଲୋକେ, ଯେଉଁମାନେ କେହି ନୁହନ୍ତି।

ବିନୁ ପଛେ ପଛେ ଖେଣ୍ଡା ଲଗେ ଯେତେବେଳେ ସେ ଦେଖେ ଯେତେ ଆଗକୁ ମାଡ଼ିଚାଲ ବି ତା' ପୂର୍ବରୁ ଅନେକ ଆହୁରି ଆଗକୁ ଯାଇଛନ୍ତି, ଯେତେବେଳେ ଦେଖିଲେ ଆଗରେ ଅନେକେ ଆଉ ତାଙ୍କୁ ଛୁଇଁଲେ ସେ ଅତି ନଗଣ୍ୟ।

ଅନ୍ଧାର ପର୍ବତ ଚଢ଼ିଲାବେଳେ ଏପରି ଲାଗୁଥିଲା ; ଯେପରି ତା'ର ସଭ୍ୟ ଚେଷ୍ଟା ସେହି ଏ ବାଟେ ଆସିଛି ପ୍ରଥମ ହୋଇ। ସତ ନହେଲେ ବି କଳ୍ପନା କରି ଆନନ୍ଦ ହେଉଥିଲା। ଚୁ' ଦେଉ ଦେଉ ବିନୁ କହୁଛି—"ଏଇ ପର୍ବତ ଉପରେ ସେଥର ବଡ଼ ସାହେବ ଛାଉଣୀ ପକେଇଥିଲା, ରହିଗଲେ ଏଠି ପାଞ୍ଚଦିନ, ପାଞ୍ଚଙ୍କା ପହରା ବସାଇ। ଆଉ କି ଶିକାର କି ନାଚ ତାମସା, କେତେ କଥା।"

ହଁ, ମଣିଷ ଆସିଛନ୍ତି, ମଣିଷ ଯାଇଛନ୍ତି, ପଦଚ ଦେଖିଲେ ଲାଗୁଛି ଏ ଅନ୍ଧାର ବଣ ସବୁଦିନ ଏହିପରି ଅନାବନୁଆ।

"ସେକାଳର ବଣ ଆଜ୍ଞା, କାହିଁ ଆଉ ସେ !" ବିନୁ କହିଲା, "ଭାରି ବଣ ଥିଲା, ଜନ୍ତୁ ଯେ ଜନ୍ତୁ କହିଲେ ନସରେ। ସେ ବଣ ସରିଗଲା, କନ୍ଧମାନେ ହାଣି ପକେଇଲେ। ଏଇଠି ଥିଲା କେତେ କନ୍ଧ ଗାଁ, ବଣ ସରିବାରୁ ବାଘ ଧରି ଧରି ଖାଇଲା, ସେମାନେ ଉଠିଗଲେ।"

"ଏକାଳେ ବଣ ନାହିଁ ଆଉ ଏଗୁଡ଼ା କ'ଣ ?"

"କଟା ହୋଇ ଫେର୍ ବଢ଼ିଯାଇଚି, ଯେତେ ବଢ଼ିଲେ ସେ ବଣ ଆଉ କାହୁଁ ହେବ ?"

ମଣିଷ ଆସିଛୁ, ବଣ ଭିତରକୁ ଭେଦିଛୁ, ଫେର୍ ହଟିଯାଇଛୁ ଫେର୍ ଆସିଛୁ। ବଣ ପାହାଡ଼ରେ ବି ତା'ର ସୁଖ ଦୁଃଖର ଧାର ନଭଜାହିଁ, ଛପି ରହିଛି, ଘଞ୍ଚ ଜଙ୍ଗଲ ତଳେ ତଳେ ଗୋଡ଼ ସାଲୁ ସାଲୁ ସନ୍ଧ ଝରଣାର ଧାରପରି।

ରମେଶର ଆତ୍ମଚେତନା ଉଦାସ ହୋଇ ଧିମେଇ ପଡ଼ିଲା ସେହି ଗଣ ଚେତନାରେ।

ଭଙ୍ଗା ବସ୍ତୁଠାରେ ଲୁଚି ଗୋଠେଇବାକୁ ସଞ୍ଜ ହୋଇ ପିମ୍ପୁଡ଼ି ଧାଡ଼ିଏ ଲାଗିଗଲାଣି, ରମେଶ ଚମକିପଡ଼ି କଥା କଲା। ହସିଦେଇ ମନକୁ ମନ କହିଲା, "ଖାଲି ମଣିଷ ନୁହନ୍ତି ପିମ୍ପୁଡ଼ି ବି !" ଭାରି ହଜାର ଫୁଟ ପର୍ବତ ଉପରେ ମଣିଷର ଗୃହସ୍ଥଳୀର ସାଥୀ ପିମ୍ପୁଡ଼ି ବି ରହିଛି। ସାମାନ୍ୟ ପିମ୍ପୁଡ଼ି ଯେପରିକି ତା'ର ଏ ପର୍ବତ ବୁଲାଇ ଅସଲ ଉଦ୍ଦେଶ୍ୟ ତାକୁ ସ୍ମରଣ ପକେଇଦେଲା। ଠିଆ ହୋଇପଡ଼ି ସେ ପଚାରିଲା—

"ବିନୁ, ଗୁଡ଼ଲ ଗ୍ଯେର ଧରିବା ତ ?"

"ତା ଆଉ ଧରିବା ନାହିଁ ? ଯୋଉବାଟେ ଗଲେ ବି ଚାଉଳ ବାହାରିବ ଯାଇ କମ୍ପାଉଣ୍ଡ଼ ଲିସା ହାଟରେ । ଅଇଗୁ ୧୦ଟା ବାଜୁଛି, ଏଇ ଡାଲୁଟା ଓହ୍ଲେଇ ଯଡ଼ିଲେ ଆମେ ସେଠି ପହଞ୍ଚିବା ଦଶଟା ଆଗରୁ । ତାପରେ ତ ଗୋଟିକି ଗୋଟି ଧରି ପକେଇବା, ସିଏବେ କୁଆଡ଼େ ?"

"ବେଶ୍, ଗୁଲ ତେବେ ଆଉ ଡେରି ନାହିଁ ।" ଏଠି ବି ବିଶ୍ରାମ ମିଳିବ ନାହିଁ ଜାଣି ବିନୁ ବିରକ୍ତ ହେଲା । କିନ୍ତୁ ଉପାୟ ନାହିଁ । ଯାହା ଜାଣିଥିଲା ପୁଞ୍ଜାଏ ପାଞ୍ଚଟା କନ୍ଧ ବୋଲି ତାହାରି ବାହାଦୂରି ଦେଖାଇ କନ୍ଧ ବୋହିଆଙ୍କ ଉପରେ ଗର୍ଜନକଲା, "ହେଇ, ଡେରେବେରେ ହାଲମୁଣ୍ଡ଼ (ମାଥ) ।"

କନ୍ଧଲୋକେ ଗର୍ ଗର୍ ହେଲେ । ଭଲ କଥା, ଟିକିଏ ବିଶ୍ରାମ ନାହିଁ ଖାଲି ଦୌଡ଼ ଦୌଡ଼ । ମାଙ୍କଡ଼ ଖେଳାଳି ପରି ଆଦମ କୁଭି କନ୍ଧ ଭାଷାରେ ବିନୁ ଓ ତା'ର ପୂର୍ବପୁରୁଷଙ୍କୁ ଗାଳି ବଖାଣିଲେ । ସେମାନେ ଜାଣନ୍ତି ତାଙ୍କର ଭାଷା ଏ ବୁଝିବେ ନାହିଁ । ଏମାନେ ଖାଲି ହୁକୁମ ଦେବେ—ବୋଝ ବୁହ, ପାଣି ଆଣ, କାଠ ଆଣ । ଏତକ ପ୍ରକାଶ କରିବାକୁ କେତୋଟା କନ୍ଧ ଶବ୍ଦ କେହି କେହି ଜାଣନ୍ତି; ବିନୁ ବି ଜାଣେ, ସୁତରାଂ ତାକୁ ମନ ଖୋଲି ଗାଳିଦେଲେ କ୍ଷତି ନାହିଁ । ଆପଣା ଭିତରେ କୁହାକୋହି ହେଲେ—ଆଚ୍ଛା ବାଇଆ ଲାଗିଛି ଏମାନଙ୍କୁ ଯେ ଏ ଦେଶର ଚାଉଳ ସେ ଦେଶର ଲୋକ କିଣି ନେଉଛନ୍ତି ବୋଲି ଏମାନେ ବଣ ଚକଟି ଚକଟି ମଣିଷ ଧରିବାକୁ ଧାଇଁଛନ୍ତି । ବେପାରୀ ତ ସମସ୍ତିଙ୍କି କରିବ, ସେଥିରେ ଏ ଦେଶ କ'ଣ, ସେ ଦେଶ କ'ଣ ? ଯାହାର ଯାହା ଦରକାର ସେ ମଦ ତାକୁ କିଣିବାକୁ ଆସିଲା, ସେଥିରେ ଅପରାଧଟା କ'ଣ ହେଲା ? ଭଲା ଏ ଦେଶଟା ବି କାହାର ? ଚାଉଳ ବା କମୋଉଛି କିଏ ? ନା, ଏମାନଙ୍କ ନ୍ୟାୟଟା ଭିନେ. ସେ ନ୍ୟାୟରେ ମଦ ରାନ୍ଧିଲେ ଦୋଷ, ବଣ ହାଣିଲେ ଦୋଷ, ଚାଉଳ କିଣିଲେ ଦୋଷ, ବୋଝ ବୋହି ବୋହି ଦ'ଦନ ବାଟ ଚାଲି ଘାଲିଆ ହୋଇ ବସିପଡ଼ିଲେ ଦୋଷ ।

କଥା ଗପିବାକୁ ବେଳେନାହିଁ, ଚପରାସୀ ଗାଳି ଦେଲଣି, ବାବୁଟା ବି ମାଡ଼ିଚାଲିଲାଣି ଆଗେ ଆଗେ । କନ୍ଧଲୋକେ ଉଠିପଡ଼ିଲେ । ଆପଣାର ସବୁ ଅଭିଯୋଗକୁ ଏକାଠି ଗୁନ୍ଥି ଗୀତ ଫାନ୍ଦିଦେଲେ । ତା'ପଛରେ ଉହାଇ ମୁହାଇ ସେହି ଏକା ଘୋଷା,—"ବା'ଇଲେ—ବା'ଇଲେ—"

ସାମ୍ନାରେ ମହାବଣ, ତାହାରି ତଳେ ତଳେ ପର୍ବତ ଡାଲୁରେ ଛପିଲା ସୁଡ଼ଙ୍ଗ ପରି ତଳକୁ ତଳକୁ ବାଟ । ପଛରୁ ସମସ୍ୱରରେ କନ୍ଧ ଗୀତ ରମେଶକୁ ଆନନ୍ଦ ଦେଉଥିଲା । କେଡ଼େ ସୁନ୍ଦର ଶୁଭୁଛି । କ'ଣ ତା'ର ଅର୍ଥ ହୋଇଥିବ । ନିଶ୍ଚୟ କୌଣସି ଏକ ଜାତୀୟ ଗାଥା ।

"ବିନୁ !", ରମେଶ ରଡ଼ିଲା ।

ମନେ ମନେ ତାକୁ ଗାଳି ଦେଇ ଦେଇ ପଥର ଉପରେ ଝଲ ଝଲ ହୋଇ ବେନୁ ତା' ପାଇଁକୁ ଚମକିଗଲା । ତା'ର ବୟସ ପଞ୍ଚାବନ, ମୁଣ୍ଡ ମଝିରେ ଚନ୍ଦା, ଛ'ଟି ଦାନ୍ତ ପଡ଼ିଗଲଣି । ଏ ବୟସରେ ପାହାଡ଼ ଚଢ଼ା ତା' ଦେହକୁ ସହେ ନାହିଁ, ଦେହ ଝୋଲେଇ ସୁଖି, ମଠ ମଠ ଗ୍ଲୁଲ । କିନ୍ତୁ ଏ ଟୋକା ଅଧିକାଂଶ ଡର ଡର କରିଦିଏ, ଅମଡ଼ା ମଡ଼ାଏ, ଆପେ ବାନ୍ତା, ପରକୁ ବାନ୍ତା ଲଗାଏ । ବନୁର ଖାଇବାକୁ ଅଭାବ ନାହିଁ, କିନ୍ତୁ ବୃକ୍ଷର ଚାଲିଗଲେ ତାର କ୍ଷମତା ଚାଲିଯିବ, କଳାହରଣ ହୋଇ ସେ ହେବ ସାମାନ୍ୟ ଏକ ଦେଶୀସ୍ତ୍ରୀ, ଜୀବନଯାକ ଦାସ ପଛେ ପଛେ ବୁଲୁଥିଆ ଦଶ ସେ ଦେଶୀସ୍ତ୍ରୀଙ୍କ ଉପରେ ଚଳୁଛି, ପୁଣି ନିଜେ ଦେଶୀସ୍ତ୍ରୀ ହୋଇ ପଛୋଡ଼ିବାକୁ ହେବ ଭାବିଲେ ଜୀବନ ଉପରେ ଧିକ୍କାର ଜନ୍ମେ । ସେହି ଭୟରେ ବେନୁ ପାହାଡ଼ ଚଢ଼େ ।

"ବେନୁ, ଏମାନେ ଭାରି ସୁନ୍ଦର ଗୀତ ଗାଉଛନ୍ତି ।"

"ଭାରି ସୁନ୍ଦର ଆଜ୍ଞା ।"

"କ'ଣ ସ୍ୟାର ମାନେ ?"

ବଙ୍କା ଲେକ ଦଶ ଦଗଡ଼ା ହଲେଇ ଦ' କଳା ପାନ ଭିତରୁ ଅବୁଝା କନ୍ଧ ଗୀତର ଅର୍ଥ ଫାନ୍ଦି ଦେଇ ବେନୁ କହିଲା—"ଏଇଙ୍କା ସେଇ ଚଇତ୍ ପରବର ଗୀତ ଆଜ୍ଞା ।"

"କ'ଣ ସ୍ୟାର ମାନେ ?"

"ଖାଲି ଧାଂଡ଼ା ଧାଂଡ଼ୀ କଥା, ସେଇ ପୁରୁଣା କଥା—ଯେମିତି କହନ୍ତି ନାହିଁ—ତତେ ଦେଖି ମୋର ବଡ଼ ଶରଧା, ଏ ଯାଇଫୁଲ । ତୁ କେବେ ମୋ ଘରକୁ ଆସିବୁ ? ଏ ଯାଇଫୁଲ ।" ବେନୁ ହସିଲା ।

ରମେଶ କହିଲା, "ସବୁଦିନେ ସ୍ୟାଙ୍କର ଏଇ ଗୀତ ?"

"ସବୁଦିନେ ଆଜ୍ଞା ।"

"ବାଇଲେ ଅର୍ଥ କ'ଣ ଯୁଇଫୁଲ ?"

"ଠିକ୍ ଧରିଛନ୍ତି ଆଜ୍ଞା, ଆପଣ ଏମିତି ଶିଖିବସିଲେ ଭାରି ଚଞ୍ଚଳ ସ୍ୟାଙ୍କ ବୋଲି ଶିଖିଯିବେ ।"

ରମେଶ ଖୁସି ହେଲା, ପଚାରିଲା "ଯେତେ ବୁଢ଼ା ହେଲେ ବି ଏଇ ଗୀତ ?"

"ଆମ ଦେଶରେ କେହି ବୁଢ଼ା ହୁଅନ୍ତି ନାହିଁ ।"

ରମେଶ ମନେ ମନେ ଲେଖି ରଖିଲା—'ବାଇଲେ' ମାନେ ଯୁଇଫୁଲ । କନ୍ଧମାନେ ଖାଲି ପ୍ରେମାପ୍ରେମ ଗୀତ ଗାଆନ୍ତି ।

ରମେଶଙ୍କୁ ଭୂତେଇ ଦେଇ ବିନୁ ବି ଖୁସି ହେଲା ।

କନ୍ଧ ବୋଝିଆ ଗୀତରେ ଗୀତରେ ଚପରାସୀ ଓ ଅଧିକାରୀମାନଙ୍କୁ ଗାଳି ଦେଇ ଦେଇ ଚାଲିଲେ, ଗାଇଚାଲିଲେ ଆପଣାର ଦୁଃଖ ଦୁର୍ଦ୍ଦଶା । ବାଟରେ ଦେଖାପଡ଼ିଲେ ପଞ୍ଝା ପଞ୍ଝା ହାଟମୁହାଁ କନ୍ଧ ବାଟୋଇ । ଗୀତ ଶୁଣି ହାଁ ଏହୁଠିଲେ ଗୀତରେ ଗୀତ ଯୋଡ଼ିଦେଲେ । ସମଦୁଃଖୀ ସେମାନେ, ଏକା ଉପହାସରେ ଭାଗୀ ।

ଗୀତ ଗାଇ ଗାଇ ପାଟି ଘୋଳା ହେଲେ ବୋଝିଆ ରୁନ୍ଧପଡ଼ନ୍ତି, ବିନୁ ଗର୍ଜନ ଛୁଟେ—"ହେଇ ଗୀତ ଗା, ଗୀତ ଗା ।"

ଆମ ଦେଶରେ କେଉଁ ବୁଢ଼ା ହୁଅନ୍ତି ନାହିଁ ।" ଆପଣାର କଥା ବିନୁର ଆପଣା ଆଗେ ନୂଆ ରୂପ ଧରି ଠିଆହେଲା । ସେ ତା'ର ସାନ ଭାରିଯା, ବୃତ୍ତାସୁ ପକ୍ଷ । ଆଗର ଦୁଇ ଭାରିଯା ଅଛନ୍ତି, ତଥାପି ବର୍ଷେ ହେଲା ସେ ଆସିଛି । ଅଧିକ କନ୍ୟାସୁନା ଦେଇ ତା'ର ବାପ ମା'ଙ୍କୁ ମଙ୍ଗେଇ ଅନ୍ୟଂଜଣଙ୍କ ଆଶା ମୁହଁରୁ ସେ 'ଗୋଷ୍ଠ'କୁ ଏକ ପ୍ରକାର ଛଡ଼େଇ ଆଣିଛି । ଏ ବଣ ଦେଶରେ ଛଡ଼େଇ ଆଣି ପାରିବାହିଁ ପାରିଲାପଣ, ସେଥିରେ ମଣିଷ ଜଣକୁ ଝପିଯାଏ । କିନ୍ତୁ ବିନୁର ଏ ପାରିଲାପଣ ଉହାଡ଼ରେ ଥିଲା ଜୀବନ ଗୋଟାକର କ୍ଷୋଭ । ତା'ର ତୋଟା ଅଛି କ୍ଷେତ ଅଛି ଘର ଅଛି ଗାଈଗୋରୁ ଅଛନ୍ତି; କିନ୍ତୁ ସନ୍ତାନ ନାହିଁ । ବୟସ ଯେଣୁ ସରି ସରି ଆସୁଛି, ତେଣୁ ସେ ବେଶୀ ବେଶୀ ଅନୁଭବ କରୁଛି ତା'ର ପୁଅଟିଏ ଦରକାର । ବାଟେ ବାଟେ ଖାଲି ତା'ର ଗୋଷ୍ଠ ମନେପଡ଼ୁଛି । ତ' ସଉତୁଣୀ ତାକୁ ଦେଖିପାରୁଥିବେ ତ ? ମନ ରାଜି ନ ହେଲେ ଏ ଦେଶରେ ସ୍ତ୍ରୀ ପଳେଇ ଯାଏ—ଗୋଷ୍ଠ ମନ କଷ୍ଟ କରୁନଥିବ ତ ? ଆଉ ସେ ଭେଣ୍ଡିଆ ଚପରାସୀ, ଯାହା ନାଁ ବଣି, ଲେଖାଯୋଖାରେ ଟାଣି ଓଟାରି ବିନୁର ନାତି ସମ୍ପର୍କ ହୁଏ, ଖାସ୍ ଆଇମାନଙ୍କ ସଙ୍ଗେ ଥଟ୍ଟା ଲଗିବାକୁ ଆସି ଓଳି ଓଳି ବିତେଇଦିଏ, ସେ କ'ଣ କରୁଥିବ ?

"ବିନୁ !"

"ଆଜ୍ଞା"

ଆଚ୍ଛା ଏ ଚାଉଳ ଆଗରୁ ଧରାପଡ଼ୁନାହିଁ କାହିଁକି ? ଲୁଚା ଚୋରାରେ ମାନ୍ଦ୍ରାଜ ଇଲାକାକୁ ଚାଲାଣ ହେବାପାଇଁ କେଉଁଠି ତ ଗଦା ହୋଇଥିବ, ହାଟ ଲଗୁ କି ନ ଲଗୁ ସେଠୁ ବେପାରୀମାନେ ବୋହି ନେଉଥିବେ, କୋରାପୁଟକୁ ଆସିଲେଇଁ ଚାରଦିନର ବାଟ, ଏତେ ଗାଁ ବୁଲିଲେଇଁ ଏତେ ଜାଗା ଦେଖିଲେଇଁ କାଇଁ ସେମିତି ତ ଆମ ଆଖିରେ ପଡ଼ିଲା ନାହିଁ କଥା କ'ଣ ?"

"ସେମିତି ଏକାଠି ବେଶୀ ବେଶୀ ଚାଉଳ ଗଲେ କ'ଣ ଲୋକ ଦେଖାଣିରେ ଚାଲିଯାଆନ୍ତା ?" ବିରକ୍ତ ଅବସ୍ଥାରେ କଥାଟା କହିଦେଇ ବିନୁ ପସ୍ତେଇଲେ । ସେ ନିଜେ ତା' କ୍ଷେତର ଶହେ ମହଣ ଚାଉଳ ଚଢ଼ା ଦରରେ ପଦାକୁ ପଠେଇ,

ପାଉଛି । ସେ ବିଶ୍ୱାସ କରେ, ଯେଉଁଠି ସମାଜର ନୀତି ନେ ଯୋଗ୍ୟ ପାଦରେ ଦେଖା ଠିଆ ହେବେ, ପ୍ରତ୍ୟେକେ ଆପଣା ଶିଙ୍ଗରେ ମାଟି ଖୋଳିବେ, ସେଠି ପରକୁ ଠେଲିବା ପରର ଗୋଡ଼ ଧରି ଓଟାରି ଦେବା ପରି କାନ୍ଧରେ ଜବରଦସ୍ତି ଲଦି ହେବା ବା ପରକୁ ଶଡ଼ା କାଟିବା ଉଦ୍‌ଯୋଗୀ ଲୋକ ପକ୍ଷରେ ଆପେ ଆସେ, ନହେଲେ ଜଣେ ବଡ଼ ଲୋକ ହେବା ଅସମ୍ଭବ । ଯେଉଁଠି ନିଜପାଇଁ ନିଜଛଡ଼ା କେହିନାହିଁ ସେଠି ସମଷ୍ଟିଙ୍କ ସମୃଦ୍ଧ କଲ୍ୟାଣ କଳବଳ ନିୟମକୁ ଚଳାଏ ଲୋକ ନିଜ ସ୍ୱାର୍ଥ ପାଇଁ ଭାଙ୍ଗିବାହିଁ ସ୍ୱାଭାବିକ ଓ ଉଚିତ ବୋଲି ସେ ଭାବେ । ଧରାପଡ଼ିଯିବାକୁ ଡରେ । କଥା ବାନେଇ ଦେଇ କହିଲା—“ଏକାଠି ବେଶି ବେଶି ଚାଉଳ କୌଣସି ଜଣକ ହାତରେ ଦେଖାଯାଉନାହିଁ । ଆଜ୍ଞା, ସେମିତି ହୋଇଥିଲେ ଆମ ଆଖିରେ ପଡ଼ିଥାନ୍ତା, ଲୁଚନ୍ତା କୋଉଠି ? ହାଟକୁ ଗଲେ ଆପଣ ଦେଖିବେ କିଏ ପାଞ୍ଚ ସେର, କିଏ ଦଶ ସେର କରି ଚାଉଳ କିଣି ନେଇ ଯାଉଛନ୍ତି ଏମିତି ଶହ ଶହ ଭଲ ଦେଶର ଲୋକ । ଦୁ’କୋଶ ଗଲେ ମାନ୍ଦ୍ରାଜର ସୀମା, ସେଠି ସାହୁକାର ବସିଥିବେ, ଶଗଡ଼ ଥିବ, ପାଖେ ଚାଉଳ ପୂରେଇବାକୁ ବସ୍ତା ପାଖେ ଟଙ୍କା ମୁଣି । ନହେଲେ ତାଙ୍କର ଟଙ୍କାରେ ମୁଣ୍ଡ ବୋହିଁଆ ଚାଉଳ କିଣି ଆଣିଥିବେ । ସେ ଚାଉଳ ଜମା ହେବ । ବସ୍ତାରେ ପଶିବ । ଗୁଳିବ ଶଗଡ଼ ବିଶାଖା ପାଟଣା ପାର୍ବତୀପୁର, ବୋବିଲି, ମକୁଆ । ବେପାରୀ ଲୋକର କଥା ଅଲଗା ଅଜ୍ଞା—”

“ବେପାରୀ ହାତରେ ପଡ଼ିବା ପୂର୍ବରୁ ସେଇ ଚାଉଳ ଆମେ ଧରିଦେବା”, ଗମ୍ଭୀର ହୋଇ ରମେଶ କହିଲା ।

ତା’ର ଆଖିରେ ଝଟକୁଥିଲା ଶିକାରୀ ଆଖିର ଆଲୁଅ ।

ମନରେ ଗୋଟାଏ ପ୍ରଶ୍ନ—ଆମର ଚାଉଳ କାହିଁକି ସେମାନେ ବୋହିନେବେ ? ଏଇଟା ଯେପରିକି ତା’ର ବ୍ୟକ୍ତିଗତ ଅଧିକାର ଉପରେ ହସ୍ତକ୍ଷେପ ।

‘ଆମର’ କହିଲାବେଳେ ତା’ର ବ୍ୟକ୍ତିତ୍ୱ ଭୁଲିଯାଏ ଖାଲି ଗୋଟାଏ କଥା—ସେ ଓଡ଼ିଆ । ତା ପଛରେ ଓଡ଼ିଶାର ଇତିହାସ ଓ ସେ ଇତିହାସରେ ପଡ଼ୋଶୀ ଦେଶ ଉପରେ ରାଜ୍ୟବିସ୍ତାର, ଯୁଦ୍ଧ ଜୟ, ସାମ୍ରାଜ୍ୟ ସ୍ଥାପନ । ଅତୀତର ଧୂଳିଗଦା ଓ ଭଙ୍ଗା ଇଟାକୁଡ଼ରୁ ବର୍ତ୍ତମାନର ଖ୍ୟାତିହୀନତାକୁ ସେ ଫେରିଆସେ, ମନର ଓରମାଣ ମେଣ୍ଟାଇବାକୁ ପଡ଼ୋଶୀ ଦେଶ ଉପରେ ଦୋଷ ଚାଳିଦିଏ ।

“ଖାଇ ଖାଇ ଝାଡ଼ରୁ କରିଦେଲେ ଦେଶ ଗୋଟାକୁ, ଆଉ ଫେରି କ’ଣ ?”

ବଣ ବାଟରେ ଶିକାର ମନେପଡ଼େ ।

ରମେଶର ମନରେ ଛୁଇଁଯାଏ ଚାଉଳ ଶିକାରର ନିଶା ।

“ଧରି ପାରିଲେ—” ଦାନ୍ତରେ ଦାନ୍ତ ଘଷି ସେ କହେ । ଧରିପାରିଲେ କ’ଣ କରିବ ସେ ଜାଣେ ନାହିଁ ।

ତରତର ହୋଇ ଢଳକୁ ଢଳକୁ । ମାଘର ସାଗ ଓ ବାଟର ଗାଛ ମିଶିଯାଇ ବସନ୍ତର ଅନୁଭୂତି ଆଣୁଛି, ଯୁଆଡ଼େ ଚାହିଁଲେ ପରିପୂର୍ଣ୍ଣ ଚିତ୍ରପଟର ଶୋଭା । ଗଡ଼ାଣି ଶେଷରେ ବାଟ କଡ଼ରେ ତାଳମାଳର ଗାଁଟିଏ ପଡ଼ିଲା । ଆମ୍ବ ତୋଟା, କ୍ଷେତ, ଖଳା, ଧାଡ଼ି ଧାଡ଼ି ଘର । ପିଣ୍ଡାବାଟରେ ପିଲାଟିଏ ଠିଆ ହୋଇଥିଲା, ଅଚିହ୍ନା ଲୋକ ଦେଖି ଭେଁକିନା କାନ୍ଦି ମା'କୁ ଡାକ ଡାକ ଦଉଡ଼ି ପଳେଇଗଲା । ସେଇଥି ହେଲା ସଙ୍କେତ, ବାଡ଼ କଡ଼ରେ ଖୁଣ୍ଟିରେ ବନ୍ଧା ହୋଇଥିବା ବାଛୁରିମାନେ ପଘାକୁ ଉହୁଙ୍କି ହୋଇ ହମ୍ବାରଡ଼ି ଦେଲେ । ସ୍ତ୍ରୀ ଲୋକମାନେ ଆଡ଼ଲୁଚା ହୋଇ ମିଟି ମିଟି କରି ଅନେଇଁ ରହିଲେ । ଗାଁ ଲୋକ ଗୋଟି ଗୋଟି ହୋଇ ପାଖକୁ ଆସିଲେ । ରମେଶକୁ ଲାଗିଲା, ଏ ଦୃଶ୍ୟ ତା'ର ଚିହ୍ନା ଚିହ୍ନା । ପାଦ ଆପେ ଘୋଷାରି ହେଲା । ଝଙ୍କା ଗଛ ଛାଇରେ ଅଟକି ରହି ସେ ପଛକୁ ଅନେଇଲା । ପ୍ରକାଣ୍ଡ ମନଗଢ଼ା ଭୂତପରି ପର୍ବତଟା ପଛରେ ଠିଆହୋଇଛି । ଧକେଇ ଧକେଇ ବନ୍ଧୁ ଆସୁଛି, ଦୌଡ଼ି ଦୌଡ଼ି ଆସୁଛନ୍ତି ବୋହିଆ ।

“ଏଠି ଭଲ ପାଣି ମିଳିବ ବନ୍ଧୁ ?”

“ମିଳିବ ।” ବନ୍ଧୁ ତତ୍ପର ହେଲା । ବୋକଚା ଖୋଲି ଲୋଟା ଗିଲାସ ବାହାର କରି ଗାଁକୁ ଗଲା । କାନ୍ଧ ବୋହିଆ ବସି ବସି ଝାଳ ମାରିଲେ । ରମେଶ ଅପେକ୍ଷା କଲା ।

ଅଳ୍ପ ସମୟ ଭିତରେ କୁଆଡ଼ୁ ଆସି ପହଞ୍ଚିଗଲା ଗୋଟାଏ ଦଉଡ଼ିଆ ଖଟ, ଜଣେ ଗୋଟାଏ ଲୋଟାରେ କିଛି ଗରମ ଦୁଧ ଆଣି ଠିଆହେଲା, ଆଉ ଜଣେ ଆଣିଲା ଫେଣାଏ ପାଚିଲା କଦଳୀ, ତେଲେଙ୍ଗୁ, ଓଢ଼ିଆ, କୋଣ୍ଡାଦୋରା ମିଶି ଗାଁର ସାତଜଣ ରଇତ ଆସି ଅନୁନୟ କଲେ—

“ଖରା ବହୁତ ହେଲାଣି, ଦୟାକରି ଏଠି ଟିକିଏ ବିଶ୍ରାମ ନେଇ ଗଣ୍ଡିଏ ଖାଇ କରି ନଗଲେ ଗାଁଲୋକଙ୍କ ମନ କଷ୍ଟ ହେବ ।”

ବିଶ୍ରାମ !

ରମେଶ ହସିଲା । ବାଟେ ବାଟେ ସେଇ ନିମନ୍ତ୍ରଣ । ସତେକି ଚାରିଆଡ଼େ ବଣ ଜଙ୍ଗଲ ଘେରେଇ ହୋଇ ମଣିଷ ମଣିଷକୁହିଁ ଆଉଜିବାକୁ ଖୋଜେ । ଅଟକ-ଯାଅ, ରହିଯାଅ ଆଜି ରାତିଟା ଆମ ଗାଁରେ । ଚିହ୍ନା ଗଛର ଛାଇ, ଅଧଚିହ୍ନା ଚାଳ ଭିତରୁ ମଠୁଆ ମଠୁଆ ଚୁଲି ଧୂଆଁ ସାଧାରଣ କାମରେ ବ୍ୟସ୍ତ ପୁରୁଷ ସ୍ତ୍ରୀ । ସେ ବଣଠୁ ଭିନେ, ପର୍ବତରେ ଥାଇ ପର୍ବତଠୁ ଭିନେ ।

ତଥାପି, ଚାଲିବାକୁହିଁ ହେବ । ପଛ ଗାଁର ବାଟର ସ୍ନେହ ଲାଗିରହିଥିବ ଖଣ୍ଡେ ଦୂର, ତା'ପରେ—ପବନରେ ଉଡ଼ିଯିବ ।

ବନ୍ଧୁ ପାଣି ନେଇ ଆସିଲା । ପାଣି ପିଇସାରି ରମେଶ କହିଲା, “ଯିବା ଚାଲ ।” ଏଥର ବୁଢ଼ୀଟିଏ ଆସି ବାଟ ଓଗାଳିଲା । ହସି ହସି କହିଲା, “ଏତେ

ବେଳଟାରେ ଅଖିଆ ଝିବ୍ରି ପୁଅ, ମା' ପାଖରେ ଥିଲେ ଏମିତ ଗୁଡ଼ ବଅନ୍ତା ?
ଏ ଗାଁରେ କ'ଣ ମା ଭଉଣୀ ତୋର ନାହାନ୍ତି ?''

ସମସ୍ତେ ହସିଲେ । ବୁଢ଼ୀଟି କଅଁ ଡେଙ୍ଗୁଲେଙ୍କୁ ମିଶାମିଶା କୋଣ୍ଡାଦୋଷ କାଢ଼ର ! ଏ ଗାଁରେ କ'ଣ ମା' ଭଉଣୀ ତୋର ନାହାନ୍ତି ।

ରମେଶ ଆଖି ଉପରେ ଯେପରିକ ଗୁଡ଼ ଲଦ ହୋଇପଡ଼ିଲା ।

ଜାକକୁ ଜକେ ବଡ଼ ପାଟିରେ କହିପକାଇଲା—''ନା-ନା-ନା, ଯିବାକୁ ହେବ, ହେଇଗଲା କ.ମ ।'' ଆପଣାକୁ ଓଟାର ନେଇ ଗ୍ଲଲା ।

ହୃଦୟରେ ରହିଗଲା ସେହି ବୁଢ଼ୀର ମା-ମୁହଁପରି ମୁହଁର ଗୁଡ଼ ! ମା'ର ଅଖି ପେଟକୁ, ଆଉ ତୁଣ୍ଡରେ ଆହା ପଦ । ତା'ର ଅନ୍ୟ ଜାତ ନାହିଁ, ଭାଷା ନାହିଁ, ସେ ମା ।

ଗ୍ଭଉଳ ଧରି ପାଯୋଗଲା । କିନ୍ତୁ ପୁଣି ମନେପଡ଼ିଗଲା ଯେତେବେଳେ ଖଣ୍ଡେ ଦୂରରେ ସେ ଦେଖିଲ, ହାଟୁଆ ଚାଲିଛନ୍ତି, ଖର ଖର ଚାଉଳ ।

''ବନ୍ଧୁ, ହାଟ ଆଉ କେତେବାଟ ?''

''ହେଇ ଆଗରେ ଆଜ୍ଞା, ହେଇଗଲେ ।''

''ତୁମିଆର ହଲ୍ଲା କରିବ ନାହିଁ ।''

''ନାହିଁ ଆଜ୍ଞା, ଅରେ କନ୍ଧମାନେ ଆଉ ଗୀତ ବୋଲ ନାହିଁ, ପାଟି କର ନାହିଁ, ଚୁପ ଚୁପ ଚାଲ ।'' ବନ୍ଧୁ ହସି ଦେଇ ବୋହିଆମାନଙ୍କ ପାଖକୁ ଚାଲିଗଲା । ବଣ ଭିତରେ ଶିକାର କରି ଗଲପରି । ପଦାରେ ଚୁପଚାପ, ମନ ଭିତରେ ଚହଲ । ରମେଶ ତରତର ହୋଇ ତା'ର କର୍ମପନ୍ଥା ବିଷୟରେ ଭାବିଗଲା । ଚାଉଳର ଚୋରା ଚାଲାଣ ଖାଲି ଅଟକେଇ ଦେଇ ସେ ନିଶ୍ଚିନ୍ତ ହେବ ନାହିଁ । ପକ୍କା ବନ୍ଦୋବସ୍ତ କରିଦେଇଯିବ । ରିପୋର୍ଟ୍ ଲେଖିବ । ପ୍ରଶଂସା ପାଇବ । ଏହିପରି ପ୍ରଶଂସା ପାଇ ପାଇ ଶୀଘ୍ର ସେ ଉନ୍ନତି କରିବ । ପରୀକ୍ଷାରେ ସମ୍ମାନ ପାଇଲପରି ସେ ବି ଏକ ପୁରସ୍କାର । ପ.ଇଟାକୁ ହକ୍‌ଦାର ସେ, ନ ହେଲେ ଏତେ ବଣବୁଲା, ଝଡ଼ରେ ଶୀତରେ । ସତେକି କଙ୍ଗୋ ଆଫ୍ରିକାରେ ଲିଭିଂଷ୍ଟୋନ । ସେ ଯାଇଥିଲେ ଗୋଟାଏ ନଦୀର ଉତ୍ପତ୍ତି ସ୍ଥଳ ଆବିଷ୍କାର କରିବାକୁ, ସେ ଯାଉଛି ଗ୍ଭଉଳ ରପ୍ତାନୀର ଚୋର ମୁହାଁଣ ଆବିଷ୍କାର କରିବାକୁ । ଖୁବ ଆନନ୍ଦ ଲଗିଲା । ଆପଣା ସୁଦକ୍ଷପଣରେ ଅ.ପେ ଅଭିଭୂତ ହୋଇପଡ଼ିଲା ।

କିଛି ଆଗରେ ବାଟ କଡ଼ରେ ଗଛ ତଳେ ଗୋଟିଏ ପରିବାର ଗ୍ରେଷ୍ଟେଇ ସାରି ଖିଆପିଆ କରୁଛନ୍ତି । ଉଡ଼ାଣି ପିଲଟିଏ ମାଟିରେ ଚିତ୍ ହୋଇ ଶୋଇ ଗୋଡ଼ ହାତ ଛାଟି ଛାଟି କାନ୍ଦୁଛି । ଫୁର ଫୁର ମୁଣ୍ଡୀ, ଜୀର୍ଣ୍ଣଶୀର୍ଣ୍ଣ ହୋଇ ଯୁବତୀଟିଏ ତା'ର ଖାଇବାପଟ ଛାଡ଼ିଦେଇ ଅଇଁଠା ହାତରେ ଗୁଡ଼ ଉପରୁ ଛିଣ୍ଡା ଲୁଗା କେରାକ ଓଟାର ଦେଇ କ୍ଷୀର ଦେବାକୁ ଧାଇଁଗଲା, ମା'ର ଚୀର ଦରଶୁଖିଲା,

କନାପରି ଓହ୍ଲାଇଛି । ପିଲାଟିକୁ ଜାକି ଧରି ବିଦେଶୀ ଆଗନ୍ତୁକଙ୍କୁ ଅନେଇଁ ରହିଲା । ସତ୍ତକ ଦେହ ନାହିଁ, ଖାଲି ମୁଣ୍ଡର ଅଳିଆ ବାଳ ଆଉ ଉଦାସ ମଳିନ ଆଖି ଦୋଟି । ସେ ଆଖିରେ ନାହିଁ ସମ୍ବାଦ ପାଇଁ ଆଗ୍ରହ, କାହାର ବଡ଼ତ୍ୱ ପ୍ରତି ଭ୍ରୂକ୍ଷେପ, ଦୁନିଆଁ ଆଡ଼କୁ ଖୋଲିଥିଲେ ବି ଭିତରକୁ ତା'ର ଦୃଷ୍ଟି, କାହିଁ ତଳକୁ, ତଳାତଳାନ୍ତ ଜୀବନୀଶକ୍ତିର କାଣ୍ଡି ଉପରକୁ, ଯେଉଁଠି ଶେଷ କ୍ଷୁଧା ବି କାଟେ, ସ୍ନେହ ବି ସନ୍ତାନକୁ ଘୋଡେଇ ରଖେ । ଆଉ ତିନିଜଣ ଭାତ ଖାଉଛନ୍ତି, ବୁଢ଼ା, ବୁଢ଼ୀ, ଡେଣ୍ଡାପୁଅ । ଖାଲି ହାଡ଼, ଚମ, କୋରଡ଼ ଆଉ ବେଢାଏଁ ଲେଖାଁ ବାଳ । ଆଉ ଚକ ଚକ ଆଖି । ଖାଉବା ଭାତ ଶିଆଳପତ୍ର ଉପରେ ଚକ ଚକ କରୁଛି । ଭାତ ଖିଆ, ଖିଆ ନୁହେଁ, କୁକୁରପରି ଗାବୁ ଗାବୁ କରି ଟେଙ୍ଗା ମାରିବା । ଗଛ ତଳେ ଫନ୍ଦା ଭଙ୍ଗା ଟେପା ଡେକଚି ହାଣ୍ଡି ଓ ଚୁଲି । ଏକାଥରକେ ସମୁଦାୟ ଦୃଶ୍ୟ ରମେଶଙ୍କୁ ଯେପରି ଆକ୍ରମଣ କଲା ।

"ବିନୁ, କିଏସେ ଏମାନେ ?"

"ତଳ ଦେଶର ତେଲିଙ୍ଗୁଲୋକ ଆଜ୍ଞା, ପେଟ ବିକଳରେ କେତେ ଏମିତି ଏ ଜଙ୍ଗଲରେ ପଲ ପଲ ହୋଇ ବୁଲୁଛନ୍ତି ।'

"ଘର କୋଉଠି ?"—ବିନୁ ପଚାରିଲା ।

ତିନିଥର ପଚାରିଲା ପରେ ଖାଉବା ପତ୍ରରୁ ମୁହଁ ଟେକି ବିରକ୍ତ ହେଲାପରି ବୁଢା କହିଲା—"ଶ୍ରୀମାଚଲମ୍ ।"

ବିନୁ ରମେଶଙ୍କୁ ବୁଝେଇଦେଲା, ଏ ଆସିଛି ତିନିଶି କୋଶ ଦୂରରୁ । ସୀମାଚଲମ୍ । "ଆଗେ ତ ଆମ ଓଡ଼ିଶାରେ ଥିଲା ।" ଓଡ଼ିଶା ଇତିହାସ ମନେପଡ଼ିଗଲା, ପର୍ବତପରି ଠିଆ ହେଲା, ମାଟି ବୁଦବୁଦ ପରି ସାନ ହୋଇଗଲା, ଗମ୍ଭୀର ହୋଇ ମିଶିଗଲା ସେହି ଶୋକିଲା ଯୁବତୀମା'ର ଆଖି ଦିଓଟିରେ । ପିଲାକୁ କ୍ଷୀର ଦେଉଛି, ଆଉଁସୁଛି । ଓଡ଼ିଶାରେ ଆଉ ନାହିଁ ସେ ଦେଶ, ପୃଥିବୀରେ ଅଛି, ସେ ଦେଶରେ ମଣିଷ ଅଛନ୍ତି, ତାଙ୍କର ଭାତ ନାହିଁ ।

"ବହୁତ ଏମିତି ବୁଲୁଛନ୍ତି ଆଜ୍ଞା, ବଣ ଜଙ୍ଗଲକୁ ଡରୁନାହାନ୍ତି, ବାଘ ଭାଲୁକୁ ଡରୁନାହାନ୍ତି, ସବୁଠୁ ବଡ଼ ଡର ତ ଆପଣା ପେଟକୁ, ଆଉ କାହାକୁ ?"

"ସତ କଥା, ସତ କଥା" କହି ବୋହିଆ ପାଳି ଧରିଲେ, ସେମାନେ କଡକ ଲାଗି ଆସିଲେଣି । ବୁଢ଼ା କହି କହିଲା—"ଭୋକ ଲାଗିଲେ କି ଦୁଃଖ ପଡ଼ିଲେ ସମସ୍ତେ ସମାନ । ହେଇ ଦେଖ ଆମକୁ କେତେ ଭୋକ ଲାଗିଲାଣି । କେଉଁଠି ଭାତଆ ଦବ ଯେ ଚପରାସୀ ବାବୁ ।"

ଚୁପ୍ ହୋଇ ରମେଶ ଆଗେ ଆଗେ ଚାଲିଲା ।

ହଠାତ୍ ଲାଗିଲା, ଯେପରିକି ତା'ର ଉଦ୍ଦେଶ୍ୟ ଗୋଳମାଳ ହୋଇଯାଇଛି । ସେ ନ୍ୟାୟ କରିବାକୁ ଚାହେଁ । କିନ୍ତୁ ନ୍ୟାୟର ସଂଜ୍ଞା ଭୁଲ ହୋଇଯାଇଛି ।

ଯିଏ ବାଟରେ ଚାଲନ୍ତି ମାଠ ଉପରେହିଁ ସେ ନିର୍ଭର କରନ୍ତି, ମୁଣ୍ଡପାତି ମାନିଛନ୍ତି ଛପା ଆଇନକୁ, ଲେଖା ନିୟମକୁ, ତା ପଛ ଆଡ଼କୁ ଉଙ୍କି ମାରିବାହିଁ ତା ପକ୍ଷରେ ଦୋଷାବହ ବୋଲି ବୁଦ୍ଧିବୋଧ କରନ୍ତି । ବର୍ତ୍ତମାନ ବି ସେହିପରି । କେବେ କେବେ ଦେଖନ୍ତି ଛପା ଆଇନ ଓ ଦାଣ୍ଡନ୍ୟାୟ ପଡ଼ନ୍ତି ଅମେଳ, କିନ୍ତୁ ମନକୁ ଆଶ୍ୱାସ ଦେଉଛନ୍ତି, କର୍ତ୍ତବ୍ୟ କଠୋରହିଁ, ସେ ମନ୍ତ୍ରର ଘୂର୍ଣ୍ଣିନ । ପେଟ ବିକଳରେ ଜଣେ ଚୋରି କରିଛି ବର୍ଷକର ପିଲାକୁ ଗୁଡ଼ରେ ଜାକି ଗର୍ଭିଣୀ ସ୍ତ୍ରୀ କଚେରିଘର ପିଣ୍ଡାରେ ଗଡ଼ି ଗଡ଼ି କାନ୍ଦୁଛି, ତା'ର ପୋଷଣାହାର ଆଉ କେହି ନାହିଁ, କିନ୍ତୁ ଚୋର ଜେଲ୍ ଯିବା କଥା, ଜେଲ୍ ଯାଉଛି । ଜଣେ ପାଞ୍ଚଥର ଚୋରି କରି ଦଣ୍ଡ ଭୋଗିଲାଣି, ଷଷ୍ଠଥର କାହା ବାଗିଚାରୁ କଖାରୁଟିଏ ଚୋରି କରି ଧରା ପଡ଼ିଛି । ପୂର୍ବ ଦୁଷ୍କୃତ ପାଇଁ ଦଣ୍ଡ ବଢ଼ିଯିବା ନିୟମରେ ତାକୁ ହୋଇଛି ବର୍ଷେ ଜେଲ, ସେ ଯାଉଛି । କଠୋର ଏ କର୍ତ୍ତବ୍ୟର ଧାରା, ମନ୍ତ୍ରର ଘୂର୍ଣ୍ଣିନ । ଚାଲିଲା ଧରିବାକୁହିଁ ହେବ ।

ହାଟର ଘୋ ଘୋ ଶୁଭିଲା । ଗୋଡ଼ୁ ଗ୍ରାମର ଆଉଁଷିଣିଆଁ ସଢ଼ାଳିଆ ଗନ୍ଧ ନାକରେ ବାଜିଲା । ହଠାତ୍ ବଣ ଭିତରୁ ତା ପଛକୁ ତା ପଛ ହୋଇ ମଣିଷ ବାହାରି ପଡ଼ୁଛନ୍ତି, ବୋଝ, ଭାର, ଭାରରେ ବୁହା ହୋଇ ଛୋଟ ପିଲା, ଗୋଡ଼ ବନ୍ଧା ହୋଇ ମୁଣ୍ଡତଳକୁ ହୋଇ ଗୋଛା ଗୋଛା କୁକୁଡ଼ା, ନାନାବିଧ ପଣ୍ୟଦ୍ରବ୍ୟ —ଆହୁ ଚାଲିଲା । ଗୋଲରେ ଦେଖା ଦେଇ ବଣରେ ଅଦୃଶ୍ୟ ହୋଇଯାଉଛନ୍ତି ହାଟ ମୁହାଁ । ଶିକାର ଅଡ଼ ପାଖରେ । ରମେଶର ଗୁଡ଼ ଗୃଉଁ କଲା । ପଥରକୁ ପଥର ଡାଳକୁ ଡେଇଁ ଡେଇଁ ଗଲବେଳେ କହିଲା—"ଚାଲୁ, ଏଥର ।"

ହାଟ ଦଶିଲା । କଳବଳ ଜନାପିମ୍ପୁଡ଼ି ପରି ମଣିଷ । ଗୁଡ଼ାଏ ରଙ୍ଗ, ଗୁଡ଼ାଏ ଗନ୍ଧ, ଗୁଡ଼ାଏ କୋଳାହଳ । ବହୁତ ଗ୍ରାମ ବନ୍ଦ ହେଉଛି, ପବନରେ ସେହି ଗନ୍ଧ । ଧାଡ଼ି ଧାଡ଼ି ଗନ୍ଧ ଶୁଖୁଆପସରା । ମାଛ ବେଢ଼ିଛନ୍ତି, ମଣିଷ ବେଢ଼ିଛନ୍ତି । ପାଖ ବଣରୁ ଚୋରା ମଦର ଗନ୍ଧ ।

ଘ ଉଡ଼ା କୁକୁର ପରି କୁଷ୍ଠରୋଗୀ, ଯକ୍ଷ୍ମାରୋଗୀ, ଖାସୁଲ ଖାସୁଲ କନ୍ଧ ପିଠିରେ କୁଲପରି ଡାଳି ପରି ଅରାଏ ଲୋଖାଁ କାଞ୍ଚା ଯକ୍ଷ୍ମା ଘା, କଳା କଳା ପୋତକ ପାଖକୁ ପାଖ ଲଗି ଲଗି ବସିପଡ଼ିଛନ୍ତି । ଘଷାଘଷି ଠେଲଠେଲି ହୋଇ ସୁସ୍ଥ ଲୋକ, ପୁରୁଷ, ସ୍ତ୍ରୀ ।

ରମେଶର ନଜର ପଡ଼ିଗଲା ଗୋଟିଏ ଯୁବତୀ ଉପରେ—ଚମ୍ପାଫୁଲ ଗୋରା, ହଳିଲ ବାଳିଲ ହାତଗୋଡ଼ ଗରି ଗରି, କନ୍ଧ ଦେଶର ସୁନ୍ଦରୀ । ଫାଳେ ଗାଲ ଗୋଟାଏ ଯକ୍ଷ୍ମା ଘା, ଆରଫାଳକ ଟହ ଟହ ନାଲି । ସେଠି ବି ରୋଗ । ତଥାପି ସେ ଫୁଲି ନାଉଛି, ମୁଁ ଆଁ ଚୋବେଇ ଚୋବେଇ ବାଟରେ ଯୌବନର ଲହଡ଼ି ଖେଳାଇ ଚାଲିଛି ।

ଆଉ କଣେଇଁ କଣେଇଁ ଚାହୁଁଛି, ଆଖି ହସୁଛି, କଳା ଦେଶର କଉତୁକୀ ଝିଅ ଆଖିରେ ଡାକୁଛି ଖେଳିବୁ ଆ।

ରମେଶ ଆଖିବୁଜି ଦେଇ ହାଟ ମଝିରେ ଗଛଦୂ ଆଉଜିଗଲା। କାନରେ ବାଜିଲା ହାଟର ଘୋ ଘା। ସ୍ମରଣରେ ସେହି ଘା-ଗାଲୁ ହସ-ଆଖି ମୂର୍ତ୍ତି। ଆଉ ପାହାଡ଼ ଉପରେ ନାଚ କରୁଥିବା କଳା ପିଲାଏ।

ଆଉ ଅଗନାଗ୍ନି ବନସ୍ତ ମଝିରେ ଗୋଟିକିଆ ମୁଣ୍ଡିଆ ଆଗରେ ମଣିଷର ଜୀବ, ବାଘ ଭାଲୁ ସବୁଜ, ବାଆ ବତାସିରେ ଚାଲି ନାଅଁ ନିଭୁ ନାହିଁ।

ଡାକୁଅ ଧାନ ଚଷି ମଣିଷ, ପାଣି ଟେକେ ବଢ଼ୁ ଧାନ ଗଛ ସେତେ ଉଞ୍ଚ ହୁଏ। ଗାଲରେ ଧୂଳ ଓ କୁଷ୍ଟ ମୁହଁରେ ହସ ଓ ମୁଆଁ। ବହୁକଷ୍ଟରେ ଫୁଟିଛି ଗୋଲାପ, ତା'ର ପାଖୁଡ଼ା ପୋକଦାଉରେ କେମ୍ପା। ଝଡ଼ୁ ପଛେ, ହସୁଛି।

ବିନୁ ଫ୍ଲାସ୍କ୍ ଖୋଲି ଚା ଢାଳିଲା। "ଆଃ—"ରମେଶ ଆଖି ଖୋଲିଲା। ତା'ର ଚାରିପାଖେ ଭିଡ଼ ବଢ଼ୁଛି। କାନପାଖେ ବିନୁ କହିଲା, "ଚାଉଳ ବହୁତ ବିକି ହେଉଛି, ସବୁ ଧରାପଡ଼ିବ ଏଠି ନୁହେଁ, ହାଟ ସେମୁଣ୍ଡରେ ଘାଟି ଜାଗା ଅଛି, ହାଟରୁ ବାହାରିଯିବାପାଇଁ ଗୋଟିଏ ଗାଡ଼ୁଆ ଗୋହିରି, ସେଠି ଡିପ ଉପରେ ଚାଳି ଖଣ୍ଡେ ଅଛି।" ହସିଦେଇ କହିଲା, "ମଞ୍ଚାରେ ବସି ଜୀଆଦ ମାରିଲପରି!"

ସେଇଠିକି ଅଟେଇ ନେଇ ଚାଲିଲା। ଗୋଟିକିଆ ଚଉକିରେ ବସେଇ ଦେଇ କହିଲା, "ଥାଏଁ ମୁଁ ଏଥର ସବୁ ଯୋଗାଡ଼ କରିଆସେଁ।"

ହାଟ ଶେଷରେ ଗହିର ଗୋହିରିବାଟ, ଦି'ପାଖେ ଡିପ, ଡିପ ଉପରେ ସ୍ଥାନେ ସ୍ଥାନେ ଗୋଟିକିଆ ଚାଳିଟି। ରମେଶ ବସିରହିଲା। ଆରପାଖ ଡିପ ଉଞ୍ଚକୁ ଚଢ଼ି ଗୋଟିଏ ମୁଣ୍ଡିଆ ହୋଇଛି। ତା' ଉପରେ ଗୋଟିଏ କଳା ବସ୍ତି। ଦୁଆରେ ଦଉଡ଼ିଆ ଖଟ ପଡ଼ିଛି। କୁକୁର ବସିଛନ୍ତି। ଲୁଡ଼ାଏ ପିଲା ଗୋଟାଏ ବଡ଼ ଢୋଲ ଉପରେ ମନଇଚ୍ଛା ଦୁଡ଼ୁମ୍ ଦୁଡ଼ୁମ୍ ପିଟୁଛନ୍ତି। ଗୋଟାଏ ଦୁଆର ମୁହଁରେ ଜଣେ ବୁଢ଼ା ବସି ବାନ୍ତି କରୁଛି, ବୁଢ଼ୀ ତା'ର ପିଠି ସାଉଁଳୁଛି। ନିଶ୍ଚୟ ମ୍ୟାଲେରିଆ ଜର। ଭଙ୍ଗା କାନ୍ଥକଡ଼ ଉପରେ ଗୋଟାଏ ଗାରଡ଼ ଠିଆହୋଇ କ'ଣ ଗଛ ଚୋବାଉଚି। ରମେଶ ସେହି ବସ୍ତିର ଦୃଶ୍ୟ ଉପରେ ଆଖି ରଖି ସମସ୍ତ ଟାଳିଗଲା। ନାକପୁଡ଼ା ଭିତରୁ ହାଟର ଧୂଳି ଧୂଆଁଳିରେ ରଗଡ଼ି ଲାଗିଲା। ଝାଳ ପୋଛିଲା। ବେଳ ଗଲାଣି, ମାଘର ଖରା ଗ୍ରୁଇ ଲମ୍ବେଇଲାଣି, ଫିକା ପୃଷ୍ଠପଟ ଆଗରେ ଲମ୍ବିଛି ଗୋଟିଏ ସାଧାରଣ ବସ୍ତିର ଚିତ୍ର, ସରଳ ଘରକରଣାରେ।

ହଠାତ୍ ସେପଟୁ ଉଠିଲା କାନ୍ଦଣାର ରୋଳ। ସବୁ ଘରୁ ଲୋକ ବାହାରିପଡ଼ି ଗୋଟାଏ ଘରକୁ ଛୁଟିଗଲେ। ପିଲାଏ ବାଜା ବନ୍ଦ କରି ଦୌଡ଼ିଗଲେ। ଘର ମୁହଁରେ ଓ ଦୁଆରେ ଲୋକଙ୍କର ଭିଡ଼। ଆପଣା ଗାଲ ଚାପୁଡ଼ି ଆଣ୍ଠୁଡ଼ି ଟେମୁଟି ସମସ୍ତେ ଭେଁ ଭେଁ କାନ୍ଦିଲେ। କ୍ରମେ ସେ କାନ୍ଦଣା ଧରିଲା ଗୋଟାଏ ଛନ୍ଦର ବାଟ। ସମବେତ ମରଣ ବାହୁନା ଚାଲିଲା।

"ଆଲେ ! ଆଲେ ! ହାଡେମ୍ବୁଁ ! ହାଡେମ୍ବୁଁ !"

(ହାୟ ! ହାୟ ! ମରିଗଲ ! ମରିଗଲ !)

ବନୁ ଆସି ପହଞ୍ଚିଗଲା ।

"ସବୁ ବନ୍ଦୋବସ୍ତ କରିଦେଇଛୁ ଆଜ୍ଞା । ହାଟରେ ପାଇକମାନେ ଥିଲେ । ସମସ୍ତିଙ୍କି ଅଡ଼େଇ ଦେଇ ଆସିବେ ।"

"ଏ କଣ ହେଲ ବନୁ ?"

"କିଏ ଜଣେ ମରିଗଲା ଆଜ୍ଞା, ମାଲଜର, ଏଥିରେ ଆଉ ନୂଆ କ'ଣ ଅଛି ?"

ବନୁ ତା' ପଛଆଡ଼େ ଠିଆହୋଇ ରହିଲା ।

ରମେଶ ସେହି କାନ୍ଦଣାରେ ମନଦେଲା । କିଛି ନୂଆ, କିଛି ପୁରୁଣା । ଆଉ ଚକ ଘୂରୁଛି, ଜନ୍ମ, ମୃତ୍ୟୁ, ପ୍ରଜନନ । ସବୁ ଦୃଶ୍ୟ ତରଳିଯାଇ ବଦଳିଗଲା । ଆଖି ଆଗରେ ଉଭିଉଠିଲା ଉତ୍ତର ବାଲେଶ୍ୱରରେ ଆପଣାର ଗାଁ କାନ୍ତପୁର । ତା'ର ଘର, ବାପମା, ପଡ଼ଶାମାନେ, ଚିହ୍ନା ବୁଢ଼ା ଚିହ୍ନା ପିଲାମାନେ, ଚିହ୍ନା ଝିଏ । ଗାଁ ମଶାଣିକୁ ଗାଁ ମଝିରେ ଚଣ୍ଡୀମଣ୍ଡପ । ଆଉ ମୃତ୍ୟୁ, ଜନ୍ମ, ପ୍ରଜନନ । ଆଉ ଏଠାପରି ସେଠି ବି ସୁଷ୍ଟପ୍ରିୟ ଶାନ୍ତିପ୍ରିୟ ମଣିଷ ; କଳିଅ ମୂଲେଇ ଯାଏନାହିଁ, କାହାର ଅନିଷ୍ଟ ନକଲେ ବି କଷଣ ଭୋଗେ ।

ଅଲେ ଅଲେ ହାଡେମ୍ବୁଁ ହାଡେମ୍ବୁଁ ।

କେତେ ଯାଉଛନ୍ତି—କେତେ କେତେ—ଅନ୍ଧାର ଗାତରେ କାଉଁରିଆ କିଆଁ ଜାଳି ଗାଁଲୋକେ ଡାକନ୍ତି—"ଅନ୍ଧାରେ ଆସ ଆଲୁଅରେ ଯାଅ—ଆଲୁଏ ଯାଅ—"

ଆଉ ସାମ୍ନାରେ ଏଇ ମରଣର ସମତଳ, ସେଠି ଭାଷାର ଭେଦ ନାହିଁ, ଦେଶର ବାଡ଼ ନାହିଁ, ସମସ୍ତେ ସମାନ ଓ ଚିରନ୍ତନ ।

ପଛଆଡ଼େ ଠିଆହୋଇ ବନୁ ବି ଘର କଥା ଭାବୁଛି । ସେଠି ତା'ର ସାନ ଭଉଣୀ । ବଞ୍ଚି କ'ଣ ଆସୁଥିବ ?···ଠାଇ କରି ଆପଣା ଗାଲରେ ଏକ ଚାପୁଡ଼ା ମାରିଲା । ରମେଶ ଅନେଇଲା । ବନୁ ଗାଲ ସାଉଁଳୁଛି । କହିଲା, "ଏଠି ବହୁତ ବଡ଼ ବଡ଼ ମଶା ଆଜ୍ଞା, କାମୁଡ଼ିଲେ ବନ୍ଧେ ।"

ରମେଶ ଚମକି ପଡ଼ିଲା ।

ଆପଣାକୁ ଦେଖିଲା ବଇଁଶରେ ପଡ଼ି କମ୍ପୁଛି । କୁହୁମାଟିଆ ଆଖି ପରି ଆଖି ଭାଲୁ ପରି କଳା, ଆରମ୍ଭ ହେବ ଶବ୍ଦେ ଡଙ୍କୁ, ଇଚ୍ଛା ହେବ କାମୁଡ଼େ, ମାରି ଗୋଡ଼ାଏଁ, ଗାଳିଦିଏଁ—ବାନ୍ତି, ତାତି, ତାତି—ତାପରେ ?

ଜନ୍ମ, ମୃତ୍ୟୁ, ପ୍ରଜନନ, ଜନ୍ମ, ମୃତ୍ୟୁ—

ଆଉନ୍ ମନେପଡ଼େ ନାହିଁ । ଜନ୍ମ, ମୃତ୍ୟୁ, ମଣିଷ···

ହଠାତ୍ ଯେପରିକି ନୂଆ ଆଖିରେ ସେ ଦେଖିଲା । ଲୋକ ଗୁଲୁଛନ୍ତି,

ବହୁତ ଲୋକ । ଅନ୍ଧାରରେ ହଜି ଯାଉଛନ୍ତି । ଧାର ସଂଖ୍ୟା ନାହିଁ । ଚାଲିଛନ୍ତି । ଚାଲିଛନ୍ତି । ହାଟ ଭାଙ୍ଗି ଆସୁଛି । ଲୋକ ଚାଲିଛନ୍ତି । ଯେପରିକି ସେ ଜଣ ଜଣ କରି ସମସ୍ତିଙ୍କି ଚହ୍ନେ । ଘରେ ଅଭାବ, ପଦାରେ ଶୋଷଣ । ତଥାପି ଚାଲିଛନ୍ତି । ତୃଣରେ ସେହି ଅଖିଳା ଭାଷା । ଜାତି ଭଲେ ନୁହେଁ ସେହି ମଣିଷ ସେମାନେ । ତା'ର ଗ୍ରାମଲୋକେ, ଚନ୍ଦ୍ରାଲୋକେ । ଧାର ଭିତରେ ଅଣ୍ଟା ସଳଖେଇ ପିମ୍ପୁଡ଼ି ଚାଲୁଁଛି ପିମ୍ପୁଡ଼ିକୁ ମୁହାଁମୁହିଁ, ଶୁଖିଲ ଆଖିରେ ହସ ଉକୁଳେଇ କହିଯାଉଛି, ତୁମେ ଆମେ ଏକା ଜାତି ଭାଇ, ଗୋଡ଼ରେ ଚାଲୁଁ ହାତରେ କାମ କରୁଁ । ତୁମର ଆମର ଏକା ଦେଶରେ ଘର ଭାଇ, ଏଇ ମାଟି ଉପରେ ଅକାଶ ତଳେ, ତୁମର ଆମର ଏକା ଶତ୍ରୁ ଭାଇ—ଯେ ଆମ ମୁହଁକୁ ଅଧାର ଛଡ଼େଇ ନଏ ଗୋଡ଼ରେ ଦଳାଦଏ ଉପରେ କୁଢ଼ାଏ ତଳଲ ପାଉଁଶ—

ପିମ୍ପୁଡ଼ିର ଧାର ଚାଲିଛି, ତା'ର ମନ ଗହ୍ୱରରେ ହସ ଆଉ କାନ୍ଦ ମିଶି ଅଖଣ୍ଡଦୀପ ଜଳୁଛି—

ପଦାରେ ଗହଳି ଶୁଭିଲା । ପାଇକମାନେ ଅସୁଛନ୍ତି, ପଛେ ପଛେ ଟୋକେଇ ଓ ବସ୍ତା ଧରି ମାଲେ ଲୋକ । ରମେଶ ମୁହୂର୍ତ୍ତିକେ କର୍ମଚାରୀ ପାଲଟିଗଲା, ଠିଆହୋଇ ପଡ଼ି ପାଇକମାନଙ୍କ ସଲାମନେଲା । ବନୁ ଆଗକୁ ଚମକିଗଲା, କହିଲା, "ପଞ୍ଝାକୁ ପଞ୍ଝା ଧରି ଧରି ଆଣୁଛନ୍ତି ।" ପାଇକମାନେ କହିଲେ, "ଏଇ ଦେଖିବା ହେଉନ୍ତୁ କେମିତି ଏ ହାଟକୁ ସ୍ୱେ ଲୋକେ ଲୁଚେଇ ଲୁଚେଇ ଚାଉଳ ନେଇ ପଳୋଉଥିଲେ ତଳଦେଶକୁ । ଉପରେ ଉପରେ ଲଙ୍କା ମରିଚ ହଳଦୀ ଧୂଆଁ ପତ୍ର ବସ୍ତାହୋଇଛି, ତଳେ ଅଛି ଚାଉଳ । ଏ ଦେଶକୁ ନେଇ ସେ ଦେଶରେ ବେପାର କରିବେ, ସେଠି ବ ଚଢ଼ା ଦରରେ ବିକବେ, ଚାଉଳ ଗଣ୍ଡାକ ପାଇଁ ଲୋକଙ୍କ ରକ୍ତ ମାଉଁସ ଝୁଣ୍ଟିକରି ଖାଇବେ ।

ସାମ୍ନାରେ କଙ୍କାଳଥାଟ, ବଦା କାଠ ପରି ଶୁଖିହାଡ଼, ଦେହରେ ଚମ ଚେମେଣି ଦେହପରେ ଓହଳିଛି, ଅଣ୍ଟା ପିଠି ଲଗିଯାଇଛି ଖାଲ ବେଡ଼ାଏ ବେଡ଼ାଏ ଲୁଖୁରା ବାଳ, କୁଳୁ କୁଳୁ ଆଖି । ମଣିଷ ନୁହନ୍ତି ମଣିଷର ପ୍ରେତ ଅତ୍ମା ଆପଣା ଭାଷାରେ ଅଳି କରୁଛନ୍ତି, ବୋବାଳି ଛାଡୁଛନ୍ତି, ପେଟକୁ ପାଟିକୁ ଦେଖାଇ ଅଙ୍ଗଭଙ୍ଗୀ କରୁଛନ୍ତି, ତାଙ୍କ ସରସର ଲମ୍ବା ହାତ ହଲଉଛନ୍ତି ।

ସେପାଖ ବସ୍ତିରେ ମଡ଼ଟା ପଦାକୁ ଆସିଲ ବୋଧହୁଏ, ଠେଲାପେଲା ହୋଇ ମଣିପ, ଅଗକୁ ପଛକୁ ମୁଣ୍ଡ ଝାଙ୍କି ଝାଙ୍କି ସମସ୍ୱରରେ ସଙ୍ଗୀତ କଲପରି ବାହୁନା —"ଅଲେ ଅଲେ ହାତେମ୍ବୁ ହାତେମ୍ବୁଁ, ପାପୁ—"

ଆଉ ଛିପ ତଳେ ଗୋଷ୍ଠରେ ବାଡ଼େଇ କାଉଡ଼ ହୋଇ କାଅନ୍ତି ପ୍ରେତ—

"ଏ ବାବୁମା, ଏ ତଣ୍ଡି—"

ଆଉ ପାଇକଙ୍କ ଗର୍ଜନ, ବନ୍ଧୁ ଓଡ଼ିଆର ରଡ଼ି "ଏଇ ସେମିତି କ'ଣ ହଉଚ, ଖୋଲ୍ ଖୋଲ, ଦେଖାଅ ଚାଉଳ—"

ରମେଶ ଆଖି ବୁଜି ଦେଲା, ତା'ର ମୁଣ୍ଡ ଭିତର ଦୋହଲି ଯାଉଛି, ଦେହରେ ବାଟର କ୍ଲାନ୍ତି, ଆଉ ଭୋକ, ଆଖି ବୁଜି ତ ଦେଖୁଛି ଗୋଲଆଗୋଲ ଆଉଟା ଆଉଟି ମଣିଷ, ସେଠି ଗାଲରେ ସ୍ନୁଜ୍ ରେଗ, ମୁହଁରେ ହସ, ଦେହରେ ଧୋକଡ଼ା ଚମ୍, ଆଖି ଚକ୍ ଚକ୍। ସେଠି ମରଣର କାନ୍ଦଣା, ଅନ୍ଧାରର ଆର୍ତ୍ତନାଦ ଗାଉଁଆ ଅଖିର ଗହ୍ୱର ତଳେ ନଅଁ ଆଉ ତୋଫାନ। ଆଖି ଖୋଲି ଚାହିଁଲା, —ଲଗିଛି ଚିତ୍କାର—"ଏ ବାବୁମା, ଏ ଡଣ୍ଡି—" ହେ ବାବୁ, ହେ ବାପା, ଦେଖ ଆମ ଅବସ୍ଥା ଥରେ। କଧା ପଡ଼ିଲା ଆଗରେ ଠିଆହୋଇଛି ବରଡ଼ାପତ୍ର ଢଆର ଡେଙ୍ଗା ମଣିଷ, ଦୁଇ ଲମ୍ବା ହାତ ମୁଣ୍ଡ ଉପରକୁ ଟେକି ଥର ଥର ହୋଇ ନଇଁପଡ଼ିଲା, ଯେତେ ଅବା ଖଣ୍ଡ ଖଣ୍ଡ ହୋଇ ଭାଙ୍ଗିପଡ଼ିବ ସେଇଠି, ଫମ୍ପା ଘାଗଡ଼ା ଗଲାର ଚଡ଼ି ଦେଲା, "ଏ ବାବୁମା, ଏ ଡଣ୍ଡି—"ଗଡ଼ ଗଡ଼ ହୋଇ ଆପଣା ବୋଲିରେ କରୁଣ ଅନୁନୟ ଗାଇଗଲା, ଭାଷା ନ ଜାଣିଲେ ବି ତା'ର ଭାବ ବୁଝି ହୁଏ। ତଳେ ମୁଣ୍ଡ କୋଡ଼ି ତା'ର ପାଦ ଆଡ଼କୁ ହାତ ବଢ଼ାଇ ଦେଇ ଲାଗିଦେଇ ଉପରକୁ ମୁହଁ ଟେକି ସଳଖେ ଚାହିଁଲା। ସେହି ଚାହାଣି ରୂପ ନେଲା କେଉଁ ଏକ ଚିତ୍ର ମଣିଷର, ରମେଶର ଚିତ୍ର, ସମସ୍ତଙ୍କର ଚିତ୍ର, ଭୋକ ଉପାସରେ ଛଟପଟ ହେଲେ ଆପଣା ଭିତରକୁ ଚାହାଣ ଦର୍ପଣକୁ ଚାହିଁ ରହେ। ଲାଗିଲା, ଏହି ସମସ୍ତେ ଯେପରି ତା' ଚିତ୍ର ପଣତ ଲୋକ, ତା'ର ଗ୍ରାମ ଲୋକ, ଦେହର ଚେହେରାକୁ ଆଉ ତା'ର କଧା ନାହିଁ, ଭିତର ଚେହେରା ତା'ର ଅତି ଚିତ୍ର। ସାମ୍ନାର ଏ ଲୋକଟି ଯେପରି ତା'ର ହଜିଲା ସପନାବାଦ, ସେମିତି ଅଲରା ବାଳ, ସେମିତି ପାଗଳପଣ ଠିଆ ହୁଡ଼, ହାଡ଼ର ଧଡ଼ିଏ ଧଡ଼ିଏ ଖାଲି ଗାଡ଼ମସ୍ତ। କେବଳ ସେ ଆତ୍ମର କ୍ଲାନ୍ତ, ଆତ୍ମର କ୍ଷୁଧିତ, ମୃତ୍ୟୁର ବିଭୀଷିକା ଆଗରେ ଭୟଭୀତ। ସେହି କଗୁଆ ବର୍ଣ୍ଣା ବୁଢ଼ା ଯେପରିକି କାନ୍ତପୁରର ଅକାମୀ ଅରକ୍ଷ କହ୍ନାର ବୁଢ଼ା।

ଏଇ ଚମହାଡ଼ମୟ ଟୋକାପଲିକ କାଲି ଥିଲେ ତା'ର ଗାଁର ଟୋକା, ସେମାନେ ତା'ର ବାଣରେ ପଣି ଜଷି ପିଜୁଳି ଗୋବାଉଥିଲେ, ଏଇ ଦଦରା ନାହା ପର ସ୍ତ୍ରୀଲୋକମାନେ କାଲି ଥିଲେ ତା' ଗାଁର ସ୍ତ୍ରୀଲୋକ, ପାହାନ୍ତିଆରୁ କଲ୍‌କାଲିଆ ହୋଇ ବାଦବୁଦିଆ ଲଗାଇ ପଦ ଗୋଟାଇବାକୁ ଧାଉଁଥିଲେ। ରମେଶ ଆଖି ଲୁଚେଇ ମୁହଁ ପୋତି ଠିଆହୋଇ ରହିଲା, ତୁଣ୍ଡରୁ ଖାଲି ପଦେ କଥା—

"ଯାଅ—ଯାଅ—ଯା ଚାଲି—"

କ'ଣ କହୁଚ ଏ ବାବୁଟା ? ବିନାସ୍ତକ ଚପରାସୀ ତରତର ହୋଇ ଭିଡ଼ିଗଲା। ସତେ ଏମାନଙ୍କୁ ଚାଉଳ ଦେନ ଚାଲିଯିବାକୁ ଗୁଡ଼ଦେଉଛି। ଆତୁର ହୋଇ ପାଟି କଲା, "ଆଜ୍ଞା—ଆଜ୍ଞା—ଆଜ୍ଞା—"

ତା'ଠୁ ସେହି ଏକା ଉତ୍ତର—"ଛାଡ଼ିଦିଅ—ବେଳ ଯାଉଛି—ନାଅ ଝୁଣ ଯା' ଚାଲ—"

ସଂସାରକୁ ଚିହ୍ନେ ନାହିଁ, ନରମ ଫୁର୍‌ଫୁର୍ ମନ, ଟୋକା ଲୋକ, ଗଜୁରା ଗଜୁରା ଅଧା ଜଣ, ଟକଟକିଆ ଟୋକା ଝଣ୍ଡେ, ଏଭଳିଆ ନୁହେଁ ଅଧିକାରୀ, ପ୍ରକୃତ 'ଅଧିକାରୀ' ବାଘ ପରି ମଣିଷ, ଛେଃ ଏଭଳି। ବିନାୟକ ଓଝା ତା'ର ଅଭିଜ୍ଞତାର ଇତିହାସ ଆଉଣ୍ଡି ଲାଗିଲ, ସେ ବହୁତ ଦେଖିଛି। ତା'ର ଓଠ ବଙ୍କା ହୋଇ ରହିଲ, ନୁହେଁ ହସ, ନୁହେଁ ବିଦ୍ରୂପ।

ରମେଶ ଠିଆହୋଇ ରହିଲ, ତା'ର ଚେତନା ଆଗରେ ଇତିହାସ ନ ଥିଲ କପିଳେନ୍ଦ୍ର ନାହାନ୍ତି, ପୁରୁଷୋତ୍ତମ ନାହାନ୍ତି, କୋଣାରକ ନାହିଁ, ଦେଶ ଓ ଜାତିର ପିଣ୍ଡରଗଢ଼ା ମଣିଷର ବିଶିଷ୍ଟ ରୂପ ନାହିଁ ଇତିହାସର ଅର୍ଥ ନାହିଁ, କିଛି ନାହିଁ, ଚାରିଆଡ଼େ ଖାଲି ପିମ୍ପୁଡ଼ି, ପିମ୍ପୁଡ଼ି, ଭୋକିଲା ପିମ୍ପୁଡ଼ି ବଞ୍ଚିବା ପାଇଁ ଆଧାର ବୋହି ନେଉଛନ୍ତି, ଆଉ ପିମ୍ପୁଡ଼ି ଧାଡ଼ି ଏକାଠି ହୋଇ ମନ୍ଦା ବାନ୍ଧୁଛି ନୂଆ ଅଭିଯାନ ପାଇଁ—ସେ ବଞ୍ଚିବାକୁ ଚାହେଁ।

ଶୀତେଇ ଉଠିଲ, ଖରା ଗଲଣି, ଚାରିଆଡ଼େ ଖାଲି କୁହୁଡ଼ି, ମାଘର ଶୀତ ଅନୁଭବ କଲ।



# ଇତିହାସ

ଐତିହାସିକ ରାଜଧାନୀରେ ଇତିହାସର ପ୍ରଦର୍ଶନୀ ଦେଖିବାକୁ ସାଇକେଲ୍ ଚଢ଼ି ଛୁଟିଛି ଗଦାଧର ପଧାନ । ସେ ସେକ୍ରେଟେରିଏଟ୍‌ର ଜଣେ କିରାନି । ଦିନ ଦିପହର; ଇତିହାସକୁ ମୁଣ୍ଡ ନୋଇଁ ସମ୍ମାନ ଦେଖାଇ ଆଜି ସତେକି କାର୍ଯ୍ୟର କଳ ଅଟକି ରହି ଯାଇଛି । ତେଣୁ ଗଦାଧର ବେଳ ପାଇଛି । ଧଇଁ ସଇଁ ହୋଇ ଛୁଟିଛି ସେ ଧୂଳି କୁହୁଡ଼ି ଭିତରେ, ଝାଳ ଗମ ଗମ ବୋହୁଛି ଏବଂ ବାଟର ସାଙ୍ଗୀ ବାହନଟି ତାର ତାନ ଧରିଛି-'କିଁ-କାଁ-କିଁ-କାଁ ।'

ପ୍ରାଚୀନ ସେ; ଏହି ସାଇକଲଟି । ସତରବର୍ଷ ତଳେ ଟିଉସନ୍ ଟଙ୍କା ଜମେଇ ବାଇଶଟି ଟଙ୍କା ଦେଇ ଗଦାଧର ଏ ପୁରୁଣା ଜିନଷଟି କିଣିଥିଲା । ତା ଆଗରୁ କେତେ ଲୋକ ହୁଏତ ତାକୁ ଚଢ଼ିଥିବେ; ଗଦାଧର ଗବେଷଣା କରି ନାହିଁ । ସାଇକେଲରେ ମାଇଲ୍ ମିଟର ନ ଥାଏ । ତା ପାଖରେ ସୁଖେ ଦୁଃଖେ ଗଡ଼ି ଆସିଛି ସେ ଏତେ ବର୍ଷ । ମଝିରେ ମଝିରେ ତାର ଅଂଶର ବଦଳା ହୋଇ ନାନା ଜାତି ଅଂଶ ମିଶି ସେ ଧରିଛି ଏକ ପ୍ରକାର ନବଲୁଣ୍ଡର ମୂର୍ତ୍ତି ; ତଥାପି ଚାଲିଛି ସେ, ଅଟକି ନାହିଁ ।

ଛୁଟି ଦିନରେ ଭାବ ହୁଏ ସବୁ ; ଟିଉସନ୍—ହୁଁ ।
ତା ସହିତ କେତୋଟି ମୁହଁ, କେତୋଟି ଘରର ଛବି ।
କଅଁଳ ମୁହଁ କାହାର ଗୋଟିଏ, ଦୋଟି ।
ତରଳ ପ୍ରବଣତା ।
ପୁରୁଣା ଗୀତର ଧାଡ଼ିଏ ଦି'ଧାଡ଼ି ।
ଗଙ୍ଗଶିଉଳି ଫୁଲର ଶୁଖିଲା ହାର କେଣ୍ଡାଏ ।
ଯାଃ, ଦୀର୍ଘଶ୍ୱାସ ।
ଚାଲିଛି ତାର କେଁ କଟର ସାଇକଲ, ଅଟକି ନାହିଁ ।
ହୁଁ, ଇତିହାସ, ଇତିହାସ—ଉଡ଼ନ୍ତା ଧୂଳି, ଚହଲା ଢେଉ ।

ମନେ ପଡ଼େ, ହେଇ ସେ ଦିନତ ; ଆଖି ପରୀକ୍ଷା କରିବାକୁ ମେଡ଼ିକେଲ୍‌କୁ ଯାଇ ନିଜ ପାଳି ଅପେକ୍ଷା କରି ପିଣ୍ଡାରେ ଟହଲୁ ଟହଲୁ ହଠାତ୍ ଦେଖିଲା ଇରାକୁ । ସାଲ୍ୱାର ପଞ୍ଜାବୀ ପିନ୍ଧି ଓଢ଼ଣୀ ପକାଇ ତା ଉପରେ ବେକରୁ ଷ୍ଟେଥସ୍କୋପ୍ ଝୁଲାଇ ଶାଢ଼ି ପିନ୍ଧା ଆଉ ଜଣେ ଛୁଟୀ ସହିତ ଇରା ସତେକି ସେ ପିଣ୍ଡା ଉପରେ ପହଁରି ପହଁରି ଯାଉଥିଲା । ଓଃ, କେଡ଼େଟାଏ ହୋଇଗଲାଣି ଇରା ? ସତେ କଣ

ମାଇକନା ଝିଅ ବଡ଼ ଅସୁନ୍ଦରୀ । ଆଜି ଏ ସାଲ୍ୱାର୍ ପଞ୍ଜାବୀ ଓଢ଼ଣୀ—ବିଦେଶୀ ହେଲେ ବି କେଡ଼େ ସୁନ୍ଦର ମାନୁଛି ତାକୁ । ଶୁଣିଥିଲା ସେ, ଇରା ଆସିଛି ।

ନ' ବର୍ଷର ହସକୁରା ଫୁଲୁ'ଟି ଦୁଷ୍ଟ ଇରା ; ଏଇ ଥିଲା ତା'ର ପ୍ରବଣତା । କୁଣ୍ଢେମୋଟ ହୋଇଗଲା ମନ, ସେକାଳର ନଡ଼ୋଲିଆ ସମ୍ବୋଧନ ମନେ ପକାଇ ଆପଣାକୁ ଭୁଲି ତାର ତାଳପକା ମଚ୍ ମଚ୍ ଜୋତାରେ ପାହୁଣ୍ଡ ପକାଇ ବେଗି ବେଗି ପଛକୁ ମାଡ଼ି ଯାଇ ସେ ଚିତ୍କାର କଲା 'ଇରା, ଇରାବତୀ—'

ଆଉ ପ୍ରଶ୍ନଟି ଚୁପ୍‌ଚାପ୍ ଖେଳୁଛି ତାର ଓଠର ହସରେ, ପଚାରିବ ସେ—'ହସ୍ତାକ୍ଷର ଲେଖିଛ ତ ଇରାବତୀ ; ଏଁ ?'

ବିଜୁଳି ବେଗରେ ଘୂରି ଯାଇ ନିସ୍ତବ୍ଧ ହୋଇ ମୁହାଁମୁହିଁ ଠିଆହେଲା ଇରା । କେଡ଼େ ଡେଙ୍ଗା । ଆଖିରେ କି ଚାହାଣୀ ସେ—ରାଗରେ କୁହୁଳୁଛି । ଓଠର ବାଙ୍କରେ କି ସେ ଦର୍ପ ! ଇରା ନୁହେଁ, ଆଧୁନିକା ନାରୀର ଉଦ୍‌ବେଳିତା 'ରୂପାଜି' ଟ୍ୱେଲ୍‌ରେ ଗୋଟିଏ ସ 'ଓ' । ସେହି 'ଓ' ଶବ୍ଦର ଶଭେଲଭଲ୍ ଫାୟାରରେ ତାକୁ ଆହତ କରି ପୁଣି ହଠାତ୍ ଘୂରି ଯାଇ ସ୍ୱଚ୍ଛନ୍ଦ ଗତିରେ ଆଗେଇ ଚାଲିଲା ଇରା ।

ଲାଗିଲା, ଯେପରିକି ତାର ଦଖଲର କାର୍ନି ଭାଙ୍ଗି ମନ ଚୁରି କିଏ ନେଇଯାଉଛି ତାର ଧନ । ଗଦାଧର ଗମ୍ଭୀର ହୋଇ ଇରାର ସାମ୍ନାକୁ ଯାଇ ଅଟକି କହିଲା—

'ଇରା ! ମୁଁ ଗଦାଧର ପଧାନ, ତୋର ମାଷ୍ଟର ।'

'ତୁ' ସମ୍ବୋଧନ କରିବାକୁ ଯେପରିକି ପ୍ରଚଣ୍ଡ ଉଲ୍ଲାସ ଲାଗିଥିଲା ତାକୁ । ଅଥଚ ମନେ ପଡ଼େ, ନ' ବର୍ଷର ଇରାକୁ ବି 'ତୁମେ' ଛଡ଼ା 'ତୁ' କହିନାହିଁ ସେ କେବେ ।

'ସାର୍ ଆପଣ, ଚିହ୍ନି ପାରିଲି ନାହିଁ ମୁଁ ହଠାତ୍, କେଡ଼େ ବଦଳି ଯାଇଛନ୍ତି !''

''ମାନେ''—ଟିକିଏ ବୁଢ଼େଇ ଯାଇଚି ତ, ହୁଏ । କିନ୍ତୁ ତତେ ଠିକ୍ ଚିହ୍ନିଛି ମୁଁ ସେଇ ଇରା ; ଟିକିଏ ମ୍ୟାଗ୍ନିଫାଏଡ୍ ଯଦିଚ—''

ଇରା ହସିଦେଲା । ''ବସାକୁ ଆସିବେ ସାର୍, ବାପା ଆସିଛନ୍ତି ।'' ଦୁହେଁ ଚାଲିଗଲେ ।

ସାଙ୍ଗର ଝିଅଟି ଆଶ୍ଚର୍ଯ୍ୟ ହୋଇ ଅନେଇଲା ତା ମୁହଁକୁ ।

ବସାକୁ ଅସିବ !

ଫଟା କାନ୍ଥରେ ପୁଣି ସେ ଲେପିବ ମାଟି !

ପ୍ରାଣ କାନ୍ଦି ଉଠିଥିଲା । ତା ଅପେକ୍ଷା ବରଂ—ତା ଅପେକ୍ଷା ବରଂ ସେହି ଦିନ ସେ ଚାଲିଣା ଚଷମା ନେଇଥିଲା—ମାଇନସ୍ ଓ୍ୱାନ୍ ।

ଘୃଲଣ୍ ; ଓଃ !

ଛିଗ୍ ସଙ୍ଗେ କାଠର ରସେପା ବାନ୍ଧ ସମ୍ବନ୍ଧ ପାଢବାକୁ ସେ ଯାଇନାହିଁ, ବରଂ ଘୃଲଣା ଚଷମା ନାଇ ନବ୍ରେଲାରେ ବସି ଲେଖିଥିଲ ଗୋଟିଏ କବିତା— ଘଗପ୍ରଧାନ ।

'ଜ୍ୟାଁସ ଯେବେ, ଆସିବ ମାଡ଼ି, ଚଇତ ସାର, ଭୁଟାଇ, ସବୁ ମଉଛବ—

ଗୋହଗ୍ ପଥେ, ପୁରବ ଘଡ, ନ ଥିବେ ସାଥି—ଯାଃ, ଅଉ ମନେ ପଡ଼ୁନାହିଁ କଣ ?

ନ ପଡ଼୍, କେତେ କବିତା ଝଡ଼ି ପଡ଼ି ହକଛୁ ଏଇ ସଡ଼କ ଧୂଳିରେ । ଆଉ ନଜ ରଚତ ଗୋଟାଏ କବିତାର ଧାଡ଼ି ଗଲେ ଯାଉ ; ଯାହା ଅଛି ସେଇଥିରେ ଚଳିଯିବ ତାର ।

ତା ପରେ ଘୋଡ଼ା ପିଠିରେ କାଦମ ଘୃଲର ଝାଙ୍କ ଦେଲ ପର କାଠୁଆ ସିଟ୍‌ରେ ଝାଙ୍କ ଦେଇ ଦେଇ ତାଲ ରଖି ରଖି ଅନ୍ୟମନସ୍କ ହୋଇ ସେ ଗୁଣୁ ଗୁଣୁ ହୋଇ ଗଲ—

'ଜ୍ୟାଁସ ଯେବେ ଆସିବ ମାଡ଼ି, ଚଇତ ସାର, ଭୁଟାଇ ; ସବୁ ମଉଛବ । ଗୋହଗ୍ ପଥେ ପୁରବ ଘଡ, ନ ଥିବେ ସାଥି, ହୁଁ ହୁଁ ହୁଁ—ହୁଁ ହୁଁ ହୁଁ—ହୁଁ ।

ଝଡ଼ି ପଡ଼ୁଛି; ଝଡ଼ି ପଡ଼ୁଛି—ଗଛନ୍ତୁ ପତ୍ର ; ଦେହନ୍ତୁ ଆୟୁଷ, ଆୟୁଷରୁ ସ୍ୱପ୍ନ ।

'ହୁଁ ହୁଁ ହୁଁ ହୁଁ ହୁଁ—'

କିଁ-କାଁ—କାଁ-କାଁ—ବେସୁର ସାଇକଲ୍ ।

"ହେଇ—ହେଇ—ହେଇ—ହେଇ" ପଛନ୍ତୁ ଘୋଡ଼ାଗାଡ଼ି ।

ବଡ଼ ସହର ବଡ଼ ନଈରେ ପହଞ୍ଚିଲଣି ସେ, ଏଣିକି ପ୍ରଚଣ୍ଡ ଗହଳି ।

ବଡ଼ ସହର ପ୍ରଦର୍ଶନୀ ଦେଖି ଘୃଲଛି ।

କିଏ ଗଲା ଘୋଡ଼ାଗାଡ଼ିରେ ?

ସେମିତି ତ, ଝକ ଝକ ଘୋଡ଼ାଗାଡ଼ି, ପ୍ରଚଣ୍ଡ ଧଳା ଘୋଡ଼ା, ଭ୍ରେଜନ ଘଣ୍ଟାର ନାଦ ପର ତାର ଘଣ୍ଟି ଶବ୍ଦ ।

ଛୁଟି ଘୃଲଲ ଗଦାଧର ତାର ପଛେ ପଛେ, କରକୁ ।

ମୁହଁର ଫାଳେ ପାଇଲ, ତା ପରେ ଦୃଶ୍ୟକୁ ଆକ୍ରମଣ କଲ ଗୋଟାଏ ଅସୁରିଆ ଟ୍ରକ । ଲୁହା ଛଡ଼ ବୋଝେଇ ହୋଇଛି, ପଛରେ ଧୂଳିର କାନ୍ଥ ଗଢ଼ି ଘୃଲଛି ।

ସେହି ଫାଳେ ମୁହଁ, ଅଖାଡର ଗୋଟାଏ ଚନ୍ଦ୍ରା ମୁହଁର ଝୁଲକାଏ ।

ସୁଜାତା ସେନ୍ ।

ଅଜ ସେ ଇତହାସ ।

ଗାଡ଼ି ପଛେ ପଛେ ଗାଡ଼ି କରରେ ଅନ୍ୟମାନଙ୍କ ସଙ୍ଗେ ପ୍ରତିଯୋଗିତା କରି ସାଇକ୍ଲ ସନ୍ଧରେ ସାଇକ୍ଲ ଠେଲି ଜୀବନକୁ ତୁଚ୍ଛ କରି ଦେଇ ଗୋଟାଏ ଆବେଗ; ସଙ୍ଗେ ସଙ୍ଗେ ଧାଇଁବାର ନିଶା । ସେ ବି ଅନ୍ୟ ବାଟ ନେଇ ଫୁଟିଥିଲି ଦିନେ ତା ହାତର ଗୋଟିଏ କବିତାରେ । ଗଦ୍‌ଗଦେଇ ଉଠୁଛି ମନେ ମନେ ।

'ମିଳନ ହେବ ମୋର, ନଈର ସେ ପାରରେ—
ଉଆଁସି ରାତ୍ରି ଯହିଁ, କାଳର ଲୁହ ଢାଳେ ।
କାଅଁଳ ନଈ ସୁଅ, ଯହିଁ ଗୋ ଥିରି ବହେ—
ଅନ୍ଧାର ସନ୍ଧି ସନ୍ଧି ପବନ କଥା କହେ ।'
'ମିଳନ ହେବ ମୋର—'
ଗାଡ଼ି, ମଟର ଟ୍ରକ, ରିକ୍‌ସା, ପଦାତିକ—ଗ୍ରୀଷ୍ମ କଲରୋଳ ।
ସାଇକେଲ୍ ଚଢ଼ି ଗ୍ଲୁଲିଛନ୍ତି କେତେ ଝିଅ—ସାଲ୍‌ବାର ପଞ୍ଜାବୀ, ଓଢ଼ଣୀ—

କେତେ ଯୁବା, ମୁହଁରେ ନିଶ ଦାଢ଼ୀ ପ୍ରଚୁର । କେବଳ ଅଖି ତଳର ହାଡ଼ର ରୂପ ଓ ବୁଲୁଥିବା କାଳର ପାନ ସୂଚନା ଦେଉଛି ସେମାନେ ପଞ୍ଜାବୀ ଆଶ୍ରୟପ୍ରାର୍ଥୀ ନୁହନ୍ତି, ଥାନୀ ରଇତ ।

କେତେ ମଟର, କେତେ ମଟର, କେତେ ମଟର ।
ହାତକଟା କୋଟ୍, ପ୍ୟାଣ୍ଟ । ମୁହେଁ ମୁହେଁ ସିଗାରେଟ୍ ଓ ଇଂରାଜୀ ।
ରାସ୍ତା କରେ କରେ 'ଗ୍ରୀନ୍ ବାର୍'—'ବ୍ଲୁ-ବାର୍' ମଭ୍ ବାର୍'
'ଦି ପଞ୍ଜାବ୍ ଟେଲର୍ସ—'
'ଦି କାକାନାଡ଼ା ରେଷ୍ଟୁରେଣ୍ଟ୍ସ ।'
'ଦି ହାଇଦରାବାଦ୍ ହୋଟେଲ୍ ।'
'ଦି ଗ୍ଲଇନକ୍ ଡ୍ରେଣ୍ଟିଷ୍ଟ ।'
'ଦି ଇଣ୍ଡୋନେସିଏନ୍ ବ୍ୟାଙ୍କ୍ ।'
'ଦି କଲିଙ୍ଗ ଟପ୍ ହ୍ୟାଟ୍ ଫ୍ୟାକ୍ଟ୍ରି ।'

କିଏ ସେ ଏମାନେ ? 'କଅଁଳ ନଈ ସୁଅ'କୁ ହଠାତ୍ ମୁହଁ ଟେକି କୂଳର ଏ ନୂଆ ଦୃଶ୍ୟକୁ ଦେଖୁଛି ସତେକି ସେ ନୂଆ କରି । ଆଖିରେ ଝାଇଁ ଝାଇଁ ହାଣୁଚି ଆଲୁଅ ।

ଏମାନେ ଇତିହାସ ।

ଦେଶରେ ଏତେ ପରିବର୍ତ୍ତନ, ଶୋଇଥିଲି ସେ କିଣ୍ଟୁସ୍ତ ।

ଫାଇଲ୍ କୁଢ଼ ପାଖ ସେ ଶୋଇଥିଲି ।

ନିତି ଦଶରୁ ପାଞ୍ଚ; ଦଶକୁ ଜଗି ଯିବା ଉଦ୍ଦେଶ୍ୟରେ ସକାଳ ୯ଟା ବେଳେହିଁ ପ୍ରସ୍ତୁତ ହେବାକୁ ପଡ଼େ । ଶୀତ, ବରଷା—ଘରର ଧନ୍ଦା; ପୁଷ୍ଟୀଣ ଗ୍ଲକର ଶ୍ରେଣୀ ଲୁପ୍ତ । ପାଞ୍ଚଟାକୁ ଜଗି ଫେରିବା ସକାଶେ ଘରେ ପହଞ୍ଚୁ ପହଞ୍ଚୁ ସଞ୍ଜ । ସକାଳୁ

ଉଠିଲା ପରେ ୯ଟା ଯାଏଁ ଏଇ ତିନିଘଣ୍ଟା ସେ ଦେଖେ ଦିନ; କିନ୍ତୁ ତହିଁରୁ ଦେଢ଼ ଘଣ୍ଟା ଯାଏ ଘର କାମରେ । ବାକି ଦେଢ଼ ଘଣ୍ଟାରୁ ନିତ୍ୟକର୍ମ ନିଏ ପଇଁଚାଳିଶ ମିନିଟ୍ ।

ବାକି ପଇଁଚାଳିଶ ମିନିଟ୍ ; ଅବଶ୍ୟ—କିନ୍ତୁ ସେ ମ୍ରିୟମାଣ ଥାଏ ଘରର ଦୁରବସ୍ଥା ଭାବି । ମାସ ଶେଷରେ ପାଞ୍ଚ ବସ୍ତା ଚାଉଳର ତିନଖାର ଗ୍ରେଟ୍ ଫେଣ୍ଡ ଅଣ୍ଟେ ନାହିଁ ପନ୍ଦର ଦିନରୁ ବେଶୀ । "କ ପ ଛ ମକ ଚଟଉ—କଟକ ସହର ବଡ଼ ମହରଗ—ଟଙ୍କ ପଠବତ ପଠବ ନହଲ ମରବ"; କିନ୍ତୁ 'ଟଙ୍କ ପଠବ' କିଏ ? ପିତୃଦେବ ଶାନ୍ତିରେ ନିଶ୍ୱାସ ଛାଡ଼ି ସ୍ୱର୍ଗବାସୀ ହେଲେଣି ବହୁଦିନୁ । ତା ପରେ ଅବସର ସମୟ ଟିକିଏ ପାଇଲେ ତାର ଦରିଦ୍ରର ଅବଲମ୍ବନ କବିତା ଖାତାଗୁଡ଼ିକ; ଯେ ଛପାହେବ ବୋଲି ସେ କେବେ ଆଶା କରି ନାହିଁ । ଏକାଠି ହେଲେ ଜାଲି ଗ୍ୟ' କପେ କରିବ କହି କହି ସେଗୁଡ଼ାର କଲେବର ବଢ଼ାଇ ଚାଲିଛି ।

ନିରୁବା ସେ ଓ ତାର ଦୁଶ୍ଚିନ୍ତାର ମେଘ ମୁହାଁମୁହିଁ ।
ହେଇ, କଲେଜ୍ ଫାଟକ୍ ।
"ଛୁଟିଲ୍ ଆବେ ଛୁଟିଲ୍—"
"ଆବେ ଶ୍ଳାଃ ଗଦା—"

ଚାଲିଛି ସାଇକଲ ଛୁଟେଇ ଚାରଫୁଟ ଉଞ୍ଚ ପାତଳା ସୁଶୀଲ୍ । ଯେମିତି ଥିଲା ସତର ବର୍ଷ ତଳେ ସେମିତି । ସେତେବେଳେ ସେ ଘୋଷି ଦେଉଥିଲା ବଡ଼ ବଡ଼ ବହି ; ଯଦୁନାଥ ସରକାରଙ୍କ ଇତିହାସରୁ ଦି ଚାରି ଖଣ୍ଡ କଣ୍ଠସ୍ଥ କରିଥିଲା । କିନ୍ତୁ ପରୀକ୍ଷାରେ ବସିଲେ ବାହାରେ ତାର ମୌଳିକତା । ସେତେବେଳେ ଆକବରଙ୍କ ରାଜ୍ୟଶାସନ ପଢ଼ିଲେ ସେ ଲେଖେ ଔରଂଜାବଙ୍କ ପୁରା ରାଜତ୍ୱ, ଅବିକଳ ଲାଇନକା ଲାଇନ ।

ଜନ ସମୁଦ୍ରରେ ହଜିଲଣି ସୁଶୀଲ ।
ଠେଲାଠେଲି ହୋଇ ଚାଲିଛନ୍ତି ଦଳକୁ ଦଳ ।

ଗଦାଧରର ଛାତି ଫୁଲି ଉଠିଲା । ସତେକି ପୁଣି ଫେରି ଆସିଛି ପୁରୁଣା ସମୟ । ଏ ବିଶାଳ କଲେଜ୍, ଠିଆ ହୋଇ ରାସ୍ତା ସେପାଖର କଳର ଚିମ୍ନି ଆଡ଼କୁ ଅବଜ୍ଞାରେ ଅନେଇଁ ରହିଛି ଯେ ଜ୍ଞାନର ଦର୍ପରେ—ଏ କଲେଜ୍ ତାର, ତାର କଲେଜ୍ ଏ । ଛ ବର୍ଷର ଘନିଷ୍ଠ ସମ୍ବନ୍ଧ, ଏହି ତାର କୃତିତ୍ୱର କ୍ଷେତ୍ର ।

କେତେଟା ବର୍ଷର ପରସ୍ତ ପରସ୍ତ ଘଟାଟୋପ୍ ଫୋପାଡ଼ି ଦେଇ ଚେଇଁ ଉଠିଲା ତା ଭିତରୁ ନୂଆ ବ୍ୟକ୍ତିତ୍ୱ । କଲେଜର ଫାଟକ ପାଖେ କାୟ କଳ୍ପ ହେଲା ତାର । କିଏ ସେ ଗଲେ ମଟରରେ ? ଓଃ, ମିଷ୍ଟର ଦଣ୍ଡସେନା ଓ ଓ ମିସେସ୍ । ଦଣ୍ଡସେନା ତାର ଉପରିକ । ତାଙ୍କ ପାଖେ ସେ ଠିଆ ହୁଏ । ସେ ବସି ବସି ହୁକୁମ ଦିଅନ୍ତି ; କଡ଼ା ହାକିମ । ପୁଣି ଗଲେ—ମିଷ୍ଟର ରାୟଗୁରୁ ;

ପୁଣି,—ଖାଁ ସାହେବ୍ । ରାୟ ବାହାଦୂର, ରାଓ ସାହେବ ମିଷ୍ଟର୍ ଚଟ୍ଟ୍ରେଜ—ଉପଗକ ଦଳ । ଯାଉଛନ୍ତି; ସେମାନେ । ଗୁଡ ଫ୍ରେଲେଇ କଲେଜର ଚୂଡ଼ାକୁ ସୃଷ୍ଟି ରହିଚ ତାର ନୂଆ ବ୍ୟକ୍ତିତ୍ୱ; ସେ ଏଠି କୃତୀ ଗ୍ରୁଜ । ଆଇ.ଏ.—ବି.ଏ.—ଏମ୍. ଏ. ଫାଷ୍ଟ ଡିଭିଜନ୍—ଫାଷ୍ଟ କ୍ଲାସ—ଫାଷ୍ଟକ୍ଲାସ ଫାଷ୍ଟ ।

ସାମ୍ନାରେ ହେଇ,—ଜନର ବର୍ଗଟ—ସମତଳ ।

ଯାଉଛନ୍ତି ସେମାନେ—ଶ୍ରେଣିକ, ଗଣକ, ସନ୍ଧିବିଗ୍ରହିକ, ମହାମାତ୍ୟ, ଭୂଡ଼ାଲେଙ୍କା, ମାଣ୍ଡଳିକ, ଉପଗକ ଯେତେ ।

ଯାଉଛନ୍ତି ସେମାନେ,—ନବାବ୍,—ସୁବେଦାର,—ସିପାହି ସର୍ଦ୍ଦାର—କାଜି—କତ୍ୱାଲ ।

ଯାଉଛନ୍ତି ସେମାନେ,—ସେକ୍ରେଟେରୀ —କଲେକ୍ଟର—ଏସ୍. ପି.—ଏସ୍. ଡି. ଓ. ।

ଏ ତାର ତ ଉଦନ୍ତ ପୁଷ୍ପ ବହାର; ପୁଷ୍ପଗିରି ବହାର । ଗ୍ରୁଜ ସେ ଏଠି, କୃତୀ ଗ୍ରୁଜ । ସେ ଐତିହାସିକ, ସେ କବି ।

ତାର ସ୍ୱପ୍ନ ଭାଙ୍ଗିଲା । ଶୁଣିଲା ସେ ଯେତେବେଳେ ପଛୁ କିଏ ଝିଅଟିଏ କହୁଛି—

"ଆରେ, ଭଣ ଦୁଷ୍ଟ ଆପଣ, ଯାଃ ।"

ହସି ହସି ବାହାରି ଆସିଲେ ଦଳେ ପୁଅ ଝିଅ । 'ଦୁଷ୍ଟ ଆପଣ' ଓ ତାଙ୍କ ସଙ୍ଗୀମାନେ ସୁଟ୍ ପିନ୍ଧି ଫିଟ୍ ଫାଟ୍ । ଝିଅମାନଙ୍କ ବେଶରେ ପ୍ରାଚ୍ୟକଳାର ଅପରୂପ ଭଙ୍ଗୀ, ସୃଷ୍ଟି ରହିଲା ଗଦାଧର ପଧାନ । ପଛରୁ ଆସିଲା ସାଧା ଶାଢ଼ୀପିନ୍ଧା ଫୁଲ୍ଫୁଲୁମୁଣ୍ଡୀ କଣୋଇଟିଏ, ଗଦାଧର ଲକ୍ଷ୍ୟ କରିନାହିଁ ତେବେ । ମନେ ମନେ ବାଜୁଛି ଗୋଟିଏ ବ୍ରତଗୃହ ଗୀତ ହଠାତ୍—"କାଠିର୍ ଖ୍ୟାଲ ଖ୍ୟାଲେ' ଫୁଲ୍ଫୁଲୁମୁଣ୍ଡୀ ଲୋକ ଗହଳିକୁ ଭ୍ରୂକ୍ଷେପ ନ କରି ହଠାତ୍ ତାକୁ ଦଣ୍ଡବତ ହେଲା "ଦଣ୍ଡବତ ମାମୁଁ ।"

"ଆଲେ ଗୁଣ୍ଡୁରି, ତୁ ? ଓ ସତେତ, ତୁ ପଢ଼ୁଚୁ ପରା ! କୋଉ ଇଅର ତୋରଟି ?"

"ଫିଫଥ୍ ଇଅର ପରା; ତମେ ଦମା ଆସୁନ ଆମ ଘ'ଟିକି । "

"ନାଇଁ ନାଇଁ, ମୁ ଯିବ ।" କଥା ଗୁଡ଼ାକ ଖନ ଲଗିଗଲା ସେପଗିକ । ଗୁଣ୍ଡୁରି ଦଳରେ ମିଶିଗଲା । ଧୀରେ ଧୀରେ ଆଗକୁ ମାଡ଼ିଲା ଗଦାଧର ।

ସତେତ, ଗୁଣ୍ଡୁରିର ଫିଫ୍ଥ ଇଅର । ନିକଟ ସମ୍ପର୍କରେ ଗୁଣ୍ଡୁରି ତାର ଭଣିଜୀ ହୁଏ; କିନ୍ତୁ ଏ ବଡ଼ ସହରରେ ଅନେକ ଭଉଣୀ ଅନେକ ଭଣିଜୀ ରହିଛନ୍ତି ବଛି ନିଆ ହୋଇ, ଦିନଯାକ ଯାଏ କାମରେ, ସମସ୍ତ ହୁଏ ନାହିଁ ।

ବାଟେ ବାଟେ ଚେତନାରେ ଛୁଇଁ ଫୋଡ଼ ଫୋଡ଼ ମୁଣ୍ଡ ଭିତରେ ଲେଉଟି

ପାଉଚି ହେଲ ଗୋଟାଏ ଧାଡ଼ି, ଗୁଣ୍ଡୁଶର 'ଫିପଥ୍ ଇଅର—ଗୁଣ୍ଡୁଶର ଫିପଥ୍ ଇଅର ।' ଗୁଣ୍ଡୁଶର ଜନ୍ମ ବେଳେ ନର୍ସ ଡାକ ସେ ଯାଉଥିଲା ଶୀତଦିନ ରାତିରେ ।

ଗୁଣ୍ଡୁର ସେତେବେଳେ କଷ୍ଟ ଦେଇଥିଲା, ଆଜି ବି ।

ଗୁଣ୍ଡୁଶର ଫିପଥ୍ ଇଅର, ସତେତ !

ଏବେ ଗୁଣ୍ଡୁଶ ତାଠୁଁ ଆହୁରି ନାମାଜାଦା ଗ୍ରହୀ, ସେ ରେକର୍ଡ ବ୍ରେକ କରିଛି ହୁଣ୍ଡିରେ ।

ଅଟଳ କି ସଚଳ, କି ନିସ୍ତମ୍ଭର ।

ଧୀରେ ଧୀରେ, ଫିକା ମୁହଁ ତେଜି ଉଠିଲା ।

ଅଦୃଶ୍ୟ ଗୁଣ୍ଡୁଶର ଭିତରେ ଆଗ୍ରସ୍ତ ନେଇ ଗଦାଧରର ବ୍ୟକ୍ତିତ୍ୱ, ତଥାପି ମୁଠେଇ ଧରିବାକୁ ଲାଗିଲା ତାର ଅତୀତକୁ ।

କିନ୍ତୁ ସାମ୍ନାରେ ବନ୍ଧୁ କରୁଣାକର ଓ ଗୋଲକ—ସେମାନେ ତାର ସହପାଠୀ । ଡେଙ୍ଗା କରୁଣାକର, ଅଠ ବଡ଼ ତାର ବେକର କଣ୍ଠା, ମୁଣ୍ଡବାଳ ପାଚିଲଣି ଫାଳେ ଫାଳେ । ଗୋଲକ ଗୋଲଗାଲ, ମୁଣ୍ଡ ଚନ୍ଦା ଚକ୍‌ଚକ୍, ପେଟଟି ଢୋଲ ।

"ଦବଟି ଦବଟି ପାନ"—କରୁଣାକର କହିଲା ।

"ଆଏ ଗଦେଇ ଖାଇବା ହଏ—କିଁ ଏକା ଏକା; ଘର ମଣିଷଙ୍କୁ ଆଣିଲ ନାହିଁ କିଁୟା ଏ ?" ଗୋଲକ କହିଲା ।

"କହୋ ଗୋଲକ ! ଦାନ୍ତଗୁଡ଼ା ଚବାକ ଗଲା ପେ; ଫେର ଓ୍ୱାଲରସ ପଣ ଢ ପାଖେ ତ ମେଷ୍ଟା ରଖିଚ କାହିଁକି ?"

"ଓ ଥାଉ, ଏ ଦାନ୍ତ ପାଇବ ନାହିଁ କଏ ? ବଅସ ହା ଗ୍ଳାଣି ତେହିଁ ଗ୍ଳର ହେଲାଣି, ଆଉ କିଁ ବାକିଚ ?"

"ମୋର ବି ଗୋଟାଏ ଗଳୁଣି ।" କରୁଣାକର କହିଲା, "ତୁମେତ ଦିନକୁ ଦିନ ମୋଟା ହୋଇଯାଉଚ । କଣ କିବ ବୋଲି ନା କଣ ?"

"ଆଉ କଣ ଖାଇ ମୋଟା, ମାସକୁ ପାଞ୍ଚ ବସ୍ତା ଚାଉଳ । ତହିଁରେ ଏ କଣ୍ଟ୍ରୋଲ ବଜାର, ମହଙ୍ଗା କାଳ ।"

"ଖାଇ କହନା, କହନା"—କରୁଣାକର କହିଲା । "ତହିଁରେ ଅଫିସରେ ଯୋଉ କାମ, ଆଜି ସାହେବ କିଁ କହିଲା ଯାଉଁଲ ?"

ସାହେବ— ଅଫିସ—ଅଭାବ ଓ ଦୁର୍ଦ୍ଦଶା ।

ଗପୁଡ଼ି ହେଇଯାଉଛି କରୁଣାକର । ଅଭାବ ତାର ବୟସ । ବଢ଼ାଇ ଦେଇଛି ଆହୁରି ଦଶବର୍ଷ । ହୁଏତ ସେ ଚାହେଁ ଉଷୁମ ଉମେଇଁ ବା ଗୋଟିଏ ଉଷୁମ ଚା କପ ଓ ଶ୍ରୋତା ଜଣେ, ଯେ ତାର କାହାଣୀ ଶୁଣି ଦୁନିଆର ଅବସ୍ଥାରକୁ ତା ସାଙ୍ଗରେ ଝିଙ୍ଗାସିବ । ବୁଢ଼ା ଆଖିରେ ଦୁନିଆଁ ଖାଲି ଅବସ୍ଥାର ଓ ଅଭିଯୋଗର ଖଣି ।

ଅଥଚ ଏଇ କରୁଣାକର ଥିଲା ଦିନେ—

ଗଳ୍ପ କଥା । ଇତିହାସ, ଇତିହାସ ସବୁ ଝଡ଼ି ପଡୁଛି ।

ଧାଡ଼ିହୋଇ କ୍ଲାସଘର ଦିଶୁଛି; କିନ୍ତୁ ଆଉ ଉତ୍ସାହ ନାହିଁ ।

ଆଖିରେ ଦିଶୁଛନ୍ତି କେବଳ ହୃଷ୍ଟପୁଷ୍ଟ ସୁବେଶ ମଣିଷ । ଦିଶୁଛି ଧାଡ଼ିହୋଇ ମାଳ ଲମ୍ବିଥିବା କାର୍‌ଗୁଡ଼ାକ । ଇତିହାସ ପ୍ରଦର୍ଶନୀ ଦେଖି ଆସିଛନ୍ତି ସହରର ବିଶିଷ୍ଟ ବ୍ୟବସାୟୀମାନେ ; ରଣଛୋଡ଼୍ ମଲ୍ କଙ୍କଡ଼ଓ୍ୱାଲ ପ୍ରମୁଖ ।

ହଠାତ୍ ଗଦାଧର ଉପରେ ମାଡ଼ି ହୋଇ ବସୁଛି ଅତୀତର ସେଇ ଛଅଟା ବର୍ଷପାଇଁ ଶୋକ ଓ ଅନୁଶୋଚନା । ଛ' ଛଟା ମୂଲ୍ୟବାନ୍ ବର୍ଷ—ବୃଥା ଗଲା । ଛ' ବର୍ଷରେ ପାନ ଦୋକାନ ହୁଏ ମନୋହାରୀ ଦୋକାନ; ଛ ବର୍ଷରେ ମଟର କ୍ଲିନର୍ ହୁଏ ମଟର ମାଲିକ ।

ଆଉ ସେ !

ଏ କ୍ଲାସଘରକୁ ଚାହିଁଦେଲେ ଶୁଭିଯାଉଛି ସେପଣ୍ଟ—ବ୍ୟୁଟିଫ୍ୟାଲସ୍ ଇଜ୍ ଏ ଦ୍ୱର୍ଷ । ଏହି ତାର ଲଜିକ୍ ଘର ।

ଆଉ ପାଖ ଶୁଭିଯାଉଛି ଅତୀତର ଦୂର କୁହୁଡ଼ିରୁ—

ଓ କୁକ୍ ; ଶ୍ୟାଲ୍ ଆଇ କଲ୍ ଦ ଏ ବାର୍ଡ ?

ଅର ବଟ୍ ଏ ଵ୍ଲାଇଦ ଲିଟଲ୍ ଥିଙ୍ଗ ।

ଦଶି ଯାଉଛି ବର୍ଷପରେ ବର୍ଷ, ଗୁଲିଛି ସେଇ ଏକା କଣ୍ଠରେ ।

ଓ କୁକୁ ; ଶ୍ୟାଲ ଆଇ—

ସମାଧାନ ନାହିଁ—ଏ ବାର୍ଡ ଅର୍ ଏ ଵାଇଡ୍ ଲିଟ୍‌ଲ୍ ଥିଙ୍ଗ । ଟୁ ବି ଅର ନଟ୍ ବି, ଦ୍ୟାଟିଜ କ୍ୱେଶ୍ଚନ ।

ସମାଧାନ ନାହିଁ—ସମାଧାନ ନାହିଁ—ସମାଧାନ ନାହିଁ—ତା ପରେ ଇତିହାସ ?

ଓଃ, ଛ ବର୍ଷ !

ଏଇ ଫାଟକ ପାଖେ ଥିବା କଥା ଚଇତନର । କାହିଁ ସେ ? ଛ' ବର୍ଷ ତାକୁ ଏଠି ସେ ମୂର୍ତ୍ତିପରି ଠିଆହୋଇ ରହିବାର ଦେଖିଛି । ଆଜି ସେ ନାହିଁ; ସେମିତି ନାହାନ୍ତି ଅନେକ ।

ପିଲ ଦଳେ କହି ଆସୁଛନ୍ତି "ଆମ କଲେଜଠୁଁ ବଳି—ଆମ କଲେଜ । କାହାର ?

ଏଥର ପ୍ରକୃତରେ ଗଦାଧର ପଧାନ ସ୍କୁଲର ପ୍ରଦର୍ଶନୀ ଦେଖି ।

"ଆରେ, କଇଁଠୁ ?"

"ମୁଁ ଆଜି ପରା ଆଲହାବାଦରୁ ଡେଲିଗେଟ ହୋଇ —"

"କାଣ୍ ପ୍ରଫେସର୍ ହେଲଣି ।?"

"ହ୍ୱାଟ, ତ୍ରିଶ ବର୍ଷର ଲେକ୍‌ଚରର କାମ; ପ୍ରଫେସର ଏତେ ଚଞ୍ଚଳ କେମିତି ହେବ ?"

କୃଷ୍ଣେନ୍ଦୁ ତା ବନ୍ଧୁର ସାନ ଭାଇ, ହେଇତ ସେ ଦିନ ମାଇନର ପଢୁଥିଲା ।

କୃଷ୍ଣେନ୍ଦୁ କହିଲା "ଆଚ୍ଛା ଆପଣ ଯେ ଗବେଷଣା କରୁଥିଲେ ହର୍ଷବର୍ଦ୍ଧନ ପ୍ରକୃତରେ ଶୈଳୋଦ୍ଭବ ବୋଲି କଣ ହେଲା ? ମୁଁ ଆପଣଙ୍କର ଯୋଉକଯାକ ଲେଖା ଜର୍ଣ୍ଣାଲରେ ପଢ଼ିଥିଲି । ବଡ଼ ଚମତ୍କାର ଲାଗିଲା, ଆପଣ ଚଞ୍ଚଳ ଥିସିସ୍ ଶେଷକଲେ ସିନା ହନ୍ତା ।"

"ଆଉ କଣ ହବ । ବେଳ କାହିଁ, କିଏ ବା ଏନ୍‌କାରେଜ୍ କରୁଛି ? ତମେ ପିଲାଏ ସେସବୁ କର । ଆମେ ବୁଢ଼ା ହେଲୁଁ, ଏମ୍. ଏ. ପାଶ୍ କରିବାର ହେଲାଣି ତେର ବର୍ଷ । ଆଉ କଣ ଥାଏ ?"

"ଆପଣ ଲେକ୍‌ଚରର ହୋଇ ରହିଥିଲେ କେଡ଼େ ଭଲ ହୋଇଥାନ୍ତା ।"

"ଥ୍ୟାଙ୍କ୍ସ ଗୁଡ୍ ।"

ଅତୀତର ପ୍ରେତ ତାର ପଛେ ପଛେ ।

ଢୁକିଗଲା ସେ ଗୋଟିଏ ପ୍ରଦର୍ଶନୀ ଘରେ । ଶହ ଶହ ବର୍ଷର ଅତୀତ ମଝିରେ ତାର ଦଶ ପନ୍ଦର ବର୍ଷର ଅତୀତକୁ କେଉଁଠି ହଜାଇ ଦେଇ ପୁଣି ସେ ଝୁଙ୍କି ପଡ଼ିଲା ଶିଶୁର କୁତୂହଳ ଫୁଟାଇ କାଚର ସୋ'କେସ୍ ମାନଙ୍କ ଉପରେ ।

ସଜାହୋଇ ରହିଛି କାଚ ଭିତରେ—ଅତୀତର ମଉଳା ପୃଷ୍ଠା; ଯୁଗ ଯୁଗର ଧୂଳି ।

ତାଳପତ୍ରର ପୋଥି, ହଳଦିଆ ପଡ଼ିଥିବା କାଗଜ ଓ ଖାତାପତ୍ର, ତମ୍ବା ପାତିଆ, ନାନା ଜାତିର ମୁଦ୍ରା, ଭଙ୍ଗା ପଥର, ଭଙ୍ଗା ହାଣ୍ଡି, ମୂର୍ତ୍ତି, ଅଳଙ୍କାର, କାନ୍ଥରେ ବଡ଼ ବଡ଼ ଛବି ।

ବଡ଼ ସହରର ବଡ଼ ପ୍ରଦର୍ଶନୀ ଦେଖୁଛି ।

ମୂଷା, ମନ୍ତ୍ରୀ, ବୃକ୍ଷ, ଅଧ୍ୟାପକ, ବନ୍ଧୁ କାରିଗର, ମାରୁଆଡ଼ି ଲୁଗା ବିକ୍ରେତା, କର୍ମଚାରୀ, ଗୁଡ଼ାଖୁ ଦୋକାନୀ, ରେଳଗାଡ଼ିର ଗାର୍ଡ ସାହେବ, ଖଜଣା ମାଲିକ, ଛୁଞ୍ଚ ଓ୍ୱେଲ୍‌ଡରେଟ—ଅସଂଖ୍ୟ ସେମାନଙ୍କର ସ୍ତର ।

ରାଜନୈତିକ ନେତା, କର୍ମୀ, ଦେଓ୍ୱାନ୍ ବାହାଦୁର, ଟେରରିଷ୍ଟ, ସାମ୍ୟବାଦୀ, ଜନସେବୀ, କଂଗ୍ରେସୀ, କମ୍ୟୁନିଷ୍ଟ, ଜମିଦାର, ହିନ୍ଦୁ ମହାସଭା, ମୁସଲମ ଲିଗ୍—ଅସଂଖ୍ୟ ସେମାନଙ୍କ ସ୍ତର ।

ସୂର୍ଯ୍ୟୋଦୟ, ସୂର୍ଯ୍ୟାସ୍ତ, ରାତ୍ରି-ଅସଂଖ୍ୟ ସେମାନଙ୍କ ସ୍ତର ।

ଇତିହାସର ସମତଳ, ବରବୁଦୁରର ଶେଷ ପରସ୍ତ; ତା ଉପରେ ପ୍ରକାଣ୍ଡ ବୃକ୍ଷ, କାହିଁ ?

"ପନ୍ଦର ଟଙ୍କା ବା'ରଣାରେ ପ୍ରକାଣ୍ଡ ଦୁର୍ଗୋତ୍ସବ, ହଜାରେ ଲୋକ ଭୋଜ ଖାଉଥିଲେ ଯେ। ଦେଖନ୍ତୁ ଆଜ୍ଞା ଫର୍ଦ୍ଦଟା ଥୁଆ ହୋଇଛି, ଅଠରଶ ସତର। ହେଃ ହେଃ ହେଃ,— କି କାଳ ସେ ଥିଲା? ଆଉ ଆଜି! ହେଇ ଦେଖନ୍ତୁ ନା, ବଙ୍ଗଳା ଅକ୍ଷରରେ—"

"ସତେ?"

ଅଠରଶ ସତର! ଓଡ଼ିଶା ମାଟିରେ ଭାରତର ପ୍ରଥମ ଜାତୀୟ ସମର। ଜଗବନ୍ଧୁ, ଘରପୋଡ଼ା, ମଣିଷମରା, ଖଣ୍ଡାଏତ, ଶୀକାର, ଛୋଟ ଛୋଟ ଦୁର୍ଗର କାନ୍ଥ ଭଙ୍ଗା। ଲିଙ୍ଗା ସାଓଁତ, ବକ୍ସି ଜଗବନ୍ଧୁ ବିଦ୍ୟାଧର, ବାମଦେବ ପଟ୍ଟଯୋଶୀ, ପଦ୍ମଲଭ ଗ୍ଲେଷ୍ଟ୍ରା, ଫେର ଶୌର ଖଣ୍ଡାସ୍ତ୍ର।

ଫେଣେ ପନ୍ଦର ଟଙ୍କା ବାରଣାରେ ପ୍ରଚଣ୍ଡ ଦୁର୍ଗୋତ୍ସବ। କିଏ କଲା? କିସନ୍ ଚନ୍ଦ୍ର ସିଂ? ଅଠରଶ ସତର! ଅଠରଶ'ସତର, ଟାଙ୍ଗି ହୋଇଗଲା ବାହା, ନାଲିଗୁ ଧଇଲା ଆଖି, ଉଡ଼ିଗଲା ଆତ୍ମା। ସେହିଦିନକୁ ସେହି ତାର ପୂର୍ବଜନ୍ମର କଥା ସତେକି, ଭୁଲିଛି ସେ ଅଠରଶ ସତର ବାହୁନୀରେ—"ଇଂରେଜ୍, ତୁମେ ଚିହ୍ନି ନା—"

ହେଇ ଟ୍ରାଓ୍ୱର୍ ସାହେବଙ୍କ ରିପୋର୍ଟ୍। ଥପ୍ କରି ସେ ପଡ଼ିଗଲା ଚର୍ମମାଡ଼ରେ ପକ୍ଷୀପରି ନାଲିକଳା ମିଶା ଦିନାନ୍ତର ଅନ୍ଧାର ତଳକୁ।

ଓଃ, ଜାତୀୟ ଜୀବନର ଅବସାନ। ଅନ୍ଧାର ଘୋଡ଼େଇ ହୋଇ ପଡ଼ିଛି ମାଟି; ଶୋଇ ଲିହ, ଶୋଇ ରହ, ସ୍ୱପ୍ନ ଦେଖ୍।

ଶୋଇ ରହ! ହେଇ ତ, ନାଗପୁରରୁ ଆସିଛି ସୁନ୍ଦର ସାଏଙ୍କ ଛବି। ସୁନ୍ଦର ସାଏ ନୁହେଁ, ସୁରେନ୍ଦ୍ର ସାଏ—ଛିଡ଼ିଯାଉଛି କଡ଼କାଓ୍ ଲୁହାର ଶିଂକୁଳି, ସମ୍ବଲ ଦେଶର ବୀର ସୁରେନ୍ଦ୍ର—

ଫୁଲ ଉଠୁଛି ଗୁଡ଼। ମିଷ୍ଟର୍ ଓ ମିସେସ୍ ଦଣ୍ଡସେନା ବୁଲୁଛନ୍ତି। ଗଦାଧର ପଧାନ ମୁହଁାମୁହିଁ ଗୁହିଁ ରହିଲା, ତାର ଭସ୍ମ ନାହିଁ।

ଦେଖି ବୁଲିଲା, ଟିପି ବୁଲିଲା ତାର ଟିପା ଖାତାରେ।

"ଦେଖନ୍ତୁ ଆଜ୍ଞା, କପିଳେନ୍ଦ୍ରଙ୍କ ପାତାଳେଶ୍ୱର ଇନ୍ସ୍କ୍ରିପସନ। ଷୋଡ଼ଶ ଶତାବ୍ଦୀ। କପିଳେନ୍ଦ୍ର ତାଙ୍କ ରାଜତ୍ୱର ନବମ ବର୍ଷରେ ତ୍ରିଶ ବର୍ଷର ରାଜସ୍ୱ ଖର୍ଚ୍ଚ କରି ଗୋଟିଏ ନୌବାଣିଜ୍ୟ କେନ୍ଦ୍ର ବସାଇଥିଲେ ଓ ସେ କେନ୍ଦ୍ରର ସମସ୍ତ ଆୟ ଜଗନ୍ନାଥ ମନ୍ଦିରକୁ ଦାନ କରିଥିଲେ।" ଜଣେ ପଣ୍ଡିତ ବୁଝାଉଛନ୍ତି। ମିଷ୍ଟର ଦଣ୍ଡସେନା ମୁଣ୍ଡ ଟୁଙ୍ଗାଉଛନ୍ତି।" କହିଲେ, "ଆମେ ବି ନୌ-ବାଣିଜ୍ୟ କେନ୍ଦ୍ର ବସାଇବାକୁ ପରିକଳ୍ପନା କରୁଛୁଁ ଗୋପାଳପୁରରେ। ତେବେ ସେଠୁ ଆୟଟା ଅବଶ୍ୟ ଜଗନ୍ନାଥ ମନ୍ଦିରକୁ ଆଉ ଯିବ ନାହିଁ।"

"ହେଃ ହେଃ ହେଃ—ପଣ୍ଡିତ କୃତକୃତ୍ୟ। ଜଣେ ବଡ଼ଲୋକ କଥା

କହୁଛନ୍ତି । କପିଳେନ୍ଦ୍ର—ସେ ତ ଥିଲେ ସାରଳା ଦାସଙ୍କ ସମସାମୟିକ ସାରଳା ଦାସଙ୍କ ସମାଧି ମନେପଡ଼େ, ଠିକ୍ ଗଦାଧର ଗାଁ ପାଖରେ । ଗୋଟିଏ ଢୋଟା, ସେଠି ଗୋଟିଏ ବେଦୀ ।

ରହିଛି ଇତିହାସ । ରାଜା ମହାରାଜାଙ୍କ ପରିଚୟ । କେତେ ବଡ଼-ଲୋକଙ୍କ ପରିଚୟ—ମନେ ପଡ଼େ । ସମ୍ବାଦ ପତ୍ରରେ ବାହାରିଥିଲା କାଲି,—ନ୍ୟାୟାଧୀଶ ଆୟାଶାସ୍ତ୍ରୀଙ୍କ ଆମ୍ବା ଉପରେ ପଣ୍ଡିତ ଯୁଦ୍ଧ ? ସେ ତାମିଲ୍ ନା ତେଲେଗୁ । ଓଡ଼ିଆ ବି ହୋଇପାରନ୍ତି—ସଙ୍ଗୀତଜ୍ଞରୁ ଅନ୍ଧ ଆପନ୍ନା କଣ ତେଲେଗୁ ଥିଲେ ?

ହେଇ ଜଗନ୍ନାଥ ଗବେଷଣା ସମିତି,—ବିଗତ ପଣ୍ଡିତ ଯୁଦ୍ଧର ସ୍ମୃତି,—ଜଗନ୍ନାଥ ବୌଦ୍ଧ କି ଜୈନ କି ପ୍ରାକ୍‌ବୈଦିକ ।

ରାଜା, ମହାରାଜା, କପିଳେଶ୍ୱର, ଖାରବେଲ, ଶୈଳେନ୍ଦ୍ର—ଅସଂଖ୍ୟ ସେମାନେ, ଘରେ ଘରେ ।

ଆଉ ସେ କାଳର ସାଧାରଣ ଲୋକେ, ତାଙ୍କର ହସ କାନ୍ଦର ଘରକରଣା—ବେଶଭୂଷା, ଖାଦ୍ୟ, ସମାଜ, ଆଶା ଓ ଉଦ୍ୟମ ?

ଗଦାଧର ପଧାନ ଭାବି ଭାବି ଅନ୍ଵେଷାର କରି ବୁଲିଲା ନିଜର ପୂର୍ବ ଜନ୍ମ । ଏଇ ମନୁଷ୍ୟ ଜନ୍ମ ଏତେ ପ୍ରୁରୁଣା,—କଣ ଥିଲା ଯୁଗେ ଯୁଗେ ସେ ?

ଯୁଗେ ଯୁଗେ ଖାଲି ଶ୍ରମିକ ଓ ପୋଲଖିଆ ? ଅତ୍ୟାଚାରୀ, ଅତ୍ୟାଚାରିତ ? ନା ରାଷ୍ଟ୍ରର ହିତ ପାଇଁ ନ୍ୟାୟ ଓ ଧର୍ମ ମାନିନେଇ ଘରେ ଘରେ ସମସ୍ତେ ସମାନ, ସମସ୍ତେ ସ୍ୱାଧୀନ ?

ଖଣ୍ଡ ଖଣ୍ଡ ଐତିହାସିକ ପଥର ଓ ପୋଥି ଆଡ଼କୁ ଚାହିଁ ତରତର ଭାବିଲାଗିଲା ଗଦାଧର ପଧାନ । ଇତିହାସ କଥା କହେ, ପରୀକ୍ଷାରେ ନମ୍ବର ପାଇବା ପାଇଁ ଲେଖା ହୁଏ ଅନେକ କଥା ନାଁ ପାଇବା ପାଇଁ ଉପାଧି, ପାଇବା ପାଇଁ ଗବେଷକ ଗୁପନ୍ତି ନୂଆ ନୂଆ ଅଦ୍ଭୁତ ତଥ୍ୟ' ସୁନ୍ଦର ଦିଶେ ଇତିହାସ; କିନ୍ତୁ—

ପୃଥିବୀର ଗତି କେଉଁଆଡ଼େ ? ଅନ୍ଧାରରୁ ଆଲୁଅକୁ ନା ଆଲୁଅରୁ ଅନ୍ଧାରକୁ ? ସତ୍ୟଯୁଗରୁ କଳିଯୁଗକୁ ନା କଳିଯୁଗରୁ ସତ୍ୟଯୁଗ ?

"ହେଃ ହେଃ ହେଃ"—ମେଞ୍ଚାଏ ହସ ଜଏ ଗ୍ରୁଟ ମାରିଲା ତା ଆଡ଼କୁ । ଦଳେ ତରୁଣ ତ୍ରୁଣତ୍ରୁଣୀ, ଗୋଟିକୁ ଚହ୍ନେ ସେ,—ମିସ୍ ଚୂଡ଼ାମଣିକୁନ୍ତଲମ୍ ଶାସ୍ତ୍ରୀ, ଐତିହାସିକା । ସେହି ଗୋଲପୀ ଶାଢ଼ୀ,ଶ୍ୟାମଳ ମଧୁର ବର୍ଣ୍ଣ । ଅତି ଧଳା ଦାନ୍ତ ଶୁଆନାକ; ଇଂରାଜି କହନ୍ତି ।

ଆଉ ପାଖେ ତରୁଣ ଜଣେ କିଏ; ସୁଟ୍ ପରିହିତ ।

ଦୁହେଁ ଦୁଇ ଦିଗରୁ ନଇଁପଡ଼ି ଦେଖୁଛନ୍ତି ସୋ' କେସ ଭିତରର ଗୋଟିଏ ବଜ୍ରସତ୍ତ୍ୱ ମୂର୍ତ୍ତିକୁ । ଆପଣ ଯେ ଏକଦମ୍ ସମାଧି ପାଇଗଲେ ମିଷ୍ଟର୍ ରାୟ ?"

ଚୂଷ୍ଟିକୁଲ୍ଲମ୍ ହସି ହସି କହିଲେ, "ତେବେ ଆପଣଙ୍କୁ 'ଭୂଷୁକୁ' ନାଁ ଦିଆଯାଉ।"

ଭୁଞ୍ଜାନୋଽପି ପ୍ରଭାସ୍ୱରଃ
ସୁପ୍ତୋଽପି କୁଟିଂ ଗତୋଽପି
ତଦେବେତ ଭୂଷକୁ ସମାଧି ସମାପନ୍ନ ତ୍ୱାତ୍ ଭୂସୁକୁ ନାମ ଖ୍ୟାତଂ ସଙ୍ଘେଽପି।
ଓ୍ୱାଲ୍, କମ୍ କମ୍ ମିଷ୍ଟର୍ ଭୂସୁକୁ ହେଃ ହେଃ ହେଃ ହେଃ—"
ମିଷ୍ଟର ଗୁପ୍ତ, ସେ ପାଖ ମୁଣ୍ଡଟେକି ଚାହିଁଲେ।

ମିସ୍ ଚୂଷ୍ଟିକୁଲ୍ଲମ୍—ମୁହଁରେ ହସ ଛଲ୍ ଛଲୋଉଛି, ମେକପ୍‌ର ଶ୍ରୀରେ ଫୁଟିଉଠୁଛି ଶ୍ୟାମ ଲାବଣ୍ୟ, କନ୍‌ପାଶା ହଲୁଛି।

"ଆଁ ସ୍ୟୁଁ, କଣ କହିଲେ ? ଓଲଡ୍ ଫସିଲ୍‌ସ୍। ଚାଲନ୍ତୁ ଯିବା।"

ଗଦାଧରର ମୁହଁଟା ଟେକି ହୋଇ ରହିଲା ସେହିଆଡ଼େ। ସେମାନେ ଚାଲିଯାଉଛନ୍ତି।

ମୁଣ୍ଡ ଭିତରେ ଲାଗି ରହିଲା ଦୁଇଟି ନାଁର ଐକ୍ୟତାନ ସଙ୍ଗୀତ, ଭୂଷୁକୁ, ଚୂଷ୍ଟିକୁଲ୍ଲମ୍—'

ଧଇଁହେଲା ମନ, ଯେପରି ସେ ଗୋଟାଏ କଣ ଉତ୍ତର ଚାହେଁ।

ତା ପରେ ଉତ୍ତରଟି ମିଳିଲା ମହାସିଦ୍ଧ ବ୍ରହ୍ମଚାରୀ ଭୂଷୁକୁ ପ୍ରେମରେ ପଡ଼ି ବ୍ରହ୍ମଚର୍ଯ୍ୟ ଭାଙ୍ଗି ଆତ୍ମଗ୍ଲାନିରେ ନିଜର ଅଧପତିତ ଅବସ୍ଥାକୁ ଉପଲକ୍ଷ୍ୟ ଦେଇ ଗୀତ ଲେଖିଛନ୍ତି—

ଆଜି ଭୂଷୁ ବଙ୍ଗାଳି ଭଇଲି।
କାରଣ, 'ଣିର ଘରଣି ଚଣ୍ଡାଳୀ ଲେଲି।"

ଗ୍ରାମଫୋନ ରେକର୍ଡ଼ ପରି ମୁଣ୍ଡ ଭିତରେ ବାଜି ଲାଗିଛି ସେହି ଦୁଇ ପଦ। ଗଦାଧର ପଧାନ ବଜ୍ରସତ୍ତ୍ୱ ମୂର୍ତ୍ତି ପାଖକୁ ଗଲା। ଶ୍ରେଷ୍ଠ ମୂର୍ତ୍ତିଟି, କିନ୍ତୁ କି ସୁନ୍ଦର ! ରାଜପୁତ୍ର ପରି ବେଶ, ଅଳଙ୍କାର ଶୋଭିତ। ବଜ୍ରସତ୍ତ୍ୱ,—ନିଜେ ଧ୍ୟାନୀ ବୁଦ୍ଧ ନା, ଧ୍ୟାନୀ ବୁଦ୍ଧ ଅକ୍ଷୋଭ୍ୟଙ୍କ ପୁତ୍ର ? କିନ୍ତୁ ଅକାରଣରେ ମନେ ମନେ ଗୁଞ୍ଜରୁଛି ସେହି ଭୂଷୁକୁଙ୍କ ପଦ— ଅଜି ଭୂଷୁ ବଙ୍ଗାଳି ଭଇଲି,—ଣିଅ ଘରଣି ଚଣ୍ଡାଳୀ ଲେଲି। ବଜ୍ରସତ୍ତ୍ୱଙ୍କ ରାଜପୁତ୍ର ବେଶକୁ ଚାହିଁ ଚାହିଁ ଉଦାସ ହୋଇ ଆସୁଛି ମନ, ଶୁଣୁଛି କେଉଁ ଅନ୍ଧାର ଗୁଂଫାର କନ୍ଦରାରୁ କେଉଁ ବଣ୍ୟଜନ୍ତୁର ବିକଟ କାନ୍ଦଣା। ଏହି ବଜ୍ରସତ୍ତ୍ୱ କେବେ କିଏ ତାଙ୍କୁ ବିଷ୍ଣୁ ମୂର୍ତ୍ତି ବୋଲି ପୂଜା କରିଥିବ।

କିଏ ବା ପୂଜିଥିବ ଦେବୀ ମୂର୍ତ୍ତି ବୋଲି
କିଏ ଭାବିଥିବ ସେ ବୁଦ୍ଧ; ସିଦ୍ଧାର୍ଥ।

କିନ୍ତୁ ସେ କେଉଁ ଶିଳ୍ପୀ ହାତର ବଟାଳିରେ ହଣା ହୋଇ ଜୀବନରେ ପ୍ରାଚୁର୍ଯ୍ୟ ଓ ସାଫଲ୍ୟର ରୂପଟିଏ।

କିପରି ସେ ଶିଳ୍ପୀ ? ସେ କଣ ଜୀବନରେ ପାଇଥିଲା ଏ ପ୍ରାଚୁର୍ଯ୍ୟ ଓ ସୃଷ୍ଟିର ପରିଚୟ ?

ନା ସେ ଖାଲି ନୁଖୁରାମୁଣ୍ଡିଆ ଧରମଦେଉଠିଆ ? ଏ ତାର ଜାଗରଣ ବିମୁଖ ପଳାୟନ ପନ୍ଥୀ ମନର ପ୍ରତିକ୍ରିୟା ?

ଓଃ, ଭୁସୁକୁ, ଭୁଷୁକୁ,—ସେ ଜଣେ ବି ତ ଥିଲା ସେହିପରି; ବିହାରସ୍ତୂପରେ ସମାଧି ପାଇଥିଲା । ଆଉ ଆଜି ? ଆଜି ସେ ତ ପଣ୍ଡିତ, ଜ୍ଞାନର ସମାଧି ଯୋଗ ଭାଙ୍ଗିଯାଇ ସେ ଖାଲି କଳବଳ । ଦୁନିଆର ଦାନାପାଣି ଯୁଦ୍ଧରେ ଦରିଦ୍ର ସୈନିକ ଜଣେ । ପଛ କଥା ଇତିହାସ ଆଜି, ଯେତେ ସ୍ୱପ୍ନ ଗଢ଼ିବା, କଣ୍ଢେଇ ଖେଳ ଖେଳିବା ।

ବିହାରଗଦାରେ ମୁହଁ ଲୁଚେଇ ସେ ଭବିଷ୍ୟତର ଦିନଗୁଡ଼ାକୁ ସ୍ୱାଗତ ଜଣାଉଥିଲା । ଦିନ ଆସିଲା, ଦିନ ଚାଲିଗଲା, ପଡ଼ି ରହିଲା ସେ । ଆଜି ସେ ସେହି ଭୁଷୁକୁ ପରି ପଣ୍ଡିତ । ତାର ଚଣ୍ଡାଳୀ ତାର ଆଠଟି ସନ୍ତାନର ମା; ପ୍ରେୟସୀ ନୁହେଁ, ଗୃହକର୍ତ୍ତ୍ରୀ । ହାଡ଼ଗୋଡ଼ମୟ ଦୀର୍ଘ ଦେହ' ଗର୍ଜି ଗର୍ଜି ତାର ସ୍ୱର ଗଳ'ନପଡ଼େ, ଆଖି କଣରେ ସହଜରେ ନାଲିଗୁ ଫୁଟେ । ଦୁହିଙ୍କ ସମ୍ବନ୍ଧରେ ଭିତ୍ତି ଗୃହଯୁଦ୍ଧ ଉପରେ । ସେହି ସଂଘର୍ଷର ବେଳ ତାକୁ ବେଳୁ ବେଳ ଠେଲିଦିଏ ଅବସର ସମୟରେ ଇତିହାସ ଗବେଷଣା ବା କବିତା ଲେଖାରେ ଆଶ୍ରୟ ନେବାକୁ । ଇତିହାସ କାମରେ ସଙ୍ଗୀ ଅଛି ଜଣେ ତାର; ସନାତନ ତ୍ରିପାଠୀ, ସେ ମଧ୍ୟ ସେକ୍ରେଟେରିଏଟ୍‌ରେ; ତା ଛଡ଼ା ପ୍ରଶଂସକ ଚାରି ପାଞ୍ଚ ଜଣ, ଏଇ ତାର ସମାଜ ।

ହାୟ, ଆଜି ଭୁଷୁ ବଙ୍ଗାଳୀ ଭଇଲି; ଣିଅ ଘରଣୀ ଚଣ୍ଡାଳୀ ଲେଲି । ସେ କଣ ଆଜି । ପ୍ରତି ସେକେଣ୍ଡରେ ଚାଲି ଯାଉଛି ମରଣରେ ଗରଳ, ଆଗେଇ ଚାଲିଛି । ଜ୍ଞାନ ଚର୍ଚ୍ଚା—ଇତିହାସ ଗବେଷଣା—ଖାଲି ଅମେଣ୍ଟା ଆଶା । ମାଟି ଚରି ଆପଣା ଭିତରେ ବଢ଼ି ଉଠୁଛି ଗୋଟାଏ ପ୍ରକାଣ୍ଡ ଉଇହୁଙ୍କା ।

ଏହି ପଥର, ଭଙ୍ଗା ଖପରା, ମୁଦ୍ରା, କାଗଜ ଓ ତାଳପତ୍ର ପୋଥି—କେତେ ଅମେଣ୍ଟା ଆଶାର ପ୍ରତୀକ ସେ ସବୁ । ନାଇଁ ଖୋଲପା ଲଦାଲଦି, ଆଜି ନାଁ ବାଛୁ ହେଉ ନାହିଁ । ଚାଲିଛି ଗବେଷଣା କିନ୍ତୁ କି ବିଷୟରେ ? କଣ ନେଇ ଇତିହାସ ? ସେ କଣ ରାଜାମାନଙ୍କର କୀର୍ତ୍ତିର କଥା ? ରାଜନୀତିର ଚେହେରା, ଭାରତ କମ୍ୟୁନିଷ୍ଟ ଥିଲା ନା ମୋନାର୍କିଷ୍ଟ ? ନା ମତର ରୂପ ତୁଣ୍ଡର କ୍ୟାଣ୍ଡର ? କିନ୍ତୁ ମଣିଷର ଉଠୁପଡ଼ ଜୀବନର ସ୍ପନ୍ଦନ ? ତାର ଦୀର୍ଘଶ୍ୱାସ ? ତାର ଅମେଣ୍ଟା ଆଶା—-ନଗୁଣ୍ଠିଆ ଘରେ ତକିଆ ଉପରେ ଲୁହଟୋପା । କାହିଁ ତାର ଇତିହାସ ? ଗଦାଧର ପଧାନ—ଗଦାଧର ପଧାନ । କାହିଁ ତୋର ପୂର୍ବ ଜନ୍ମର ଇତିହାସ ? ହିଡ଼ାର ମାଟି, ଅନାବନା ଘୁଘୁଚିଆ, ଗୋଡ଼ଦଳା ଘାସ—କାହିଁ ତୋର ଇତିହାସରେ, କାହିଁ ତୋର ଇତିହାସ ?

ସ୍ତବ୍ଧ ରହିଛନ୍ତି ବେଳ ଗଙ୍ଗି ଦେଇ ବକା ପଣ ।

ଝରକା ସେପାଖେ ପିଣ୍ଡା ଉପରେ ଠିଆହୋଇ ଘାସ ପଡ଼ିଆକୁ ଅନେଇ ରହିଛି ଗୋଟିଏ ପନ୍ଦର ବର୍ଷ ବୟସର କଲେଜ୍ ପିଲା; ନୂଆ ସିଗାରେଟ୍ ଖାଇ ଶିଖୁଛି । ଦମେ ଟାଣି ନେଇ ହାତର ଜଳନ୍ତା ସିଗାରେଟ୍‌କୁ ତେରେଇ ଧରୁଛି; ଧୂଆଁ ଉଡ଼ିଯାଉଛି ।

ଅସ୍ତାଚଳକୁ ଧୂପ ଧୂଆଁ ଧୂଆଁ ଉଡ଼ି ଯାଉଛି ।

ନୀଳିମା ଆବର୍ତ୍ତରେ ଫୁଟି ଉଠିଛି କେତେ ରୂପ, ପୁଣି ମିଳେଇ ଯାଉଛି ।

ଗଦାଧର ପଧାନ ସ୍ତବ୍ଧ ରହିଛି ଏକା ଆଖିରେ ।

ପଡ଼ିଆରେ ଜକ ଜକ କରୁଛି ଘାସ । ନାନାରଙ୍ଗର ଫୁଲ୍ ପେନ୍ଥା ବୋହି ଠିଆହୋଇ ରହିଛନ୍ତି କ୍ୟାନାଦଳ ; ଚୁପ୍ ଚୁପ୍ । ଦୂରରେ ନୀଳ ଆକାଶର ସନାତନ ବିସ୍ମୟ ।

"ଏଁ କଣ୍ଟ୍ ମାମୁଁ, ପ୍ରଦର୍ଶନୀ ଦେଖୁ ନାହାନ୍ତି ?"

"ଏଁ ! ସୁଣ୍ଡୁରୁ ! ଶୁଖିଲ ହସଟିଏ ହସି ଗଦାଧର କହିଲା, ଦେଖୁଛି ତ ।"

"ନାନା, ଆପଣ ବୁଲନ୍ତୁ, ଦେଖନ୍ତୁ; ବହୁତ ମଜାକଥା ସବୁ ଅଛି ।"

"ଖୋଲ ଉପରୁ ଚେହେରା ଦେଖି କଣ ହେବ ଝିଅ; ସୋ'କେସ ଖୋଲି ପଢ଼ିବାକୁ ତ ଦେବେ ନାହିଁ ।"

"ନା ନା, ତଥାପି ଆପାମଙ୍କୁ ଗୋଟେ ଅହମୀୟ ଲେଖା ଆସିଚ, ଦେଖିବେ । ଷୋଡ଼ଶ ଶତାବ୍ଦୀ ଆରମ୍ଭରେ ସେଠା ଉଦ୍ଦଙ୍ଗିଆ ରାଜା ଓଡ଼ିଶା ରାଜାଙ୍କ ପାଖକୁ ଗୋଟିଏ ଏମ୍ବାସି ପଠେଇଥିଲେ । ପତ୍ରାବଳୁ ଆସିଚ ଫିର୍ଦୌସିଙ୍କ ସାହନାମାର ଖଣ୍ଡେ କପି, ଛବି ଭର୍ତ୍ତି । ମୂଳ ମାଦଳାପାଞ୍ଜି ଗଦା ଗଦା ଦେଖିବେ । ପୁଣି ମୂଳ ଗୀତଗୋବିନ୍ଦ—ଜୟଦେବଙ୍କ ହାତଲେଖା । ଆଉ ବ୍ରିଟିଶ ପିରିଅଡ୍ କଥା କଣ କହିବ, "ଇଣ୍ଟରେଷ୍ଟିଂ ଏଗ୍ରିମେଣ୍ଟ୍ ଗଦାଗଦା ।"

"ସତେ ?"

ଜୟଦେବଙ୍କ ହାତଲେଖା, ଦୁଇ ଖଣ୍ଡ କାବ୍ୟ ମୋଟେ । ଆଉ ନାହିଁ । କାହିଁକି ଆଉ ନାହିଁ ? କଣ ଦାରିଦ୍ର୍ୟ ? ନଷ୍ଟ ସ୍ୱାସ୍ଥ୍ୟ ? ଅମେଣ୍ଟା ଏଣା କୁହୁଳା ବିଷ ! ଦୁଇ ଖଣ୍ଡ କାବ୍ୟ, ତହିଁରୁ ଖଣ୍ଡେ—ପୁଣି ଲୋକଲୋଚନ ଅଗୋଚର । କଣ ହେଲା !

"ଆରେ, ସୁଣ୍ଡୁରୀ, ଏ ତ ବୈଦେହୀବିଳାସ ଦେଖୁଛି, କିନ୍ତୁ ଉପେନ୍ଦ୍ରଙ୍କର ଅନେକ ଅଛପା ପୋଥି ରହିଚ ଏବଂ ଉପେନ୍ଦ୍ର କେବଳ କବି ନ ଥିଲେ । ସେ ଥିଲେ ବୈଜ୍ଞାନିକ, ତାଙ୍କର ହବ ଲୁହା ମ୍ୟାନୁଫ୍ୟାକ୍ଚର । ସେ ବିଷୟରେ ବି ତାଙ୍କ ହାତଲେଖା ପୋଥି ଅଛି ।"

ତାର ଆଶ୍ଚର୍ଯ୍ୟ ଜ୍ଞାନକୁ ପାଖରୁ ଦେଖିବାଲାଗି ଓଟେଇ ହୋଇ ଠେଲ ହେଉଇଲେଣି ସୁଶିକ୍ଷିତ ଦର୍ଶକ । ଗଦାଧର ଚୁପ ହେଲା ।

"ଆପଣ ମାମୁଁ ଏ ପ୍ରଦର୍ଶନୀର ଛପା ତାଲିକା ପାଇନାହାନ୍ତି ବୋଧହୁଏ । ତେଣୁ ବାଛି ବାଛି ଦେଖିପାରୁ ନ ଥିବେ ।"

"ଏଁ, ଛପା ତାଲିକା ଫେର୍ ଅଛି ନା କଣ ?"

"ହଁ ଅଛି, ବଣ୍ଟା ହେଉଥିଲା ତ, ମୁଁ ଠିକ୍ ଧରିଛି । ଏତ ଆଖି କଥା, ଛପା ତାଲିକା ନ ଥିଲେ ବାଛି କଢ଼େଇବ କିଏ ? ନା ରହିଲନ୍ତୁ, ମୁଁ ବୁଲି ବୁଲି ଦେଖେଇ ଆଣିବି ।"

"ନା ଥାଉ ମା । ଛପା ତାଲିକା ମିଳେ କେଉଁଠି ?"

'ଆପଣ ବୁଲି ପାଉନ୍ତି ରୁମ ନମ୍ବର ସତରକୁ । ଏଇ ପାଖରେ । ମାଗିବେ, ଦେବେ ଯେ ସେମାନେ ।'

'ଥାଙ୍କ୍ସ ।'

'ଆରେ, ମତେ ଗୋଟାଏ ଥ୍ୟାଙ୍କ୍ସ କଣ୍ ଏ ।'

ଠିକ୍ ଠିକ୍, ଛପା ତାଲିକା ହାସଲ କରିବାକୁ ପଡ଼ିବ । ରୁମ ନମ୍ବର ସତର । ପନ୍ଦର, ଷୋଳ, ସତର । ଏଇ—ସୁଟ ପିନ୍ଧି ଟାଇ ଝୁଲେଇ ବସିଛନ୍ତି ଯେ, କପାଳ ମିଶି ଅଧା ଚନ୍ଦାମୁଣ୍ଡରେ ବିଶୁଛି ମଝିରେ ବିସ୍ତୃତ ଜ୍ଞାନର କ୍ଷେତ୍ର । ଗୋରା ଜକ୍ ଜକ୍—ଦୁଇ ପାଖେ କଳା କହିବା ଧଳା ହେଇ ଦୁଇମେଞ୍ଚା ବାଳ କପାଳର ଗାମ୍ଭୀର୍ଯ୍ୟ ବଢ଼ାଉଛି । ଆଖିରେ ମୋଟା ଚଷମା, ଅମ୍ବ୍ୟାସାଡ଼ର ଫ୍ରେମ । ଗମ୍ଭୀର, ଅତି ଗମ୍ଭୀର । କିଏ ଯେ ? ଗଦାଧର ଚଞ୍ଚଳ ଭାବିଗଲା । ଦେଖିଲା ପରି ଲାଗୁଛି । ଠିକ୍, ଭାସ୍କର ଆଚାର୍ଯ୍ୟ—ସୁପ୍ରସିଦ୍ଧ ଭାସ୍କର ଆଚାର୍ଯ୍ୟ, ଐତିହାସିକ ଖନନ କାର୍ଯ୍ୟପଟୁ, ଆର୍‌କୋଲଜିଷ୍ଟ । ବହୁପୂର୍ବରୁ ଓଡ଼ିଶାର ଡେପୁଟିସାଇଡ଼୍; କିନ୍ତୁ ବରୋଦା ଷ୍ଟେଟରେ କାର୍ଯ୍ୟ କରୁଥିଲେ । ସେଠି ତାଙ୍କର ଅକ୍ଷୟ କୀର୍ତ୍ତି ଗୋଟିଏ ପୋତା ନଅର ଖୋଳେଇଥିଲେ । ଗୋଟିଏ ପ୍ରାଚୀନ ବିଷ୍ଣୁମନ୍ଦର, ଯାହା ଭାଙ୍ଗି ମାଇ ଜଙ୍ଗଲ ହୋଇଥିଲା, ପଥର ସବୁ ଖଣ୍ଡ ଖଣ୍ଡ ହୋଇ ଏଣେ ତେଣେ ପଡ଼ିଥିଲା; ସେସବୁ ଗୋଟେଇ ସଜେଇ ପୁଣି ମନ୍ଦିରଟି ଠିଆ କରିଦେଲେ । ତାର କାରୁକାର୍ଯ୍ୟର ଭଗ୍ନାଂଶ ଏକାଠି ହୋଇ ପୁଣି ଝଟକି ଉଠିଲା । ଲତା, ଫୁଲ, ନର୍ତ୍ତକୀ, ସଙ୍ଗୀତଜ୍ଞ, ଦେବତା ଅବିକଳ ସବୁ । ଭାସ୍କର ଆଚାର୍ଯ୍ୟ, କେଉଁଠିଅର ଭାବୁଛି ସେ ତାଙ୍କ କଥା । ଆଜ ମୁହଁ । ମୁହିଁ ।

ମୁଣ୍ଡ ଭାଙ୍ଗି ହୃଦୟର ନମସ୍କାର ଭାଷାରେ ଫୁଟାଇ ଗଦାଧର କହିଲା "ସାର୍ ନମସ୍କାର ।"

"କଣ ?"

'ପ୍ରଦର୍ଶନୀର ଏଗ୍‌ଜିବିଟ୍ ତାଲିକା ଖଣ୍ଡେ ସାର୍ ।'

ସୁବକ ଅଧସ୍ତନ ତାଲିକାଗଦାରୁ ଖଣ୍ଡେ ଚଟି ବହି ଉଠାଇ ବଢ଼େଇ ଧରିଲା । ଗଦାଧର ହାତ ବଢ଼େଇଲା, କିନ୍ତୁ ଗର୍ଜି ଉଠିଲେ ଭାସ୍କର ଆଚାର୍ଯ୍ୟ—"ନା, ନା-ନା-ନା—"

"କଣ ଆଜ୍ଞା ? ଦଉନ୍ତୁ ଖଣ୍ଡେ ।"

"ୱୁ ସି, ଇଟସ୍ ନଟ୍ ମେଣ୍ଟ୍ ଫ ଅଡ଼ିନେରି ମେନ୍" ଆଗ୍ରୱାଲ କହିଲେ ।

"ଇଟିଜ୍ ନଟ୍ ମେଣ୍ଟ୍ ଫ' କୋଆଜ୍ ହୁଅ' ନଟ୍ ଇଣ୍ଟ୍ରେଷ୍ଟେଡ୍ ଇନ୍ ହିଷ୍ଟ୍ରି ।"

ରଟ୍‌ଗଟ୍ ଛୁଣ୍ଡି ଗଲା କଣ ତାର ମୁଣ୍ଡ ଭିତରେ । ଟହିଟି ଗଲା ଆଦମ ତାତ । ଏଇ ପ୍ରସିଦ୍ଧ ଷ୍ଟୋରର ଆଗ୍ରୱାଲ--ଯେ ଏତେଦିନ ଥିଲେ ତାର ଗୋଟିଏ ପ୍ରକାର ଆଦର୍ଶ । କିଏ ଯେପରି ହାତୁଡ଼ି ମାରି କଚାଡ଼ି ଦେଲା ସେ ଆଦର୍ଶର ମୂର୍ତ୍ତିକୁ, ତଳେ ପଡ଼ି ଛତର୍ ଭୁରଉଲ, ଖାଲି କୁଟା ଆଉ ମାଟି ।

ଗମ୍ଭୀର ହୋଇ ଗଦାଧର କହିଲା, "କଣ ଆପଣଙ୍କର ଅଡ଼ିନେରି ଓ ଏକ୍‌ସ୍ଟ୍ରାଅଡ଼ିନେରିର ଫାଙ୍କ, ଟିକିଏ ବୁଝେଇବେ କି ?"

"ଆମର ଷ୍ଟକ୍ ଲିମିଟେଡ୍, ଯେଉଁମାନଙ୍କର ଇତିହାସରେ ସ୍ପୃହା ନାହିଁ ତାଙ୍କ ପାଇଁ ନୁହେଁ ଏ ଲିଷ୍ଟ" ଷ୍ଟୋରର ଆଗ୍ରୱାଲ କହିଲେ ।

"କିନ୍ତୁ ମୁଁ କହୁଚି ମୋର ଇତିହାସରେ ଯଥେଷ୍ଟ ସ୍ପୃହା ଅଛି, ଆପଣ କେମିତି ଜାଣିଲେ ମୋର ସ୍ପୃହା ନାହିଁ ବୋଲି ?"

"ଆପଣଙ୍କ ନାଁ ତ ନାହିଁ ଆମ ରେକର୍ଡରେ—"

"ଆପଣଙ୍କ ରେକର୍ଡ ! କଦର ସେ ରେକର୍ଡ ? କିଏ କରିଛି ତାକୁ ? ଆପଣ କହିବାକୁ ଚାହାନ୍ତି ଯାହା ନାଁ ଆପଣଙ୍କ ରେକର୍ଡରେ ନାହିଁ, ତାର ଇତିହାସରେ ସ୍ପୃହା ନାହିଁ ?"

"ଓଃ, ଆଉ ତର୍କରେ କଣ ଅଛି ମୁଁ ବଡ଼ କାର୍ଯ୍ୟବ୍ୟସ୍ତ । ନେବେ ତ ଲିଷ୍ଟ ଖଣ୍ଡେ ? କିନ୍ତୁ ପଇସାଟା ଫେରାଇଦେବେ ।"

"କିଣିବାକୁ ମିଳିବନି ? କିଣନ୍ତି ଖଣ୍ଡେ, ଇତିହାସରେ ମୋର ବଡ଼ ସ୍ପୃହା ।"

"ନାଁ ବିକ୍ରି ପାଇଁ ନାହିଁ, ଆପଣ ଦୟାକରି, ପଇସାଟା ଫେରେଇ ଦେବେ ତ କଥାଟା ।"

"ହଉ, ବହୁତ ଧନ୍ୟବାଦ ।"

ଲିଷ୍ଟ୍ ଧରି ଗଦାଧର ଖାଲି ଚୌକିରେ ବସି ପଢ଼ି ଲାଗିଲା । ଲିଷ୍ଟ୍ ବହିଟି ଖୋଲି ଧରି ଲେଉଟାଉଛି, ପଢୁଛି କିନ୍ତୁ ସାମ୍ନାରେ ଟେବୁଲ ଆରପଟେ ଥିବା ଷ୍ଟୋରର୍ ଆଗ୍ରୱାଲଙ୍କୁ । 'ଅଡ଼ିନେରି' 'ଏକସ୍ଟ୍ରାଅଡ଼ିନେରି' ଏହି ଦୁଇଶ୍ରେଣୀରେ ତାଙ୍କ ଆଖିରେ ସମଗ୍ର ମାନବ ଜାତି, ସେଇଥିପାଇଁ ତ ତାଙ୍କ ମନଗହ୍ୱରରୁ ଉଠି ଆସିଲା ସେହି ଚିତ୍କାର—'ଇଟ୍ ଇଜ୍ ନଟ୍ ମେଣ୍ଟ୍ ଫର୍ ଅର୍ଡିନେରି ମେନ୍ ।' ଭାବି ବସିଲେ ଏହି ଗୋଟାଏ ଶବ୍ଦରୁ ବାରିହୁଏ ସେ ଲୋକଟିର ମନର ଇତିହାସ । ଇତିହାସ ତାଙ୍କ ଦୃଷ୍ଟିରେ କେବଳ ରଜା ମହାରାଜା ଓ ନାମଜାଦା ଲୋକଙ୍କର

କାହାଣୀ—"...ନରସିଂହ କେଶରୀଙ୍କ ପରେ ରାମ କେଶରୀ ରାଜା ରାଜ୍ୟ କଲେ। ଏ ରାଜା ବଡ଼ ପ୍ରତାପୀ ହୋଇଥିଲେ। ବାଲ୍ୟାବସ୍ଥାରେ ପଥର କବାଟ କଲେ। କୁମ କେଶରୀ ଭୋଗ କଲେ ୧୦ ବରଷ। ...ବରାହ କେଶରୀ ରାଜା ରାଜ୍ୟ କଲେ। ଏ ରାଜା ପୋଖରୀ ଖୋଳାଇଥିଲେ। ଗଙ୍ଗୁଆ ନଦୀରେ ଅଠରନଳା ବସାଇଲେ। ଏ ରାଜା ସାରଙ୍ଗଗଡ଼ କଲେ। ଏ ଗଡ଼ ପଥରକାନ୍ଥ କରି କାଙ୍ଗୁଲ ବସାଇଲେ। ଏଥିଅନ୍ତେ—"। ଇତିହାସ ଖ୍ରୀଷ୍ଟର୍ ଆଗ୍ରରଙ୍କ ଦୃଷ୍ଟିରେ ନୁହେଁ 'ଅର୍ଡ଼ିନେରି' ଲୋକଙ୍କ କାହାଣୀ—ଯେ କ୍ଷିତିରେ ଶଯ୍ୟା ଉପୁଜାଇ ଗଲେ, ହାତରେ ପଥର କାଟି ଦେଉଳ ତୋଳି ଦେଇଗଲେ। ବଟାଳିରେ ଠକ୍ ଠକ୍ କରି ହାଣି ପଥରକୁ ଦେଇଗଲେ ଶିଳ୍ପର ଜୀବନ। ଆପଣାର ହାଡ଼କୁଢ଼ କରି ସମୁଦ୍ରରେ ସଜେଇଗଲେ ଯେ କ୍ଷୁଦ୍ର ଜୀବ ଲେନ୍ତ ଲେନ୍ତ—ତାଳି ପୋଡ଼ିଲା ଅଥ ନଗଣ୍ୟ ଯେ, ଅଡ଼ିନେରି ? ଯେ ବୁଣିଗଲେ 'ଉତ୍କଳ' ବସ୍ତ୍ର, ଗଢ଼ିଗଲେ ଚିତ୍ରିତ ଘଟ, ରୋମକକୁ ଚୀନ ପର୍ଯ୍ୟନ୍ତ ବୋଇତ ବାହିଗଲେ କଳିଙ୍ଗର ସମ୍ଭୃତି ଘେନି, ନଗଣ୍ୟ ସେମାନେ—ଖ୍ରୀଷ୍ଟର ଆଗ୍ରରଅଙ୍କ ରେକଡ଼ରେ ନାହିଁ ତାଙ୍କର ନାଁ।

ତେବେ କିଣ ଘେନି କରିଗଲେ ସ୍ୱେ ଜୀବନବ୍ୟାପୀ ଗବେଷଣା ?
ମନୁଷ୍ୟ ଇତିହାସର ନୁହେଁ, ଇତିହାସର ରେପାର।
ଖାଲି କୁଣ୍ଡା ତମ୍ବୁ—ରେକଡ଼।

ମୁହଁ ଟେକି ଗ୍ରହିଲେ ଶ୍ରୀଯୁକ୍ତ ଖ୍ରୀଷ୍ଟର ଆଗ୍ରରଅ—"ଯାଆନ୍ତୁ ତେବେ ପଢ଼ିବେ।"

"ତେଣେ କେଉଁଠି ବସିବାର ବନ୍ଦୋବସ୍ତ ନାହିଁ ତ !" ଗଦାଧର କହିଲା।

"ତେବେ ଲିଷ୍ଟ ସଙ୍ଗେ ଜିନିଷସବୁ ମିଳେଇ ଦେଖିବେ ଯାଉନ୍ତୁ।"
"ନା, ଜିନିଷ ଦେଖି ସାରିଛୁ, ଖାଲି ଲିଷ୍ଟ ଦେଖୁଛୁ।"
"ଦେଖନ୍ତୁ, ମୋର ସମସ୍ତ ବଡ଼ ମୂଲ୍ୟବାନ।"
'ମୋର ବି।'
'ମୁଁ ବଡ଼ କାର୍ଯ୍ୟବ୍ୟସ୍ତ।'
'ମୁଁ କଣ କମ୍ ଭାବିଛନ୍ତି ?'

'ଓଃ, ଆଚ୍ଛା, ଆପଣ ଏକଦମ୍ ନେଇ ପାରନ୍ତି ସେ ଲିଷ୍ଟକୁ; ନେଇ ଯାଉନ୍ତୁ।'

'ତା କିପରି ହେବ, ଆପଣଙ୍କର ଷ୍ଟକ୍ ଯେ ଲିମିଟେଡ୍। ମୁଁ ଏଇଠି ବସି ପଢ଼ିବି, ଆପଣଙ୍କୁ ଫେରାଇ ଦେବି।'

'ନା ମୁଁ ଆପଣଙ୍କୁ ତାକୁ ଦେଇଦେଲି, ଆପଣ ନେଇ ଯାଉନ୍ତୁ।

'ସେଇଆ ତ ମୂଳରୁ କହିଥିଲେ କେତେ ସମସ୍ତ ବର୍ଷ ଯାଇଥାନ୍ତା ମୋର ଓ ଅପର୍ଣ୍ଣର । ତା ନ କରି ଆପଣ ଆରମ୍ଭ କଲେ ଇଟ୍ ଇକ୍—'

"ଦେଖନ୍ତୁ, ମୁଁ ଭୟଙ୍କର କାର୍ଯ୍ୟବ୍ୟସ୍ତ—"

"ତା ତ ଦେଖି ପାରୁଚି । ନ ହେଲେ ଆପଣ ମତେ ଯାହା କହିଲେ ତା କହି ନ ଥାନ୍ତେ । ଆପଣ କଣ କହିଛନ୍ତି ବି ସେ କଥା ଆପଣ ଜାଣନ୍ତି ନାହିଁ, ହଉ ନମସ୍କାର ।"

ଖାଲି କାର୍ଯ୍ୟବ୍ୟସ୍ତ—ପଥର ଉପରେ ପଥର, ପଥର ଉପରେ ପଥର ।

ରାଜା ଉତ୍ତାରୁ ରାଜା, ତା ଉତ୍ତାରୁ ପୁଣି ରାଜା ।

ସେମାନେ ସାଧାରଣ ନ ଥିଲେ । ତେଣୁ ହୁଏତ ସେମାନେ ଇତିହାସ । ଇତିହାସର ଖ୍ରେସ୍ପା—କୁଣ୍ଡା, ମଞ୍ଚୁ, ସ୍ଟେକଡ଼ ସଂଗ୍ରହ କରିଛନ୍ତି ଖ୍ରୀଷ୍ଟର ଆସ୍ତର ଆଜୀବନ । ଅଉ କିଏ ସେ ?

ଇତିହାସର ଜଣେ ନଗଣ୍ୟ କାରିଗର, ଯେ ସୁଖ ଦୁଃଖର ଜୀବନ ବସ୍ତି ପାଣିରେ ଗାର କାଟି ଲେଖିଯାଏ ନିଜ କାହାଣୀ, ପାଟିରେ ପାଣି ଗୁଡି ଇନ୍ଦ୍ରଧନୁ ଗଢ଼େ, ପିଚ୍‌କିରିରେ ଫୁଙ୍କି ଫୁଙ୍କି ବୁଦ୍ ବୁଦ୍ ଗଢ଼ି ଉଡ଼ାଇଦିଏ ଆକାଶକୁ ଉଡ଼ିବ ବୋଲି ।

ମିସ୍ ଚନ୍ଦ୍ରକୁନ୍ତଳମ୍ ପିଣ୍ଡାରେ ପାଲ୍ ଛିଲ ଦେଇ ଝପି ଆସୁଛନ୍ତି ।

ପଛେ ପଛେ ଇର୍‌ବତ୍ତି ଆସୁଛି ପ୍ରଦର୍ଶନୀ ଦେଖି । ଆକୁର ଭଡ଼ କେତେ ।

ଯାଉନ୍ତି ସେମାନେ, ଝପି ଯାଉନ୍ତି, ଯେତେ ଦୂର ଅଛି ଆଲୁଅର ଧାର । ତା ସେପାଖେ ଧୂଳି ଅଦୃଶ୍ୟ ହୁଏ । ପୁଣି ନୂଆ ଧୂଳି ଆଲୁଅରେ ଝସେ—ଅସରନ୍ତି ।

"ଗ୍ଲଲିଲେ ମାମୁଁ ।"

"ହଁ ।"

"କେମିତି ଲଗିଲ ଏକ୍‌ଜିବିଟ୍‌ସ ?"

"ଓଃ, ଜାଣ ଜାଣ ।"

ପୁଣି ତାର ପୁରୁଣା ସାଇକଲ୍‌ର କରୁଣ ବିଳାପ, କଁା—କଁା ।

ଦୈତ୍ୟ ପରି ମାଡ଼ି ଆସୁଛନ୍ତି ମଟର ଓ ଟ୍ରକ । ରାସ୍ତା ମଝିରେ କୁକୁରଟିଏ ଚ୍ୟାପିହୋଇ ମରି ପଡ଼ିଛି । ଗଦାଧର ଧ୍ୟାନ ଟୋପି ଟେକ ଦେଇଗଲା ।

"ଆହା, ଏ ବି ଇତିହାସ, ଯଦିଚ ରେକର୍ଡରେ ନାଁ ନାହିଁ ।



# ସେ

ସୂର୍ଯ୍ୟାସ୍ତ ହେବାକୁ ଆହୁରି ବେଳ ଅଛି; କିନ୍ତୁ ସୂର୍ଯ୍ୟ ପଶ୍ଚିମ ଆକାଶରେ ତଳକୁ ଢଳିଲାଣି । ତେରଚ୍ଛ ହେଲାଣି ତାର କିରଣ ଜାଲ । ଚାରିଆଡ଼େ ଦିଶୁଛି ପାଣି, ଖାଲି ଜକଜକ ଶାମୁଆ ପାଣିରେ ଚୂନା ଚୂନା ଶାମୁଆ ଲହଡ଼ିର ନାଚ, ତା' ତେଣିକି ଗୋଟାଏ ହାଲୁକା ନେଳି ଚାଦର, ଧୀରେ ଧୀରେ କଳା ହୋଇଯାଉଛି ତାର ଧଡ଼ି ସେ ଦୂରରେ, ଯେଉଁଠି ବିରାଟ ଫାଙ୍କା ଆକାଶଟା ବିରାଟ ଜଳ ବିସ୍ତୃତି ସଙ୍ଗେ ଗୋଲ ହୋଇ ଏକାଠି ମିଶି ଯାଉଛି । ତାହାରି ଆଡ଼କୁ ଏକ ଦୃଷ୍ଟିରେ ଅନାଇଁ ରହିଛି ଲୋକଟି, ଯେଉଁଠି ବହଳ କଳାକାର ଚେନାଏଁ ସ୍ପଷ୍ଟ ବାରି ହେଉଛି, ନଜେ ବସିଛି ବୁନ୍ଦାଏ ସାନ ବାଲି ସ୍ତୂପ ଉପରେ, ସେହି ଯାହାର ଚାରିଆଡ଼େ ଖାଲି ଚିଲିକା ନାଚୁଛି । ଖାଲି ତା'ର ପଣତ ଘୋଷାରି ଘୋଷାରି ଚାଲିଯାଉଛି, ଲମ୍ବୁଛି ନ ଗଲା ପରି ।

ସେହି ସେ ଦୂରରେ, ନୂଆପଡ଼ା ଦ୍ୱୀପ ଦିଶୁଛି । ସେଇଠି ଲୁରୁବେଇ ଠାକୁରାଣୀ । ଏମିତି ବେଳେ ସେଠି ଛପିଲି ବାଲିନାସିର ଦାଢ଼େ ଦାଢ଼େ ବଳା ଗଣ୍ଡିଏ ପାଣିରେ ମାଠିଆ କାଙ୍କେଇ ବାଟ ଚାଲୁଥିଲା କେଉଁ ଚାଷୀଘର ଝିଅ । ଏକୁଟିଆ । ପଛେ ପଛେ ଥାଟ ଗୋଡ଼େଇ ଥିଲେ, ରଙ୍ଗରଙ୍ଗର ସଜ୍ଜା ପିନ୍ଧିଥିଲେ, ଡାହାଣିଆ ଖରାରେ ଝଟକୁଥିଲା ମୁଣ୍ଡର ଶିରସ୍ତ୍ରାଣ । ଗ୍ରୀବ ଉପରେ ରଙ୍ଗରଙ୍ଗର ପଟି, ପିଠି ପଟେ ନେଳି କଳା, ମାରଣା ନଳିର ହାଉଁମୁହଁ । ହାତରେ ଖୋଲା ତରବାରି । ସବୁଠୁ ବେଶି ଝଟକୁ ଥିଲା ଦାଉଦାଉ ମୁହଁରେ ତହତହ ଲାଲସାର ଝାଇଁ । ଆଗରେ ଥିରି ଭାସିଲା ପରି ଚାଲିଯାଉଛି ସେ, ଯେମିତି ଭାସିଯାଏ ଚିଲିକାର ଏକା ହଂସ । ବେଗ ଥିଲା, ଉଦ୍‌ବେଗ ନ ଥିଲା ମୁହଁରେ ପିଲାଳିଆ ହସ । ହଠାତ୍ କେଉଁ ଅତଳ ଗର୍ଭରେ ବୁଡ଼ି ଅଦୃଶ୍ୟ ହୋଇଗଲେ ଏଡ଼େ ଲମ୍ବା ଶତ୍ରୁ ଥାଟ । ଏକା ହଂସ ଯାଇ କୂଳରେ ପହଞ୍ଚିଲା । କିଏ ଗଲା ? ଚାଷୀଘର ଝିଅ ନା ଲୁରୁବେଇ ଦୁର୍ଗା ଠାକୁରାଣୀ ?

ସେ ଜାଣେ, ଜାଣେ ସେଇ ଲୋକଟା । ପୁଣି ପୁଣି ସେହି ଦୃଶ୍ୟ ଯେପରି କି ସବୁଦିନେ ଏତିକିବେଳେ ତାର ମନେ ପଡ଼େ । ହେଇ, ବୁଡ଼ିଗଲେ ସେମାନେ । ଲୋକମୁହଁରେ ରହିଗଲା ଲୁରୁବେଇ ହାଟବଣା କରି ବୁଡ଼େଇ ମାରିଲା । ଚାଷୀର କ୍ଷେତ ଆଉ କୈବର୍ତ୍ତଙ୍କ 'ଜାଲ'କୁ ଅବଳୀଳା କ୍ରମେ ରକ୍ଷା କଲା ଶତ୍ରୁ ଦାଉରୁ ।

କରେ । ସେଇଠି ତ ଜଗନ୍ନାଥ ଠାକୁରେ ବ ଗୋପ୍ୟ ରହି ସ୍ୱସ୍ତିରେ ଥିଲେ । ଉପକୂଳରେ ଯେତେବେଳେ କଳାପାହାଡ଼ ମାଡ଼ଥିଲା ?

ଏଥର ଉପକୂଳ ଆଡ଼କୁ ମୁହଁ ବୁଲେଇଲା ସେ । ବହୁତ, ବହୁତ ଦୂରରେ । ଇନ୍ଦ୍ରନୀଳ ବର୍ଣ୍ଣର ବିରାଟ ଧନୁ ସଜା ହୋଇରହିଛି । ଢେଉ ଉପରେ ଢେଉ ହୋଇ ପାହାଡ଼ । ତା'ଉପରେ ଢେଉଢେଉକା ଗାର । କଠିନ ଇନ୍ଦ୍ରନୀଳ ମଣି ଉପରେ ଝୀନ ଉଜ୍ଜଳବସ୍ତ୍ରର ପର୍ଦ୍ଦା ପରି ଅଲପ କୁହୁଡ଼ି ହଲି ହଲି ହେଉଛି । ବାଉଁଶନଳୀରେ ଉଜ୍ଜଳବସ୍ତ୍ର ପଶେ । ବୋଇତରେ ସଜା ହୋଇ ରହେ ସେହି ବସ୍ତ୍ରର ପଣ୍ୟ ଆଉ ଥାକ ଥାକ ହୋଇ ଚଢ଼ ହୋଇଥିବା ମାଟି ଘଟ । ଏଇବାଟେ ମାଏ ପ୍ଳକ୍ଷ ଦ୍ୱୀପ । ଶାକ ଦ୍ୱୀପ, ମାଭା, ସୁମାତ୍ରା, ମାଳୟ, ଆଉ କେତେ ଦ୍ୱୀପ ହଂସ ପରି ବୋଇତ, ମଗର ପରି, ତାର କେତେ ରୂପ । ଏଇ ଇନ୍ଦ୍ରନୀଳ ବର୍ଣ୍ଣର ଉପକୂଳକୁ ଆସନ୍ତି ହାତୀ ପଲ୍ପଲ । ବୋଇତରେ ଠିଆ ହୋଇ ଉପକୂଳର ଏଇ ଧନୁକୁ ଚାହିଁଆନ୍ତି । ଟେଁକାଳି ଫୁଙ୍କାନ୍ତି । କୁଲା ପରି କାନ ହଲୁଥାଏ । ଟିକିଟିକି ଆଖିରୁ ବାହାରି ପ୍ରକାଣ୍ଡ ଗାଲ ଉପରେ ବୋହିଯାଉଥାଏ ଲୁହ । ମାତୃଭୂମିର ଇନ୍ଦ୍ରନୀଳ ଦାଢ଼ ଆଡ଼କୁ ଚାହିଁ ଚାହିଁ ।

ନା, ବୋଇତ ନାହିଁ । ହାତୀ ନାହିଁ । ହେଇ ସେ କରେ ଚିଲିକା ପାଣିରେ ଅଣ୍ଟାପାଣି କରୁଛି ଦୀପଦାଣ୍ଡିଆ ପାହାଡ଼ଟା । ତା'ଉପରେ ପଥରର ଦୀପଟା ଖାଲି ପଡ଼ିଛି । ଆଉ ସେଠି ଗଛ ମୋଟରେ ସଳିତା ଜଳେ ନାହିଁ । ଘଣ୍ଟଶିଳା ପାହାଡ଼ରେ ଘଣ୍ଟା ନାହିଁ ଯେ, ଛାଇଁ ଛାଇଁ ବାଜିବ 'ଯାଉଛେ ସାଜ ଯାଉଛେ ସାଜ, ମେଲ ହୁଅ' । ସମୁଦ୍ରକୁ ବୋଇତ ବାଟ ନାହିଁ, ବାଲି ପୋତି ପକାଇଛି । ଖାଲି ଅରଖକୁଦା ସେପଟେ ଚିଲିକା ମୁହାଁଣଟା,—କୁଆର ନ ଥିଲେ କେବେକେବେ ଗୋଟି ବ ପଣି ବୁଲିଯିବ । ତାକୁ କଣ ମୁହାଣ କହନ୍ତି ?

ତେବେ ହଁ, ଚିଲିକା ଅଛି । କାର୍ତ୍ତିକର ଚକ୍‌କଣ ନେଳି ଆକାଶ ତଳେ ଏଇ ଛଳ ଛଳ ଗାଢ଼ ଶାଗୁଆ ପାଣି, ଖରାରେ ଝଟକୁଛି । ଜଳ ଜଳ ହୋଇ ଅସଂଖ୍ୟ ଢେଉ, ତରତର ନାହିଁ, ଛଟପଟ ନାହିଁ, ଏମିତି ସବୁଦିନେ ।

ଲୋକଟା ଅନାଯା କଲା । ଫୁକାର ଫୁକାର ପିଚକାରି ପରି ଧଳା ପାଣି ଉଠୁଛି ତିନ ହାତ ଚାରି ହାତ ଉଞ୍ଚକୁ ! ତିନ—ଚାରି—ପାଞ୍ଚ ଆଗ ପଛ ହୋଇ ଉଠୁଛି ପଡୁଛି ଫୁଅରା । ତା ମୁହଁରେ ଖୁସି ଯୋଡ଼େଇଲା, ଆଉ ସେ ବସି ହେଜା କଲା । ଡମି ଲୁହେଁ, ଅବିକଳ ଡମି ପରି । ଅଢ଼ ବଡ଼ ହେଲେ ଚାରିହାତ ଲମ୍ବ । ଭୁଆସୁଣୀ ମଗର । ହୁଳୁ ହୁଲି ପକାଇଲେ ଉପରକୁ ଉଠେ କହନ୍ତି । ସମୁଦ୍ର ଏଠି, ହ୍ରଦ ହୋଇଛି । ଆବଦ୍ଧ, ସଙ୍କୁଚିତ । ଡମି ଖର୍ବ ହୋଇ ହୋଇ ହୋଇଛି ଭୁଆସୁଣୀ ମଗର । ଆଉ ଏ ଦେଶର ମଣିଷ ? ଭାବିଲେ ସେହି ଭାବନାର ଛାଇ ତ ମୁହଁକୁ କଳା କରେ ।

ସେ ବସି ରହିଛି । ଲହୁଣୀ ବର୍ଣ୍ଣର ଅଗାଏ ସାନ ବାଲିଡିପ ଉପରେ ସାବନା ବର୍ଣ୍ଣର ଜଣେ ମଣିଷ । ଠିଆ ହୋଇପଡ଼ିଲେ ପାଞ୍ଚ ହାତ ସେପାଖେ । ବଡ ମୁଣ୍ଡଟାଏ, ବହଳ ଓସାର, ମାଉଁସିଆ କାନ୍ଧ । କାନରେ ସଂଖ କୁଣ୍ଡଳ ଯୋଡ଼ିଏ, ମୁଣ୍ଡରେ ଦେଢାଏ ବାବୁରି ବାଳ । ଶାନ୍ତ, ଓସାର କପାଳ । ଘଞ୍ଚ ବଙ୍କାଭୂରୁ, ଦମ୍ଭନାକ ଖଣ୍ଡା ପରି ଲମ୍ବିଛି । ପୂରିଲ ପୂରିଲ ଗାଲ, ବନ୍ଧାଣୀ ପଥରରୁ କାଟି ତାମ୍ବ ଗଢ଼ିଲା ପରି ଯୋଡ଼ିର ଦାଢ଼ । ସମ୍ବର ଆଖି ପରି ବଡ଼ ବଡ଼, ଡବ ଡବ ଆଖି ସେଥିରେ ଅତି ଗମ୍ଭୀର ଥମ୍ବିଲ ଥମ୍ବିଲ ଚାଣି । ତା' ପାଖରେ କାହା ନାହିଁ କି ସାହା ନାହିଁ । ବାଲିରେ ଦ'ଠା ଲିଭିଲ ଚୁଲିର ଅଙ୍ଗାର ପାଉଁଶ । ଆଖି ବୁଣାଅଡ଼େ ଖାଲି ଶାଗୁଆପାଣି । ଦିଗ୍‌ବଳୟର ବିରାଟ ଧନୁର ମୁଠାରେ ନାଚୁଥିଲ ଅସଂଖ୍ୟ ଜଳନ୍ତା ଗୋଜିଆ ଗୋଜିଆ, ଧଳାଶିଖା, ଲିଭିଗଲା । ପୂର୍ବପଟେ ଦିଶିଲ ପାଣି ଉପରେ ଉଦନ୍ତା ଓସାର ରକ୍ତ ନାଲି କୋଠି ଲମ୍ବେଇ ହୋଇପଡ଼ିଛି । ଦକ୍ଷିଣରେ ଦିଶୁଛି କଳାପାଣି, ଉତ୍ତରକି ନେଳପାଣି । ଆଉ ଦ'କରେ ପାଣି ତଥାପି ଶାଗୁଆ ଦିଶୁଛି । ଅଳ୍ପ ଉଚ୍ଚରେ ଉଡ଼ି ଉଡ଼ି ବୁଲୁଛି ପ୍ରକାଣ୍ଡ କୁଣ୍ଡୁବକ ଚଢ଼େଇ । ଧୋବ ଦେହ, ହଳଦୀ ଗରଗର ଲମ୍ବ ଥଣ୍ଟ, ଧଳା ପକ୍ଷୀରେ କଳା ଧଡ଼ି । ଆକାଶରେ ଝାପିଲ ପରି ଉଡ଼ି ବୁଲୁଛନ୍ତି ଗେଣ୍ଡେଇ ହଂସ । ତାଙ୍କର କଳା ଥଣ୍ଟ । ଧଳା ଧଳା ବେକ, ଖଇରିଆ ପକ୍ଷୀ । ପଞ୍ଝା ପଞ୍ଝା ଚଢ଼େଇ, ଚଢ଼େଇ ମେଘ ତଳୁ ଉପର ଯାକେ ନାନା ପଉନରେ ଭଉଁରି ବୁଲି ବୁଲି ଉଡ଼ି ଉଡ଼ି ବୁଲିଯାଉଛି । ମଣିଷ ବୋଲି ପରି ଶବ୍ଦ ଶୁଭି ଶୁଭି ଯାଉଛି । ଆଉ ଦିଶୁଛି ଉଦେଇ ଟୁବେଇ ଝାପିଲ ଦ୍ୱୀପ ପରି ମଲା ମଲା ଚଢ଼େଇ । ମୁଣ୍ଡକୁ ବୁଡ଼ୋଉଛନ୍ତି, ଉଠାଉଛନ୍ତି । ପାଦରେ ଠିଆହୋଇ ଯୋଡ଼ି ଯୋଡ଼ି ହୋଇ ଦଉଡ଼ୁଛନ୍ତି । ଶାଗୁଆ ପାଣିରେ ମନ୍ଦା ମନ୍ଦା ଧଳା ଭଉଁରି ଫୁଟି ଉଠୁଛି । ଜାତି ଜାତି ଚହ୍ଲା ହଂସ, ପାଣି ଖେଳ ଖେଳୁଛନ୍ତି ।

ପଶ୍ଚିମରେ ନାଲି ସୂର୍ଯ୍ୟ ଝଲ ଝଲ ହୋଇ ଜଳୁଛି । ହଠାତ୍ ପୂର୍ବଦିଗରୁ ବାହାରିଲ ଏକ ପ୍ରକାଣ୍ଡ ଫିକା ଜହ୍ନ । ଦୂର ଉପକୂଳର ପାହାଡ଼ କୁହୁଡ଼ି ଲାଗି ହୋଇ ଢ଼ଲେଇଲ ପରି ଦିଶୁଛି, କୋଶ କୋଶ ଲମ୍ବା ଶାଗୁଆ ବାଉଁଶବଣ କୂଳରେ ଅଙ୍କା ହୋଇଛି । ପୁଣି ହଠାତ୍ ଦିଶିଲ ପଶ୍ଚିମ ଦିଗ୍‌ବଳୟ ଆସ୍ତେ ସିନ୍ଦୁର ପାଲଟିଗଲା, ନେପରିକ ଆସନ୍ନ ସୂର୍ଯ୍ୟାସ୍ତର ବର୍ଣ୍ଣନୁହେଁ, ଆସନ୍ନ ସୂର୍ଯ୍ୟୋଦୟରହିଁ ଆଭାସ । ନାଲି ଆଲୁଅ ପାଣି ଉପରେ ଡାକ ହୋଇ କୁଦା ମାରି ଉପରକୁ ଉଠୁଛି । ପୁଣି ସବୁ ଚଢ଼େଇ କୁଆଡ଼େ ବୁଲିଗଲେ । ତରତର ହୋଇ ଭଉଁରି ମାରି ମାରି ଗୋଟିକିଆ କଳା ହଂସଟିଏ ଆକାଶରେ ଘୂରି ବୁଲୁଛି । ପୂର୍ବ ଦିଗ୍‌ବଳୟରେ କଳାଗାର ଉପରେ ବାଇଗଣି ଗାର ଉପରେ ନାଲି ଗାର ଗୋଳେଇ ବୁଲୁଛି । ବାଇଗଣି ଗାର ନାଲି ଗାର ଓସାର କୋଠି ପରି ବଢ଼ି ବଢ଼ି

ପୁଣି ଏକାଠି ଗୋଳ ହୋଇଗଲା । ଆସ୍ତେ ଚହଟି ଚହଟି ଘୋଡ଼ି ହୋଇ ଆସିଲା ପଶ୍ଚିମ ଆଡ଼କୁ । ସୂର୍ଯ୍ୟ ନ ବୁଡ଼ୁଣୁ ଚନ୍ଦ୍ରର ଆଖି ବଡ଼ ଉଠିଲା, ଚଳକା ଦିଶିଲା ବାସି ଧୋବ ଗୃଦର ଫଣ, ପୂର୍ଣ୍ଣ ବିଭବ ମଣ୍ଡିତ ହୋଇ, ପୂର୍ଣ୍ଣ ମର୍ଯ୍ୟାଦାପୂର୍ଣ୍ଣ ଶ୍ରୀ ଘେନି, ସୂର୍ଯ୍ୟ ତଳକୁ ତଳକୁ ଦବି ଦବି ଗଲା । ପଶ୍ଚିମ ଦିଗ୍‌ବଳୟରେ ଦିଶିଲା, ସୂର୍ଯ୍ୟକୁ ପାଛୋଟି ନେବାପାଇଁ ପାଖ ପାଖ ହୋଇ ଦୁଇ କରରେ ଦୁଇଟି ପାହାଡ଼ ମୁଣ୍ଡ ଟେକିଲା । ଦୁହିଙ୍କ ମଝିରେ ସୂର୍ଯ୍ୟ ବୁଡ଼ି ବୁଡ଼ି ଯାଉଛି । ଏଥର ଦିଶିଲା, ଯେପରିକି ପାହାଡ଼ ନୁହେଁ, ସୂର୍ଯ୍ୟର ଦୁଇଆଡ଼େ ଗାଢ଼ ଇନ୍ଦ୍ରନୀଳବର୍ଣ୍ଣର ଦୁଇଟି ପକ୍ଷ ଲାଗିଛି, ଯେପରିକି ସେ ବି ଗୋଟିଏ ହଂସ, ଏଥର କୁଆଡ଼େ ଅନ୍ତର୍ହିତ ହେବ । ପୂର୍ବ ଆକାଶ ଚମତ୍କାର ବାଇଗଣି ବର୍ଣ୍ଣ ଦିଶିଲା । ସୂର୍ଯ୍ୟ ବୁଡ଼ିଗଲା । ତଥାପି ପଶ୍ଚିମ ଆକାଶରେ ବହୁତ ବେଳଯାକେ ସିନ୍ଦୁର ଲାଗି ରହିଲା । ତା'ପରେ ସେ ସିନ୍ଦୂର ବି ନିଶ୍ଚିହ୍ନ ହେଲା । ଝିଲ ଝିଲ ଜହ୍ନ ଆଲୁଅରେ ଧାଡ଼ି ଧାଡ଼ି ଜକଜକ ଢେଉ ନାଚ ଲାଗି ରହିଲା ।

ସେଇଠି ବସିଥିଲି ତ, ସେ ।

ଭାବୁଥିଲି, ଏମିତି ଦିନେ ବୁଡ଼ି ଯାଇଥିଲା ତାର ଦେଶର ଇତିହାସ । ଏ ମାଟିର ମଣିଷ ଶୁଖିଯାଉଛି, ସାନ ହୋଇଯାଉଛି, ରୁମି ମାଛ ଭୁଅସୁଣୀ ମଗର ହେଲା ପରି । କିବା ଚେହେରା ଥିବା ତାର ନିଜର, ମୋଟେ ପାଞ୍ଚହାତ ମୁଠାଣିଏ ହେବ ତ, ସେମାନେ ଆହୁରି କେଡ଼େ କେଡ଼େ ଥିଲେ, ହେଇ ସେ ଆରତଣ୍ଡା କରପଟ୍ଟ କୋଣାରକ ଦେଉଳରେ ଯେଉଁପରି, ଭୁବନେଶ୍ୱର ଦେଉଳ କାନ୍ଥରେ ଯେପରି, ପ୍ରାଚୀ କୂଳେ କୂଳେ ଗୋଟା ଗୋଟା ମାଧବ ମୂର୍ତ୍ତି ଯେପରି, ସେହିପରି ଥିଲି ତାଙ୍କ ଗଢ଼ଣ, ଏତେ ପରଖା ପରଖିରେ କଣ ଅଛି ? ଅପେ ତ ନରସିଂହ ଦେବଙ୍କ ଅବିକଳ ମୂର୍ତ୍ତିଟା କୋଣାରକ ଦେଉଳରେ ଉତ୍ତରପଟ ପାବୁଣରେ ଏବେ ବି ଅଛି, ଘୋଡ଼ା ଉପରେ ନରସିଂହ ଦେବ, କଳାପାହାଡ଼ ଏତେ ଚେଷ୍ଟା କରି ସେ ମୂର୍ତ୍ତିର ହାତ ଦି'ଟା ଭାଙ୍ଗି ଦେଲା, ଆଉ କିଛି କଲା ନାହିଁ । ମନ ବଳି ନ ଥିବ ସେ ମୁହଁର ଠାଣି ଦେଖି । ସେ ମୁହଁ ଏବେ ବି ହସୁଛି । ସୂର୍ଯ୍ୟପରି ଝଟକୁଥିଲେ ଏ ପୃଥିବୀରେ, ଶିଳ୍ପୀ ତାଙ୍କୁ ସୂର୍ଯ୍ୟ ପରି ସଜେଇଛି । ସେହିପରି ଥିଲି ଏ ଦେଶର ମଣିଷଙ୍କ ଚେହେରା । ମାଇପେ ବି ପାଞ୍ଚହାତ । ଘୋଡ଼ା ଚଢ଼ୁଥିଲେ । ଯୁଦ୍ଧ କରୁଥିଲେ । ନାଚୁ ଥିଲେ, ଗାଉ ଥିଲେ । ପାଠ ପଢ଼ୁଥିଲେ । ଶାସନ କରୁଥିଲେ । ଲେଖା ହୋଇ ରହିଛି ତାଙ୍କର ଛବି ଶହେଶହ ଦେଉଳ କାନ୍ଥରେ । ଅଥଚ ସେ ନିଜେ ସତେ କି ଏମାନଙ୍କ ଆଖିରେ କଟାସ, ମହାବଳ, ଜଡ଼ାଗଛ, ମହୀରୁହ ; କାହିଁ ସେ ଆକାର, କାହିଁ ସେ ଦେହ ବଳ, କାହିଁ ସେ ଚିତ୍ର ସାମରଥ, ସେ ବୁଦ୍ଧି, ସେ ପ୍ରତିଭା ? କେଞ୍ଚୁଡ଼ା ହୋଇଯାଉଛି, ଡରି ଯାଉଛି, ପଙ୍ଗୁଆଣି ହୋଇଯାଉଛି ।

ଜହ୍ନ ଆଲୁଅ ମାତ ଉଠିଲା । କୁହୁଡ଼ିଆ ଦିଶୁଛି । ଆଖିର ଘେର ବେଶି ଦୂରରେ ନୁହେଁ, ତେଣିକି ଖାଲି ସୋରଫଫୁଲିଆ ଆଲୁଅ ଗୁଣ୍ଡା, ସବୁ ଢାଙ୍କି ହୋଇଯାଇଛି, ସେପଟେ ଦିଶୁଛି ଜକଜକ ଦର୍ପଣ ପରି ପାଣି ଅଗ୍ରେ । ଉପରେ ଆଲୁଅ, ତଳେ ଆଲୁଅ, ମଝିରେ ଗ୍ରୁଇପରି କଣ ଛପି ଉଠି ବୁଡ଼ି ଯାଉଛନ୍ତି । ଖାଲି ମଗର, ଶୁଶୁମର, ଆଉ ପାଣିରେ ଚାଲି ପରି 'ଚାଲି' ଦି ହାତ ଓସାରର ଗୋଟାଳିଆ ଜଳଜନ୍ତୁ, ତାର ଦି'ଟା ପକ୍ଷୀ, ସାଙ୍କୁଶ ଲଙ୍ଗୁଡ଼ି ପରି ଗୋଟାଏ ସରୁ ଲଙ୍ଗୁଡ଼, କୋଚଆ ଦାନ୍ତପରି ଦାନ୍ତ, ଦମ୍ଭ ଓସାରପାଟି । ତା'ର ନାଁରେ ଏ ହ୍ରଦର ନାଁ ।

ସମୁଦ୍ର ନାହିଁ, ପଙ୍କୁଆ ହ୍ରଦ । ତମି ନାହିଁ, ଭୁଆସୁଣୀ ମଗର, ବନସ୍ତରେ ଢାଙ୍କି ହୋଇଥିବା ଖୀରୁପଣ । ଖାଲି ଚାଲି ସାଲୁ ସାଲୁ । ଏଇ ତାର ପରିଣତି ।

ଭାବୁଥିଲି, ଏଇ ଝଲ ଝଲ ଜହ୍ନଫୁଟା ସଞ୍ଜରେ କଣ ହରଚଣ୍ଡୀ ଗାଧୋଇ ବାହାରିବଣି ? ଚିଲିକା ସେମୁଣ୍ଡେ ବାଲିଢିପ ଉପରେ ତା'ର ଦେଉଳ । ବୋଇତଆଳ ତୋଳି ଦେଇଥିଲା । ବୋଇତଆଳ ତା'ର ଆଶୀର୍ବାଦ ପାଇଥିଲା । ବୋଇତ ବାହି ଗଲାବେଳେ ସେଇଠି ବୋଇତ ଅଚଳ ହୋଇଥିଲା, ଓହ୍ଲାଇ ଆସି ଢିପ ଉପରେ ଦେଖିଲା ବରଗଛ ମୂଳେ ଏକୁଟିଆ ଭୁଆସୁଣୀଟିଏ ବସିଛି । ସ୍ତୁତି କରିଥିଲା । ହରଚଣ୍ଡୀ ହସିଥିଲା । ବୋଇତ ଚାଲିଲା, ଧନରତ୍ନ ଘେନି ଲେଉଟାଣି ବାଟେ ବୋଇତଆଳ ଗଢ଼ି ଦେଇଥିଲା ଦେଉଳ ।

ଏମିତି ସେଠି ସଞ୍ଜୁଆ ପାଣି ଅପେକ୍ଷା କରିଥିବ । ନେପୁର ପାହୁଡ଼ ନାଇ ସବୁ ଅଳଙ୍କାର ଟଙ୍କି ହୋଇ ପବନ ମହକାଇ ଝମର ଝମର ହୋଇ ଧାଇଁ ଧାଇଁ ଆସିବ ହରଚଣ୍ଡୀ, ଭୁସ୍ କରି ଯାଇଁ ସେହି ଝଲ ଝଲ ପାଣିରେ କୁଦି ପଡ଼ିବ । ଆଉ ସେପଟେ ସମୁଦ୍ରରେ ଡେଇଁବ ରାମଚଣ୍ଡୀ ।

କୁହୁଡ଼ିଆ ସ୍ବପ୍ନ ଉହାଡ଼ରେ ଦୂରରୁ କେଉଁଠୁ ଶୁଭିଲା ହଂସର ଡାକ, ଜହ୍ନ ଆଲୁଅ ଡାକୁଛି, ଚିଲିକା ଡାକୁଛି, ହଂସର ଭାଷାରେ ଡାକୁଛି । କ୍ୱାଁକ୍ କ୍ୱାକ୍—କ୍ୱାଁକ୍—ପାଖେଇ ପାଖେଇ ଶୁଭୁଛି ।

"କାହଁନା, ପୁଣି ଏ ଥରରୁ ମଶିଷ ଗଜୁରିବେ ।" ଲୋକଟି କହିଲା । ଘନହାତ ଲମ୍ବ କଞ୍ଚ ବଇଁଶୀର ଉଦାର ପର୍ଦ୍ଦାର ସ୍ୱର ସଙ୍ଗୀତ ପରି ତା'ର ସ୍ୱର । ଚିଲିକାର ଚଢ଼େଇ ମେଘରେ ସେ ସ୍ୱର ବାଜିଲା, ଆଉ ତଳେ ଅଗଣିତ ତେଉ ମୁଣ୍ଡ ଟେକାରିଲେ । ଦୂରରେ ଦୂରରେ ଡଙ୍ଗାର ପାଲ ଠିଆ କରି ସଟ୍ ସଟ୍ ଚାଲିଯାଉଥାନ୍ତି ସବୁଆ ସବୁଆ କଳା କଳା ନାହା ! ହଂସର କ୍ୱାଁକ୍ କ୍ୱାଁକ୍ ସଙ୍ଗେ ସେ ସ୍ୱର ବ ବାଜିଲା ସେଠି ।

ତାପରେ ସବୁ ତୁନି ପଡ଼ିଗଲା ।

ଶୁନ୍‌ଶାନ୍ ବାଲି ଢିପ, କେହି ନାହିଁ ।

ଅସ୍ତଏ ଜହ୍ନୁଆ ଜହ୍ନ ପରି ଗୋଲ ହୋଇ ପଡ଼ିରହିଛି ଟିକି ବାଲି ଡିପଟି, ସ୍ୱଚ୍ଛକରେ ଆକାଶ ପରି ପାଣି ।

ତା'ଉପରକୁ ପାଣି ଚଢ଼ି ଚଢ଼ି ଆସୁଛି ।

ଡଙ୍ଗା ଚାଲିଯାଏ, କେଉଁ ଡଙ୍ଗାରେ କିଏ ସେ ଗଲା କିଏ ତା' ଖବର ରଖେ ? ଆଗମଙ୍ଗରେ ସିନ୍ଦୁର ବୋଳା ହୋଇଛି, ପଛାରେ କଳା ଉପରେ ଧଳାରଙ୍ଗରେ ଚିତ୍ର ହୋଇଛି କେଉଁ ରୂପଟିଏ—ହଂସ କି ମାଛ କି ମଗର ! ବାଉଁଶପାଢ଼ିଆ ଗୁଣା ତଳେଇର ପାଲ ପବନ ଧରିବାକୁ ଟେକା ହୋଇଛି । ଗୁଣ ହେଲେ ଆହୁଲ, ଗୁଣ ନ ଥିଲେ ସ୍ୱରପଟିଆ କି ଛ' ପଟିଆ କାତ, ବଡ଼ ଡଙ୍ଗା ଚାଲି ଯାଉଛି । ବାଲୁଗାଁ ଘାଟରେ ପାଖକୁ ପାଖ ଲମ୍ବ ଲମ୍ବ ହୋଇ ଡଙ୍ଗା ମାନଙ୍କ ଭିଡ଼ । ସେତେବେଳେ ସେଗୁଡ଼ାକ ନିର୍ଜୀବ ଜଳଯାନ । ଥରେ ଫିଟିଆସି ଖୋଲା ଚିଲିକା ଭିତରକୁ ମୋହିଁଲେ ସେମାନଙ୍କର ଭିନ୍ନେ ରୂପ, ସେତେବେଳେ ସେମାନେ ସତେ କି ଜୀଅନ୍ତା, ଡଙ୍ଗା ନୁହେଁ, ଜଳଜୀବ । ମଣିଷ ନ ଦେଖିଲେ ପହଁରୁଥିବା ହଂସ ଚମକେନାହିଁ ତାଙ୍କୁ ଦେଖି । ଆହୁରି ବିସ୍ମୟକର ସେହି କାଠର ଟିକିଟିକିମାନ ସେଥିରେ ମଣିଷ ଜଣେ କି ଦି'ଜଣ । କେତେବେଳେ ପକ୍ଷୀ ହୋଇ କୂଳରୁ ଖଣ୍ଡେବାଟ ଆସନ୍ତି, ତାପରେ ଖେଳେଇ ହୋଇପଡ଼ନ୍ତି । ଏଇଠି ଅଛନ୍ତି, ଏଇଠି ନାହିଁ ।

କେନା କେନା ହୋଇ ପାଣିନାଘି ଭୂଇଁକି ପଶି ଆସିଛି । ପାହାଡ଼ ନାସିପାଣି କି ପଶି ଯାଇଛି । କଳା ଚକଟା କାଦୁଅ ମାଟି ଉପରେ ପାଣି ଦାଢ଼େ ଦାଢ଼େ ଚକଚେ ଚକଚେ ଗାଁ । ବାରି କବାଟ ଖୋଲି ଦେଲେ ଦଣ୍ଡେ ଜଳଜଳ ହୋଇ ଚିଲିକା, ଦଗ ସରିବାଯାକେ ସିଲଟ ବର୍ଣ୍ଣର ପାଣିପଟା । ଚୁଙ୍ଗୁଡ଼ି ଧରା କାଠି ପଲଣାର ବ୍ୟୂହଘର ପାଖକୁ ପାଖ ହୋଇ କୂଳଠୁଁ ଝଣ୍ଡେ ବାଟଯାକେ ପାଣି ଉପରେ ବାଉଁଶ ଠେକ ଉପରେ ଥକା ହୋଇଥାଏ, ଧାଡ଼ିକି ଧାଡ଼ି । ପାଣି ବଢ଼େ, ଫୁଲେ, ଚୁଙ୍ଗୁଡ଼ି ଭୂଅ ଭିତରେ ପଶନ୍ତି, ଚିଲିକା ପଶେ ଗାଁ ଗୋହିରିବାଟେ । କାଦୁଅ ଖଣ୍ଡି ଉପରେ ମେଞ୍ଚା ମେଞ୍ଚା ଦଳ ମଝିରେ ଏଠିସେଠି ଖଣ୍ଡେ ଖଣ୍ଡେ କଳା କଳା ପଥର । ଚଢ଼େଇ ଛେଗ୍ ଆଉ ଧଳା ଫିସି ଲଗି ହୋଇ ଧଳା ଗୁପିଗୁପିକା, କୂଳ କଡ଼କଡ଼ ପକ୍ଷୀ ପକ୍ଷୀ ଜାଠ ଜାଠ ମାଛଖାଇ ଚଢ଼େଇ, ପୋକଖାଇ ଚଢ଼େଇ, ଆଉ ଦୂରରେ ସେହି ସବୁଜନିଆ ବେଷ୍ଟନୀ, ପାଣିଭିତରେ ପଶ ଡଙ୍ଗାମାନ, କେବେ ଖାଲି ତଳେଇପାଲ, ଖୁମ୍ବ ପରି ଖୁଣ୍ଟା ଠିଆ, ତଳ ଦିଶେ ନାହିଁ । ଆଉ କେତେବେଳେ ଉଦୁଉଦିଆ ଝଡ଼ରେ ଦିଗ୍‌ବଳୟରେ ଝଡ଼ ଲାଗି

ହୋଇ ରକ୍ତ ପରି ନାଲି ହୋଇ ଠିଆ ହୁଏ ଅଚିହ୍ନା ଡଙ୍ଗା, ତା'ପରେ ଅଦୃଶ୍ୟ ହୋଇଯାଏ ।

ସବୁ ସେମିତି ଅଛି, ଲୋକଟା ଭାବୁଥାଏ, ବଦଳି ଯାଇଛନ୍ତି ଖାଲି ମଣିଷ । ସେ ତେଜଦୃପ୍ତି ନାହିଁ । ସେ ବୈଭବ ନାହିଁ । ସେ ଶ୍ରୀ ନାହିଁ । ଏତେ ଧନ ବଢ଼ିଗଲା, କେଉଁଠା ଦେଉଳ ତୁମେ ତୋଳିଛ ? କେଉଁଠା ଭୁବନେଶ୍ୱର ଶ୍ରୀକ୍ଷେତ୍ର ତୁମେ ବସେଇଛ ? ଅଥବା ଶାସନ ଗାଁ ? କେଉଁଠା ଭାଗବତ କି ଭାରତ ପୋଥି ତୁମେ ଲେଖିଛ ? କେତେ ଲୋକଙ୍କୁ ଟେକିପାରିଛ ସତ୍ୟ-କରୁଣା-ମୈତ୍ରୀରେ ସଂଗଠିତ ଗୋଷ୍ଠୀ ଜୀବନ ପରମ୍ପରାକୁ ସ୍ନେହରେ ଆଦରନେଇ ଶାନ୍ତିରେ ସୁଖ ଦୁଃଖ ବାଣ୍ଟି-କୁଣ୍ଢି ନେଇ ଶାନ୍ତିରେ ସମାଜ ପାଳିବାର ଭିଆଣ କରିପାରିଛ କେତେ ଅଂଶରେ ? ପରକୁ ଆପଣାର କରିଛ, ଆପଣାକୁ ସମସ୍ତଙ୍କର କରିଛ, ଆଦର୍ଶର ଗୁଢ଼ ଟେକିଛ, ପରଦେଶରେ ଶାନ୍ତିଧର୍ମ ସ୍ଥାପିଛ, ଆପଣା ଦେଶରୁ ହିଂସା, ସ୍ୱାର୍ଥପରତା, ଦ୍ୱେଷ ତଡ଼ି ପାରିଛ, କଣ କରି ପାରିଛ ତୁମେ ?

ସେ ସେହି ବେଳାଭୂମିକୁ ଚାହିଁ ମନେ ମନେ ଅନର୍ଗଳ ପ୍ରଶ୍ନ ପଚାରୁଥାଏ । ମନେ ମନେ ତା'ର ଉତ୍ତର ଦେଉଥାଏ—ତୁମେ କିଛି କରିନ, ତୁମେ କେତେ ତଳକୁ ଖସି ପଡ଼ିଛ, ଖାଲି ଏଇ ଚିଲିକାରୁ ବୋହିନେଇ ଖାଇଛ, ମରି ଶୋଇଛ ଏଇ ଚିଲିକା କୂଳରେ ।

ଅସ୍ଥିର ହୋଇ ଦୀର୍ଘଶ୍ୱାସ ପକାଇଲା, ଏକର ସେକର ଟଳ ଟଳ ହେଲା । ତା' ସହିତ ଟଳ ଟଳ ହେଲା ତାର ସାନ ଡଙ୍ଗାଟି । ପୁଣି କୂଳର ପୁରୁଣା ବରଗଛ ଝାଉଁଶବଣ ଠାଏ ଠାଏ ଥିବା ନଡ଼ିଆଗଛ ଆଡ଼କୁ ଅନାଇଁ ତା'ର ଆଖି ସ୍ନେହରେ ଛଳ ଛଳ ହେଲା । କୂଳର ଛାଇ ଅଉ ଖରାର ଖେଳ ସତେ କି ଝଟକିଲା ତା'ର ଆଖି ଉପରେ, ଚାହାଣି ଅଳସ ହୋଇ ନିଦ ହୋଇପଡ଼ିଲା ।

ତଥାପି ମୁଁ ତମୁକୁ ମୋ ପ୍ରାଣଠୁଁ ବଳି ଶରଧା କରେ ସେଇଥିପାଇଁ ତ— ସେ କହିଲା । ଗୋଟାଏ ପ୍ରକାଣ୍ଡ କଳା ଛାଇ ଉଡ଼କା ଖରାରେ ଦୋହଲିଲା ପରି ସେ ଠିଆ ହୋଇଯାଇ ତଳେଇ ପାଲ ବାନ୍ଧିଲା । ତା'ପରେ ମାସ୍ତୁ ନାହା ପରି ସତେକି ଉଭେଇଗଲା କୁଆଡ଼େ, ତା' ନାହା ସେହି ଦିଗନ୍ତଛୁଆଁ ଜଳରାଶିରେ ।

କାର୍ତ୍ତିକର ଖରାରେ ତାର ଚାଲନ୍ତା ନାହା ଉପରୁ ସେ ସେହି କୂଳକୁ ଅନାଇଁ ଠିଆ ହୋଇଥିଲା । କେତେ ବାଟ ପାରି ହୋଇଗଲାଣି । ସେହି ଇନ୍ଦ୍ର-ନୀଳ ବର୍ଣ୍ଣର ଧନୁ ସଜା ହୋଇ ଥୁଆ ହୋଇଛି । ଉପରେ ଚକ୍‌କଣ ନେଳି ଆକାଶ, ତଳେ ଗାଢ଼ ଶାଳୁଆପାଣି, ଜକଜକ ହୋଇ ଅସଂଖ୍ୟ ଢେଉ । ଏଠି ସେଠି ବୁନ୍ଦା ବୁନ୍ଦା ହୋଇ ଚିଲିକା ଚଢ଼େଇ । କୁହୁଡ଼ିଆ ଦିଗ୍‌ବଳୟ ଗାର ଉପରେ ହଠାତ୍ କୁଆଡ଼ୁ ଠିଆ ପାଲବନ୍ଧା ନାହା ଫୁଟି ଉଠୁଛନ୍ତି, ପୁଣି କୁଆଡ଼େ ଅଦୃଶ୍ୟ ହୋଇଯାଉଛନ୍ତି । ଆଗରେ ପୁଞ୍ଜାପୁଞ୍ଜା ହୋଇ କଳା କଳା ବୁନ୍ଦା,

ମଝିରେ ଓସାର ଫାଙ୍କ, ସେହି ପାରିକୁଦ ଦ୍ୱୀପ କାହିଁ, ଛକୋଶ ଦୂରରେ। ତାହାଣେ ଏକା ଧାଡ଼ିକେ ଖଣ୍ଡ ଖଣ୍ଡ ହୋଇ ଧନ ଖଣ୍ଡ ଦିଶୁଛି, ଯେପରିକି ଗୋଟାଏ କଳା କମ୍ବୀର ଶୋଇଛି ତାର ନାକଟା କାଳିଜାଇ ଦେଉଳ। ପାଣି ଉପରେ ଯୋଡ଼ା ଯୋଡ଼ା ହୋଇ ନଅର ପଅର ହୋଇ ହଂସ ବିହରୁଛନ୍ତି, ଦେହର ତଳ ବୋଝ ବୋଝ। ପାଣି ଉପରେ ପାଦରେ ଠିଆ ହୋଇ ପକ୍ଷୀ ଫଡ଼ଫଡ଼ କରୁଛନ୍ତି। ପାଣି ଉପରେ ହଠାତ୍ କଳା କଳା ହୋଇ ଟୋପି ଟୋପିକା ଫୁଟି ଉଠୁଛି, ପାଞ୍ଚ କୋଶ ଦୂରରେ ଗରୁମାନଙ୍କ ପ୍ରେତରୂପ। ଅତି ତରତରରେ ପକ୍ଷୀ ବୁଲେଇ ବୁଲେଇ ହଂସ ଉଡ଼ି ଯାଉଛନ୍ତି। ଉଡ଼ିଲାବେଳେ ଦିଶୁଛି, ହଂସ ନୁହନ୍ତି ଅବା, ନବଯୁଗର ପକ୍ଷୀ, ସେହି କେଉଁ ପୁରାକାଳର। ଗୋଜିଆ ନାକ, ଗୋଜିଆ ଲାଞ୍ଜ ହୋଇ ଦୂରରେ ଶୋଇ ରହିଛି ଘାଲୁର ପାହାଡ଼ର ନାଧି, ଉପରେ ଉଡ଼ି ଉଡ଼ି ବୁଲୁଛନ୍ତି ଗୋଟାକୁ ଗୋଟା ଓଜନ ଚଢ଼େଇ କେଉଁଅ, ପକ୍ଷୀଙ୍କୁ ଆଗେ ଦିଶୁଛି ଚକ୍‌ଚକ୍ ଧଳା, ପାଖେ ପାଉଁଶିଆ। ପକ୍ଷୀ ଏତେ ଚଞ୍ଚଳ ଯାଉଛି। ଦେହ ଏତେ ଟିକିଏ ବି ଥକୁ ନାହିଁ, ବିଶାଳ ନେଳି ବିସ୍ତୃତିରେ ଭାସି ଯାଉଛି, କାହିଁ ଦୂରକୁ ବୋଲି। ପାଣିରେ ଲଗିଲା ପରି ହୋଇ ଟିକି ଟିକି ପ୍ରଜାପତି ପରି ଟିପା ଚଢ଼େଇ ଘୁରେଇ ଘୁରେଇ ଭଉଁରି ଉଡ଼ି ଉଡ଼ି ବୁଲି ଯାଉଛନ୍ତି। ଏଥର ଦିଶିଲା ଦିଗ୍‌ବଳୟ ଯାକ ଖାଲି ଅସଂଖ୍ୟ ଧଳା ଧଳା ବୁନ୍ଦା। ପାଖ ହେଉ ହେଉ ଦିଶୁଛି ଦିଗ୍‌ବଳୟର ଗାର ଖାଲି ଛଟ ଛଟ ହୋଇ ଥରୁଛି, ଯେପରି ଦୁଇମୁଣ୍ଡରୁ ଧରି ପ୍ରକାଣ୍ଡ ଧୋବ ଲୁଗାଟାଏ କିଏ ଝାଡ଼ୁଛନ୍ତି। ଉପରେ ବିରାଟ ଫାଙ୍କା ଆକାଶ, ତଳେ ଧୂଆଁଳିଆ ଦିଗ୍‌ବଳୟ, ଦିଶୁଛି ତା'ର ଏକରେ ଧୋବ ଫର୍‌ଫର୍ ଥାଟପଟାଳି ହୋଇ ସେମାନେ ସଜ୍ଜ କରି ତାକୁହିଁ ଅପେକ୍ଷା କରି ବସିଛନ୍ତି। ଚିଲିକାର ଅଗଣିତ ଚଢ଼େଇ।

ପହଁରି ପହଁରି ପାଗ୍ରେଟି ନେଉଛି ପ୍ରକାଣ୍ଡ କେରୁଅ ହଂସ, ତଳୁ ଉପରି, ଉପରୁ ତଳ ହେଲାପରି ତା ଦେହର ଗତି, ଏଥର ଦିଶୁଛି ତାର କଳାମୁଣ୍ଡ, ହଳଦିଆ ଥଣ୍ଟ, ମାଟିଆ ପକ୍ଷୀ, ତା ଦେହରେ କଳା।

ଚକ୍‌କଣ ଶାମୁଆ ଚିଲିକା ଝଟକୁଛି। ଦୂରରେ ସେ ନେଳି। ଏଥର ଦିଶିଲା, ଦୂରରେ ଯେପରିକି ବନ୍ଧାକୋବି ପଟାଳିଟିଏ ସଜା ହୋଇ ଥୁଆ ହୋଇଛି। ଶାମୁଆ ଢେଉ, ଶାମୁଆ ଆଲୁଅ ଢୁଳା, କୋବିପଟାଳି ବଢ଼ି ବଢ଼ି ଦିଶିଲା ଶାମୁଆ ବାଡ଼ ପରି, ଗୋଲ ହୋଇ ବୁଲିଛି। ନଳବଣ ଦ୍ୱୀପ ପାଖ ହେଲା। ଦୂରରୁ ଅସ୍ପଷ୍ଟ ଦିଶୁଥିଲା, ତା'ପରେ ଦିଶିଲା କଳା। ଆକାଶ ଯାକ ମେଘପରି ଚଢ଼େଇ, ଲକ୍ଷ ଲକ୍ଷ, କୋଟି କୋଟି, ଅକଳନ। ଚଢ଼େଇ—ମେଘ ଖଣ୍ଡ ଖଣ୍ଡ ହୋଇ ଖସୁଛି, ତଳେ ସେମାନେ ବହଳ ନେସି ହୋଇ ପଡ଼ୁଛନ୍ତି। ହଲଚଲ ଲାଗିଛି। ତା'ପରେ ପକ୍ଷୀ ଫଡ଼ଫଡ଼ ବାରି ହେଉଛି। ଦିଶୁଛି, ଅସଂଖ୍ୟ ହଂସପାଦରେ ଆଘାତ ଖାଇ ଧଳା ଧଳା ଭଉଁରି ଉଠି ଏକାଠି ହୋଇ ଯେପରିକି ଶାମୁଆ ନେଳି

ଟଛର ବଣ କରେ କରେ ଧଳା ଝରଣା ବହିଯାଉଛି । ତା' ଏପାଖେ ସିଲଟ ବର୍ଣ୍ଣର ଦର୍ପଣ, ଦୂରରେ କଳା ଟଳକା ।

ହେଲ ନଳବଣ । ଅସଂଖ୍ୟ ନଳଗଛ । ଶହେ ହାତ ଓସାରର ହୁଡ଼ା ଘେରେଇ ହୋଇ ଯେପରିକ ଗୋଟାଏ ପ୍ରକାଣ୍ଡ ଜଳାଭୂଇଁ । ଗୋଲ ହୋଇ ଖୁଣ୍ଟି ପୋତା ହୋଇ ଯାଇଛି, ସେଥିରେ ବାଉଁଶକାଠିରେ ବୁଣା ମାଛମରା ଜାଲ ବସିଛି । ଘେର ଭିତରେ ତଳୁ ଆକାଶକୁ ନାନା ପଉନରେ ମେଘ ପରି ଚଢ଼େଇ ଭଉଁରୀ ଭଉଁରୀ ଉଡ଼ୁଛନ୍ତି, ଠାଏ ଠାଏ ଜକାଜକ ହୋଇ ହୁଡ଼ାରେ ନେସି ହୋଇଛନ୍ତି । କଳା ଦିଶୁଛି । କରେ କରେ, ଠାଏ ଠାଏ, ଭେଳା ପରି ଚଢ଼େଇ ଦଳ ଭାସୁଛନ୍ତି । ଜାଠ ଜାଠ ଚଢ଼େଇ, ତାର କାନ ପାଖେ ହାତ ପାଖେ ଉଡ଼ି ଯାଉଛନ୍ତି । କେବଳ ଚଢ଼େଇ, ମଣିଷ ନାହାନ୍ତି । ଚଢ଼େଇ ବୋବାଳିରେ କାନ ଝାଇଁ ଝାଇଁ ହେଉଛି । ତୀବ୍ର ଆଇଁଷିଣିଆ ଗନ୍ଧ ନାକରେ ବାଜୁଛି ।

ସେହି ନଳବଣର କାଦୁଅରେ କାଠ ପୋତିଦେଇ ନାହା ଖଟେଇ ଦେଇ ହୁଡ଼ା ଉପରେ ଠିଆହୋଇ ରହିଲ ସେହି ଗୋଟିକିଆ ମଣିଷ । ଦୂରକୁ ଚାହିଁଲ । ଝଗ୍ର ତଳାଛି । ଦକ୍ଷିଣରେ କଳାପାଣି, ସେକରେ ଦିଶୁଛି ନୂଆପଡ଼ା ଦ୍ୱୀପ, ଅଁଳାକୁଦା ଦ୍ୱୀପ । ଉତ୍ତରରେ କାହିଁ କେତେ ଦୂରରେ ଉପକୂଳର ପର୍ବତମାଳା ଦିଶୁଛି ମ୍ଳାନ, ହତୋତ୍ସାହ । ଚାରିଆଡ଼େ ପାଣି । ଆଉ ଚଢ଼େଇ ।

ସେଇଠି ସେ ଦୃଶ୍ୟ ଭିତରେ ଖାପି ଗଲାପରି 'ସେ' ମିଳେଇଗଲ ।

ଖରା ଗଲ । ସୂର୍ଯ୍ୟ ବୁଡ଼ିଲ । ହଜାର ହଜାର କାଉ ଦଳ ଦଳ ହୋଇ ଉଡ଼ି ଉଡ଼ି ଗଲେ କାଲୀଜାଈକୁ, ପାହାଡ଼ ନାସିମାନଙ୍କୁ । ଚଢ଼େଇ ତୁଣ୍ଡର ଗହଳି ମଝିରେ କେତେବେଳେ ଜହ୍ନ ଉଠିଲ, ପାଣି ଝଲଝଲେଇଲ, କେତେ କେତେ ବେଳେ ଫାଙ୍କା ବିସ୍ତୃତ, ସେକରେ ଗୋଟିକିଆ ନାହାର ଆଲୁଅ ମିଟି ମିଟି ଦିଶିଲ, ପୁଣି ହଜିଗଲ ।

ସେଇଠି କେଉଁଠି ଖାପିଯାଇଥିଲ 'ସେ' ।

ତହିଁର କେତେବେଳେ ବ...ଣକୁଦା ଦ୍ୱୀପ କରପଟେ ପାଣିଦର୍ପଣରେ ଛାଇ ପଡ଼ିଲ, ଗୋଟିକିଆ ଚଳନ୍ତା ନାହାର ଆଉ ସିଧା ଠିଆ ପ୍ରକାଣ୍ଡ ମଣିଷର । କୁହୁଡ଼ିର କୂଳରେ ମହୁଷୀମାନ ତମି ମାଛ ପରି ଦିଶୁଥାନ୍ତି । ସେମାନେ ପହଁରିଲ ପରି ଏକର ସେକର ହୋଇ ଅଳସ ହୋଇ ଚାହୁଁ ଚାହୁଁ କାହିଁକି ଚମକିଲେ, ବୋବେଇଲେ । ତା'ପରେ ଛାଇ ଚାଲିଗଲ ।

କିଛି ସମୟ ପରେ ସାତପଡ଼ା ଦ୍ୱୀପକୂଳରେ ପାଣିନାସି ଭିତରେ ଶୁଭିଲ ଛଲର ଛଲର । 'ସେ' ନାହା ଭିଡ଼ିଲ । ଧାଡ଼ି ହୋଇ ଜହ୍ନ ଆଲୁଅକୁ ମେଞ୍ଚେ ମେଞ୍ଚେ ଧରି ଶହ ଶହ ବର୍ଷର ପୁ...ଣା ବରଗଛ ଠିଆ ହୋଇଥାନ୍ତି । ଢିପ ଉପରୁ ତାହାର ଆଡ଼କୁ ଅନାଇଁ ପଲେ ବଳୁଆ ଭୁକିଲେ, ତା'ପରେ ଅନ୍ଧାର ଠାଏ,

ତା'ପରେ ଅନ୍ଧାର ଠାଏ, ଚେପଣ କ ତା'ର ଆଗମନ ସମ୍ବାଦ ଦଣ୍ଡକେ ଚ୍ଛରଆଡ଼େ ଖେଳିଗଲା । ଗ୍ରେଟ ପାହାଡ଼ ପରି ଢିପ ଉପରକୁ ସେ ଚଢ଼ିଗଲା । ଉପରୁ ଅନାଇଁ ରହିଲା; ସରୁ ହୋଇ ସାତପଡ଼ାର ଭୂଇଁ ନାସି, ଘନକରେ ଚଲିକା, ପାଖେ ସମୁଦ୍ର । ସମୁଦ୍ର ବାଲି ଧଳା ଜକ ଜକ ଦିଶୁଛି । ସମୁଦ୍ର ଗର୍ଜନ ଶୁଭୁଛି । ପାଖ ପାଖ ହୋଇ ଚଲିକାରେ କେତେ ଦ୍ୱୀପ, କୁହୁଡ଼ିଆ ଜହ୍ନଆଲୁଅ ଘୋଡ଼େଇ ରଖିଛି ।

ତୁନିତାନ ଠିଆ ଠିଆ ସେହି ଦୃଶ୍ୟକୁ ସେ ଯେପରି କ ଆଖିବାଟେ ପିଇ ପିଇ ଗଲା । ହେଇ ସେକରେ, ପଲେ ବାଲିହଂସ ଜୁକୁ ଜୁକୁ ଆଖି କରି ଠେଲି ଠେଲି ହୋଇ ଠିଆ ହୋଇଛନ୍ତି । ଅସ୍ରାଏ ପାଣିଦର୍ପଣରେ ହଂସ କେତୋଟି ଭାସୁଛନ୍ତି । ଆଖି ଆଗରେ ବଢ଼େଇ ହୋଇ ରହିଛି ଜହ୍ନଆଲୁଅଝଲଝଲ ଚଲିକା ।

ସେ କାନ ଡେରିଲା । କୁହୁଡ଼ି ଉହାଡ଼ରୁ ଦୂରରୁ ପାଖେଇ ଆସୁଛି ଅଦେଖା ହଂସର ଡାକ ।

"ହାଉଚ"—'ସେ' ବଡ଼ପାଟିରେ କାହାକୁ କହିଲା । ତା'ପରେ ଝଲ ଝଲ ଦିଶୁଥିଲା ଚଲିକାର ଢେଉ । 'ସେ' କାହିଁ ଖାପି ଯାଇଥିଲା ।

ତା'ପରେ ସେଠର ଖରାଦିନେ—

ଶୁନ୍‌ଶାନ୍ ହୋଇ ପଡ଼ିରହିଛି ଚଲିକା, ହଂସ ନାହାନ୍ତି, ଖାଲି ଡେଙ୍ଗା ଡେଙ୍ଗା ବଗ, ପାଣିକୁଆ, ଚଲି, ମାଛରଙ୍କା । ପୋକ ଖୁଣ୍ଟି ଖାଇବାକୁ ପାଏ ଦ'ପା ବାଟଯାକେ ଗହଳ ହୋଇ ବଣି ଚଢ଼େଇ, ମହା ମହା କଜଳପାଠ ! ବୈଶାଖର ଝାଞ୍ଜି ପିଟୁଛି, ଶୁଖିଲା ଆଖିରେ ଲୁହପରି ଚଲିକା ବକଲ ଦିଶୁଛି । କୂଳରୁ ଗୁଡ଼ ଯାଇଛି କେତେ ବାଟ ।

ଠାଏ ଠାଏ ତା'ର ଶୁଖିଲି ଚକ୍‌କଣ ତଳରେ କଣ୍ଟାଳିଆ ମହମବୋଲା ଗାଢ଼ ସବୁଜା ଘାସ ଆଉ ଗୋଜା ଗୋଜା ଦଳ । ଠାଏ ଠାଏ ଫଡ଼ାଫଡ଼ା ପଙ୍କ ମୋଡ଼ମୋଡ଼କା ହୋଇ ପଡ଼ିଛି । କେଉଁଠି ଖାଲି ବାଲିସବୁ, ଉପର ଅଳ୍ପ କାଳିସ୍ରୁ, ତଳେ ତଳେ କେଉଁଠି ଛପିଲା ଯନ୍ତାପରି ପଙ୍କୁଆ ଦହ, ଭୂଷା ଉପର ଶୁଖିଲା । ଉଞ୍ଚ ଢିପ ଆଉ ଘେରି ବନ୍ଧ ତଳକୁ କୁଢ଼ କୁଢ଼ ଦଳ ଖରାରେ ଜଳି କାଳା ହୋଇ ପଡ଼ିଛି । ଡେଣିକ ଶୁଖି ଆସୁଥିବା ପଙ୍କରେ ସଢ଼ୁଥିବା ଦଳ, ଡେଣିକ ବହଳ ସବୁଜା ଦଳ, ତା'ପରେ ପାଣି ।

ପବନରେ ଗାଢ଼ ଫଦ୍‌ଫରସ୍ ଗନ୍ଧ । ଆକାଶ ଧୂଳିଆ, ମୁଆଡ଼େ ଚାହିଁଲେ ବାଲିପଟା, ବାଲିବନ୍ତ, ଖରାରେ ଜଳୁଛି । ଅସ୍ରାଏ ଅସ୍ରାଏ ତାଳବଣ, ତା' ଚ୍ଛରକରେ ନାଗଫେଣି, କାଢକାଢକା ଟାଆଁସିଆ କଣ୍ଟା । ଠାଏ ଠାଏ ବାଲିପଟା ଉପରେ ରଥ ଦଉଡ଼ି ପରି ଲମ୍ବ ଲମ୍ବ ଲତି, ଗୋଟିଏ ଗୋଟିଏ ପଣ ଗଜୁରିଛି ।

ନ ହେଲେ ଘୁଙ୍ଗା ବାଲି, ପାଏ ଉପା ବାଟରେ କେଉଁଠି କେମିତ ଗୋଟିଏ ଗୋଟିଏ ଲୋଟଣୀ ବର କ ଅଛ କେଉଁ ଗଛ । ମରୁଭୂମିରେ ଗ୍ରୁନ୍ନ କଶଛ ।

ଚିଲିକା ଶୁଖି ଏ ଦ୍ୱୀପରୁ ସେ ଦ୍ୱୀପକୁ ଯିବାକୁ ବାଟ ଫିଟିଛୁ, ପୁଣି ଗୋଟାଏ ଦ୍ୱୀପରେ ଏକର ସେକର ହେବାକୁ । ଆଗେ କୁଆଡ଼େ ବାହାରଲେ ଜୋକ, ସାଙ୍କୃଶ, ପାଣିବସ୍ତୁ ସାଲୁ ସାଲୁ, ଅଣ୍ଟାଏ ପାଣି, ଜଙ୍ଘେ ପାଣି । ସବୁ ଶୁଖିଲା ଠାଉ ଠାଉ ପଡ଼ିଛୁ ।

ଗଞ୍ଜାମ ଯିବା ବଡ଼ ସଡକରୁ ପାଲୁର ବାଟେ ବଙ୍କେଇଗଲେ ପସ୍ୱାଗି ଟପି ଚିଲିକା ଭିତରକୁ ପାଇକରାପୁର, ନନ୍ଦାଲ, ରାମଲେଙ୍କା, ବ୍ରାହ୍ମଣଦେଓ, ସାନ୍ତରାପୁର, ବଜ୍ରକୋଟ, ଉଦୟଗିରି କ ଚଲାବାଟ ପଡ଼ିଛୁ । କନ୍ଦାଖାଇ ନାଯି ଶୁଖିଛୁ, ଗ୍ଲଲ ଗ୍ଲଲ ଗଲେ ଆଉ ଦ୍ୱୀପ ପଡ଼ିବ, ମାଲୁଦ୍ ଦ୍ୱୀପ । ତା'ପରେ ଆଉ ନାଯି ଶୁଖିଛୁ, ଟେଉଁଠି ନାହା ଗ୍ଲଲେ, ବାଟ ପଡଉଛୁ ଶିଆଳ ଦ୍ୱୀପକୁ । ସେପାଖର ମାଇଲାଏ ଓସାର ଗମ୍ଭୀର ନାଯି ଶୁଖିଲ ପଡ଼ିଛୁ । ଗ୍ଲଲଗଲେ ନଗ୍ରୁଟିଆ ବାଲିପଟା ସେକରେ ପାରକୁଦ ଦ୍ୱୀପ, କୃଷ୍ଣପ୍ରସାଦ ଗଡ଼ । ସେଠୁ ସେହିପରି ଶୁଖିଲ ନାଯିରେ ଗ୍ଲଲଗଲେ ଛତପ ଦ୍ୱୀପ । ଛତପ, ଦେଉଳପଡ଼ା, ସିପିଅ, ଗୋମୁଣ୍ଡିଆ ବାଟେ ଯାଇ ଆଉ ପାଣିନାଯି ଟପିଲେ ନୂଆପଡ଼ା ଦ୍ୱୀପ, ବ୍ଲୁରୁବେଇ, ତା'ପରେ ବଡ଼ ଚିଲିକାର ଅଗ୍ରାଏ ଡେଇଁ ଦେଲେ ସାତପଡ଼ା ଦ୍ୱୀପ, ଚିଲିକା ନାଯି, ମାଣିକପାଟଣା, ସବୁ ହାର ପରି ସଜା ହୋଇ ରହିଛୁ ପଶ୍ଚିମରୁ ପୂର୍ବକୁ । ବଣାଶହେ ବର୍ଗମାଇଲରେ ସତର ହଜାର ଲୋକଙ୍କର ବାସ ।

ଭିତରକୁ ପଶିଲେ ବାଟେ ବାଟେ ଅଗ୍ରାଏ ଅଗ୍ରାଏ ଘଞ୍ଚ କଆବଣ, ଢ' ଢ' ଯୁକ୍ତ ଉଚ୍ଚ ଠିଆକଆ, ତାଳପତ୍ର ଶୁଖିଯାଇଛୁ । କେଉଁଠି ଲମ୍ବୁହୋଇ ଲାଗି ରହିଛୁ ତାଳବଣ । ନ ହେଲେ ବାଲିପଟା, ଉଚ୍ଚ ବାଲିବନ୍ତ, ଶୁନଶାନ୍ ନଗ୍ରୁଟିଆ । ସେହି ବାଲିକୂଳ ଆଉ କଆବଣ ଉଚ୍ଚୁଆଳରେ ଦୂରରେ ଦୂରରେ ଗୋଟିଏ ଗୋଟିଏ ଗାଁ, ଲଙ୍କାଆମ୍ବ, ପୁନାଙ୍ଗ, ତେନ୍ତୁଳି, ଆମ୍ବ, ପଣସର ତୋଟା, ଡେଙ୍ଗା ଡେଙ୍ଗା ତାଳଗଛ, ଗେଧେକା ଖଜୁରିଗଛ, ତା'ର ଉହାଡ଼ରେ ଢ' ଢ' ଧାଉଡ଼ି ଘର, କଆ-ଗୋରଡ଼ାର ଝାଟିରେ ମାଟି ଗ୍ରୁଟି ଦେଇ କାନ୍ଥ, ତାଳଗଣ୍ଡିର ଦୁଣ୍ଡ ଶେଣି, ତାଳ-ବରଡା ଛୁଆଣି । ଅଲଗ କଚ୍ଛ ମାଟିକାନ୍ଥ ନଡ଼ା ଗ୍ଲଲର ଘର । ଠାଏ ଠାଏ ଅଗ୍ରାଏ ଅଗ୍ରାଏ ନେଳସାଲୁସାଲୁ ଖାରଆ ପାଣିର ପୋଖରୀ । ଙ୍କା ଲୋଟଣୀ ବର ଗଣ୍ଡିରେ ସିନ୍ଦୂର ମାଖ ଠାକୁରାଣୀ, ପୁଣି ସେହି ନଗ୍ରୁଟିଆ ବାଲିବନ୍ତ ।

ଖୋଲମରା ଝାଞ୍ଜି ବୋହୁଥାଏ । ପାଣି ନ ଥାଇ ବାଲିବନ୍ତ ଉପରେ ଚିଲିକା ପରି ଦୂରର ମଞ୍ଚଚକା ଡେଉ ନାଚୁଥାଏ । ବାଲି ତାତ ଖୋଜେ ଗଲେ ପାଦ ପୋଡ଼ି ଯାଉଥାଏ । କଆବଣରେ ତାଳ ବାହୁଙ୍ଗାରେ ତତଲା ବାଲିବୁହା ପବନ ପିଟି ପିଟି ଅନବରତ ଲାଗି ରହିଥାଏ, ସର ସର ଝାଇଁ ଝାଇଁ ଶବ୍ଦ । ମରୁଭୂମିରେ ଓଏସିସ୍ ପରି ଗୋଟି ଗୋଟିକିଆ ଗାଁ ହାଲିଆ ହୋଇ ଢୁଳୋଉଥାଏ ।

ସିସିଆ ଗାଁରେ ଭାଗବତ ଟୁଙ୍ଗିରେ ଭୀମ ଦୁଃଶାସନ ପରି ଧସ୍ତାଧସ୍ତି ହୋଇ ଘୁଙ୍ଗୁଡ଼ି ମାରୁଥାନ୍ତି ଦୁଇଜଣ ଷଣ୍ଢାଷଣ୍ଢା ମଣିଷ ।

ଢଢପ ମେହେନ୍ତ୍ରର ସାହିରେ ଆଠ ଘର ହରିଜନ ଜଆଁଗୋରଡ଼ା ଚରି ସୁରସେଣିଆ ଗଉଣି ବୁଣୁଥାନ୍ତି, ବିକାଳେ ଗୋଟାକୁ ଗୃହଅଣା ।

ଗୋମୁଣ୍ଡିଆ ଗାଁରେ ସାନ୍ତ୍ରାପ୍ରଚର ବାନାମ୍ବର ଦାସ ନୋଲି କୁଣ୍ଡଳ ହଲେଇ ବାବୁରି ବାଳ ଝାଙ୍କି ଝାଙ୍କି ବଡ଼ ବଡ଼ ଲୋକଙ୍କ ଛଇ ଛଟକ ନକଲ କରି ହସୋଉଥାନ୍ତି, ବସିଥାନ୍ତି ଦଳେ । କଟକ ତଳହଟିର ନାଟ୍ୟଗୁରୁ ରାମଚନ୍ଦ୍ର ସ୍ୱାଇଁଙ୍କ ରଚିତ 'ରାମରାଜ୍ୟ ନାଟକ' ଅଭିନୟ ପାଇଁ ଅଭ୍ୟାସ ହେଉଥାଏ । ବାଣପୁରର ନାଟକ ଅଧିକାରୀ ଧୋବେଇ ରଣା ଶିଖେଇବାକୁ ଆସିଥାନ୍ତି । ବସି ହାରମୋନିଆ ଉପରେ ଆଙ୍ଗୁଠି ଖେଳାଉଥାନ୍ତି ।

ବ୍ରାହ୍ମଣ ଦେଓ ଭାଗବତ ଟୁଙ୍ଗୀରେ ତାଳପତ୍ର ପୋଥିରେ ପଢ଼ା ଲାଗିଛି ମୈଥିଳୀ କବି ବିଦ୍ୟାପତିଙ୍କ ପଦାବଳୀ ।

ନନ୍ଦଲା ଗାଁରେ ବୋଲା ଲାଗିଥାଏ ବ୍ରଜମାଧୁରୀ । ସତସ୍ତରୀ ବର୍ଷର ପ୍ରକାଣ୍ଡ ଆକାର ବୃଦ୍ଧ ବାଞ୍ଛାନିଧି ଗଗନ କମ୍ପେଇ ତାଙ୍କ ବାପା କବି ସତ୍ୟବାଦୀ ନାଏକଙ୍କ ରଚିତ କାବ୍ୟ ବୋଲୁଥାନ୍ତି, ଟୋକାମାନେ ପାଳି ଧରୁଥାନ୍ତି ।

ସେହି ପାଖରେ ଠାଏ ବାଲିକୁଦ ଉପରେ ଉଜୁଟା ତାଳଗଛ ମଝି ସନ୍ଧରେ ଗୋଟାଏ ଗଛକୁ ଆଉଜି 'ସେ' ଠିଆ ହୋଇଥାଏ, ଶୁଣୁଥାଏ ଆଉ ଭାବୁଥାଏ । ଭାବୁଥାଏ ସେହି ଦୁର୍ଦ୍ଦିନର କଥା । ଉଣେଇଶ ଶହ ବୟାଳିଶରେ କଳାକଟି କଟି ଅନ୍ଧାର ରାତିର ବଢ଼ି ତୋଫାନ କଥା, ଯେତେବେଳେ ଚିଲିକା ଖାଇବାକୁ ଆସିଥିଲା । ଚିଲିକା ଦାଢ଼ରେ ଶରଧାପୁର, ଲକ୍ଷଣପୁର, ମଠପୁର, ଭିଁରାକୁଦ, ସୁନ୍ଦରପୁର, କୋଲକୁଦ ସକାଳକୁ ନିଶ୍ଚିହ୍ନ ହୋଇସାରିଥିଲା, ଶହ ଶହ ମଡ଼ା ଭାସୁଥିଲେ । ଖାଲି ପଡ଼ିଛି, ଗୋଟାଏ ଗୋଟାଏ ଆମ୍ବଗଛ, ପଇସ ଗଛ ତା'ର ସଙ୍କେତ । ପୁରୁଣା ନନ୍ଦଲା ସେହି ବଢ଼ିରେହିଁ ଗଲା । ଅଧପୋତା ପୋଖରୀ, ଖଣ୍ଡିଆ ତୋଟା, ଖାଲି ପଡ଼ିଆ ତାର ସଙ୍କେତ । ଆଉ ଏ ନୂଆ ନନ୍ଦଲା ବସ୍ତି ହଉଛି ।

ସେହିପରି ଗଲେ ପୁରୁଣା କବି ଦଳ ଦଳ । ଏହି ଗୋଟିଏ ପରିବାରରେ ତ ! ମୋଟେ ଚାରିପୁରୁଷ ତଳର କଥା । କେଶବ ନାଏକ କବି ଓ ପଣ୍ଡିତ ଥିଲେ । ତାଙ୍କର ପୁଅ ସତ୍ୟବାଦୀ ନାୟକ, ନାଁ ଡାକ କବି । ପାରିକୁଦ ରାଜାଙ୍କ ସୀମାକରଣ । ତାଙ୍କ ପାଞ୍ଚ ପୁଅରୁ ପଦ୍ମଚରଣ ସୀମାକରଣ ହୋଇ 'ମାନସିଂହ' ପଦବୀ ପାଇଲେ । ଯୁଗଳଚରଣ ଥିଲେ ପ୍ରସିଦ୍ଧ ନାଟ୍ୟ ଲୀଳା ଗାୟକ, କିଛି କବିତା ବି ରଚିଥିଲେ । ସତ୍ୟବାଦୀ ସିଦ୍ଧାର କୋଡ଼ିଏ ବର୍ଷ ପରେ ପଦ୍ମଚରଣଙ୍କ ପୁଅ ଜନ୍ମ ହେଲେ ମାୟାଧର, ଦି ବର୍ଷ ନ ହେଉଣୁ ତାଙ୍କ ବାପା ମା' ଡକାଡକି

ହୋଇ ଚାଲିଗଲେ । ଯୁଗଳଚରଣ ଶିଖାଇଲେ ସଙ୍ଗୀତ । ଗମ୍ଭାରି ଗାଁର ନାଥ ମହାନ୍ତି ହାତରେ ଖଡ଼ି ଦେଲେ । ମାଷ୍ଟ୍ରାଧର ପଚିଶ ସେର ଓଜନ ଗଦା ଟେକିଲେ ନାହିଁ, ତିନି ମହଣ ଓଜନ ପଥର ଟେକିଲେ ନାହିଁ, ଫରି ଖେଳିଲେ ନାହିଁ, ତା'ତ ଏବେ ବି କରୁଛନ୍ତି ପାଇକରାପୁରର ନରସିଂହ ଦଳେଇ । ମାଷ୍ଟ୍ରାଧର ସୀମାକରଣ ହେଲେ ନାହିଁ । ବିଦେଶ ଗଲେ, ହେଲେ ଶିକ୍ଷାବିତ୍, ଆଉ କବି । ସ୍ନେହରେ ତା'ର ଆଖି ଚଳ ଚଳ ହସିଲା । ଆଃ ! କବିଟିଏ ଜନ୍ମ ହେଲା, କବିଟିଏ ବଢ଼ି ଉଠିଲା । ଯେପରିକି ପୁରୁଣା ନନ୍ଦଳ ପରେ ନୂଆ ନନ୍ଦଳ ।

ତା'ପରେ ପବନର ସାଇଁସାଇଁକି କାନ ଡେରିଦେଇ ଦୂରର ମଣ୍ଡିଚକାକୁ ଅନାଇ ସେ ଚନ୍ଦ୍ରାରେ ଚନ୍ଦ୍ରାରେ ଦୃଷ୍ଟିକୁ ସଙ୍କୁଚିତ କଲା । ଭାବିଗଲା, କେବେ କବି କେଉଁ ଲେଖିବ ଚିଲିକାର କାବ୍ୟ ?

ସେଇ କେବେ କିଏ ଜଣେ ଦେଖିଥିଲା ମଲ୍ଲ କବିଙ୍କର ଖୋଲପାର ଉପରି, ଦି'ପଦ ଲେଖିଥିଲା ରଙ୍ଗ କେଇ ମେଞ୍ଚା—ଆଉ,—ବାର ଆଡୁ ବାର କଥା, ହିମାଳୟ, ରାଜସ୍ଥାନ, କାଶ୍ମୀରେମା, କେଉଁ ରକ୍ତବାହୁ, ସେ କଣ ଚିଲିକାର ରୂପ ? ଚିଲିକାର ପ୍ରାଣ ? ଚିଲିକାର କମିଆଁ ?

କିଏ ଗାଇବ ତା' ପ୍ରାଣର କଥା ? ଏଇ ତାର ନଗ୍ନଚିଆ ବଇଶାଖୀ ଝଞ୍ଜିର ଶୋଷ । ଆଉ ସେଇ ଇନ୍ଦ୍ରନୀଳ ବେଳାର ଆକୁଳ କାମନା ।

ଇନ୍ଦ୍ରନୀଳ ଆଖିରେ ଆକାଶକୁ ଚାହିଁ ସେ ଆଶା କରୁଛି । ପାଣିଘେରା ସାନ ଦ୍ୱୀପ ଉପରେ ମଇଁଷି ପିଠିରେ ଶୋଇ ରହି ମଇଁଷିଆଳ ଟୋକା ଦେଖୁଚି ପ୍ରକାଣ୍ଡ କୁଞ୍ଜବଳର ଚର୍ଚ୍ଚି । ଗେଣ୍ଡେଇ ହଂସ ଅଣ୍ଡାପାଣି କରୁଛି । ଭୁଆସୁଣୀ ମଗର ମୁଣ୍ଡ ବାଟେ ପାଣି ପିଚକାରି ମାରୁଛି । ଲମ୍ବା ଡେଙ୍ଗା ସଜାଡ଼ି ଧରି ବାଲିରେ ଲେପ୍‌ଟେଇ ଲେପ୍‌ଟେଇ ଛକ ଛକ ଚାଲିଛି କେଉଟ, କୂଳ ଆଖପାଖ ଦଶସେରିଆ ଭେକେଟିର ଭୂଷ୍ଟିକୁ ଅନେଇ କରି କରି । ସୁଁ ସୁଁ ସୁଁ ସୁଁ ସାଇଁ ସାଇଁ ହୋଇ ଅବିରତ ବୋହି ଲାଗିଛି ଚିଲିକା ପବନର ସଙ୍ଗୀତ । ଚିଲିକା ଅପେକ୍ଷା କରି ରହିଛି ଅନାଦି ଅତୀତର ଅନନ୍ତ ଜନ୍ମ ଓ ଖଟିଖିଆ ମଣିଷଙ୍କ ଅଲେଖା ଇତିହାସ ଠୂଳ କରି ।

କେବେ ଲେଖାହେବ ତାର କାବ୍ୟ ?

ତାର ପ୍ରକାଣ୍ଡ ଭାବବହୁଳ ମୁହଁ ଉପରେ ହାତ ବୁଲେଇ ଆଣି ସେ ଆପଣାକୁ ପ୍ରବୋଧିଲା, ହେବ, ହେବ, ଏ ଜାତି ମରି ନାହିଁ ।

ସଙ୍ଗୀତ ଚାଲିଛି । ସେ କାନ ଡେରିଲା, ଆଉ ଭାବିଲା, ବ୍ରଜମାଧୁରୀ ସମ୍ପୂର୍ଣ୍ଣ ହେଲାନାହିଁ । କଂସକୁ ମାରି କୃଷ୍ଣ କୁବୁଜାପୁରରେ ରହିଥିଲେ । କବି ଚାଲିଗଲେ । ନ ହେଉ ସମ୍ପୂର୍ଣ୍ଣ, କଂସକୁ ମାରିଦେଇ ଗଲେ । ଶ୍ରୀ ଚୈତନ୍ୟଭକ୍ତ କବି, ଲେଖୁ ଲେଖୁ କେଉଁଠି ଟିକିଏ ଟିକିଏ ବ୍ରଜବୋଲି ଓ ବଙ୍ଗଳା । ତାଙ୍କୁ ମିଶାଇ ଦେଇଛନ୍ତି,

ଗୌଡ଼ୀୟ କୀର୍ତ୍ତନ ପରି ଶୁଭିବ ବୋଲି । ଯାହା ଲେଖିଲୁ, ହେଉଁପରି ଏହି ଗୀତ ଏଠା ମଣିଷଙ୍କୁ ବାଇ ଲଗାଉଛି । ଏଇ ତାଳପତ୍ର ଉପରେ ଲେଖନ ଲେଖିଲୁ, ମୁନରେ ଖୋଳା ହୋଇଥିବା କଟଟା, ଏଇ ମଣିଷଙ୍କ ପାଇଁ ଏଇ ମାଟିର କଥା ଲେଖି ଥୋଇ ଦେଇଯାଇଛି, ଛପା ବହିର ନାଁଡାକ ଓ ଲେଖକ ଏ କାଦୁଅପାଣି ଏ ବାଲିଟଠାରୁଁ ଆଡ଼େଇ ହୋଇ ରହିଛନ୍ତି, ସେମାନେ ଅନ୍ୟ ଦେଶରେ କଥା କହୁଛନ୍ତି, ଏ ତାଳଗଛ ଶୁଣିନାହିଁ ତାଙ୍କ କଣ୍ଠ କେମିତି ।

ପାପୁଲିରେ ପାପୁଲି ପିଟି ପଞ୍ଚାଏ ବସି ତାଳ ଦେଉଥାନ୍ତି, ପାଳି ଧରୁଥାନ୍ତି । ଗୀତ ବୋଲୁ ବୋଲୁ ଭାବ ବଢୁଥାଏ । ସେ ଶୁଣୁଥାଏ—

କାଉଁଚ ମାଳିଆ ପୀତ ଦୁକୁଳିଆ
ଚକଣ କାଳିଆ
ଏ କାହା ସୁତ ଗୋ ମିତ,
କହ ସତ,
ଏ କାହା ସୁତ ଗୋ ମିତ ।

ଚୂଳେ ଜାମୁଡାଳି କଂଶୁକେର କଳି
ମୟୂରେର ଚନ୍ଦ୍ରିକା ବିରାଜିତ
ଘନ ଅଙ୍ଗେ ଗ୍ରନ୍ଥି ହେମମାଙ୍ଗେ ରନ୍ଧ୍ର
କେକୀ କଲାପ ଟେକି କରେ ନୃତ୍ୟ ।

ତିଳଫୁଲ ନାସା ପୁଟେ ନୀଳ ବସା
ବସଣୀ ଖଞ୍ଜି ଅଛୁ କି ଶୋଭିତ ।
ମୁଖ ଅରବିନ୍ଦ ମଧୁ ମକରନ୍ଦ
ପାନ କରିଅଛୁ କି ମଧୁବ୍ରତ ।

ହାସ ଦରଦର କିବା ସୁଧାଧାର
ସୁରଙ୍ଗ ଅଧରବୁ ଖସୁଚି କି
ନଚାଇ ଭୂରୁକୁ ନାଶିଆଁ ଖିରୁକୁ
ମାରିଆଁ ଉରକୁ କଟାକ୍ଷ କୋନ୍ତ ।

ଉରେ ମୋତିହାର କାଳିନ୍ଦୀ ବିହାର
କରୁ ଅଛନ୍ତି କି ମରାଳ ଯୁଥ
ନାକ ନାଗ ନରେ ନ ଥିବେ ତ୍ରିପୁରେ
ସମ କରିବାରେ ଏ ଶୋଭାକୁ ତ ।

ଏହିପରି ମଧୁ- ପୁର ନବନାରୀ
କୃଷ୍ଣରୂପ ଦେଖି ବିହ୍ୱଳିତ

ଅନ୍ତର ଭିତରେ ହୋଇ ଚାଲିଲା ତାଳ, ଖଞ୍ଜର ତାଳ, ସ୍ୱରର ଲହଡ଼ି
ଉପରକୁ ଉଠି ଚାଲିଲା, ଚାଲିଲା 'ବ୍ରଜ ବିହାର' ।

ଏହିଟି ବସୁଦେବ ସୁତ ।

ଶୁଣିଅଁ ଛଳ ଗୋ ଛଇଳ, ଅବେ ଦଖ ସାଖ୍ୟାତ ।
ଜନମ ବନ୍ଦୀ ମନ୍ଦିରରେ ଚୋରାଇଅଁ ତାତ ନଲେ
କଂସ ଡରେ ଗୋପଘରେ ରହିଥିଲମ୍ ନୃପତ ।

ଅବେ ଦଖ ସାଖ୍ୟାତ ।

ପୂର୍ବେ ପୂତନା ଅସୁରୀ ଗେଲା ସ୍ତନେ ବିଷ ଭରି
କ୍ଷୀର ସଙ୍ଗେ ପ୍ରାନ୍ ବେଗେ ଶୋଷି କଇଲମ୍ ନିପାତ ।

ଅବେ ଦଖ ସାଖ୍ୟାତ ।

ଶକଟା ତ୍ରୋନା ନାଶିଲି ଯାମଲାର୍ଜୁନ ଭାଙ୍ଗିଲି
ବଚ୍ଛୁକୁ ମାଇଲେ ବକା ଧେନ ଫାଲ କୈଲ ତ ।

ଅବେ ଦଖ ସାଖ୍ୟାତ ।

ସ୍ୱେ—ଧେନଏ— ଫାଲଏ—କୈଲତ

ଅବେ ଦଖ ସାଖ୍ୟାତ ।

—*—

ଅନ୍ତର ଭିତର ଭିତର ହୋଇ ଚାଲିଲା ତାଳ, ଖଞ୍ଜର ତାଳ ସ୍ୱରର ଲହଡ଼ି, ଉପରକୁ ଉଠି ଚାଲିଲା, ଚାଲିଲା 'ବ୍ରଜବିହାର'

ଏହିଟି, ବସୁଦେବ ସୁତ ।
ଶୁଣିଅଁ ଛଳ ଗୋ ଛଇଳ, ଅବେ ଦଖ ସାଖ୍ୟାତ !
ଶକଟା, ତ୍ରୋନା ନାଶିଲି ଯାମଲାର୍ଜୁନ ଭାଙ୍ଗିଲି
ବଚ୍ଛୁକୁ ମାଇଲେ ବକା
ଧେନ ଫାଲ କୈଲ-ତ, ଅବେ ଦଖ ସାଖ୍ୟାତ ।
ସ୍ୱେ-ଧେନଏ-ଫାଲଏ-କୈଲ-ତ, ଅବେ ଦଖ ସାଖ୍ୟାତ ।

ଆପଣାକୁ ଭୁଲି 'ସେ' ବି ସ୍ୱର ମିଶାଇ ଦେଲା, "ଅବେ ଦଖ ସାଖ୍ୟାତ,—ଅବେ-ଦଖ-ସାଖ୍ୟାତ—"

ସେହି ଗମ୍ଭୀର ବଂଶୀର ସ୍ୱର ପରି ସ୍ୱର ସବୁ ସ୍ୱରଠୁଁ ବଳି ଦୂରକୁ ଚହଟି ଗଲା ସେହି ନିଶୁତିଆ ଦ'ପହରେ । ସଙ୍ଗୀତ ବୋଲିବା ବନ୍ଦ ହୋଇଗଲା ।

"କିଏ ଗାଇଲା ? କିଏ ?" ଚମକିପଡ଼ି ଚାରିଜଣ ଗାଁ ଲୋକ ସେହି ତାଳଗଛ ଆଡ଼କୁ ଖେଦି ଗଲେ ।

କେହି ନ ଥିଲେ । ଦୂରରୁ ଶୁଭୁଥିଲା, କାପ୍ତାଟିଏ ବୋବାଉଛି ।

Digitized by srujanika@gmail.com

ସେମିତି ନିର୍ଜନ ଦ୍ୱିପହର ତାତପ ଦ୍ୱୀପରେ ଦେଉଳ ପଡ଼ାରେ ବାଲିକୁଦ ଉପରେ କମଳେଶ୍ୱର ମହାଦେବଙ୍କ ଦେଉଳ ଆଗରେ ଶହ ଶହ ବର୍ଷର ପୁରୁଣା ବଉଳଗଛ ତଳେ ତିନିହାତ ଓସାରର ଗଛ ଗଣ୍ଡିରେ ପିଠି ଡେରି ଦେଇ 'ସେ' ସମୁଦ୍ର ତଣ୍ଡିଆଡ଼କୁ ଅନାଇଁ ଠିଆ ହୋଇଥିଲା । ପୂର୍ବକୁ ଚିଲିକା ଲଗିଚି । ଚିଲିକା ଧାର ଶୁଖିଛି ।

ପାଖ ପାଖ ଚିଲିକାର ତଳରେ ଶାମୁଆ ଘାସ ବଢ଼ିଛି । ଦୂରରେ ସ୍ୱଚ୍ଛ ମରୀଚିକା । ଯେପରିକି ଚଢ଼େଇ ନାହାନ୍ତି, ଖାଲିପାଣି । ଆଗରେ ଦ୍ୱୀପ ପରି ସମୁଦ୍ର ପନ୍ତା ପାଖେ ଧାଡ଼ିଏ ତାଳଗଛ, ଯେପରିକି ଦୁର୍‌ବଳସ୍ୱରେ ପାନିଆର ଦାନ୍ତ । ସମୁଦ୍ରର ପାଣି ଦିଶୁନାହିଁ, ତା ଉପରର ଫାଙ୍କା ବିସ୍ତୃତ ଦିଶୁଛି ।

ସେହି ଫାଙ୍କା ବିସ୍ତୃତ ଆଡ଼କୁ ସେ ଅନାଇଁ ରହିଥିଲା, ଆଉ ଭାବୁଥିଲା,—ଏଇ ସେହି ଚହ୍ଲା ବାଟ, ସମୁଦ୍ର ଆଉ ଚିଲିକା ମଝିରେ ବାଲି ତଣ୍ଡି ଏଇ ହୋଇଥିଲା ଯୁଗ ଯୁଗର ଚଲା ବାଟ ଓଡ଼ିଶାରୁ ଦକ୍ଷିଣକୁ ଯିବାକୁ । ଏଇ ବାଟେ ବାରମ୍ବାର ଲାଗି ରହିଥିଲା ସୈନ୍ୟପଟୁଆର, ଆଉ ଜଗନ୍ନାଥଙ୍କ ଦର୍ଶନକୁ ଯାଉଥିବା, ଦର୍ଶନରୁ ଫେରୁଥିବା ଯାତ୍ରୀଦଳଙ୍କ ପଟୁଆର । ସେ ମୁଣ୍ଡେ ହୁଲଚଣ୍ଡୀ ଆରପଟେ ନରସିଂପାଟଣାରେ ଫୁଟି ବାହାରୁଛି, ଏବାଟେ ଏବେବି, ସେଠିଅଛି ଭଙ୍ଗାରୁଜା ହୋଇ କୋଠା, 'ଛବା', ଇଂରେଜ ଆସିବାର ପନ୍ଦର ବର୍ଷ ଆଗରୁ···

'ଗଞ୍ଜାମ ଦିବାନ ଉଲ୍ଲମ ବାହାଦୂର ସାହେବଙ୍କ ଦିବାନ ଆନନ୍ଦକୃଷ୍ଣ ପିଲ୍ଲା ବାଲକୃଷ୍ଣ ପିଲ୍ଲା ଶ୍ରୀ ପୁରୁଷୋତ୍ତମକ୍ଷେତ୍ର ଶ୍ରୀ ଜଗନ୍ନାଥ ମହାପ୍ରଭୁଙ୍କ ଦର୍ଶନ ନିମିତ୍ତ ଗତାଗତ ହେବା ଜନମାନଙ୍କ ବାତଜର୍ପୀଡ଼ା ଉପଶମନାର୍ଥରେ' ଛବା ତୋଳି ପୋଖରୀ ଖୋଳି ରଖି ଯାଇଥିଲେ ।

ଆଶା ରଖିଥିଲେ, 'ଧର୍ମାତ୍ମା ଲୋକେ ଏ କୀର୍ତ୍ତି ଆହୁରି ବୃଦ୍ଧି କରୁଥିବେ ।' ବତିଶିବଖରା ଘର, ଚୂନରେ ପୋଡ଼ା ଇଟାରେ ତିଆରି, ଗୋଟାଏ ଲେଖା ବଖରା ପଚିଶି ହାତ ଲମ୍ବ, ପାଞ୍ଚ ହାତ ଓସାର, ପାଞ୍ଚ ହାତ ଉଞ୍ଚ । ଓଡ଼ିଆରେ ତମିଲରେ ଲେଖି ଯାଇଛନ୍ତି ଖୋଲାଲିପି । ସେହିପରି ଆରପଟେ ପସ୍ମାଗିରେ ଛବା ।

କେତେ ଧର୍ମଶାଳା ଏଇ ତଣ୍ଡିକରରେ, ଭାଙ୍ଗିଛି, ପୋତି ହୋଇଛି, ଥରମା ହୋଇପଡ଼ିଛି । ଠାଏ ଠାଏ ସମୁଦ୍ର ପନ୍ତା ପଥର ବନ୍ଧା ମିଠା କୂଅ, ପୋଖରୀ । ଏବେ ସବୁ ଲୁପ୍ତ, ଏବେ ଏ ବାଟ ଶୂନ୍‌ଶାନ୍‌, ଅଚହ୍ଲା ।

କେତେ ହସ କାନ୍ଦ ସୁଖ ଦୁଃଖର ଲହରୀ ଖେଳୁଥିଲା ଏଇ ତଣ୍ଡିରେ, କେତେ ଦେହଉଲୁସା ମନଉଲୁସା ଜୀବନର ଖେଳ । ଏବେ ଖାଲି ଚକ୍‌ଚକ୍‌ ବାଲି, ମରୀଚିକା ।

ଏଇ ବାଟେ ଆଟ ସ୍ୱଳି କାଞ୍ଚି ଯାଇଥିଲେ ପୁରୁଷୋତ୍ତମ, ଆଗେ ଆଗେ ଧଳାଘୋଡ଼ା କଳା ଘୋଡ଼ାରେ ଚଢ଼ି ଦି'ଜଣ ଧାଇଁ ଯାଇଥିଲେ ଚଣ୍ଡାଳର ବେଶ

ରକ୍ଷିବାପାଇଁ, ମାଣିକପାଟଣାରେ ମୁଣ୍ଡ ବନ୍ଧା ପକାଇ ଗଉଡ଼ୁଣୀଠୁ ଦହି ଖାଇଥିଲେ । ଏଇ ବାଟ ତ !

ଏଇ ତ ସେ କମଳେଶ୍ୱର ମହାଦେବ, ପୂବକୁ ମୁହଁ । ଗଲାବେଳେ ପୁରୁଷୋତ୍ତମ ଦେବ କମଳା ଫଳ ଭୋଗ କରି ଯାଇଥିଲେ । ସେମାନେ ଦେଖିଛନ୍ତି, ଏଇ ବଉଳଗଛ, ବାଁ ପଟେ ଏଇ ଯେଉଁ ପୁରୁଣା ଲେଟଣି ବର, ମୂଳଗଛ ଗଳିଣି, ଓର ଠାଆ ହୋଇ ଶାଖା ଗଛ ଲମ୍ବା ବାହା ଟେକିଲେଇ ଠିଆ ହୋଇଛି, ସେମାନେ ବି ଶହ ଶହ ବର୍ଷର । କେଉଁ ପ୍ରାଚୀନ ଗୃହସ୍ଥ ସ୍ନେହ ଶରଧାରେ ଏ ବଉଳଗଛ ରୋପିଥିଲେ, ଏବେ ବି ସେହି ଅତୀତଙ୍କ ସ୍ନେହ ଆଶୀର୍ବାଦ ସଜଫୁଲ ଝଡ଼ାଉଛି, ଖରା ତଳେ ଛାଇ ଘୋଡ଼େଇଛି, ବଉଳ ମହକ ଚହଟୁଛି, ସେହି ଅତୀତର ।

ତା'ପରେ କ'ଣ ହେଲା ଏ ଦେଶର ?

ସେହି କଥା କହୁଛି ଚିଲିକା, ସବୁ ଅଛି କିଛି ନାହିଁ ।

ଛାଇ ବିସ୍ତ ବିସ୍ତ ଉଡ଼ି ଉଡ଼ି ଆସୁଛି ପ୍ରକାଣ୍ଡ ଗୃଧ୍ରପକ୍ଷୀ, ଅତୀତକୁ ଦେଖିଛି, ସେହି ଜାଣିଥିବ ଭବିଷ୍ୟର ରହସ୍ୟ । ପାଖ ହୋଇଆସୁଛି, ଚକ୍ରାପରି ଦିଶୁଛି ।

ଓ ! 'ସେ' !

କୂଳରକ୍ଷା ପାଇଁ ଠାକୁରଙ୍କୁ ସନ୍ତାନଭିକ୍ଷା ମାଗିବାକୁ ଆସିଲେଣି ଗୋଟିଏ ବନ୍ଧ୍ୟା ପରିବାର, ତଳେ ଡାହାଣ ପଟେ ନେଳିଆ ପୋଖରୀରେ ପାଦ ଧୋଉଛନ୍ତି । ଆରପଟକୁ ଚିପ ଆଡକୁ ଚାହିଁ । ଦେଉଳର ପୂଝାରୀ ଡାକିଲା, "କିଏ ସେ ସେଠି, ବଉଳଗଛ ତଳେ ?"

"କାହିଁ ? କୋଉଠି ?"

କେହି ନାହିଁ । ପୂଝାରୀ ଆପଣାକୁ ସାହସ ଦେବାକୁ ପାଟି କଲା 'ଶମ୍ଭୋ —ହେ କମଳେଶ୍ୱର ନିକାଲେଶ୍ୱର ଅକାଳମୃତ୍ୟୁ ବାରଣ—'

ହୁ—ହୁଆ ସମୁଦ୍ରପବନ ବଉଳଗଛକୁ ଦମକେଇ ଦେଇଗଲା ।

ବଉଳଫୁଲ ଝଡ଼ିଲା । ପୂଝାରୀ କହିଲା, "ପ୍ରତ୍ୟକ୍ଷ ଦେବତା, ଡାକିଲେ ଓଁ କରେ ।" ତା'ର ଛାତି ଦମ୍ ଦମ୍ ପଡ଼ୁଥିଲା ।

ସାମ୍ନାରେ ଦିଗନ୍ତ ବିସ୍ତୃତ ଶୂନ୍ୟ, ମଞ୍ଚିଚକା, ବାଲିବନ୍ତ ।

ଆଉ କ'ଣ ଉଠିବ ନାହିଁ ଏ ଦେଶ ?

କାଲିଜାଈ ମୁଣ୍ଡିଆ ଉପରେ ଏକୁଟିଆ ଠିଆହୋଇ 'ସେ' ଭାବୁଥାଏ,—

ଚିଲିକାପାଣିରେ ମୁହୂର୍ତ୍ତି ମୁହୂର୍ତ୍ତିକର ଭିନେ ଭିନେ ବର୍ଣ୍ଣପରି ନୂଆଯୁଗ ଆସିଛି । ସେମାନେ ଚିଲିକାର ଆତ୍ମା ଖୋଜି ଆସନ୍ତି ନାହିଁ । ତାଙ୍କର ଦରକାର

ଏ ଭୂଇଁ ତଳେ ପାଣି ତଳେ କି ବସ୍ତୁ ଅଛି । ପେଟ୍ରୋଲ୍ କି କୋଇଲା । ହୁଏତ ତା' ବି ବାହାରିବ । ପୁରୁଣା ହାଡ଼ର ନଶା ଆଉ ଅଙ୍ଗାର ଦେଇ ଅଗଣିତ ବର୍ତ୍ତିମାନର ଭାଗ୍ୟକୁ ବଦଳାଇବ । ଏ ହଂସମାନଙ୍କ ଡାକ, ଏ ଚହଲ ପାଣିପବନର ସଙ୍ଗୀତ ତାଙ୍କର ଦରକାର ନାହିଁ, ତାଙ୍କର ଲୋଡ଼ା କଳଯନ୍ତ୍ରର ଚିତ୍କାର, ହୁରୁ ହୁରୁ, ଦମ୍ ଦମ୍, ଘରଘର । ହୁଏତ ତା' ବି ଘୋଟିଯିବ । ଚିଲିକାର ଦ୍ୱୀପମାଳାର ଦାନାଗୁଡ଼ିକୁ ଏକାଠି ଗୁନ୍ଥି ପଡ଼ିଯିବ ସଡ଼କ । ଚିଲିକା ଆଉ ସମୁଦ୍ର ସନ୍ଧିର ସୁନ୍ଦର ତଣ୍ଡାରେ ବସିଯିବ ଅଳ୍ପ ଝଲମଲ ସହର, ଶ୍ରେଷ୍ଠ ସ୍ୱାସ୍ଥ୍ୟନିବାସ ।

କିନ୍ତୁ ସେମାନଙ୍କ ଲକ୍ଷ୍ୟ ନୁହେଁ ମଙ୍ଗଳ-ସୂଅପରି ଏକାଠି ସ୍ନେହରେ ଚଳିବା । ତାଙ୍କର ଲକ୍ଷ୍ୟ ପ୍ରକାଣ୍ଡ କେରୁଅ ଚଢ଼େଇ ମାରି ଖାଏ, ସ୍ୱାର୍ଥ ଆଉ ବଳରେ ବିଳାସ କରେ ।

ଅତୀତ ! ଅତୀତ । ଏଇ ବାଟେ ନମ୍ର ବିନୀତ ହୋଇ ସେମାନେ ବୋଇତ ଚଢ଼ି ଚାଲିଯାଇଥିଲେ ଦେଶ ଦେଶ ବୁଲି ଶାନ୍ତି କରୁଣା ମୈତ୍ରୀର ଧର୍ମ ପ୍ରଚାର କରିବାପାଇଁ । ଅଗିଅଣି ଶାନ୍ତିର ଥାଟ ।

ତା'ପରେ ଅନ୍ଧାର ଛିଣ୍ଡି ପଡ଼ିଲା । ଉଠିଲେ ଜଳଦସ୍ୟୁ, ମାରଣା ସାଆନ୍ତ-ଦଳ, ରକ୍ତ ଢାଳି ବିଭବ ବାଣ୍ଟି ବାଡ଼େଇ ପିଟି ହୋଇ ବୃଥା ଗଲେ ।

ଏକୁଟିଆ 'ସେ' ଠିଆ ହୋଇଥିଲା । ଦେଉଳ ଠିଆ ହୋଇଥିଲେ କାଳୀଜାଈ ପାଖେ ଲୋକେ ମାନସିକ କରି ଗୁଡ଼ିଥିବା ଛେଳିମାନେ, ଠା ଠା ହୋଇ କୁକୁଡ଼ା ।

ତଳେ ଦେଉଳଠୁଁ ଖଣ୍ଡେ ଗୁଡ଼ ମିଠାପାଣିର ବାମ୍ପୀଟିଏ, ନ ହେଲେ ଦୁଇ ପାହାଡ଼ ସନ୍ଧିରେ ସାନ ପାଣି ଖାଲଟିଏ, କେବେ ବି ଶୁଖିପାଏ । ମଣିଷ ଦେଖିଲେ ରଙ୍କପରି ଏ ଛେଳି କୁକୁଡ଼ା, କେବେ କେବେ ଶୋଷରେ ମରନ୍ତି ।

ପଞ୍ଚ ବୁଡ଼ି ଆସୁଛି । ଉପରେ ବଗ୍ୱଟ ଆକାଶ । ଘୂରଆଡ଼େ ପାଣି । ତଳେ କାଳୀଜାଈ ଦେଉଳରେ ଆଉ ମୁଣ୍ଡିଆ ଉପରେ ଗଛରେ ଜକାଜକ ହୋଇ ହଜାର ହଜାର କାଉ ବସିଛନ୍ତି । ବୃଦା ଉପରଯାକ ଚଢ଼େଇ ନେସି ହୋଇଛନ୍ତି । ପାହାଡ଼ ଛିଣ୍ଡିଛି, ପାହାଡ଼ ପୁଣି ଉଠିଛି । କଳାପାଣି ଉପରେ ଗ୍ରୁସ୍ୱାପଥ ପରି ଧାର ଧାର ଧଳା ଧଳା ସରୁ ଫିଟିଲା ପରି ଦିଶୁଛି । ସାମ୍ନାରେ କେତେ ଦୂରରେ ଅନ୍ଧାର ଧନୁପରି ବଗବଳୟ, ଗୋଟି ଗୋଟିକିଆ ଗ୍ରୁଇ ଗଛ ଠିଆ ହୋଇଛି । ମୁଠାକୁ ମୁଠା ଫୁଲ ଝୁଣ୍ଟାଡ଼ ହେଲାପରି କୁଆଡ଼ୁ କୁଆଡ଼ୁ ଆକାଶ ତଳକୁ ଚଢ଼େଇ ପଲ ଫୋପଡ଼ା ହେଉଛନ୍ତି । ଅପହଞ୍ଚ ଆକାଶର ଅସରନ୍ତି ପଟ ଉପରେ କେତେ ସାଜରେ ହାରପରି ଉଡ଼ି ଯାଉଛନ୍ତି କୁଆଡ଼େ କୁଆଡ଼େ । ବାଁ ପଟେ କେତେ ଦୂରରେ ଆକାଶ ତଳେ ଗୋଟି ଗୋଟି କଳା ଖଣ୍ଡପରି ନାହାମାନଙ୍କ ଠିଆ ପାଲ ।

ଅନ୍ଧାର ପଡ଼ିଲା । ଗୋଟିକିଆ ସବୁ ନାହାଟିଏ କାଳୀଜାଈ ଦ୍ୱୀପ ଗୁଡ଼ିକ କଳାଦର୍ପଣ ଉପରେ ଆସ୍ତେ ଲିଭିଗଲା । କରେ କରେ ପଛେ ପଛେ ପାଣିରେ ଖାଲୁଆ ଆଲୁଅର ଢେଉ ଖେଳିଲା, ଲିଭିଲା, ଝିକିମିକି ଫସ୍‌ଫରସ୍ ଆଲୁଅ । ଶୁନ୍‌ଶାନ୍ ଜଳ ବିସ୍ତୃତ ମଝିରେ ସିନ୍ଦୂରବୋଳା କାଳୀଜାଈ ଠାକୁରାଣୀ ଆଗରେ ସନ୍ଧ୍ୟାଦୀପର ଆଲୁଅ ଦାଉ ଦାଉ ଜଳିଲା ନାଚିଲା । ଆଉ ଠିଆ ହୋଇଥିଲା 'ସେ', ପ୍ରକାଣ୍ଡ ଆକାର, ହଠାତ୍ ପରିଷ୍କାର କଣ୍ଠରେ କହିଲା ।

"ମା ଆଦ୍ୟାଶକ୍ତି ତାରା, ଅଜ୍ଞତା ଦୂର କର, ଅନ୍ଧାର ଦୂର କର, ମଣିଷ ଜାତିକୁ କଲ୍ୟାଣ କର—"

ମୋଟା ବଳିଷ୍ଠ ଗମ୍ଭୀର ଉଦାରରେ ଆଳାପ ପରି ଖେଳିଗଲା ସେ ସ୍ୱର, ଅନ୍ଧାର ଚିଲିକା ଉପରେ । ଆଲୁଅ ଲିଭିଗଲା । ଦୂରରୁ ଉଡନ୍ତର ଶୁଭିଲା ହଂସର ଡାକ, କ୍ୱାଁକ୍ କ୍ୱାଁକ୍ କ୍ୱାଁକ୍ । ତା'ପରେ ସବୁ ତୁନି ପଡ଼ିଲା ।



# ପୁନର୍ଜନ୍ମ

ବାରଣ ବର୍ଷ ତଳେ—

ସେଦିନ ବି ମାଟି ଏମିତ ଥିଲା, ଭୂଇଁ ଢାଙ୍କିଥିଲା ବହଳ କଅଁଳ ଘାସ, ଆକାଶ ଉଦାର, ଦୁନିଆଁ ଓସାର ଥିଲା।

ସେଦିନ ବି ସମସ୍ତର ବସ୍ତୁସ୍ତର ପ୍ରତୀକ ପରି କଣକଆ ହୋଇ ଠିଆହୋଇ ରହିଥିଲା ଏହି ବଡ଼ ବରଗଛଟା' ଏମିତ ଛନ୍ଦାଛନ୍ଦ ତାର ଓହଳ ସବୁ।

ଜହ୍ନରାତି ଟେକ ଧରିଥିଲା ଜୀବନର ସମ୍ବାଦ। ଆଶା ଉଚ୍ଛ୍ୱାସରେ ମହକି ଉଠୁଥିଲା ଜୀବନ। ସେଦିନ ବି ବିଦେଶୀ କିଶୋର ଅଧଚନ୍ଦ୍ରା କିଶୋରୀ ଆଗରେ ଆପଣାର ହୃଦୟ ମୁକୁଳା କରିଦେଇ ଥରେଇ ଥରେଇ କହିଥିଲା—

"କହ, ଚନ୍ଦ୍ରାଦେବୀ, ବଞ୍ଚେଇବ କି ମାରିବ? ଆଉ ଏ ପ୍ରାଣରେ କୋଉଁ ଗୋପନ ରଖି ପାରୁନାହିଁ। ପ୍ରେମ ମୋତେ ପାଗଳ କରିଛି। ମୁଁ ତୁମକୁ ଭଲପାଏ—"

କହିଦେଇ ନିଶ୍ୱାସ ରୋଧି ଠିଆହୋଇ ରହିଲା। ବରଗଛ ଗୁଡ଼ିଠୁଁ ଅଳ୍ପ ଛାଡ଼ି ଚଟା ପଥର ଖଣ୍ଡିକ ଉପରେ ବସି ରହିଛି ଗୋଟିଏ ଯୁବତୀ; ଅପୂର୍ବ ସୁନ୍ଦରୀ। ଜହ୍ନ ଆଡ଼କୁ ମୁହଁ ବୁଲେଇଛି। ବରଗଛର ଦୁଇଟି ଅମାନିଆଁ ଡାଳ ସନ୍ଧରେ ଜହ୍ନ ତା ଉପରକୁ ଡେଉଁପରି କଳା ମେଘ ଗୁଡ଼ିଛି। ତାର କୁଞ୍ଚ କୁଞ୍ଚ ଧଡ଼ିରେ ନାନା ବର୍ଣ୍ଣର ଜ୍ୟୋତି। କିଛିବଧି ସନ୍ତରେ ଲୋକାଳୟଠୁଁ ଦୂରରେ କହିଦେଇ ଯୁବକ ଆପଣାଭୁଲି ହୋଇ ଅଟକି ରହିଗଲା; ସବୁ ସ୍ପନ୍ଦନ ବନ୍ଦ—ସମସ୍ତ ଶେଷ। ଶୂନ୍ୟରେ ଧ୍ୟାନ ଲଗାଇଛି। ଏହି କଥା ପଦକର ଉତ୍ତରକୁ ସାପେକ୍ଷ ହୋଇ ରହିଛି ତାର ଜୀବନର ନୂଆ ଯୁଗ।

ସନ୍ଧବେଳା—ତା ପରେ ଶୂନ୍ୟରୁ ସୃଷ୍ଟି ଉପୁଜିବ। କଣ ହେବ ତାର ରୂପ ରେଖ?

ସମସ୍ତ ଗଡ଼ିଗଲା। ସହଜ ହୋଇ ଯୁବତୀଟି ବସି ରହିଛି; ଗୋଟିଏ ପାଦ ତଳକୁ ଓହଳାଇଛି। ବଙ୍କାହୋଇ ଆଉଟି ଛକ ଭିଡ଼ିଛି ପଥର ଉପରେ। ବାଁ ହାତରେ ସୁନ୍ଦର ମୁହଁଟିକୁ ଅଳପେ ଢଳେଇ ଦେଇଛି। ସେହି ଶିଖରେ ଲଜ ପାଇଲା ପରି ବାରମ୍ବାର ଚନ୍ଦ୍ରମା ବଉଦର କୁହୁଳିକା ଓଢଣାତଳେ ମୁହଁ ଲୁଚେଉଛି ବାରମ୍ବାର ଛପି ଛପି ଦେଖୁଛି। ନିରେଖି ଗୁହିଁ ଠିଆହୋଇ ରହିଛି ଯୁବକ; ଚେତା ଚହଟି ଆସିଲଣି—ପ୍ରାଣ ଛଟପଟ ହେଲଣି। ଉଦ୍‌ବେଗରେ ଥରି ଥରି

ଦୃଷ୍ଟିକୁ ଶାଣ ଦେଇ ଯୋଖିଲଣି ସବୁ ସରୁ ହସିଲା ହସିଲା ଓଠ ଦଫାଳ ଉପରେ,— ଯେଉଁଠି ସେହି ସହଜ ଭଙ୍ଗୀ, ଉତ୍ତର ନାହିଁ ।

ବାରଶ ବର୍ଷ ତଳେ—ଗୌତମ ବୁଦ୍ଧ ନିର୍ବାଣ ପାଇସାରି ପ୍ରାୟ ହଜାରେ ବର୍ଷ ସାରିଥାଏ । ସେତେବେଳେ ବି ବିଶ୍ୱବିଜୟୀ ବୌଦ୍ଧଧର୍ମ, କିନ୍ତୁ ଗୌତମଙ୍କର 'ମହାଯାନ' ପନ୍ଥା ପରିବର୍ତ୍ତେ ବୌଦ୍ଧଧର୍ମର କଳେବରରେ ସେତେବେଳେ 'ବଜ୍ରଯାନ'ର ସ୍ରୋତ । ତାହାକୁହିଁ ସମସ୍ତ ଓ ଯୁଗ ଗ୍ରହଣ କରିଥାଏ । କଳିଙ୍ଗ ସେତେବେଳେ ଉଦୟର ଦେଶ—"ଉଡ୍ଡିୟାନ" । ଓଡ଼ିଶା ନାହିଁ ମାତୃଗର୍ଭରେ । ତାହାର ରାଜଛତ୍ର ଗଙ୍ଗାଠୁଁ କାବେରୀ ଯାଏ; ପୁଣି ସିଂହଳ, ମାଳୟ, ଚମ୍ପା ଆଦି ଭାରତସାଗରର ଦ୍ୱୀପମାନଙ୍କ ଉପରେ ଯୋଜନ ଯୋଜନକୁ । ତାର ରାଜଧାନୀ ସାଗରବେଳାରେ ତରଙ୍ଗାୟିତ ଦନ୍ତପୁର ଏବଂ ନଗର ଉପକଣ୍ଠରେ ପ୍ରସିଦ୍ଧ ବିଦ୍ୟା ନଗର । ବିଶ୍ୱବିଦ୍ୟାଳୟର ପୀଠ—"ଓଦନ୍ତପୁର ବିହାର" ଯାହାର ପ୍ରତିକୃତି ଗଢ଼ି ଥାପିଗଲେ ତିବ୍ବତରେ ସାମ୍ୟ ନଗରୀରେ କଳିଙ୍ଗର ରାଜପୁତ୍ର "ଗୁରୁ ପଦ୍ମସମ୍ଭବ" ।

ଶିଳ୍ପ ସାହିତ୍ୟ କଳା ବିଜ୍ଞାନ—ଆଜି ସକଳ ଶାସ୍ତ୍ରର ଗବେଷଣାର କେନ୍ଦ୍ର ଓଦନ୍ତପୁର ବିହାର । ଉନ୍ନତତମ ଚରମ ଦର୍ଶନ ତାର ସ୍ୱପ୍ନ; ସାର୍ବଜନୀନ ତାର ଭାବ । ସହସ୍ର ସହସ୍ର ବିଶୁଦ୍ଧଜ୍ଞାନକାମୀ ଆଗ୍ରହୀଙ୍କ ସାଧନାର ତେଜରେ ସେ ବିଦ୍ୟାର ସୂର୍ଯ୍ୟମଣ୍ଡଳ ପରି ଶୋଭୁଥାଏ । ସେ କାଳର ଅତି ଆଧୁନିକ ଆବିଷ୍କାରର ଫଳ ଗୋଟେଇ ନେଇ ନିଜ ଦେଶର ଉନ୍ନତି କରିବାକୁ ଦୂରଦେଶରୁ ଆସନ୍ତି ମହାପଣ୍ଡିତମାନେ; ଛାତ୍ର ଛାତ୍ରୀ ଆସନ୍ତି ଅନେକ । ସାଗର ସେପାରି ଶାକଦ୍ୱୀପରୁ ପୁଷ୍କରଦ୍ୱୀପରୁ ଆସନ୍ତି କଳିଙ୍ଗର ବୋଇତରେ ଚଢ଼ି ବୋଇତଆଳ ସାଥିରେ । ପୁଣି ଭୂଖଣ୍ଡ ଉପରେ କେତେ ପର୍ବତ ନଦନଦୀ ପାରିହୋଇ ବର୍ଷ ବର୍ଷ ବାଟରେ ବିତେଇ, ସୁଦୂର କପିଶ୍ (କାବୁଲ)ରୁ ଖୋଟାନ୍‌ରୁ, ତିବ୍ବତରୁ—ଓଦନ୍ତପୁର ଶାନ୍ତିକାମୀ ଜ୍ଞାନକାମୀ ସମସ୍ତଙ୍କର ପୀଠ ।

ସେହି ଓଦନ୍ତପୁର ବିଶ୍ୱବିଦ୍ୟାଳୟରେ ବିଜ୍ଞାନବାଦୀ ଦର୍ଶନଶାସ୍ତ୍ରର ତରୁଣୀ ଅଧ୍ୟାପିକା ଚନ୍ଦ୍ରାଦେବୀ । ବୟସରେ କନିଷ୍ଠା ହେଲେହେଁ ଜ୍ଞାନରେ ଅତୁଳନୀୟା ।

ଓଦନ୍ତପୁରରେ ସନ୍ଧ୍ୟା ଡାକିଥିଲା । ବଉଦ ଅପସରି ଗଲଣି ଆକାଶ ଉପରକୁ । ବର୍ତ୍ତମାନ ସେ ନାନା ବର୍ଣ୍ଣର ଝମାଝପ ଲଗିହୋଇ କଳଙ୍କୀ ଗୃହୁଆ ଜହ୍ନ ଜଳୁଛି । ଜହ୍ନ ଜଳୁଛି ମହତାପ ବାଣ ପରି । ତଳେ ଦୂରଦିଗନ୍ତରେ ଲେପି ହୋଇଯାଉଛି ଚିତ୍ରକରର ତୂଳିକାର ରଙ୍ଗ, ଅଜନ୍ତାର ଛବିପରି ମାୟାଗ୍ରସ୍ତ-ମୟ ଓଦନ୍ତପୁର ବିଶ୍ୱବିଦ୍ୟାଳୟର ତ୍ରିତଳ ଚତୁସ୍ତଳ ପ୍ରାସାଦ ସବୁ ଚନ୍ଦ୍ର କିରଣରେ ଅପୂର୍ବ ଦିଶୁଛି । ଦୂରରେ ଦନ୍ତପୁର ପୋତାଶ୍ରୟରୁ ସମୁଦ୍ରର ନିର୍ଘୋଷ ଶୁଭୁଛି; ଛନ୍ଦରେ ଲୀଳାୟିତ ।

"ଚନ୍ଦ୍ରା—ଶୁଣିବ ନାହିଁ ?"

ନୀରବରେ ଜହ୍ନକୁ ଚାହିଁ ଚନ୍ଦ୍ରାଦେବୀ ହସିଦେଲେ । ସମୁଦ୍ର ପରି ଗର୍ଜି ଉଠିଲା ଯୁବକର ହୃଦୟ । ଅଧୀର ହୋଇ ସେ ନିବେଦନ କଲା, "କହ ଚନ୍ଦ୍ରା ! ସମଗ୍ର ଜୀବନ ତୁମର ପାଦତଳେ ଅଜାଡ଼ି ଦେଉଛି, ପ୍ରାଣ ଚଞ୍ଚଳ ସବୁ । ତୁମକୁ ଦେଖିଲାଦିନୁଁ ମୁଁ ମୋର ହୃଦୟ ସମର୍ପି ସାରିଛି । ଆଉ ମୋର କିଛି ନାହିଁ, ମୁଁ ତୁମର ପ୍ରାର୍ଥୀ ।"

ଚନ୍ଦ୍ରାଦେବୀ ଭୁଲି ପଡ଼ିଲେ । ବୀଣାରେ ଆଳାପର ଗୁଞ୍ଜନ ଖେଳିଗଲା ପରି ଅଭିଭୂତ କରିଦେଇ ବାଣୀ ସ୍ଫୁରିଗଲା—"ମୁଁ ତାହା ଜାଣେ ରାଜପୁତ୍ର !"

ଯୁବକ ଚମକି ପଡ଼ିଲା; ଦୁର୍ବଳ ହୋଇ କହିଲା—"ରାଜପୁତ୍ର !" ଚନ୍ଦ୍ରାଦେବୀ ହସିଲେ; କହିଲେ—"ନୁହଁକି ? ଅସ୍ୱୀକାର କର, ଶୀଳଭଙ୍ଗ କରିବ, ମିଥ୍ୟାରେ ଦୋଷୀ ହେବ । ଜାଣେ, ତୁମେ ମଗଧ ରାଜପୁତ୍ର, ତମେ ତୋମ୍ବି ହେରୁକା । କେବଳ ରାଜପୁତ୍ର ନୁହଁ, ଭବିଷ୍ୟତର ମଗଧର ରାଜା । ନହେଲେ କାହାର ଧୃଷ୍ଟତା ହୁଅନ୍ତା, ଆସ୍ପର୍ଦ୍ଧା ଚନ୍ଦ୍ରାକୁ ପ୍ରେମ ନିବେଦନ କରନ୍ତା କଳିଙ୍ଗର ଓଦନ୍ତପୁର ପୀଠରେ—"

"କ୍ଷମା କର ଦେବି !" ଦୀର୍ଘଶ୍ୱାସ ତ୍ୟାଗକରି କରୁଣ ହୋଇ କହିଲେ, "ରାଜପୁତ୍ର, ହଁ; କିନ୍ତୁ ସେଥିରେ ଆଉ କିଣ ଅଛି ମୋର ? ରାଜ୍ୟତ୍ୟାଗ କରିଛି, ମୁଁ କେବଳ ନିଃସହାୟ ଭିକ୍ଷୁ । ଆଶା ଥିଲା ପୁଣି—ଯାଉ, କି ଯାଏ ସେଥିରେ ଆଉ; ଧୃଷ୍ଟତା ହୋଇଛି କ୍ଷମା କର ଦେବୀ ! ତୋମ୍ବି ହେରୁକାର ପ୍ରାର୍ଥନା ଆଉ କଳଙ୍କିତ କରିବ ନାହିଁ ଧରାତଳକୁ । ଶେଷ ନିବେଦନ କରୁଛି—କ୍ଷମା କର ଦେବୀ, ବିଦାୟ ନେଉଛି ।"

ଦୁଃଖରେ ଶୋକରେ ନଇଁ ପଡ଼ି ତୋମ୍ବି ହେରୁକା ପ୍ରଣାମ କଲେ । ଚନ୍ଦ୍ରାଦେବୀ ହସି ଉଠିଲେ, ଚପଳା ତରୁଣୀର ସ୍ୱଭାବ ସୁଲଭ ଭଙ୍ଗୀରେ ତଳକୁ ଓହ୍ଲାଇ ଆସି ପ୍ରଣତ ହେରୁକାଙ୍କର ବାହାକୁ ଅଳପେ ଛୁଇଁଦେଲେ । କହିଲେ, "ଆଶୀର୍ବାଦ କରୁଛି, ସିଦ୍ଧ ଯୋଗୀ ହୁଅ ।"

ସେହି ସ୍ପର୍ଶରେ ତୋମ୍ବି ହେରୁକାଙ୍କ ସ୍ନାୟୁରେ ନିଆଁ ଖେଳିଗଲା, ଉଦ୍ୟତ ହୋଇ ଉଠିପଡ଼ିଲା ସେହି ଦୀର୍ଘ ମୂର୍ତ୍ତି । ଦେହ ଟଳିଗଲା । ଝଡ଼ିପଡ଼ିବାର ନାନାବିଧ ଶିହରଣର ଅଭିମାନରେ ଜର୍ଜ୍ଜର ହୋଇ ସେ କହିଲେ, "କିଏ ଚାହେଁ ଆଶୀର୍ବାଦ ? କି ହେବ ମୋର ସିଦ୍ଧପଣ ? କେବଳ କ୍ଷମା ମାଗୁଛି ଚନ୍ଦ୍ରାଦେବୀ ! କ୍ଷମା ଦେଲେ ମୋର ସମ୍ବନ୍ଧ ତୁଟିଯିବ । ତୋମ୍ବି ହେରୁକା ଆଉ ଅବିନୟ କରିବାକୁ ଚାହିଁବ ନାହିଁ ।"

ଚନ୍ଦ୍ରାଦେବୀ ଦାନ୍ତରେ ଓଠ ଦାବି ହସ ଚେକି ଅପେକ୍ଷା କରି ରହିଲେ । ତାପରେ କହିଲେ, "କ୍ଷମା ଚାହଁ, ଏଇ ବରଗଛକୁ ସାଥ ମାଗ—"

"ବିଦ୍ରୂପ କରୁଛ ଦେବୀ—"

"ବିଦ୍ରୂପ—ନାଁ । ଯଦିଚ ତୁମର ଏ ଅବସ୍ଥା ଦେଖିଲେ ସଂସାରର ଲୋକେ ବିଦ୍ରୂପହିଁ କରିବେ । ପିଲାଏ କଣ କହିବେ ? କହିବେ ଉଚ୍ଚ ଜାମୁଡାଳ ଭାଙ୍ଗି ପଡ଼ିଲା । ସଙ୍ଗୀମାନେ କଣ କହିବେ ? କହିବେ ହାସ୍ୟ ହେତୁକା ! ହାସ୍ୟ ହାସ୍ୟ; ଆଉ ଯଦି ଅଧ୍ୟକ୍ଷ ଦାରୁକପା ଏ ଦୃଶ୍ୟ ଦେଖନ୍ତେ—ନିର୍ଜନ ରାତି ! ବିଶ୍ୱବିଦ୍ୟାଳୟଠୁଁ ଦୂରରେ ଦୁଇଜଣ ତରୁଣ ତରୁଣୀ ଏକାଠି; ଅନୁମାନ କର । ଡୋମ୍ବି ହେତୁକା ଦୁଇ ହାତରେ ମୁହଁକୁ ଢାଙ୍କିଦେଇ ମୁଣ୍ଡନୁଆଁଇ ତଳେ ବସିପଡ଼ିଲେ, ଅସ୍ଫୁଟ ଶବ୍ଦ କଲେ, "ଓଃ ଚନ୍ଦ୍ରା ! ଚନ୍ଦ୍ରା !"

"ଠିକ୍ କହିଲ ସାଧକ, ମୁଁ ଦୟା ନୁହେଁ, କ୍ଷମା ନୁହେଁ; କେବଳ ମୁଁ ଚନ୍ଦ୍ରା ।" ଅଲୌକିକ କରୁଣାରେ ତରଳି ଯାଇଥିଲା ତାଙ୍କ ହୃଦୟ । ଡୋମ୍ବି ହେତୁକାଙ୍କ ଅତି ନିକଟରେ ଭୂଇଁରେ ବସିପଡ଼ି ହାତରେ ହାତ ଥୋଇ ସ୍ନେହରେ ପଚାରିଲେ "ହେତୁକା ଅତି ଦୁଃଖ ହେଉଛି ନୁହେଁ ?' ହେତୁକା ନିରୁତ୍ତର ।"

ଚେତନାରେ ଭାସି ଭାସି ଯାଉଛି ଜୀବନଯାତ୍ରାର ସ୍ମୃତିର ଛବି । ଜ୍ଞାନ ଅର୍ଜନ ପାଇଁ ରାଜପଦ ଛାଡ଼ି ମଗଧରୁ ବାହାରି ଆସିଥିଲେ, ସଂସାର ତେଜିଥିଲେ; କି ସେ ସାଧନା କି ସେ ପରିଶ୍ରମ,. ଯୌବନ ଜର୍ଜରିତ ହୋଇ ହୋଇଥିଲା ବାର୍ଦ୍ଧକ୍ୟ । ତାପରେ କେତେ ଦେଶ ବୁଲି ବୁଲି ଶେଷରେ ଓଦନ୍ତପୁରରେ ଗୁରୁବର୍ଗ ଗ୍ରାହ୍ୟ ହେଲେ; ଯେଉଁଠି ପ୍ରୌଢ଼ ପ୍ରବୀଣମାନେହିଁ ଗ୍ରାହ୍ୟହେବା ବିଧି । ହଠାତ୍ କେଉଁ ପୁରପଲ୍ଲୀରୁ ଆସି ପହଞ୍ଚିଲା ପଦ୍ମିନୀ ଶ୍ରେଣୀର ଗୋଟିଏ କିଶୋରୀ । ଅଧ୍ୟକ୍ଷ ଦାରୁକପା ତାର ଜ୍ଞାନରେ ମୁଗ୍ଧ ହେଲେ, ସେ ହେଲା ଅଦ୍ଭୁତ ବିଜ୍ଞାନବାଦୀ ଦର୍ଶନଶାସ୍ତ୍ରର ଅଧ୍ୟାପକ । ହେତୁକାଙ୍କର ଜୀବନ ବଦଳିଗଲା, ପୁଣି ସଦ୍ୟପୁଷ୍ପ ମଞ୍ଜରି ହୋଇ ଅସରନ୍ତି ଆଶାର ପ୍ରବଣତା ଯେନ ଗଢ଼ିହୋଇ ଉଠିଥିଲା ଜୀବନ । ଏତେକାଳ ମନନ ପରେ ଆଜି ସେ ଧ୍ୟାନର ଶେଷ; ତା ସହିତ ଶେଷ ହେତୁକାର ଇହଜୀବନ ।

ଅତି ଧୀରେ ଧୀରେ କହିଲେ ଚନ୍ଦ୍ରାଦେବୀ—

"କ୍ଷମା କିଏ ଦେବ ହେତୁକା ! କଣ ବା ତୁମର ଦୋଷ, ଦୁଃଖ ବା କଉ ? ତୁମେ ତୁମ ଚିତ୍ତର ଅଧୀନ । ଚିତ୍ତହିଁ ବିଶ୍ୱକୁ ସୃଷ୍ଟି କରିଛି, ଚିତ୍ତହିଁ କଳ୍ପନା କରିଛି ଯାବତୀୟ ବସ୍ତୁ, ଚିତ୍ତ ଦୁଃଖର ସୃଷ୍ଟିକର୍ତ୍ତା । ଚିତ୍ତରୁ କାମନାର ଜନ୍ମ, ସନ୍ଦେହ ହେଉ । ଅପବିତ୍ର ହେଉ । ଆଉ କ୍ଷମା ଦେବାକୁ ଶକ୍ତି କାହାର ଅଛି ? ଆପେ ଆପଣାକୁ କ୍ଷମା କରି ଶିଖ ହେତୁକା ! ଶାନ୍ତ ହୁଅ ।"

ସେହି କ୍ଷଣି, ସେହି ସାନ୍ନିଧ୍ୟ—ଅତି ଦୁଃଖରେ ବି ଡୋମ୍ବି ହେତୁକା ଆଖି ଭିଜା ସୁଖ ଅନୁଭବ କଲେ । ମନେହେଲା ଯେପରି ରାତ୍ରି କଟିଯାଇ ଆସିଛି ପ୍ରଦୋଷ, ବିଦ୍ୟାମନ୍ଦିରର ପାଖ ସରୋବରରେ ଫୁଟିଛି ସହସ୍ରଦଳ, ପଦ୍ମ ସୁଗନ୍ଧ ଭାସିଆସୁଛି ପବନର ତରଙ୍ଗରେ ।

ସ୍ୱପ୍ନରେ ବାଳିବାଳେଇଲାପରି ସେ କହିଲେ, "ଆପଣାକୁ କ୍ଷମାକରିବି ? କାହିଁକି ?"

ହୃଦପଦ୍ମରେ ମଣି ପରି ଯାହା ସଂପାଦ ରଖିଲି, ଚିର ଓଟାରି ତାକୁ ଫୋପାଡ଼ି ଦେବି ! କାହିଁକି ? ନହେଲା ବା ଦେହ୍ମ ଚନ୍ଦ୍ରା ମୋର, ନ ହେଲା ବା ସେ ପ୍ରତିଦାନ, କଣ ହେବ ? ତାହା ବୋଲି ତାର ସ୍ମୃତିକୁ ବି ଉଜାଡ଼ି ଦେଇ ଆପଣାକୁ ଅସ୍ୱୀକାର କରିବି ! ରହିବି କେଉଁଠି ?"

"ଠିକ୍ କହୁଛ ହେରୁକା; ତୁମର ଅଧିକାର ତୁମର । ଛଡ଼ାଇ ନେବାକୁ ଶକ୍ତି କାହାର ? ଚନ୍ଦ୍ରା ତୁମରି—"

ଡୋମ୍ବି ହେରୁକା ଆନନ୍ଦରେ ଉଦ୍‌ବେଳ ହୋଇ ମୁହଁ ଟେକିଲେ । ଛଳ ଛଳ ଆଖିରେ ପ୍ରେମ ଢଳ ଢଳ ଦିଶୁଥିଲା; ଆକାଶର ସୁନ୍ଦୁଆ କେଉଁ ଆଡ଼କୁ ଅପସରି ଗଲାଣି, ପରିଷ୍କାର ଜହ୍ନରାତି, ସଲଜ୍ଜ ମୁହଁରେ ପରିପୂର୍ଣ୍ଣ ଆନନ୍ଦର ହସ ଖେଳିଗଲା; କହିଲେ, "ଚନ୍ଦ୍ରା—ଚନ୍ଦ୍ରା ମୋର ?"

ସ୍ଥିରହୋଇ ଚାହିଁଲା ତରୁଣୀ । ଆଖିରେ ଆଖି ଥାପି ଶାନ୍ତ ହୋଇ ଚନ୍ଦ୍ରାଦେବୀ କହିଲେ, "ଯଦି ତୁମର ଚିତ୍ତ ସେହିପରି ଇଚ୍ଛା କରେ, ତେବେ ଚନ୍ଦ୍ରା ତୁମରି; ଅବଶ୍ୟ ତୁମରି—"

ମୁହଁରେ ମୋହ ଢାଙ୍କିଲା, ହେରୁକା ସ୍ୱର ଥରେଇ ଥରେଇ ଉଚ୍ଚାରଣ କଲେ, "ଚିନ୍ଦ୍ରା—"

"ନା, ହେଲା ନାହିଁ । ଅତି ଉନ୍ମାଦନାମୟ ତୁମର ସ୍ୱର, କାମନାରେ ଦୁର୍ବଳ କ୍ଷଣଭଙ୍ଗୁର ନାଦ, ମୋହଗ୍ରସ୍ତ, ରୁଗ୍‌ଣ, ରକ୍ତ ମାଂସର ଡାକ । ଏଥିରେ ତୁମେ ମହାସୁଖ ପାଇବ ନାହିଁ ଡୋମ୍ବି ହେରୁକା !"

"ଓଃ"

ପବନରେ ଫୁଲି ଉଠିଥିବା କନ୍ଦୁକକୁ କିଏ ଯେପରି ସଚିଦ୍ର କରି ଦେଲା । ହେରୁକା ପୁଣି ମୁହଁ ତଳକୁ ପୋତିଦେଲେ । ଚମ୍ପାକଢ଼ୀ ପରି ଆଙ୍ଗୁଠିରେ ହେରୁକାଙ୍କର କାନ୍ଧକୁ ଆଉଁସି ଚନ୍ଦ୍ରା କହିଲେ—

"କାହିଁକି ପୁଣି ଏ ଖିନ୍ନ ସ୍ୱର ହେରୁକା ! ତୁମର ଚିତ୍ତଦ୍ୱାରା ସୃଷ୍ଟ ନାରୀଚନ୍ଦ୍ରା ପ୍ରକୃତରେ ତୁମରି; କିନ୍ତୁ ତୁମେ କି କାମନା ଖୋଜୁଛ ? କଣ ତାକୁ କରିବ ? ଛବି ଦେଖିଛକି; ସେହି ସ୍ନେହ୍ମ ଜନକୁ ଆଧାର କରି ଜରାମରଣର ପଙ୍କରେହିଁ ଘାଣ୍ଟି ହେବ । ଆଙ୍ଗୁଠି ଅଗରେ ବର୍ଷ କେଇଟା ଗଣିହୋଇ ବିତିଯିବ । ସେହି କଣ ତୁମ ଆଦର୍ଶରେ ମହାସୁଖ ? କେତେକାଳ ସଂପାଦ ପାରିବ ଚନ୍ଦ୍ରାର ଯୌବନ, ଚନ୍ଦ୍ରାର ଦେହ ? ସବୁ ତୁମର ଚିତ୍ତର ବିକାର, ଚିତ୍ତ-ଦର୍ପଣରେ ଫଳିତ ଛବି । ଗୋଟାଏ ନାରୀ ଦେହ ଘେନି ଯିବାକୁ ଯଦି ଏତେ ସାଧନା କରି କରି ମଗଧରୁ ବନ୍ଦ୍ରପୁରକୁ ଆସିଥିଲ, ତେବେ ଘେନଯାଅ । ଅମୃତ ପାଇଁ ଆସି ବିଷକୁ ବରଣ କର । କହ ହେରୁକା, ମଗଧର ରାଜା ! ଚିନ୍ଦ୍ରାକୁ ଘେନି ଯାଇ ମଗଧର ରାଣୀ କରି ସୁଖୀ ହୋଇପାରିବ ?"

ହେରୁକା ତୁଷ୍ଣୀ ଥିଲେ, ହଠାତ୍ ସେ ଅଧୀର ହେଲେ । ତାଙ୍କର ଦେହ

ଅତିଶୟ ଉତ୍ତେଜନାରେ ଥରି ଉଠିଲି; ଦୃଷ୍ଟି ଅନ୍ଧ କରି ଦରଦର ଲୁହ । 'ସହଜଯୋଗିନୀ ଚିନ୍ତା' ତାଙ୍କର ସ୍ପର୍ଶ ଅପସାରି ନେଲେ, ଦୂରରୁ ଭାସି ଆସିଲାପରି ତାଙ୍କର ସ୍ୱର; କହିଲେ, "ତୁମେ କାନ୍ଦୁଛ, ଏହାର ନାମ ମହାସୁଖ ନୁହେଁ ! ସ୍ମୃତିରେ ସମ୍ବନ୍ଧ ବିଜଡ଼ିତ କରି ରଖିଛ ଅଦ୍ୟାପି । ତେଣୁ ତୁମେ ଦୁଃଖର ଅଧିକାରୀ ! ଏଥିପାଇଁ ଦାୟୀ ତୁମର ଚିତ୍ତ । ଚିତ୍ତର ନିଜର ବୃତ୍ତି ଅନେକ । ଏହିପରି ସେ ପ୍ରାଣୀକୁ ଦୁଃଖ ଦିଏ, ନୂଆ ରୂପ ସୃଷ୍ଟି କରେ ଚାରିଆଡ଼େ । ମାୟା ତୁମର ଅନ୍ତରରେ ରହି ଜାଲ ବୁଣୁଛି ତୁମକୁ ବାନ୍ଧି ପକାଏ ।"

ଅସହାୟ ହୋଇ କାନ୍ଦି କାନ୍ଦି ହେରୁକା କହିଲେ, "ମୁଁ ପତିତ, ମତେ ରକ୍ଷା କର ଦେବୀ ! ମୁଁ ତୁମର ଦାସାନୁଦାସ, ତୁମେ ମୋର ଗୁରୁ ହୁଅ ।"

ଦୂରରୁ ଶୁଭିଲା ଚିନ୍ତାଙ୍କର ବାଣୀ, "ତୁମେ ମୋର ଶିଷ୍ୟ ହେଲ ବତ୍ସ ! ଭୟ ନାହିଁ, ଦୁଃଖ ନାହିଁ । ଯାହା ଯାଇଛି ତାହା ଯାଉ । ଚିତ୍ତର ବିକାରପାଇଁ ଆପଣାକୁ ଦୋଷୀ କରନାହିଁ । ତୁମେ ନିର୍ଦ୍ଦୋଷ । ସଂସାରର ଶୂନ୍ୟତା ଅନୁଭବ କର, ମନ-ଦର୍ପଣରେ ଛବି ଫଳିତ ହେବାର ସହଜ ପ୍ରବୃତ୍ତିକୁ ନିରୋଧ କର, ସହଜରେ ବୁଦ୍ଧତ୍ୱ ପାଇବ । ପ୍ରଜ୍ଞା ଓ ଉପାୟକୁ ଏକତ୍ର କର । 'ମହାସୁଖ'ର ଅଧିକାରୀ ହେବ ।"

ଡୋମ୍ବି ହେରୁକା ଆଖିବୁଜି ଧ୍ୟାନରେ ବସିଲେ । କେତେ ସମୟ ପରେ ମୁହଁଟେକି ଚାହିଁଲେ । ସୋରିଷଫୁଲ ପରି ଜହ୍ନଆଲୁଅ ପଡ଼ୁଛି, କେହି କୁଆଡ଼େ ନାହିଁ । ଚିତ୍ତ କଳ୍ପନା କଲା ଗୋଟିଏ ଜ୍ୟୋତିର୍ମୟୀ ନାରୀମୂର୍ତ୍ତି—ସେ ତାରା, ସେ ପ୍ରଜ୍ଞାପାରମିତା, ସେ ଚିନ୍ତାଦେବୀଙ୍କର ମୂର୍ତ୍ତି; କିନ୍ତୁ ଚିତ୍ତର ଦିବ୍ୟଭାବରେ ସେ ଆହୁରି ଉଜ୍ଜ୍ୱଳ, ସର୍ବପରିବ୍ୟାପ୍ତ । ଧ୍ୟାନ ସହଜ ହେଲା, ସଂଶୟ ଛିନ୍ନ ହେଲା, ବାରମ୍ବାର ସେହି ଜ୍ୟୋତି ଉଦ୍ଦେଶ୍ୟରେ ପ୍ରଣାମ ରଚନା କରି କରି ପୁଣି ସେ ଆସନରେ ବସି ଯୋଗରେ ମନ ଦେଲେ । ଗୁରୁ ମନ୍ତ୍ର କହିଛନ୍ତି, ଉପାୟ ବତାଇଛନ୍ତି, ଏଣିକି କେବଳ ସାଧନା ।

ନିଷ୍ପନ୍ଦ ହୋଇ ଆସିଲା ଦେହ, ଶାନ୍ତ ହୋଇ ଆସିଲା ଚିତ୍ତବୃତ୍ତି । ଗୁରୁ ପାଦରେ ମନ ଲୋଟିଗଲା । କେତେ ପୂର୍ବଜନ୍ମର ସଂସ୍କାର ଚଳଚିତ୍ର ହୋଇ ଶୋଧନ କରି କରି ଘୂରିଗଲା ଆପଣା ଉପରେ ।

ସେହି ଗୁରୁ—ସେ ଥିଲେ ଏହି କଳିଙ୍ଗର ଗୋଟିଏ ଅନାମିକା ଝିଅ । ଇତିହାସରେ ପ୍ରସିଦ୍ଧ ହେଲେ ଗୁରୁ ଦାରିକପାଙ୍କ ଶିଷ୍ୟା 'ସହଜଯୋଗିନୀ ଚିନ୍ତା' ବୋଲି । 'ବ୍ୟକ୍ତଭାବାନୁଗତ ତତ୍ତ୍ୱସିଦ୍ଧି'ର ରଚୟିତ୍ରୀ, ସିଦ୍ଧଯୋଗିନୀ ।

ହେ ବଜ୍ରତନ୍ତ୍ର ଅନୁଧ୍ୟାୟୀ ମଗଧରାଜ ସିଦ୍ଧଯୋଗୀ ଡୋମ୍ବି ହେରୁକାଙ୍କ ଗୁରୁ ଚିନ୍ତା ଦେବୀ ! ଆଜିକୁ ବାରଶ ବର୍ଷ ତଳେ ।



# ଗୋପାଳ ଡାକୁଛି

ଜଗବନ୍ଧୁ ଯେତେବେଳେ ସୁଲକ୍ଷଣାଙ୍କୁ ଡାଣ କରି କହିଲେ, 'ମୁଁ କାଲି କଟକ ଯିବି' ସେତେବେଳେ ସୁଲକ୍ଷଣା ସ୍ୱାମୀଙ୍କ ମୁହଁକୁ ଅନାଇଁ ଚୁପ୍ ହୋଇ ଠିଆହେଲେ। ସକାଳ। ହାତରେ ଓଦା ଲୁଗା, ଶୁଖାଇବାକୁ ପଡ଼ିବ। ଜଗବନ୍ଧୁ କହିଲେ, 'ମୋର କିଛି ଦରକାର ନାହିଁ। ସକାଳୁ ସକାଳୁ ପଖାଳ ଶାଗ ତ ନିଶ୍ଚୟ ମିଳିବ। ଲୁଗାପଟା ପାଇଁ କିଛି ଧନ୍ଦହେବା ଦରକାର ନାହିଁ। ଯାହା ଅଛି ଚଳିବ। ସବୁଠି ତ ଘର, ଚିନ୍ତା କ'ଣ ?' ସେ ହସିଦେଲେ।

ତାଙ୍କ କଥାର ସ୍ୱର, ସେ ହସର ବାଗ ସୁଲକ୍ଷଣାଙ୍କୁ କେମିତି ଲାଗିଲା। ମଝିରେ ମଝିରେ ଏମିତି ସେ ଅନେକ ଥର କହନ୍ତି, ଯାଆନ୍ତି ନାହିଁ। କିନ୍ତୁ ଆଜି ସତେ ଯେମିତି ସ୍ପଷ୍ଟ ପ୍ରତିଜ୍ଞା।

'ଏତେଦିନ ଗଲା, ଗଲ ନାହିଁ, ଆଜି ଅଇଗ୍ରୁ ଯେତେବେଳେ ଖରାଦିଅ ଧାସ୍ ଗଳୁଛି, ବର୍ଷା, ପବନ, ସେତିକ ବେଳକୁ ବୁଲିଯିବାକୁ ମନ ହେଲା ?'

ଜଗବନ୍ଧୁ ସ୍ତ୍ରୀଙ୍କୁ କଟାକ୍ଷ ପରି ଅନାଇଁ ରହିଲେ, କହିଲେ, 'ତୁମେ ମନା କରିବ ମୁଁ ଜାଣିଛି। ତୁମେ ଖାଲି କହିବ ଏଇଠି ମୋ ମୁହଁକୁ ଅନାଇଁ ବସିଥା, ଆଉ କୁଆଡ଼େ ଯା' ନାହିଁ, କାହା'ର ସଙ୍ଗେ କୌଣସି ସମ୍ବନ୍ଧ ନଟାଉ। ମୋର ପାଞ୍ଚ ପାଞ୍ଚଟା ଭାଇ, ତିନି ତିନିଟା ଭଉଣୀ, ଝିଅଘି, ପୁରୁଷ, ବନ୍ଧୁବାନ୍ଧବ, ମୁଁ ଆଉ କୁଆଡ଼େ ଯିବି ନାହିଁ, ଏଇଠି ଥିବ !'

ସୁଲକ୍ଷଣା କହିଲେ, 'ଡାଲିକାଙ୍କୁ ପୁଅ ଝିଅଙ୍କୁ ଗ୍ରୁଡ଼ାଉଛ ଯେ। ସେମାନେ କି ଅପରାଧ କଲେ ? କେଉଁକାଳୁ କାହାକୁ ଦେଖୁଛ ? ବାଲେଶ୍ୱରରୁ ସୁଦାସ ଲେଖି ଲେଖି ଥକିଲା, ବାପାଙ୍କୁ କହିବ କିଏ ଆସିବେ, ମାଲିଟା ବିଛଣାରୁ ଉଠୁ ନାହିଁ, ଯେତେ ଔଷଧ ମନ୍ତ୍ରୁଧି କଲେ ବାତ ଗ୍ରୁଡ଼ିଲା ନାହିଁ। ଚୁଙ୍ଗୁଡ଼ ବାଛୁରି ଗୁଡ଼ିଏ, କେମିତି ଚଳୁଥିବ ମୋ ଝିଅ କେଜାଣି।'

ସୁଲକ୍ଷଣାଙ୍କର ଅଭିମାନରେ ଆଖିରେ ଧାର ବୋହିଲା, କହିଲେ, 'ମୁଁ ଯେତେଥର ଯିବାକୁ ବସିଲି କୁଆଡ଼ୁ କ'ଣ ଅଡୁଆ ବାହାର କଲ। ସେମିତି ଗ୍ରଡ଼ରକେଲରେ ନାଡୁ, କେଉଁଦିନୁ ଆସିନାହିଁ ମୋ ପୁଅ, ଦି ମାସ ହେବ ନାହିଁ ଚିଠିପତ୍ର କିଛି ନ ମିଳିବାର ? ବୋହୂଟା ଅସଜ ମଣିଷ। ସେଠି ସ୍ୱଜର ବାଜର ବି ମିଳନ୍ତି ନାହିଁ। କୋଉଠି ଯାଇ ହେଲା ? କୋରାପୁଟ ବାଲିମେଲାକୁ

ଶଶୀ ବଦଳି ହେବାର ଆସି ଦେଢ଼ବର୍ଷ ହୋଇଗଲା । ସେଠି ମୋ ପିଲା ବାଘ ଭାଲୁଙ୍କ ପରି କେମିତି ଚଳୁଛନ୍ତି ତା'ତ ଆଖିରେ ଦେଖିଲି ନାହିଁ । ଗୋବିନ୍ଦଟି ତ ପ୍ରାଣ ମାରୁଚ କି ଆସୁଛୁ, ଶଶୀ ବଣ ଜଙ୍ଗଲପାଖ କାମରେ ବୁଲୁଥିବ, ବୋହୂ ତ ଯାହା ଛୁଡ଼, ଶୋଇ ପଡ଼ିଥିଲେ ମୂଷା ଚୁଟି କାଟିନେଲେ ଜାଣିପାରିବେ ନାହିଁ, ମୁଁ ସେଠି ଥିଲେ ତା ପିଲାଙ୍କ ଖବର ବୁଝନ୍ତି ନାହିଁ ? କୋଉଠି ଛୁଡ଼ି ଦେଲ ? ଯୁଆଡ଼େ ଯିବାକୁ ଗୋଡ଼ ଟେକିଲେ ତୁମେ ବାଧା ଦେବ ।'

ଜଗବନ୍ଧୁ ଅଣ୍ଟାରେ ହାତଦେଇ ଅଣ୍ଟାକୁ ଉପରକୁ ଉଠାଇ ଦେଲେ, କହିଲେ 'କାହିଁକି ବାଧାଦେବି ତୁମେ କ'ଣ ଜାଣିନାହିଁ ମତେ ଉଲୁଗୁଣା ଦେଉଛ ? ଏକେତ ତୁମ ପେଟ ଅସୁଖ । ଟିକିଏ ବେଟାଇମ କି ଅନିୟମ ହେଲେ ପୁଣି ପଡ଼ିଯିବ, ସେଉଠୁ ମୁଣ୍ଡ ବୁଲେଇବ ଛାତି ଥରିବ ହାତ ଗୋଡ଼ ଦରଜ ହେବ—

'ହଃ, ଥାଉ ଥାଉ ସେ ଯୋଗ କଥା', ସୁଲକ୍ଷଣା ଆଖି ପୋଛିଲେ ଓ କହିଲେ, 'ଯିବାର ଥିଲେ ତ କେଉଁ କାଳରୁ ମୁଁ ଯମପୁରକୁ ଯାଆନ୍ତିଣି ଆଉ ସେ ଷାଠିଏ ବର୍ଷଯାକେ ମୁଁ ଏମିତି ବସିଥାନ୍ତି ?'

'ଆରେ ତୁମକୁ ଷାଠିଏ ହେଲେ ମତେ ପଁଷଠି ଯେ, ପେନ୍‌ସନ୍ ପାଇକରି ଦଶବର୍ଷ ପୂରିବା ଉପରେ । ସେ ବୟସ କଥା କିଏ ପଚାରେ ? ଦେଖୁଚ ପରା ଅଶୀ ନବେ ବର୍ଷ ପୂରିଯାଉଛି ବୋଲି କେତେ ନାଁଡାକ ଲୋକଙ୍କର ଜନ୍ମଦିନ ବର୍ଷିକିଆ ସବୁ ହେଉଛି, ଖବରକାଗଜରେ ବାହାରୁଛି, ତଥାପି ସେମାନେ ବଳ ପରି ବସି ରହିଛନ୍ତି, କେତେ କେତେ କାମ କରୁଛନ୍ତି । ଆଉ ଷାଠିଏଟା କେତେ ବର୍ଷ ? ବିଲାତ ଦେଶ ହୋଇଥିଲେ ଏଇ ଷାଠିଏ ବର୍ଷରେ ପରା ତୁମକୁ ବରଘର ଲଗିଥା'ନ୍ତା ।'

'ଗୋଟିଏ ଠିକଣା କରିଦିଅ, ମୋ ତୁଣ୍ଡ ତ କ'ଣ !'

'କରିଦେବା, ମୁଁ ଏଥର କଟକରୁ ଆସେଁ ।'

'କ'ଣ ଏମିତି ବାଇ ଲଗିଲା ପରି ଖାଲି କଟକ କଟକ ହେଉଛ : ଭଲା କହନ୍ତ ରାଉରକେଲା କି ବାଲେଶ୍ୱର କି ବାଲିମେଲା ବୁଝନ୍ତେ ଯେ ପିଲାଙ୍କୁ ଦେଖିବାକୁ ମନ ହାଇଁପାଇଁ ହେଲାଣି ।'

ଜଗବନ୍ଧୁ ପ୍ରତିବାଦ କରି କହିଲେ, 'ତୁମେ ତ ଜାଣିଛ ସେ ହାଇଁପାଇଁ ଫାଇଁପାଇଁ ମୋର ନାହିଁ । ଯାହା କର୍ମ ଯେବେ ଯେ ଚଳିବ,ମୋ କର୍ତ୍ତବ୍ୟ ମୁଁ କରି ସାରିଛି । ବତିଶି ବର୍ଷ ଚାକିରି କଲି, ବୁଝି ପାରୁଚ ? ବତିଶି ବର୍ଷ—'

ହଃ ! ସେ କଥା କହୁଚ ! ବତିଶି ବର୍ଷ ଚାକିରି କରି ସବୁ ତ ଖାଲି କରି ପକାଇଲ ! ଜମି, କୋଠା, ଗାଡ଼ି, ଘୋଡ଼ା ସବୁ । ଖାଲି ମୋର ଜୀବନଟା ହନ୍ତସନ୍ତ, ଯାହା କହନ୍ତି ବାଘ ଘୋଷରା । ଦରଭଙ୍ଗାରୁ ହଜାରିବାଗ, ହଜାରିବାଗରୁ ଜଇପୁର, ଜଇପୁରରୁ ସୁନ୍ଦରଗଡ଼, ସୁନ୍ଦରଗଡ଼ରୁ ବଉଦ, ବଉଦରୁ

ରାଇରଙ୍ଗପୁର, କୁଆଡ଼େ ନାଇଁ କୁଆଡ଼େ । ବାପା ମଲେ, ବୋଉ ମଲା, ବୋଉ ମୋର କେତେ ନିକୁଟି ନେହୁରା ହୋଇ ବାରମ୍ବାର ଖବର ପଠାଇଲା ମୋ ଝିଅ-ଜୋଇଁଙ୍କ ଟିକଏ ଦେଖନ୍ତି, ତା ଆଉ ହେଲାନାଇଁ, ବିଦେଶରେ ବିଦେଶରେ ଧନପୁଅ ଧନଝିଅ ମଲେ, ଗୁଡ଼କର ଖାଲି ନିହାଲି କରି ପକାଇଲା ।'

'ତମର ଆଜି କ'ଣ ହୋଇଚି କହିଲ ? କଥା କଥାକେ କାନ୍ଦ ? ଅରେ ଜୀବନଟା କ'ଣ ନାକେଦମ୍ କଟିଲ ? ଏ ଗଛରେ ସେ ଗଛରେ ବସାବାନ୍ଧି ଛୁଆ ଉଷୁମେଇଁ ଫୁଟେଇ ଚଢ଼େଇ କରି ଉଡ଼େଇ ଦେଲେଇଁ, ଧନଟା ମଣିଷ ହେଲେ, ଯେ ଗଲେ ସେ ଗଲେ ଡମ୍ବୁ ବେଳୁ କି କଣ୍ଣା ଆଖି ବେଳୁ, ପରମାର୍ଥ ଧରିଲ ପୁଣି ଗଲା ରହିଲାକୁ ଛଳକରି ମନ ବ୍ୟସ୍ତ କରୁଛ ?''

ସୁଲକ୍ଷଣା କାନ୍ଦିଲେ । କହିଲେ 'ଅନ୍ତଫାଡ଼ି ଯେ ଜନ୍ମ ଦେଇଥାଏ ସେ ହିନା ଜାଣିବ, ତୁମେ କାହୁଁ ଜାଣିବ ମା' ମନ କ'ଣ ହୁଏ ? ଗୋଟିଏ ଯଦି ଜନ୍ମ କରିଥାନ୍ତ—'

'ହଉ ଥାଉ । ଶୁଣ । କାଲି ମୁଁ କଟକ ଯାଉଛୁ ।'

'ବର୍ଷାଟା ସରିଯାଉ । ଦେହ ବାଧିକାରେ ପଡ଼ିଗଲେ କିଏ ପିଠିରେ ପଡ଼ିବ ?''

'ବର୍ଷା ପଛେଇ ଯାଇଛି । ପଛକୁ ଅହୁରି ବଢ଼ିବ ।'

'ତେବେ ବର୍ଷା ଋତୁଟା କଟିଯାଉ । ବାଟଘାଟ ସଫା ହେଉ । ଦୁହେଁ ଯିବା । ପୁଅ ଝିଅଙ୍କୁ—'

ଜଗବନ୍ଧୁ କହିଲେ, 'ତୁମ ତୁଣ୍ଡରୁ ସେହି କଥା ଶୁଣିଲେ ତ ମୋର ହାଡ଼ ଜଳୁଛି ।'

ସୁଲକ୍ଷଣା ତାଙ୍କ ମୁହଁକୁ ତାଟକା ହୋଇ ଚାହିଁଲେ । କଳିକଜିଆ ଅଳ୍ପଦିନ ହେଲା ସରିଛି, କାଲେ ପୁଣି ଆରମ୍ଭ ହେବ । ଜଗବନ୍ଧୁ କହିଲେ, 'ତମର ଖାଲି ଆପଣା ସାର୍ଥକା କଥା । ଖାଲି ଆପଣା ପୁଅ ଝିଅ । ଆପଣା ଘର ଗେରସ୍ତ । ଆପଣା ସୁଖ ସୁବିଧା । ଜୀବନରେ ତ ବାହାରକୁ କେବେ ଚାହିଁଛ ? ମୋ ଭାଇ ଭଉଣୀମାନେ ମନେ ପଡ଼ନ୍ତି ନାହିଁ ? ଅଇତୁ ସିନା ଯେଝା ସୁଖେ-ଦୁଃଖେ ଯେ ଯୁଆଡ଼େ । ଦିନଥିଲା, ଯେତେବେଳେ ଏଇ ହାତରେ ପରି ତୁମେ ତାଙ୍କୁ ମଣିଷ କରିଥିଲ ?'

ସୁଲକ୍ଷଣା ପୁଣି କାନ୍ଦିଲେ । କହିଲେ, 'ଗଲାକଥା ଗଲାଣି, ମୁଁ କାହାର କ'ଣ ଉପକାର କରିଛି ? ଯଦି କେତେବେଳେ କରିଥିଲି ସେ ସ୍ନେହର କିଏ କି ମର୍ଯ୍ୟାଦା ରଖିଲେ ଯେ ମୁଁ କାହାରକୁ ପଚାରିଲି ନାହିଁ । ଦୋଷୀ ହେଲି ମୁଁ ?'

'କ'ଣ ତୁମକୁ ଅମର୍ଯ୍ୟାଦା କଲେ ?'

ଲୁହ ପୋଛୁ ପୋଛୁ ସୁଲକ୍ଷଣା କହିଲେ, 'ନାହିଁ, ମତେ କାହିଁକି କିଏ ଅମର୍ଯ୍ୟାଦା କରନ୍ତା ? ଯେଷ୍ଟା ଯେଷ୍ଟା ଫର୍ଶି ଲଗିଲ ସେ ଉଡ଼ିଗଲେ । ଆଉ ମୁଁ କାହାର କି କାମରେ ଆସିବ ? ଅଇଣ୍ଟ୍ରୁ ମୋଠିଁ ତାଙ୍କର କି କାମ ? ମୁଁ ତ କାହାକୁ କିଛେ ନାହିଁ ।'

'ଆଚ୍ଛା ଅଣ୍ଡ୍ରୁଆ ଧରଛ । ସମସ୍ତେ ନିଜ ନିଜ କାମ ଦୁଃଖ ଧନ୍ଦାରେ ବୁଲୁଛନ୍ତି ନା କିଏ ବସିଛି ତମ ପାଖକୁ ନ ଆସିଲ ? କାହାର କି ଅସୁବିଧା ସେ କଥା କିଏ ବୁଝୁଚି ?'

'ହେଲ, ତୁମେ ତ ସବଙ୍କ ପୁଚ୍ଛେ ସବୁ ଜାଣୁଛ, ଅଇଣ୍ଟ୍ରୁ ବାହାରେଛ କାହିଁକି ?'

'ଯିବାକୁ ଖୁବ ମନ ହେଉଛି ହୋ । ମୁଁଇ ସେଇ ଲୋକ, ଏତେ ଆଉ ବୁଲୁଥିଲି । ଭଲ ଏ ମଫସଲରେ ମୁଁ ବସି ପଡ଼ିଲି ଯେ ବସି ପଡ଼ିଲି । ସତେ ଯେମିତ ମଣିଷ ନୁହେଁ ଯେ ଗୋଟାଏ ଆମ୍ବଗଛ ହେଇଗଲି ।'

'ସେଇଠୁ ? ବୁଲି ଆସିଲେ ଆଉ କି ଗଛ ହେବ ? ନଡ଼ିଆ ଗଛ ?'

'ଓଃ ! ତେମେ ତ ବୁଝିବ ନାଇଁ ।'

'କାହିଁକି ବୁଝିବ ନାଇଁ ? ସବୁ ବୁଝିଛି । ତମର ବୁଲିବାକୁ ମନ ହେଉଛି । ବୁଲ । ସୁଖକର । ଖାଲି ମୋତେ ଟିକିଏ ମୋ ଝିଅ ପାଖେ ଛାଡ଼ିଦେଇ ଆସ, ସେଉଠୁ ବ ପୁଅଙ୍କ ପାଖକୁ ଯିବ । ମୋ ମନ ଏଠି ମୋଟେ ଭଲ ଲାଗୁନାହିଁ । ତମର ତମେ ବୁଲୁଥା ।'

'ହେଉ । ପଛେ ମୋ ଦୋଷ ଦେବ ନାହିଁ । ସେ ଘର, ବାରି, ଗାଈ ଗୋରୁ କାହା ମାଫିକ୍ ଦେବ ତୁମେ ଭାବ । ଘରେ ଯାହାକୁ ରଖିଛ ତୁମ ଇଷ୍ଟଦେବ ଗୋପାଳ ସେ ପାଣି ଟିକିଏ ନ ପାଇ ନିପାଣିଆ ହୋଇଗଲେ ମୋର ଦୋଷ ନାହିଁ । ବୁଝିଲ ? ଏ ପର୍ଯ୍ୟନ୍ତ ଯାହା ଯେମିତ ଚାଲିଛି ସବୁ ତାଙ୍କର ଦୟାରୁ, ଡାକିଲେ ସେ ଓ' କରେ । ତମେ ନ ଅନେଇଲେ ଖାବଛ ପଦଆ ନିକା ଆସି ତା' କଥା ବୁଝିବ ? ମାସକୁ ଟଙ୍କାଏ ଆଶାରେ ? ସେ ଆଶା ବୃଥା ।'

'ସବୁ ତ ବୁଝୁଛ ପୁଣି ତୁମ ଗୋଡ଼ ଖଲଖଲ ହେଉଛି କାହିଁକି ?'

'ତୁମକୁ ବୁଝାଇବା ସମ୍ଭବ ନୁହେଁ । ବସିଯାଇଛି ସିନା, ମୋର ପର ବଢଣି ବର୍ଷର ବୁଲା ।''

'ସେ ବୁଲାରେ କ'ଣ ପେଟ ପୂରିଲା ? ନା ସେ ବୁଲାରେ କ'ଣ ହେବ ? ନା କେହି ତୁମକୁ ଅପେକ୍ଷା କରି ବସିଛି, ନଗଲେ କାନ୍ଦିବ ?'

'ତୁମେ ଜୀବନଯାକ ଯେତେ ଯେତେ ପିଠା କରି ଲୋକଙ୍କୁ ଖୋଇଛ, ସୁଆଦିଆ ତରକାରି ସବୁ ରାନ୍ଧିଛ ସେଥିରେ କ'ଣ ହେଲା ନହେଲା ତା'ର ତାଲିକା ରଖିଛ ? ମୋର ବି ସେମିତ । ଥିଲି ପଣ୍ଡୁଡାକ୍ତର । ରାଜ୍ୟସାରା ବୁଲି ବୁଲି

ପଶୁମାନଙ୍କ ସେବା କରୁଛୁ । ଯେତେ ପଶୁ କି କୁକୁଡ଼ା ଚିକିତ୍ସା ପାଇଥିଲେ, ଯେତେ ମଡ଼କ ରୋଗ ଭଲହେଲା, ଯେତେ ଭଲ ଜାତିଆ ଗୋରୁ ଗାଈ କି ଛେଳି ମେଣ୍ଢା କି କୁକୁଡ଼ା ନୂଆ କରି ଯେଉଁ ଇଲାକାରେ ପୁରା ହେଲେ ବଢ଼ା ହେଲେ ସେ ହବୁ ସେ କାଳର ଦିନ ଦିନକର ଇତିହାସ, ଆଉ କାହାରି ମନେ ନଥିବ । ଯାହା କଲେ କଲେ, ସେ ଗଲା ଭୁଲି ହୋଇଗଲା । ଆଉ ପଛ କଥା ଖୋଳି ଲାଭ କ'ଣ ? କୋଳି ଖାଇ କଏ ମଞ୍ଜି ପୋତୁଛି ?'

କଥାବାର୍ତ୍ତା ସେତିକିରେ ବନ୍ଦ ହେଲା । ଜଗବନ୍ଧୁ ଗଲେ ନିତିଦିନର କାମ କରି । ଗାଁ ଛେଉଡ଼ରେ ଅଲଗା ହୋଇ ତାଙ୍କର ଘର । ପେନ୍‌ସନ୍ ନେବାର ଛଅବର୍ଷ ଆଗରୁ ସେ ନିଜ ରୁଚିରେ ଏ ସ୍ଥାନଟି ବାଛିଥିଲେ, ମାଟିନେସା ଇଟା କାନ୍ଥ ଓ ଟାଇଲ ଛପର କରି ଚାରି ବଖରା ଘର ତୋଳିଥିଲେ, କୂଅ ଖୋଳାଇ ଥିଲେ, ଟୁବ ଗାଡ଼ିଆକୁ ଫରଚ୍ଛ କରି ଖୋଳାଇ ସାନ ପୋଖରୀଟିଏ କରିଥିଲେ, ତୋଟା ଲଗାଇଥିଲେ । ଜମି ଛ'ମାଣ କିଣିଥିଲେ । ସେ ଥିଲା ଗୋଟିଏ ବିଶ୍ରାମ ଜୀବନର ଯୋଜନା । ପୈତୃକ ଘର ଗାଁର ଆର ମୁଣ୍ଡରେ, ଭାଇ ଭାଇଙ୍କେ ଚେନାଏ ଚେନାଏ । ବଂଶର ଲୋକେ ସେଠି ପରି ଖୋପ କରି ସାନ ସାନ ବଖୁରିରେ ଥାଆନ୍ତି । କେତେବେଳେ ସୀମା ସରହଦ ଘେନି ସେମାନଙ୍କ ଭିତରେ କଳି ଲାଗେ, ଖୁପୁରିଖୁପୁରି ଲାଗେ । ଜଗବନ୍ଧୁ ଓ ତାଙ୍କ ଆଉ ପାଞ୍ଚ ଭାଇଙ୍କର ଭାଇଡିର ସାନ ଅଂଶରୁ ପ୍ରାପ୍ୟ ବାରଣା ସେହି ବଂଶ ଭାଇମାନଙ୍କ ଦଖଲରେ, ଆଉ ଚାରଣା ଭାଗ ଗୋଟିଏ କରକୁ ଅରମା ହୋଇ ପଡ଼ିଥାଏ, ସାହି ଯାକର ଅଳିଆ ଆବର୍ଜନା ପଡ଼ି ପଡ଼ି ସେ ଢିପ ହେଉଥାଏ । ସେଠି ଖାଲି ଗୋଟିଏ ଝଙ୍କା ସଜନା ଗଛ, ବହୁତ ଛୁଇଁ ଓହଳେ ବଢ଼େ, ପୁଣି କୁଆଡ଼େ କୁଆଡ଼େ ଅଦୃଶ୍ୟ ହୋଇଯାଏ ।

ପୁରୁଣା ଚଳଣିରେ ପରିବର୍ତ୍ତନ ଆରମ୍ଭ ହୋଇଥିଲା ଯେତେବେଳେ ଜଗବନ୍ଧୁଙ୍କ ବାପା ନରୋତ୍ତମ କିଛି ଇଂରେଜୀ ପାଠ ପଢ଼ି ଟ୍ରେନିଂ ନେଇ ମୟୂରଭଞ୍ଜରେ ମାଇନର ସ୍କୁଲରେ ଶିକ୍ଷକ ହେଲେ । ପଛେ ପିଲାପିଲି ଗଲେ । ସାବକ ଘର ଖାଲି ପଡ଼ି ରହିଲା, ଭାଙ୍ଗିଲା । ଚାକିରିର ଶେଷ ମୁଣ୍ଡ ଆଡ଼କୁ ପୁଣି ଥରେ ଘର ତୋଳି ରହିବାର ଉଦ୍ୟମ ହେଲା, ସେତେବେଳେ ଯୋଡ଼ାଏ ଝିଅଙ୍କୁ ଆଣି ଗାଁରେ ରହି ପାତ୍ର ଖୋଜି ବାହା ଦେବା ଦରକାର ପଡ଼ିଲା । କିନ୍ତୁ ସେ ଘର ବି ଆଗ ଘରଠୁ ବହୁ ପରିମାଣରେ ଅଳ୍ପ ଜାଗା ଦଖଲ କଲା, ପଡ଼ୋଶୀ ଭାଇଭଅରିମାନେ ବାକି ଅଂଶ ମାଡ଼ି ବସିଥିଲେ । ଶିକ୍ଷକ ନରୋତ୍ତମ ଠେଙ୍ଗାବାଡ଼ି ନଚେଇବା କାର୍ଯ୍ୟରେ ଅଭ୍ୟସ୍ତ ନ ଥିଲେ ।

ତା'ପରେ ପୁଣି ସେ ପିଲାପିଲି ନେଇ ଚାଲିଗଲେ । ଜଗବନ୍ଧୁ ଚାକିରି କରିଥିଲେ, ଆଉ ଚିକିତ୍ସକ ବୃତ୍ତିରେ ଲାଗି ଲାଗି ହୋଇ ଆସୁଥିଲେ, ଦି'ଜଣ ପଢୁଥିଲେ, ଗୋଟିଏ ଝିଅ ଅବିବାହିତା । ହଠାତ୍ ଦିନେ ସ୍କୁଲରେ ପଢ଼େଇ

ଘରକୁ ଆସି ନରୋତ୍ତମ ବାଁ ପାଖ ଗୋଡକୁ ଘୃପିଧର ବନ୍ଧଣାରେ ଗଡ଼ି ପଡ଼ିଲେ । ସେତେବେଳକୁ ସେ ହୋଇଥିଲେ ହେଡ୍‌ମାଷ୍ଟର ।

ନରୋତ୍ତମଙ୍କ ମୃତ୍ୟୁପରେ ଜଗବନ୍ଧୁ ସେ ପରିବାରର ଭାର ତୁଲାଇଲେ । ତାପରେ ବିବାହ, ମା'ର ମୃତ୍ୟୁ କି ସ୍ତ୍ରୀ, ଭାଇମାନଙ୍କ ପାଠପଢ଼ା, ସାନ ଭଉଣୀର ବିବାହ ସବୁ ହେଲା ବିଦେଶରେ ବିଦେଶରେ । କ୍ରମେ ଭାଇମାନେ ଆପଣା ଗୃକର ଗାଁରେ ଆପଣା ରୋଜଗାରରେ ଚଳିଲେ, ଯାହାର ଯେଉଁଠି ଇଚ୍ଛା ହେଲା ସେଠି ସେ ଘର କଲେ । କାହାର ଆଉ କାହା ଉପରେ ନିର୍ଭର ନାହିଁ, ତେଣୁ ସମ୍ବନ୍ଧ ବି ଶିଥିଳ ହେଲା । ଖାଲି ରହିଗଲା ଏକା ମା ପେଟର ମମତା ଟିକିଏ, ଆଉ ନୂଆ ଯେଉଁମାନେ ଜନ୍ମ ହେଲେ ବଡ଼ ତାଙ୍କ ପକ୍ଷରେ ତ ଖାଲି ଗୋଟିଏ ଐତିହାସିକ ସ୍ମୃତି ।

ଜଗବନ୍ଧୁ ତଳେ ହରିବନ୍ଧୁ ହାଇସ୍କୁଲରେ ଶିକ୍ଷକ, ଦୀନବନ୍ଧୁ ଡାକ୍ତର, ଶ୍ୟାମବନ୍ଧୁ ଇଞ୍ଜିନିୟର, ପ୍ରାଣବନ୍ଧୁ ପୁଲିସ ଇନସ୍‌ପେକ୍ଟର, ବ୍ରଜବନ୍ଧୁ କୋ-ଅପରେଟିଭ ଆସିଷ୍ଟାଣ୍ଟ ଡିରେକ୍ଟର । ହରିବନ୍ଧୁ ଦୀନବନ୍ଧୁ ଅନୁଗୁଳରେ ଛୋଟା ବାଡ଼ି ଘର କରି ରହିଲେ । ଶ୍ୟାମବନ୍ଧୁ ବଡ଼ ବଗିଚା ବହୁତ ଚାଷଜମି ସମେତ ସୁନ୍ଦରଗଡ଼ରେ ଘର କଲେ, ପ୍ରାଣବନ୍ଧୁଙ୍କର କଟକ ତୁଳସୀପୁରରେ ମହାନଦୀ ଉପରେ କୋଠା, ବ୍ରଜବନ୍ଧୁଙ୍କର କଟକ ଖପୁରିଆରେ କୋଠା, ତା'ଛଡ଼ା ଏମାନଙ୍କର ଆଉ ଯେଉଁଠି ସେଠି ଘର । ସେମାନଙ୍କ ପିଲାମାନେ ବି ବିଭିନ୍ନ ବୃତ୍ତିରେ ରହି ଯାଇଥିଲେ । କିଏ ଡାକ୍ତର, କିଏ ଇଂଜିନିୟର, କିଏ ଅଧ୍ୟାପକ କିଏ ଡିପୋଟି, କିଏ ସେକ୍ରେଟେରିଏଟରେ ହେଡ୍ ଆସିଷ୍ଟାଣ୍ଟ, କିଏ କିଏ ପଢୁଥିଲେ ।

ନିଆଳି ମାଧବ ପାଖରେ ଗଣ୍ଡ ମଫସଲରେ ପୈତୃକ ଗାଁରେ ଘର କରି ରହିଥିଲେ ଏକା ଜଗବନ୍ଧୁ । ତାଙ୍କ ବଡ଼ ପୁଅ ନାଣ୍ଟୁ ରାଉରକେଲାରେ ଏକାଉଣ୍ଟାଣ୍ଟ, ତା ତଳେ ଝିଅ ନଳି, ତା ସ୍ୱାମୀ ସୁଦାସ ବାଲେଶ୍ୱରରେ ଚାଉଳକଲ ମ୍ୟାନେଜର, ସବା ସାନ ଶଶୀ ବାଲିମେଲାରେ ଆସିଷ୍ଟାଣ୍ଟ ଇଞ୍ଜିନିୟର । ପୁଅ ବଡ଼ ହେଲେଣି, ଛୁଆ ପିଲା ଘେନି ସଂସାରର ଜଞ୍ଜାଳରେ ବାନ୍ଧି ହେଲେଣି । ଜଗବନ୍ଧୁ ଟାଣ କରି ମନା କରି ଦେଇଥିଲେ ପୁଅମାନେ ଘରକୁ ଟଙ୍କା ପଠାଇବେ ନାହିଁ । 'ନିଜ ଗୋଡ଼ରେ ଜୀବନଯାକ ଠିଆ ହୋଇଛୁ ଶେଷଯାକେ ସେହିଆ ହେବ', ଏହିପରି ତାଙ୍କର ପଣ । ତଥାପି ପିଲାଏ କୌଣସି ପଢ଼ଆରେ ହେଲେ ଲୁଗାପଟା କି ଅନ୍ୟାନ୍ୟ ଉପାୟରେ କିଛି କିଛି ଦେଇଯାଉଥିଲେ । କାଳକ୍ରମେ ବାଉଁଶ ବଢ଼ୁ ବଢ଼ୁ ଯହୁଁ ପୋଲ ବି ବଢ଼ିଗଲା ତା ବନ୍ଦ ହୋଇଗଲା । କାମ ଛାଡ଼ି ଗାଁକୁ ଆସିବାକୁ ଛୁଟି ନାହିଁ, ଆଜି ଝିଅଯା ଦେହ ବେମାର କାଲି କେଉଁ ପିଲାର ଦେହ ବେମାର ନହେଲେ ଆଉ କେଉଁ ଜରୁରି ସରକାରୀ କାମ । ମାସ

ପରେ ମାସ ଯାଏ, ବର୍ଷକେ ଥରେ ଜଣେ ଆସି ପାରିଲେ ବହୁତ। କିନ୍ତୁ ସେମାନେ ଚିଠିରେ ଧରି ଚିଠି ଲେଖନ୍ତି 'ବାପା ଆସନ୍ତୁ, ବୋଉ ଆସୁ, ଗାଁରେ ପଡ଼ି କ'ଣ ବା ଲାଭ ? ଦେହ ମୁଣ୍ଡ ହେଲେ କିଏ ଦେଖିବ ?' ମା' ମନ ଉଚ୍ଛନ୍ନ ହୁଏ। ଜଗବନ୍ଧୁ ଅନାନ୍ତି ତାଙ୍କ ଇଷ୍ଟଦେବ ଅଣ୍ଟୁଆ ଗୋପାଳ ବିଗ୍ରହଙ୍କୁ, ଶାଳୁଆ ମୁଗୁନି ଶିଳାରେ ଗୋଟିଏ ଖଣ୍ଡରେ ତିଆରି ମୂର୍ତ୍ତି, ଆଣ୍ଠେଇ ପଡ଼ି ହସୁଛନ୍ତି, ନରୋତ୍ତମ ମୟୂରଭଞ୍ଜର ଖିଚିଂରୁ କରାଇ ଆଣି ପ୍ରତିଷ୍ଠା କରାଇଥିଲେ। ସୁଲକ୍ଷଣା ବ୍ୟାକୁଳ ହେଲେ ଜଗବନ୍ଧୁ ବୁଝାନ୍ତି।

'ପିଲାଏ ମଣିଷ ହେଲେ, ତାଙ୍କ କଥା ସେ ବୁଝିବେ, କିନ୍ତୁ ଗୋପାଳ ତ ଯେମିତି ସେମିତି। ଯେ ବିଶ୍ୱବ୍ରହ୍ମାଣ୍ଡର କର୍ତ୍ତା ସେ ଏଠି ଶିଶୁ ନାରାୟଣ। ତାଙ୍କୁ ଅବହେଳା ହେଲେ ମୋ ପ୍ରାଣ ସହିବ କେମିତି ?'

ସେଇଠି ଜଗବନ୍ଧୁଙ୍କର ଦିନ କଟିଯାଉଥିଲା। କ'ଣ ନୂଆ କିଛି ଘଟିବ, ନୂଆ କିଛି ଶୁଣିବେ ବୋଲି ଆକାଂକ୍ଷା ନ ଥିଲା। ଚିଠି ଆସିବ ବୋଲି ଛନଛନ ହୁଅନ୍ତି ନାହିଁ। ଦୈନିକ ଖବରକାଗଜ ପଢ଼ନ୍ତି ନାହିଁ। ଯଦି କେବେ ଠାକୁରଙ୍କ ପାଖରେ ପୁରୁଣା ଖବରକାଗଜ ହାତରେ ଚଷମା ଲଗାଇ କୌତୁକ ଓ କୁତୂହଳରେ ତା ଉପରେ ଆଖି ବୁଲାନ୍ତି। ସବୁଦିନେ ସେହି ସେହି ସମୟରେ ସେହି ସେହି କାମ, ପାନ ଛେଚିବା କି ଅବା ଏ ଘାସ ଓପାଡ଼ିବା କି ଗୋପବନ୍ଧୁଙ୍କ ଖବର ବୁଝିବା କି ଗାଧୋଇବା କି ଖାଇବା କି ଭୁଲିଯାଇ କାନ୍ଥ ପିଣ୍ଡାରେ ତୁନିହୋଇ ବସି କିଛି ସୁଖ ଦୁଃଖର ସ୍ମୃତି ଭାବିହେବା। ସବୁ ଅଭ୍ୟାସ।

ହଠାତ୍ କିଛିଦିନ ତଳେ କୁଆଡ଼ୁ କେଉଁ ସ୍ୱର ହାଉକାଏ ଆସି ତାଙ୍କ ମନରେ ବାଜିଥିଲା। ଦ୍ୱିପ୍ରହର। ପିଣ୍ଡାରେ ବସି ପଦାକୁ ଅନାଇଥିଲେ। ଧଳା କଳା ପାଉଁଶିଆ କହରା ହୋଇ ଭଣିଭଣା ମେଘ। ତା' ଉହାଡ଼ରେ କାହିଁ କେଉଁଦୂରରେ ଚକ୍‌କଣ ନେଳି ଝୋପାଏ ଝୋପାଏ ବୁଣିଆଡ଼ୁ ମେଘ ଯେତେ ଘୁଷି ଘୁଷି ଆସେ, ଭୁଜ ଭୁଜ ଆସେ, ତା' ଉହାଡ଼ରେ ଦୂରରେ ଦିଶୁଥାଇ ସେହି ନେଳି। ତାଙ୍କ ଛାତି ଭିତରେ କ'ଣ ମନ୍ଥାଚକଟା ଲାଗିଗଲା। ମନ ଲମ୍ବିଗଲା କେଉଁ ଅକଳନ ଅଚିହ୍ନା ଅତୀତକୁ। ଆଖି ଆଗରେ ମେଘ ଝରୁ ଝରୁ ବରଷିଗଲା। ସତେ ଯେମିତି କାହାର କାନ୍ଦଣା। ଜଗବନ୍ଧୁଙ୍କ ମୁହଁ ଶୁଖିଯାଇଥାଏ। ପଲକ ପଡ଼ୁଥାଏ କି ନାହିଁ। ନିଶ୍ୱାସ ବହୁଥାଏ କି ନାହିଁ। ଅନ୍ତର ସତେ କି ସ୍ତବ୍ଧ।

ଦିନା ଲେଉଟିଲା। ପଡ଼ିଲା ଗଛବୃକ୍ଷ ଉପରେ। ଛନଛନିଆ ଶାଳୁଆ ଦିଶୁଛି।

ତା'ପରେ ସେ ଦେଖିଲେ, ଗହଳି ଅମରିବାଡ଼ରେ ପ୍ରତି ପଦରେ ଜାଲି ଫାଟିଲାଣି। ଚେକା ଚେକା ବହଳ ବ୍ରଜମଲ୍ଲୀ ପଦକୁ ଢେଉଁଲାଣି। ଉପରକୁ

ମୁହଁ ଟେକି ଜଗବନ୍ଧୁ ଚାହିଁଲେ, ଏ ମେଘ ପୁଞ୍ଜିତାର ପ୍ରେତ, ପୋକଗୁ, ଜାଳିଜାଲି ଯେତେ ଅପଣା ବୟସ ମନେପଡ଼ିଥିଲି ଆଉ ତା' ସଙ୍ଗେ ସଙ୍ଗେ ଅତୀତ ।

ଗୋଟାଏ ଉଲ୍ଲତ ଲୁଣ୍ଡା ପଣ୍ଡା ଚେହେରା କଳା ମିଶ ମିଶ ହାଫ ପ୍ୟାଣ୍ଟ ହାଫସାର୍ଟ ପିନ୍ଧି ସାଇକେଲ୍ ଚଢ଼ି ସହରର ରାସ୍ତାରେ ବୁଲି ଗଲାବେଳେ ଦୋକାନରୁ ଆରସିରେ କି କାଚ ଆଲମାରିରେ ସେ ଚେହେରାର ଛାଇ ଦେଖିବାକୁ ବେଳଠୁଁ ମୁହଁ ଫେରେଇଛା ହୋଇଯାଏ । ମନେପଡ଼ିଗଲା, ସେତେବେଳେ ବାଟ ଚାଲିଲେ ଜଙ୍ଘକୁ ଜଙ୍ଘ ଘଷି ହେଉଥିଲା । ସେ ଦେହରେ କୁଆଡ଼ୁ ଆସିଥିଲା, ଚାଲିଯାଇଛି ।

ଏ ଦେହଟା ଭିନେ । ଆପଣା ଆଗରେ ଆପେ ଦେଖାଇ ହେଲା ପରି ଯେତେ କୋଡ଼ ହାଣିଲେ, କୁରାହଡ଼ି ଚଳେଇଲେ ଗୋଟାଏ ମୋହିନୀ ଗୋ ଘରକାମ କଲେ, ଖାଲି ବାରମ୍ବାର ହାରିବା ଘୋଳି ହେବାର ଦସ୍ତୁମାସୁ କାହାଣୀ ।

ଚହୁଁର କିଛିଦିନ ପରେ । ଖାଲଟାରେ ଦୂରକୁ ଚାହିଁ ଏକୁଟିଆ ବସିଥିଲା ବେଳେ ଜଗବନ୍ଧୁ ସତେ ଯେମିତି ସିନେମା ଦେଖୁଥିଲେ । ସେ ଦୃଶ୍ୟ ଜୀଅନ୍ତା-ମାନଙ୍କର ନୁହେଁ । ସହପାଠୀ ଗଙ୍ଗାରାମ ଓଝା, ସୌମ୍ୟ ମୂର୍ତ୍ତି, ଶାନ୍ତ ଆଖି, ମିଠା କଥା । ଓଭରସିଅର ରାବଣାସୁ, ମୋଟାମୋଟା ଧଳାନିଶ, ଅଜାଡ଼ି ହୋଇ ପଡ଼ିଲା ପରି ବଡ଼ ମୁହଁ, ମୋଟା, ପାପୁଲି ଯୋଡ଼ିକରେ ଥର ଥର ଆଙ୍ଗୁଠି ଆଗକୁ ପଛକୁ ହୋଇ ଯେମିତି ସୂତା ବୁଣୁଥାଏ, ଘଡ଼ଘଡ଼ି ପରି ମଝିରେ ମଝିରେ କଥା, ଭୁଲ ବ୍ୟାକରଣରେ ଲୁହାହୋଇ ତେଲୁଗୁ ଓଡ଼ିଆ ମିଶାମିଶି, ଶୁଣିବାକୁ କୌତୂହଳ ଲାଗେ । ଫର୍ଦ୍ଦ ଖଲାସି ଚମରୁ ନାଏକ, ସରୁ ସରୁ ଲହ ଲହ ହୋଇ ତା'ର ବନ୍ଦୀତ ବଡ଼ ହାକିମ ନିହାଲ ସିଂ ଅଭିକାସୁ ହାରିଆନା ଫର୍ଦ୍ଦରେ ବେକତଳି କମ୍ବଳକୁ ଅଉଁସୁ ଥିଲାବେଳେ ମାନେ ଭଲ, ନୁହେଁ ଖାଇ ଖାଇ । ବୃଢ଼ୀ ପିଉସୀ ଶୁକଅପା ବଙ୍କା ହୋଇ ବାଡ଼ି ଠୁକୁଠୁକୁ କରି ଏକର ସେକର ହେଉଥାନ୍ତି, ଡାକ ଛାଡ଼ୁଥାନ୍ତି, ଜଗୁଆରେ ମୋ ଜଗୁଆ କାହିଁ ଗଲା ? ବାପା, ବୋଉ ବଡ଼ବାପା, ଦାଦି ଖୁଡ଼ୀ, ଆପଣା ଖଞ୍ଜାର ଲୋକ, ଗାଁର ବିଭିନ୍ନ ସ୍ଥାନର ସହକର୍ମୀ । କାହାର କେଉଁ ଗୁଣ । କେଉଁ କେଉଁ ହାବଭାବ । କାହା ସହିତ କେଉଁ ସମ୍ପର୍କର ଅନୁଭୂତ ସମସ୍ତିଙ୍କୁ ଏକାଠି କରି ଦେଖି ହେଉଥାଏ, ପୁଣି ଗୋଟି ଗୋଟି କରି ।

ତା' ଉପରୁ ଅନେକ ସମୟରେ ମନ ବୁଲୁଛି ସବୁ ମଲା ଲୋକଙ୍କୁ ଜୀଅନ୍ତା ଅବସ୍ଥାରେ ଏକାଠି କରି ଆଖିଆଗରେ ଥୋଇ ଦେଖିବାକୁ । ସେମାନେ ସଭାକଲା ପରି ବସିପଡ଼ନ୍ତି ଗାଁରେ କି ସାହିରେ ଏକାଠି ହୁଅନ୍ତି । ଜଗବନ୍ଧୁ ଶୂନ୍ୟକୁ ଅନାଇଁ ସେମାନଙ୍କୁ ଦେଖୁଥାନ୍ତି । କେତେବେଳେ ମନେପଡ଼େ ।

ସେମାନେ ମରିଛନ୍ତି । ମୁଁ ଅଛି । ମନ ଭୁଲାଇବାକୁ ଉଠି ପଡ଼ନ୍ତି । ଅସହାୟ ଲାଗେ ।

ଜୀବନରେ କେତେ ହେଲାଣି ମନେପଡ଼ୁଛି ଗୋଟାଏ ହଜି ଯାଉଥିବା ଜୀବନ ଭିତରେ ସ୍ନେହ ସହାନୁଭୂତିର କେତେ ସରୁ ସରୁ ଶୁଖିଲା ଧାର । ଯେମିତି ଏ ବରଷାରେ ବାଲିପଟା ଉପରେ କେତେ ମଳାଧାର କଅଁଳ ଉଠୁଛି, ଝୁଲୁଝୁଲୁ ହୋଇ ଅଛନ୍ତି ସୁଅ । ସେଥିରେ କାହିଁ କାହିଁ ମୀନପଲ ପହଁରୁଛନ୍ତି । ଦୁଇ ପଟରେ ଶିଉଳି, ଶାମୁଆ ଘାସ, ଉଗଡ଼ଗ ବଗ । ଛୁଇଁବାକୁ ହାତ ବଢ଼ାଇଲେ ସେ ଧାର ଦୂରେଇ ଯାଉଛି ।

ଏମିତି ଥରେ ବସି ଭାବୁଥିଲାବେଳେ ଗୋଟିଏ ଧାରଣା ଆସିଲା । କେଉଁଠି ଜନ୍ମ ହୋଇ ଜୀବନ ଗୋଟାକ କେଉଁଠି କେଉଁଠି କଟିଗଲା ! କେଉଁ ସ୍ଥାନରେ କେତେ ବର୍ଷ ତଳେ କାହାଠୁ ସେ କି ସ୍ନେହ କି ଉପକାର ପାଇଥିଲେ । ଜଏ ତାଙ୍କୁ କ'ଣ ଦେଇଛି, କ'ଣ ଖୋଇଛି, କେମିତି ଭଲ ପାଉଛି, ଆପଣାର ଭାବୁଛି, ରୋଗଶୋକ ଦୁର୍ଦ୍ଦିନରେ କେତେ ସାହାଯ୍ୟ କରୁଛି । ସେତେବେଳେ ସେହି ଅନ୍ତରରେ ସେ ପ୍ରତିଜ୍ଞା କରୁଥିଲେ ।

"ଜୀବନଯାକ ଲାଗିପାଗି ଏ ଉପକାରରେ ଏ ସ୍ନେହର ମୁଁ ପ୍ରତିଦାନ ଦେଉଥିବି । ଧାଙ୍କୁଆ ହେବ ନାହିଁ ।"

ପୁଣି ସେ ଚେଇଁଉଠିଲେ । ପଛକୁ ଚାହିଁଲାବେଳକୁ ସେ ଯୁଅଡ଼େ ଗଲେଣି । କାହାର ନାଁ ମନେପଡ଼ୁ ନାହିଁ, ଚେହେରା ମନେପଡ଼ୁଛି ଅସ୍ପଷ୍ଟ ହୋଇ ।

ଖେଳ ତ ସରିଆସିଲା ! ମନଭିତରେ ଭୁହାଇ ଭୁହାଇ ଝଙ୍କାର ଉଠିଲା ।

ତା'ପରେ ରବିବାର ସନ୍ଧ୍ୟାବେଳେ । ଗୋରୁ ବାନ୍ଧସାରି ଟିକିଏ ବେଳ ଅପେକ୍ଷା । ଆଗରେ ନଲ୍ଟଣ ଥୋଇ ଭାଗବତ ଅଧ୍ୟାୟେ ହେବ । ଲମ୍ବୁଥାଏ ଏଥର ଦୂରରୁ ଝଣ୍ଟି କାଶ ଶୁଭିବ, ବୁଢ଼ା ଅନୁ ମଳିକ ଦୁଃଖସୁଖ ହେବାକୁ ଭାଗବତ ଶୁଣିବାକୁ ଏତିକିବେଳେ ଆସେ । ସୁଲକ୍ଷଣା ଚୂଲିପାଖେ ଥିଲେ । ଜଗବନ୍ଧୁ ଚେକାପକାଇ ବସି ହାଇ ମାରୁଥିଲେ, ହଠାତ୍ ମନେପଡ଼ିଗଲେ ଶଙ୍କରବାବୁ । ମୟୂରଭଞ୍ଜ କଲ୍‌ଟ୍ଟରରେ ସେ କିରାନି ଥିଲେ । ନିଃସନ୍ତାନ । ଜନ୍ମ ଘରେ ପଲେ ଛୁଆସିଲା । ନାନା ଜାତିର, ସାନ୍ତାଳ, ପାଣ, ବ୍ରାହ୍ମଣ, କରଣ ତନ୍ତି । ନଜର ହୋଇ ଭାଇବନ୍ଧୁ କେହି ନଥିଲେ, କନ୍ଧୁ ତାଙ୍କ ଘର କୁଣିଆ ଗହଳରେ ଫାଟି ପଡ଼ୁଥାଏ । ଶଙ୍କରବାବୁଙ୍କ ସ୍ତ୍ରୀ ସବୁବେଳେ କାମରେ ଲେଟୁଥାନ୍ତି, ସବୁବେଳେ ଚିନ୍ତା, କେଉଁ ପିଲାର କି ସମସ୍ୟା । କାହାକୁ କାନ୍ଥ ଛାଡ଼ୁନାହିଁ, କାହାର ଡାଲି ବଇଁଛି, କାହାର ନାଲି ଝାଡ଼ା, କିଏ ପାଠ ମନେ ରଖିପାରୁନାହିଁ, କ୍ଲାସରେ ଫେଲ୍ ହୁଏ, ସେମିତି କେଉଁ କୁଣିଆଙ୍କୁ ମାଛ ନ ହେଲେ ଭାତ ରୁଚେ ନାହିଁ, ଏଣେ ଫୁଲବାଣିରେ ମାଛ ମିଳେ ନାହିଁ, କିଏ ନିରାମିଷାଶୀ, ବ୍ରତ ଏକାଦଶୀ କରନ୍ତି । କପ ତାଙ୍କ ହାତ ସରୁଚକୁଳିକୁ ପ୍ରଶଂସା କରୁଥିଲେ, ଅତ୍ରର ଖାଇବାକୁ ଆଣ । ସମସ୍ତଙ୍କୁ ପ୍ରସନ୍ନ କରିବାକୁ ପଡ଼ିବ । ଶଙ୍କରବାବୁଙ୍କ ସରଳ, ସଜ୍ଜେ

ସକାଳେ ପିଲାଙ୍କୁ ପାଠ ପଢ଼ାଇବେ । ତାଙ୍କ ତୁଣ୍ଡରେ ସବୁବେଳେ ବଡ଼ ବଡ଼ କଥା, ଦେଶ, ସ୍ୱାର୍ଥତ୍ୟାଗ, ଆଦର୍ଶ, ଚରିତ୍ରବଳ, କର୍ତ୍ତବ୍ୟ, ସଦ୍‌ଗୁଣ ଏହି ସବୁ ବିଷୟରେ ଦେଶକୁ ଗଢ଼ିବାକୁ ପଡ଼ିବ, ଦେଶର ମନୁଷ୍ୟହିଁ ଦେଶ, ସେ କହୁଥାନ୍ତି । ସାଙ୍ଗମାନେ ଚନ୍ଦାମାନେ କେବେ କେବେ ଭୋଜି ଖାଇବାକୁ ଆସନ୍ତି । ବିଚରା ନିରୀହ ପାଗଳ ଲୋକ ଅନେକଙ୍କର ଅଭିମତ ଶୁଣାଯାଏ, 'ଏଡ଼େ ଲୋ, କିଏ ପଇସା ଆଣି ଲୁଞ୍ଚିଲେ ବି ନେବେ ନାହିଁ । ପରପିଣ୍ଡ ଉଡ଼େଇ ଉଡ଼େଇ ଖାନ୍ତି । ସୁଦ୍ଧୁଣା ଖାନ୍ଦାନ ଘର ଲୋକ କନା, ଯେମିତି ବଡ଼ ଚେହେରା ସେମିତି ବଡ଼ ମନ ବଡ଼ ଆଖି, ହେଲେ କ'ଣ ହେବ, ମୁଣ୍ଡର ଖିଲ ହୁଗୁଳା ।

ସେତେବେଳେ ମୟୂରଭଞ୍ଜରେ ଟଙ୍କାକୁ କୋଡ଼ିଏ ସେର ଚାଉଳ । ଅଥଚ ଶଙ୍କର ବାବୁଙ୍କର ବଜାରରେ ଶହ ଶହ ଟଙ୍କା କରଜ । ତଥାପି କରଜ ମିଳେ । ଯେଉଁମାନେ ଚାକିରିରେ ସହକର୍ମୀ ନୁହନ୍ତି ତାଙ୍କ ଆଖିରେ ସେ ଦେବତା । ଦୁଃଖୀରଙ୍କି ବିପଦ ପଡ଼ିଲେ ତାଙ୍କରି ପାଖକୁ ତ ଧାଇଁବେ, ଆଉ କିଏ ଅଛି ? ଜଗବନ୍ଧୁ ସେ ଶଙ୍କରବାବୁଙ୍କୁ ସତେକି ଆଖିଆଗରେ ଦେଖୁଥିଲେ । କଳାପଥରରେ ତିଆରି ହେଲା ପରି ପ୍ରକାଣ୍ଡ ଶରୀର କୁନ୍ଦା ନୁହେଁ, ବୋଦକା ନୁହେଁ, ଓଜନ, ବଡ଼ ମାଉଁସିଆ ମୁହଁ । ଗୋଲ ଗୋଲ ଆଖିଯୋଡ଼ିକ ପିଲାଆଖି ପରି ନିରୀହ । ଜେଲ୍‌ଖାନା କଇଦୀଙ୍କ ବାଳପରି କଣ୍ଟା ହୋଇଥିବା ମୁଣ୍ଡବାଳ, ତହିଁରେ ଗୋଟିଏ ଚୁଟି । ନାଲି ଗାମୁଛାଟାଏ ବେଢ଼େଇ ହୋଇ ସେ ବସିଛନ୍ତି । ଚାରିକରେ ପଲେ ପିଲା । ଆରିସାପିଠା ଖିଆ ହେଉଛି । ହସି ହସି ହାଣ୍ଡିରୁ ଆହୁରି କାଢ଼ି କାଢ଼ି ବାଣ୍ଟୁଛନ୍ତି ତାଙ୍କ ଅକୁଣ୍ଠତା ଦେଖା ।

ସେହି ଶଙ୍କରବାବୁ ତାଙ୍କର ବି ବହୁତ ଉପକାର କରିଥିଲେ । ଖାଲି ସଦୁପଦେଶ ଦେଇ ନୁହେଁ, ଖାଲି ଦୁଇଓଳି ମାଗଣାରେ ପାଠପଢ଼ାଇ ନୁହେଁ, ଶରଧାରେ କେତେବେଳେ ଲୁଗାପଟା ସାହାଯ୍ୟ, ବହିପତ୍ର ସାହାଯ୍ୟ, ଯେତେବେଳେ ଗଲେ ପେଟପୂରା ଜଳଖିଆ, ଓଳିଓଳିକେ ଦାମୀ ଭୋଜନ, କେତେ ବୁଦ୍ଧି କେତେ ଆଶା ସବୁ ସେ ଦେଇଥିଲେ ଚାରିବର୍ଷ ପର୍ଯ୍ୟନ୍ତ, ପଣ୍ଡିତାଙ୍କର ସେ ପଢ଼ିଥିଲେ ତାଙ୍କର ଉପଦେଶ ମାନ, ପ୍ରବେଶିକା ଫି ବି ସେ ଦେଇଥିଲେ । ତାଙ୍କ ଆଖିରେ ଶଙ୍କରବାବୁ ଦେବତା ।

ଯେ ହୀନବଳ ତାକୁ ହିଁ ସାହାଯ୍ୟ କରିବ । ଯେ ନିଃସହାୟ ତାହାର ତୁମେ ସହାୟ ହେବ । ପରର ତପସ୍ୟା ଓ ସେବା ଛଡ଼ା ସଂସାରରେ ଆଉ କି ଉପାଦେୟ କାର୍ଯ୍ୟ ଥାଇପାରେ ?

ଟଙ୍କା ସମସ୍ତେ କମେଇପାରିବେ, ଅସତ୍ ମାର୍ଗ ଧରିଲେ ତ ହୁହୁ କରି ଟଙ୍କା ବଢ଼ିଯିବ । କିନ୍ତୁ ମୋର ବଡ଼ ଇଚ୍ଛା ତୁମେ ଟଙ୍କା ଲୋଭ ଛାଡ଼ି ମଣିଷ ହୁଅ,

ଭଗବାନ ଖାଇବାକୁ ଦେବେ ପୋଷିବେ ପାଳିବେ ଆଉ ଅଧିକ ତୁମେ ମାଗ ନାହିଁ, ସେହି ଶଙ୍କରବାବୁ ତାଙ୍କୁ କହିଥିଲେ ।

ତାଙ୍କ ଆଗରେ ଠିଆହେଲେ ଦେହ ଥରୁଥିଲା, ଆଖି ତଳକୁ ହେଉଥିଲା, ବାରମ୍ବାର ଆଶଙ୍କା ହେଉଥିଲା 'ତାଙ୍କ କଳ୍ପିତ ଆଦର୍ଶରୁ ମୁଁ ତଳକୁ ଖସିପଡ଼ି ନାହିଁ ତ ।'

ତାଙ୍କର ଗୋଲ୍ ଗୋଲ୍ ଆଖି ସତେକି ସବୁ ଦେଖୁଥିଲା ସବୁ ବୁଝୁଥିଲା ଯେ କିଏ କେଉଁ ପ୍ରକାରେ ବାଟବଣା ହେଉଛି, କି କି ଭୁଲ୍ କରୁଛି । ସେ ଠିକଣା ସମୟରେ ଚୋଟ କରି ଦେଉଥିଲେ । ପିଲାଦିନରୁ ଜଗବନ୍ଧୁଙ୍କ ଗୁରୁ ନରୋତ୍ତମ ନୁହନ୍ତି, ଶଙ୍କରବାବୁ । ସେ ପ୍ରଶଂସା କରି ହସିଲେ ଜଗତ ଆଲୁଅ ହୋଇଗଲା ପରି ଲାଗେ, ସେ ମୁହଁ ଶୁଖାଇଲେ ଲାଗେ ଜଗତ ଅନ୍ଧକାର । ବଡ଼ ହେଲେ ଏହିପରି ହେବ, ସେ ଅନେକ ସମୟରେ ଭାବୁଥିଲେ ଅନାଟନ ଘଟିଲେ ଦୁଇଓଳିରେ ଓଳିଏ ଚୁଲି ଜଳିବ, ଖତ କୂଳରେ ବଢ଼ିଥିବା ଜଣ୍ଡା ଶାଗ ଆଉ ଭଖାଳ ତୋରାଣିରେ ଚଳିଯିବ କିନ୍ତୁ ଗରିବ ପିଲାଏ ଘରେ ରହି ପାଠ ପଢ଼ିବେ, ଦୁଃଖୀରଙ୍କି ସାହାଯ୍ୟ ପାଇବେ, ସମାଜ ପାଇବ ସେବା ଓ ଉପକାର ।

ସେଇ ତ ଆଦର୍ଶ ଜୀବନ ! ମୁଁ କ'ଣ କଲି ? ଜଗବନ୍ଧୁ ଭାବୁଥାନ୍ତି, ଆଖିରୁ ଧାର ବୋହୁଥାଏ । ମନେପଡ଼ୁଥାଏ, ଶଙ୍କରବାବୁ ବୁଢ଼ାହୋଇ ମଲେ, କିନ୍ତୁ ରୋଗରେ କଷ୍ଟ ପାଇ ପାଇ ଅଭାବରେ ହନ୍ତସନ୍ତ ହୋଇ ହୋଇ । ଔଷଧ କିଣିବାକୁ ବି ପଇସା ନଥିଲା । ଯେଉଁମାନଙ୍କୁ ସେ ଆପଣାର କରିଥିଲେ, ମଣିଷ କରିଗଲେ, ତାଙ୍କୁ ସାହାଯ୍ୟ ଦେବା ତ ଦୂର କଥା, ଅନେକେ ଟିକିଏ ଦେଖିବାକୁ ବି ଗଲେ ନାହିଁ ।

ଆଉ ମୁଁ ବା କାହାର କ'ଣ କଲି ? ଜଗବନ୍ଧୁ ଭାବିଲେ ଖାଲି ମୋର ଝୁଅପିଲା, ମୋର ସୁଖଦୁଃଖ । ଆଉ ହୃଦୟ ଭିତରେ ବୋଝେ ସଦିଚ୍ଛା, କାହାର କିଛି କରିବାକୁ ମନ, କାର୍ଯ୍ୟରେ କିଛି ନାହିଁ । ସେ ରାତି ଉପରୁ ସେ ଶଙ୍କରବାବୁଙ୍କୁ ପୁଣି ମନେ ପକାଇଥିଲେ । କେତେବେଳେ କାମ କରୁ କରୁ ହାତ ରହିଯାଏ, ଆଖି ତୋଳା ତେରହୋଇ ଯଟକିଯାଏ । ଯୋମଣି ଓହଳି ପଡ଼େ । ନିଜ ସ୍ତ୍ରୀଙ୍କ ସଙ୍ଗେ କଳି କରିବା ସେ ବହୁଦିନରୁ ଛାଡ଼ି ଦେଇଥିଲେ, କିନ୍ତୁ ମଙ୍ଗଳବାର ସଞ୍ଜରେ ସେମାନଙ୍କର ଝଟାପଟା ଲାଗିଗଲା, ଆରମ୍ଭ ହେଲା ପଦେ କଟାକଟି, ଗାଁ ଆଡୁ ବୁଲି ଆସି ଜଗବନ୍ଧୁ କହିଲେ ଆଜି ବନୋଦା କୁମ୍ଭାର ମରିଗଲା । ମସଲାଦିଆ ଗୋଟା ଆମ୍ବ ଆଚାର ଟିକିଏ ପାଟିରେ ଲଗାଇବ ବୋଲି କେତେଥର କହି ପଠାଇଥିଲା । ଦେଇଥିଲ ?

'ମଲା ମୋ ପୋଡ଼ା ମନ, ବୁଢ଼ାଟା ସତେ ମରିଗଲା ?'

'ଓ ! ତାହେଲେ ତୁମେ ଦେଇ ନାହିଁ । ମୁଁ ସବୁ ଜାଣେ ।'

'ଆରେ ! ମୁଁ କ'ଣ ଜାଣିଥିଲି ବୁଢ଼ାଟା ମରିଯିବ ବୋଲି ?'

"ନିଶ୍ଚୟ ଜାଣିଥିଲି । ବୁଢ଼ାକୁ ସତାଅଶୀ ଚାଲିଥିଲା । ଆହା, ପିଲାଦିନେ ମତେ କେତେ କାନ୍ଧେଇଛି । ମୋ ବୋଉ ତା ବାପାକୁ ଭାଇ କରିଥିଲା । ଧାରୁଆ କରି ରଖି ଦେଇଗଲା । ଦେଖୁନା ଏ ଯେଉଁ ନଉଘ ଝାଣ୍ଡିଟି ସେ ଗଢ଼ିଦେଇ ଯାଇଛି, ପୋଡ଼ା ମାଟିର ଚିଜ ପିନା, ସେଥିରେ କି ସୁକ୍ଷ୍ମ କାମ କାରିଗର ! କେଡ଼େ ଦାମ୍ଭ କାମ ! କେତେ ବର୍ଷ ହେଲାଣି କହିଲ । ଏବର ପିଲାଙ୍କର ସେ ହାତ ନାହିଁ । ଗ୍ଲୁଡ଼ଃ । ଆଗ୍ରର ଚିଜଏ, ସୁନା ରୂପା ନୁହେଁ, ଦେଖିଲ ନାହିଁ । ଜୀବନଯାକ ତୁମେ ସେଇଆ ପଢ଼ । ହେଁଃ ମନ ।"

ବୁଜା ମୁଠା । ଶ୍ରେଷ୍ଠ ମନ । ଆଉ ଏତେ ଚେକା ମହୁଲି ପକାଇ ଆଖି ବୁଜି ଜ୍ୟୋତିକୁ ବସି ଧ୍ୟାନକଲେ କ'ଣ ଜ୍ୟୋତି ଦିଶିବ ? ଖାଲି ଅନ୍ଧାର । ଅନ୍ଧାର । ସୁଲକ୍ଷଣା କାବା ହୋଇ ଅନାଇଥାନ୍ତି । ଜଗବନ୍ଧୁ କହି ଯାଉଛନ୍ତି, "କାହିଁକି ତୁମ ମନଟା ଶ୍ରେଷ୍ଠ ଜାଣିଛ ? ତୁମର ଦୋଷ ନାହିଁ । ସବୁ ତୁମ ବାପ ଘରର ପ୍ରଭାବ । ସେମାନେ ଆମ ପରି ଉଜାଡ଼ି ଉଜାଡ଼ି ଗରିବ ହେବା ଜାଣନ୍ତି ନାହିଁ । ସେ ଶିଖିଛନ୍ତି ମହୁମାଛି ପରି ସାଉଣ୍ଟି ଆଣି ସଞ୍ଚି ସଞ୍ଚି ବଡ଼ଲୋକ ହେବା । ତେବେ, ଫେଣା ସଙ୍ଗି ଚୂପୁଡ଼ି ନେବାକୁ ଆଉ କେହି ଥାଏ, ଯେମିତି ଦେଖିଲ ଜମିଦାରି ବି ଉଠିଗଲା । କଣ ଭଲ ମାଡ଼ିଗଲା ?"

ସୁଲକ୍ଷଣା ପଦପଦ କରି କଥାଗୁଡ଼ାକ ଗିଳୁଥିଲେ । କାନମୁଣ୍ଡା ତାତିଲା । ନାକ ନାଲି ପଡ଼ିଗଲା, ତା'ପରେ ପାଟି, ଗାଲ, ବେକ, ମୁଣ୍ଡକୁ ତାତି ଚଢ଼ିଲା । ଆଖିରୁ ଧାରି ବୋହିଲା । ଏପରି ଅବସ୍ଥାରେ ବରଷବର୍ଷ ତଳେ ଯାହା ଯେମିତି ହେଉଥିଲା ପୁଣି ଅଭ୍ୟାସ ଅନୁସାରେ ସବୁ ଘଟିଗଲା । କଥାର ସୂଅ ଛୁଟିଥିବା ଯାକେ ସେ କିଛି କହୁ ନଥିଲେ । ତା ପରେ କାନ୍ଦୁରା ପାଟିରେ ସଁ ସଁ ହୋଇ ହଠାତ୍ ଗୋଟାଏ ବୋବ, ଜଗବନ୍ଧୁ ଚମକି ପଡ଼ିଲେ, ତା'ପରେ ହାତୀ ଶୁଣ୍ଢରେ ମେଘ ଗାଳିଲା ପରି ତୁହାକୁତୁହା ଗର୍ଜ୍ଜଣା, ଛୁ ଛୁ କରି ତଳେ ମୁଣ୍ଡବାଡ଼ିଆ, ଫଁ ମଁ କରି କାନ୍ଦଣା, ନାନା ସ୍ୱରରେ । "ମୋ ହାଡ଼ ମାଉଁସ ରକ୍ତ ଚୁଷି କରି ଖାଇ ମୋତେ ଜୀବନ ଯାକ ଜାଳିପୋଡ଼ି ମାରି ଶେଷରେ ବୁଢ଼ୀ ଦିନକୁ ଆହୁରି ସ୍ୱେ ଅପବାଦ ଶୁଣିବା ବାକି ଥିଲା । ହାରେ ଦଇବ । ମୁଁ ନମରି ରହିଚି କାହିଁକି ? ଟାଇଫଏଡ୍‌ରେ ପଡ଼ିଥିଲି ମରିଥିଲେ ଦଶବର୍ଷ ହୋଇଯାଆନ୍ତାଣି, ନ ମରି ବଞ୍ଚିଛି କାହିଁକି ?"

ତୋଫାନ ଚାଲିଛି । ଜଗବନ୍ଧୁ ଆତଙ୍କରେ ଅପେକ୍ଷା କରି ରହିଥାନ୍ତି । ଏ ସେହି ସେହି ଅବସ୍ଥା ଯେତେବେଳେ ମାତୃମୂର୍ତ୍ତି ସତେକି କରାଳୀ ହୋଇଯାଏ । ଦୟା ନାହିଁ, ମାୟା ନାହିଁ, ସମ୍ପର୍କ ନାହିଁ, ସମ୍ବନ୍ଧ ନାହିଁ, ସବୁ ଭଣିଭଣା ହୁଏ, ସୁଲକ୍ଷଣା ଅନ୍ତର ଭିତରର ସବୁ ସଞ୍ଚିତ ତିକ୍ତତା ପଦାକୁ ବାହାରି ଗରଳ ହୋଇ ତାଙ୍କ ବ୍ୟକ୍ତିତ୍ୱରେ ମାଖି ହୋଇ ରହେ । "ସ୍ୱେ କଣ ହେଲା ।" ଜଗବନ୍ଧୁ

ବୁଝି ଥିଲେ । ସେ କ'ଣ ଏପରି କହୁଛନ୍ତି ତାଙ୍କର ମନେ ପଡୁନଥାଏ । ଲାଗୁଥାଏ ନାହିଁ, ସ୍ତ୍ରୀଙ୍କୁ ଗାଳିଦେବା କି ଅପମାନ ଦେବା କି ଘରେ ଅଶାନ୍ତି ଲଗାଇବା ଉଦ୍ଦେଶ୍ୟରେ ସେ ତ କିଛି କହୁନାହାନ୍ତି । ପାଟି ଶୁଖିଯାଉଥାଏ । ଛାତି ଭିତରେ ଗଣ୍ଡଗୋଳ । ମନେପଡ଼ିଲା, ଆଗେ ଏପରି ବର୍ଷକେ ଦୁଇ ତିନିଥର ହେଉଥିଲା । ଥରେ ଅବତାର ଘୋଟିଲେ, ସେ ଲାଗିରହେ ସପ୍ତାହେ ଅଧପାକେ, ଯେତେବେଳେ ଫୋପଡ଼ା କଚନ୍ଦା, ଭଙ୍ଗାରୁଜା ନିଜ ମୁଣ୍ଡ ବାଡ଼ଉଆ, ଅହରହ କନ୍ଦାବୋବା ଚିତ୍କାର, ନିଜ ହାତରେ ମୁଠାମୁଠା କରି ମୁଣ୍ଡବାଳ ଓଟରା, ଲୁଗାପଟା ଅସମ୍ଭାଳ, ପାହୁପଡ଼ଶା ପରଆପଣା ଖିଆଲ ନ ରଖି ସ୍ୱାମୀଙ୍କର ବିରୁଦ୍ଧରେ ନାନା ଅଭିଯୋଗ ଘୋଷଣା, ସେ ସେ ନିଷ୍ଠୁର, ରାକ୍ଷସ, କର୍କଶ ପିଙ୍ଗଳ ସେ ଅତ୍ୟାଚାରୀ, ସେ ତାଙ୍କ ଜୀବନକୁ ଭସ୍ମ କରିଛନ୍ତି, ତାଙ୍କଠି ଏତେ ଟିକିଏ କାହା ପ୍ରତି ଦୟାମାୟା ନାହିଁ ।

ତା'ପରେ ଆସେ ଶୀତଳ ଯୁଦ୍ଧର ଦିନ, ଘରେ ପଶିଲେ ସବୁ ଚୁନଚାପ, ତାହାର ଭିତରେ ସ୍ପଷ୍ଟ ବାରିହୁଏ—ମୂକ ଗ୍ଲାନିଟି ତା'ର ତାତି ନିଆଁର ନୁହେଁ ବରଫର ।

ତା'ପରେ ସେ ଯୁଦ୍ଧର ସମାପ୍ତି କେବେ ହଠାତ୍ ହୁଏ ଅଧା ଚଅଁ ଅଧା-ଶୁଆ ଅବସ୍ଥାର ବିଛଣା ଉପରେ ଯେତେବେଳେ ଅଭିଯୋଗ ନଥାଏ, ନିଃଶବ୍ଦରେ ଖୋଲି ବରଫତଳ ଲୁଣି ଲୁହ । ଜୀବନଯାକ ପରସ୍ପର ପ୍ରତି ଆତ୍ମ ସମର୍ପଣ ବିଶ୍ୱାସ ଓ ସ୍ନେହ ସେହି ଲୁହରେ ଲୁହରେ ଚହଲାଚହଲି ହୁଅନ୍ତି । ଭାଦ୍ର ପୂର୍ଣ୍ଣିମାର ମଝି ରାତିରେ କଳାମେଘର ଓଢ଼ଣା ତଳେ ଯଦି ଜହ୍ନ ହସେଁ, ଜଳିଲା ପରି, ଯେତେବେଳେ ଶୁଭୁଥାଏ ଦୂର କୋଉ ପଲ୍ଲୀରୁ ଭାସି ଆସୁଥିବା ମଧୁର ମାଦଳ ଧ୍ୱନି ସହିତ ମନ ଉଲ୍ଲସା ନାଚର ସଙ୍ଗୀତ, ଓଦା ଓଦା କଳା ରାତି ବୋଲା ସ୍ପଷ୍ଟ ଅସ୍ପଷ୍ଟ ପୃଥିବୀ ଲାଗୁଥାଏ ଅତି ଆପଣାର ହୋଇ ମନୋହାରିଣୀ ।

ସବୁ ତୋଫାନ ଶାନ୍ତ ହୁଏ, ଶାନ୍ତ ହେବ । କିନ୍ତୁ ସେ ପର୍ଯ୍ୟନ୍ତ ?

ସୁଲକ୍ଷଣାଙ୍କଠି ଏପରି ଉପସର୍ଗ ଦେଖିଲେ ଜଗବନ୍ଧୁ ତାଙ୍କ ପାଇଁ ସହାନୁଭୂତିରେ କାତର ହୋଇପଡ଼ନ୍ତି ଓ ନିଜଠି ନାନା ତ୍ରୁଟି ଆବିଷ୍କାର କରନ୍ତି । ଆପଣା ସ୍ତ୍ରୀକୁ ଯେତେ ନିଘାଦେବା ଉଚିତ ସେ କ'ଣ ତହିଁକୁ କାଣିଚାଏ କେବେ ଦେଇଛନ୍ତି ? "ଯେଉଁ ପଶୁଙ୍କୁ ସେବା କଲି ବୋଲି ଏତେ ବଡ଼ାଇ କରୁଛ ତାଙ୍କଠି ହେଲେ ବିଚାର ଅଛି, ତୁମଠି ନାହିଁ, ତାଙ୍କର ଆଖି ଅଛି, ତୁମେ ଅନ୍ଧ ।"

ଠାଇ ଠାଇ ବାଜୁଛି କଥାଗୁଡ଼ାକ ଛାତିରେ ଲାଗୁଛି ସବୁସତ । କିନ୍ତୁ ଆଉ ଉପାୟ କଣ ଥିଲା ? ଜୀବନଟା ସତେକି ଅଟଳ ଅକୂଳ ସମୁଦ୍ରରେ ଗୁଡ଼ାଏ ଅଜଣା ସୁଅର ତୋଡ଼ରେ ଭାସିଲା ପରି, ନିଜର ବିଚାର ଆଉ ଇଚ୍ଛାରେ ଟିକିଏ ହାତ

ପଡ଼ିଶ ଯାଉ ଯାଉ ପୁଣି ସେ ସୁଅ ଭୋଡ଼ରେ ଅଉ କୁଆଡ଼େ ଭାସିଗଲା ପରି । "ଶୁଣ—ମତେ ଭୁଲ ବୁଝନା" ଶୁଣ—ଶୁଣିବାରେ କିଛି ନାହିଁ, ଖାଲି ଶୁଣାଇବାର । କିନ୍ତୁ ସେଦିନ ସୁଲକ୍ଷଣା ଆଉ ବେଶି ବେଳଯାକେ ମୁହଁ ଚଳାଇ ପାରିଲେ ନାହିଁ । ଅଳ୍ପ ସମୟ ପରେ ସେପଟେଇ ଘରୁ ଯୁଦ୍ଧ ବନ୍ଦ ହେବାର ଘୋଷଣା ଶୁଭିଲା—"ହଉ ଯାହା କହିବ କହ, ଯାହା ଦୋଷ ଦେବ ଦିଅ, ଜୀବନଯାକ ତ କହୁଛ, ଯାହାର ଯାହା ସ୍ୱଭାବ ସେ କ'ଣ ବଦଳିବ ?"

ପତ୍ରିକା କଣିବାକୁ ଜଗବନ୍ଧୁ କହିଲେ "ପାନ ଆଣ, କ'ଣ ଆଜି ଦେବନାହିଁ ?"

'ଖାଲି ପାନ କ'ଣ ମାଗୁଛମ' ତମ ପାଇଁ ଜଳଖିଆ କରି ପରା ଥୁଆ ହୋଇଛି । ଆଜି ତମର କ'ଣ ଘୋଟିଛି କି ?'

'ଆଜି ଥାଉ ।'

'କାହିଁକି ଥିବ ? ଜଳଖିଆ ଖାଇବ, ଗୁହା ଖାଇବ, ବେଳ ଅବେଳା ହୋଇଗଲେ ତୁମ ଦେହ ଖରାପ ହୁଏ ।' ପୁଣି ଟୀଣକର କହିଲେ, 'ଏଇ ଚୂଲି ମୁଣ୍ଡକୁ ଆସ, ଥୋଇଲି । ତେଣେ ଘର ଅନ୍ଧକାର ।'

ସାନପିଲା ମା' ମାଡ଼କୁ ଡର ଖାଇ ବସିଲା ପରି ଜଗବନ୍ଧୁ ଯାଇ ଖାଇ ବସିଲେ । କିନ୍ତୁ ମନଟା ଉଡ଼ୁଥିଲା ।

ସୁଲକ୍ଷଣାଙ୍କ ତରଫରୁ ଅହରହ ଗାଳି ଗଞ୍ଜଣା ଶୁଣିଥିଲେ ମନ ଟଳଟଳ ହୋଇ ନଥାନ୍ତା, ସବୁଥର ପରି ନିଜକୁ ଅପରାଧୀ ଭାବି ସେ ତାଙ୍କ ଉପରେ ସହାନୁଭୂତି ଅଜାଡ଼ି ଦେଇ ଥାଆନ୍ତେ । କିନ୍ତୁ ସେଥିରୁ ଅବ୍ୟାହତି ପାଇଲା ମାତ୍ରେ ତାଙ୍କ ମନ ଅଭିମାନରେ ପୂରି ଉଠିଲା, ଲାଗିଲା ସେ ଅତ୍ୟାଚାରୀ ନୁହନ୍ତି ଅତ୍ୟାଚରିତ ।

ଏ ସଂସାରରେ ଆପଣା ଘରଯା ବି ସାମାନ୍ୟ କଥା ସଦେ ସହି ପାରିବ ନାହିଁ, ଗଣ୍ଠି ପକାଇ ଧରିବ, ଛଳ କରିବ, ତେବେ ଏ ସଂସାର ଘରକରଣାର ଅର୍ଥ କ'ଣ ? ଏମିତି ଗ କାଳିକ ଗଲା । ସେ ଭୂନ ହୋଇ ଭାବୁଥାନ୍ତି, ଆଖି ଛଳଛଳ ହୋଇଆସୁଥାଏ ।

କିଛି କହିଲେ ନାହିଁ । ଖାଇସାରି ଉଠି ଆସି ପିଣ୍ଡାରେ ବସିଲେ । ମେଘୁଆ ଅନ୍ଧାର ଆକାଶରେ ଗୋଟି ଗୋଟିକିଆ ତରା । ବଗିଚାରେ କଳା କଳା ହୋଇ ଗଛଗୁଡ଼ିକ ନଡ଼ିଆ, କଲମି ଆମ୍ବ, ପିଜୁଳି, ପଣସ । ମିଞ୍ଜି ମିଞ୍ଜି ଜୁଳୁଜୁଳିଆ ଏକର ସେକର ଉଡ଼ୁଛନ୍ତି । ପୋଖରୀ ଉପରେ ଅନେକ ଫରଗୁ ଦିଶୁଛି । ଯେପରି ଯାହାର ଯେ ଅଲଗା ଅଲଗା, କାହାର କାହା ସଙ୍ଗେ ସମ୍ବନ୍ଧ ନାହିଁ, କାହାର କାହାକୁ ଅପେକ୍ଷା ନାହିଁ । କେହି କାହା କଥା ବୁଝୁ ନାହିଁ । ଏଇ ସଂସାର । କେଡ଼େ ନିଛଟିଆ ।

ମଣିଷ ଜୀବନରେ ସୁଖଠୁଁ ବଳି ଦୁଃଖ ଅଛି ? ଏଇ ନିଃସମ୍ପର୍କ ଏକୁଟିଆ ପଣଠୁଁ ଅଧିକା କିଛି ? ସେ ଥକ୍କା ହୋଇ ସ୍ତବ୍ଧ ରହି ଆପଣାକୁ ମନେ ମନେ ପଚାରିଲେ, 'ସତେ ଯେପରି ନିଜ ଭିତରେ ଆଉ ଜଣେ କିଏ ସାକ୍ଷୀ ହୋଇ ବସିଛି, ସେ ତା'ର ଉତ୍ତର ଦେବ । ଜୀବନ ଭିତରେ ପହଁରି ପହଁରି ଯାଇ ଶେଷରେ ଦମ୍ ନେଲି ବେଳକୁ ନିଛାଟିଆ ମରୁଦ୍ୱୀପ, ସେଠି ବାଲି ପଟା ତାଚ୍ଛଲ୍ୟରେ ହସୁଛି, ଯେମିତି ହସୁଛି ଏ ଅନ୍ଧାର ।' ଉପମାଟା ମନକୁ ଛୁଇଁଦେଲା । ଯେମିତି କବିତାର ଧାଡ଼ିଟିଏ । ମନେ ପଡ଼ିଲା, କବିତା ବି ଲେଖିଥିଲି ଦିନେ । ଗୋପନ କଥା । ସେ ସେହି ପଶୁ ଡାକ୍ତରି ପଢ଼ିବା ଦିନର କଥା । ପାଟ୍ନା । ନିଶ ଉଠିବାର ବୟସ ପାଞ୍ଚବର୍ଷ ହୁଏ କି ନହୁଏ । ସେ ନିଶ ରଖୁଥିଲେ । ହଷ୍ଟେଲର ଝରକା ସାମ୍ନାରେ ଦିଶୁଥିଲା, ବଡ଼ କୋଠା କଡରେ ଗୋଟାଏ କୁଜା ଖପର୍ଲି ଘର, ସେଥିରେ ଗୋଟିଏ ଗରିବ ପରିବାର, ସେଠି ଗୋଟିଏ ପରିଶ୍ରମୀ ଯୁବତୀ । ସବୁବେଳେ ତା' କାମ ବାହାରେ ବାହାରେ । ବଡ଼ ବଡ଼ ଗାଈ ବନ୍ଧା ହୁଅନ୍ତି । ସେ ତାଙ୍କୁ ଖୁଆଏ, ଦେହରେ ମର୍ଦ୍ଦନ କରେ, ବାଲ୍ଟିରେ ଦୁଧ ଦୁହେଁ, ଗରାଖି ଆସନ୍ତି ଦିନକୁ ଦି'ଥର । ଘର କାମରେ ଲାଗିଥାଏ ।

ତିନିବର୍ଷ ସେ ସେହି ପୃଷ୍ଠଭୂମିର ଅଂଶ ହୋଇ ରହିଥିଲା ତାଙ୍କ ଝରକା ସାମ୍ନାରେ । ଦିନେ ପଦେ କଥାଭାଷା ନାହିଁ । କିନ୍ତୁ ଅନେକଥର ସେ କୁଜା ଖପର୍ଲି ଘରେ ମିଟିମିଟି ଲଣ୍ଠଣ ନିଭିଗଲା ଉତ୍ତାରୁ ସେ ସେହି ଘର ଆଡ଼କୁ ଅନାଇଁ ଥିର ହୋଇ ବସି ରହନ୍ତି ଆଉ ଭାବନ୍ତି, କ'ଣ କରୁଥିବ ସେ !

ବହୁତ କବିତା ଲେଖାହୋଇ ରହିଥିଲା । ନିଜେ ପଢ଼ିଲେ ଖୁସି ଲାଗୁଥାଏ । ଆଉ କାହାକୁ ଶୁଣାଇବାକୁ ପ୍ରବୃତ୍ତି କି ସାହସ ନ ଥାଏ । ତା'ପରେ କୁଆଡ଼େ ସେ କବିତା ଖାତା ହଜିଗଲା । ସେଥିପାଇଁ ମନରେ ଦୁଃଖ ହୋଇନାହିଁ । ଖୁସିରେ ଘଣ୍ଟି ମାରିଲା ପରି କି ଗୀତ ପଦେ ଗୁଣୁଗୁଣୁ ହେଲାପରି ସେ କବିତା ଲେଖା ହୋଇଥିଲା ଜଗବନ୍ଧୁ ଗ୍ରନ୍ଥାବଳୀ ଛପାଇବା ଉଦ୍ଦେଶ୍ୟରେ ନୁହେଁ ।

ହାରିଲା ହାରିଲା ନିଉନ ମନକୁ କରକୁ ଠେଲି ଫୋପାଡ଼ି ଦେଇ କେତେବେଳୁ ସେ ଜୀବନର ଉଚ୍ଛ୍ୱାସରେ ମନେ ମନେ ଫୁଲି ଫୁଲି ନାଚକୁଦ ଅମଡ଼ାମାଡ଼ ବୁଲୁଥିଲେ ଖିଆଲ ନ ଥିଲା । ଖାଲି ଦିଶୁଥିଲା ଅତୀତର ଅଗଣନ ସମ୍ପର୍କ ମାଳ ମାଳ ଅନ୍ଧାର ଭିତରେ ମାଳି ହୋଇ ଦୂରର ଦିଆଲି, ଯେପରିକି ସତ ସେହି ଦିଆଲିବତୀ ଅନ୍ଧାର ସତ ନୁହେଁ ।

ସଂସାର ଦୂରେଇ ଯାଇ ନାହିଁ ମୁଁ ଦୂରେଇ ଯାଇଛି ସଂସାରଠୁଁ । ସଂସାରର ଦୁଆର ତ ସବୁଦିନେ ଖୋଲା ସବୁଠି ସବୁଦିନେ ନିମନ୍ତ୍ରଣ । ତାଙ୍କ ମନ ତାଙ୍କୁ ବୁଝାଇଲା ମୁଁ ଆଗେଇ ଗଲେ ମୁହଁ ମୋଡ଼ି ଦିଅନ୍ତା କିଏ ? ପୁଣି ଜିଭ ସୁଆଦ ଚଟକଲା ହେଲି ଏପାଖ ସେପାଖ ଲେଉଟ ପାଉଟ ଜୀବନ ଦର୍ଶନ ଚର୍ଚ୍ଚାର

ଉପସଂହାର ବାଜାପଣ ବାଜିବାକୁଲାଗି ଉଠିଲେ । "କହୁଥିଲ ପରା ପାଣିକଖାରୁ ପଡ଼ ଗୁଡ଼ାଇବଟା ଆଜ୍ଞ ଚିଆଜ ଦେଇ ଭାଜିବ ବୋଲି କରିଛ କି ନାହିଁ ?"

ସେ ପଟୁ ଶୁଭିଲା ସୁଲକ୍ଷଣାଙ୍କର ଝଣଝଣ ହସ । କହିଲେ, "ବର୍ଷି ବର୍ଷି ସେହୁଆ ସ୍ୱରୁଥିଲା ପରା । ହାତଟା ବନ୍ଧୁଛ୍ଚ ଅରୁଆ ଗୁଡ଼ାଇ ଆଜ ବାଟି ପାରିଲି ନାହିଁ । ବେସନଡକ ଗମଗ୍ରା । ଅଟା ଦିଟା ପକାଇ ବଳିଦେବ ଚଳେଇ ନଅ ।"

ଖାଇ ବସିବା ପୂର୍ବରୁ ଆଣ୍ଠୁଆ ଗୋପାଳଙ୍କୁ ପୂଜା । ପ୍ରଣିପାତ କରି ଠାକୁରଙ୍କ ମୁହଁକୁ ଭାବ ଗଦ୍‌ଗଦ ହୋଇ ଚାହିଁ ରହିଲା ବେଳକୁ ମନେମନେ ଜଣାଣ କଲେ—ଛୋପାଳ ତୁଇ ଶିଖାଇଲୁ ମନୁଷ୍ୟ ଜନ୍ମରେ ସାଙ୍ଗସାଥୀ ହୋଇ ସମ୍ପର୍କ ଲଗାଇ ଆନନ୍ଦ କରିବାହିଁ ସାର, ଗୋଠର ପ୍ରତି ଗୋରୁଙ୍କ ସଙ୍ଗେ ତୋର ସମ୍ପର୍କ, ପ୍ରତି ଗଉଡ଼ ପ୍ରତି ଗଉଡ଼ୁଣୀଙ୍କ ସଙ୍ଗେ ତୋ ସମ୍ପର୍କ, ତୁ ମନଖୋଲା ସାଙ୍ଗ ମେଳ ଆଡ୍ଡା ମଉଜର ଦେବତା, ମୋ ସମ୍ପର୍କ, ମୋ ସମ୍ବନ୍ଧ ମୋତେ ତୁ ଫେରାଇ ଦେ, ମୁଁ ପଢାକୁ ଯିବ ।

ସେ ଆକାଙ୍‌କ୍ଷା ସୁଲକ୍ଷଣା ଜାଣିବାର ଉପାୟ ନଥିଲା । ସେ ଦୁଆର ବନ୍ଧ ପାଖେ ଲମ୍ବ ହୋଇ ପଡ଼ି ମୁହଁମାଡ଼ି ଜଣାଣ କରୁଥିଲେ—ଗୋପାଳ ସ୍ୱାମୀଙ୍କୁ ଦମ୍ଭ ରଖିଥା, ସ୍ୱାମୀଙ୍କ ଶରୀର ନିରୋଗ ରଖିଥା, ମୋ ପିଲାଛୁଆଙ୍କୁ ଘଣ୍ଟ ଘୋଡ଼ାଇ ରଖିଥା, ସ୍ୱାମୀଙ୍କ ପାଦରେ ମୁଣ୍ଡ ରଖି ଯେମିତି ମୋ ଜୀବନ ଯାଉ ।

ସେଠିକବେଳୁ ଜଗବନ୍ଧୁଙ୍କୁ ବାଇ ଲାଗିଥିଲା ସେ ସେ ପଢାକୁ ଯିବେ । ଦୁଇଦିନ ପର୍ଯ୍ୟନ୍ତ କଥାଟା ମନେ ମନେ ରଖିଲେ । ତା'ପରେ ସେଦିନ ସୁଲକ୍ଷଣାଙ୍କ ଆଗରେ କହିଲା ବେଳକୁ ପ୍ରତିଜ୍ଞା ଅଟଳ ହୋଇ ସାରିଥିଲା ।

ଆୟୋଜନରେ ଆଡ଼ମ୍ବର ନଥିଲା । ଶୁକୁଟା ମା' ପଧାନୁଣୀ ଜଗବନ୍ଧୁଙ୍କ ଅନୁପସ୍ଥିତିରେ ସୁଲକ୍ଷଣାଙ୍କ ପାଖରେ ରହିବ । ମୁଲିଆ ଗଉଡ଼ ତ ବାଡ଼ିଘର କାମ କରେ, ଗୋରୁଙ୍କ ଖବର ବୁଝେ, ଜଗବନ୍ଧୁ ନଆସିବା ଯାକେ ସେ ରାତିରେ ବି ଶୋଉଥିବ । ପଦିଆ ନନା ଦିନରେ ଥରେ ଆସି ଗୋପାଳଙ୍କୁ ପୂଜା କରି ଦେଇଯିବେ । କିନ୍ତୁ ଅସଲ ପୂଜା ତ କରିବେ ସୁଲକ୍ଷଣା, "ଗୋପାଳ ସେଥିକରେ ସନ୍ତୁଷ୍ଟ ହେବ", ଜଗବନ୍ଧୁ ନିର୍ଭର ଦେଇ କହିଲେ । ଏଥର ଯେ ଦଣ୍ଡିନିଆ ଗସ୍ତ । ଆଗ ପାଞ୍ଚଦିନ ପାଇଁ ତିନିଖଣ୍ଡ ଲଫାପାରେ କେଆର ଅଫ୍ ପ୍ରାଣବନ୍ଧୁ, ପୁଲିସ ଇନ୍‌ସପେକ୍ଟର୍, ତୁଳସୀପୁର, କଟକ ବୋଲି ଠିକଣା ଲେଖାହୋଇ ରଖି ଦିଆହେଲା, ମାଧବ ଗାଁରେ, ଡାକଘରେ ପକାଇବା ଭାର ରହିଲା ପଦିଆ ନନା ଉପରେ । ବାହାରିଲା ବହୁକାଳର ଗସ୍ତବୁଲା ପାନ ସୁଟ୍‌କେଶଟିଏ, ରଙ୍ଗ ଛାଡ଼ିଯାଇଛି । ଆଗ ସେଥିରେ ପଶିଲା ପୁରୁଣା ସଙ୍ଗୀ ପାନ ଛେଚୁଣି, ଖଇରିଆ

ଭଲ ସୂତାରେ ବୁଣା ମୁଣ୍ଡବନ୍ଧା ମଫଲର, ବଡ଼ ବୋହୂ ନୂଆ ନୂଆ ଆସିଲାବେଳେ ବୁଣି ଦେଇଥିଲା, କମଳା ବର୍ଣ୍ଣର ଉଲ୍ ସୂତାରେ ବୁଣା ଗୋଟାଏ ପୁରୁଣା ସ୍ୱେଟର, ଝିଅଣି ବର୍ଷେ ତଳେ ସୁଲକ୍ଷଣା ନିଜେ ବୁଣିଥିଲେ, ଠାଏ ଠାଏ କଣା କଣା ହୋଇଯାଇଛି। ଶୀତ ନାହିଁ, କିନ୍ତୁ ଶୀତୁଆ ଲାଗିପାରେ। ତେଣୁ ଏ ଦେହ ରକ୍ଷା ବ୍ୟବସ୍ଥା। ଗୋଟାଏ ଟିଣରେ ପଶିଲା କିଛି ଚୁଡ଼ାଭଜା ଚୂନା, ଚନା ଗୋଳା ହୋଇଛି। କିଛି ଶୁଣ୍ଠି ଓ ଶୁଖିଲା ମୁଥାମୂଳ ଖଣ୍ଡ, ସେଥିରୁ ଏକ ଚିମୁଟି ଚହାରେ ପଡ଼େ, ମଶାରି ଟାଙ୍ଗିବାକୁ ଡଣ୍ଡା, କନାଧଡ଼ି, କାଲେ କି ଆବଶ୍ୟକ ପଡ଼ିବ ବୋଲି ଗୋଟାଏ ବାଙ୍କୁଲି ଛୁରୀ, ସେ ହଜାରିବାଗରେ କିଣା ହୋଇଥିଲା, ସେଥିରେ ଅନେକ ପଦାର୍ଥ କଟା ହୋଇଛି। କିଛି ଲୁଗାପଟା ସଜାହୋଇ ଥୁଆହେଲା, ସେଥିଭିତରୁ ଖଣ୍ଡିଏ ଗୁଲ ପରି କଷା ହୋଇଥିବା ପୁରୁଣା ଗାମୁଛା। ଉପର ଡାଲାର ଭିତର ପଟେ ରହିଲା ଜଗନ୍ନାଥ ଛବି ଖଣ୍ଡିଏ। ସତରଞ୍ଜି, ମଶାରି; ଯୋଡ଼ିଏ କମ୍ବଳ, ବିଛଣା ଚଦର ଓ ତକିଆ ହୋଇ ବିଛଣା ବନ୍ଧାହେଲା।

"ତାଙ୍କ ପିଲାଙ୍କ ପାଇଁ କ'ଣ ନେବ ?" ସୁଲକ୍ଷଣା ପଚାରିଲେ।

"ଗୋପାଳର ଆଶୀର୍ବାଦ"

"ତା ତ ନିଶ୍ଚୟ। ତେବେ, ହାତରେ କିଛି ଗୋଟାଏ ତ ନେବ ? ହଉ ସେଇଠୁ ଲେମନ୍‌ଚୁସ୍ କି ବିସ୍କୁଟ୍ ଡବାଟାଏ କିଣି କରି ନେବ।"

"ନା, ନେବାକୁ ଯଦି ପଡ଼ିବ କିଛି ଘରର ଜିନିଷ ନେଲେ ଭଲ ହେବ, ସହରରେ ଯାହା ମିଳେନାହିଁ, ହେଇ ଯେମିତି ଆମ ଗଛର ସଜନା ଛୁଇଁ। ଏ ଦିନେ କାହୁଁ ପାଇବେ ? ପାଇଲେ ବି ଏତେ ମୋଟା ଏତେ ମାଉଁସିଆ ଛୁଇଁ କାହୁଁ ମିଳିବ ? ଅମ୍ବଡ଼ା ଆଉ ହିଁ, ଆମ ବାରି ଖଡ଼ା।"

'ଏଃ! ଖଡ଼ା ନେଇ କଟକ ଯିବେ! ତୁମେ!'

"ତେମେ ଜାଣିନା, ଏତେ ମିଠା ଖଡ଼ା ସେମାନେ କାହୁଁ ପାଇବେ ? ଖଡ଼ା ନୁହେଁ ତ ଚିନିଡଲି। ମୁଁ କହୁଚି ତୁମେ ସଜାଡ଼। ସେ ଯେଉଁ ପ୍ରକାଣ୍ଡ ପ୍ରକାଣ୍ଡ ବୁଢ଼ା କାକୁଡ଼ି ଦରଣ୍ଡା ଅଛି, ହଳଦି ଗରଗର—"

'ବୁଢ଼ା କାକୁଡ଼ିଗୁଡ଼ାକ କେଉଁ ପସନ୍ଦରେ ନେବ ?'

"ଆରେ ବାବୁ ବୁଢ଼ା ହୋଇଗଲେ ସବୁ ଜିନିଷ ବେପସନ୍ଦ ହୁଏ ନାହିଁ ମ। ମୋ କଥା ଶୁଣ। ଅସଲ ସୁନ୍ଦରଗଡ଼ କାକୁଡ଼ିର ବିହନରୁ ହୋଇଛି। ନଜାଣିବା ଲୋକ କହିବ ହଳଦୀବଟା ଖିଲିପତା। ଶାକର କି ରାଇ କଲେ ତା ସ୍ୱାଦ ତା ବାସ୍ନା ଆଉ କେଉଁଠୁ କିଏ ପାଇବ ? ଆହା ସେ ପିଲାଏ କାହୁଁ ପାଉଥିବେ ଝଟରା।"

'ହଉ ତମ ଇଚ୍ଛା।'

'କାଗେଜଲେମ୍ବୁ ଫୁଲାଏ ତ ଅବଶ୍ୟ ମିଳିବ । ହଁ ଭୁଲିଗଲି, ବଜ୍ରବାଣ ନଡ଼ିଆ ଗଛଟା ।'

'ନଡ଼ିଆ କଟକରେ ଅପ୍ରାପତ !'

'ଆରେ ବାବୁ, ନଡ଼ିଆ ସବୁଠି ମିଳେ, ହେଲେ ପ୍ରାଚୀ କୂଳର ବଜ୍ରବାଣ ନଡ଼ିଆ ସେମାନେ କାହୁଁ ପାଉଥିବେ ?'

'ତମ ଇଚ୍ଛା । ତେବେ ମଫସଲ ଜିନିଷ ନେବାକୁ ମନ କଲେ ନେଇଥାନ୍ତୁ ବଡ଼ ସିଅ ସବୁଚୂଡ଼ା ।'

ଅସହିଷ୍ଣୁ ହୋଇ ଜଗବନ୍ଧୁ କହିଲେ ଯାହା ହୋଇପାରିବ ନାହିଁ ଖାଲି ତୁମେ ସେଇଆ କହିବ । ମୁଁ ଯାହା କହୁଛି ସେଇଆ ସଜାଡ଼ ।

ବସ୍ତା ସଜଡ଼ା ହେଲା । ଜଗବନ୍ଧୁ ବାହାରିଲେ ।

ମୂଳି ବେହେରା ବସ୍ତା ବହିଣା ଷ୍ଟେସନ ବୋହି ଦି' କୋଶ ଦୂରରେ ସଡ଼କରେ ପହଞ୍ଚାଇ ଦେବାକୁ ତାଙ୍କ ସଙ୍ଗରେ ଚାଲିଲା । ସଡ଼କରେ ପହଞ୍ଚିଲେ ମଟର ଧରିହେବ ।

କୋଶେ ବାଟ ନପୁଞ୍ଚୁଣୁ ହାଲିଆ ଲଗିଲା । ମୂଳିଆ ପଚିଶି ବର୍ଷର ଭେଣ୍ଡା । କୋଡ଼ି ବୋହି ବୁଢ଼ାଙ୍କ ସଙ୍ଗେ ପାଦ ପକାଇ ପକାଇ ମନ୍ଥର ଗତିରେ ଚାଲିବାକୁ ତାକୁ ଅଡୁଆ ଲାଗୁଥାଏ । ଛାଡ଼ିଦେଲେ ସେ ଉଡ଼ି ଯାଆନ୍ତା । ନିଜକୁ ଯେତେ ବେଗ ବେଗ ବାଟ ଚାଲୁଥିଲେ ସୁଦ୍ଧା ସବୁବେଳେ ସେ ଦଶ ହାତ ଆଗରେ ପଛକୁ ଅନାଏଁ । କିନ୍ତୁ ବୁଢ଼ାଙ୍କୁ ଛାଡ଼ିଦେଇ ଆଗ ବଳି ପଳାଇଯିବାକୁ ତାର ମନ ହୁଏନାହିଁ । ନଣ୍ଡାପଦା ଗାଁ ଗହିର ପାଖ ବଡ଼ ବରଗଛ ତଳେ ବୁଢ଼ା ଥୋଇ ମାରିଲେ । ସତେ ଯେମିତି ପାହାଡ଼ ଘାଟି ଚଢ଼ି ଚଢ଼ି ସେ ଆସିଛନ୍ତି । ଛାତି ଧମଧମ ।

ଗପ ଆରମ୍ଭ କଲେ ବୁଝିଲୁ ମୂଳି, ଗୋଟାଏ କଥା ମନେପଡ଼ୁଛି । ସେତେବେଳେ ରାଇରଙ୍ଗପୁରରେ ଥାଏଁ । ସତ୍ତରୁଡ଼ ବର୍ଷ । ଗାଳୁଛି ଖବର ଆସିଲା ଛ' କୋଶ ଦୂରରେ ଗାଈଟିଏ କୁଆ ଜନ୍ମକରି ପାରୁନାହିଁ, ପେଟରେ ବାଛୁରିଟା ମରିଯାଇଛି କି କଣ ଘାଟି ଚଢ଼ି ଓହ୍ଲେଇ ଧାଇଁ ଧାଇଁ ତା ମାଲିକ ଆସିଥିଲା ବାଇ ମୁଣ୍ଡା ଜାତିର ଆଦିବାସୀଟିଏ । ଆସି ପାରିବ ନାହିଁ କି ସାଇକେଲ ସେଠିକି ଯିବନାହିଁ । ମୁଁ ଅପେକ୍ଷା ନକରି ବାହାରି ପଡ଼ିଲି । ଯନ୍ତ୍ରପାତିତକ ସେ ବୋହିଲା । ଏମିତି ଛତା ଖଣ୍ଡିଏ ଧରି ମୁଁ ଚାଲିଲି । କହିବି କଣ, ଏଡ଼େ ଅଖାଡ଼ୁଆ ଛ' କୋଶ ବାଟ ଚାଲି ଯିବାକୁ ଲଗିଲା ମୋଟେ ଅଢ଼େଇ ଘଣ୍ଟା । ଗାଈର ପ୍ରାଣ ତ ରକ୍ଷାହେଲା, ସେ ମୁଣ୍ଡା ବିଚରା ଗାଁଯାକ କହି ବୁଲିଲା ଏମିତି ବାଟ ଚାଲିବା ଲୋକ ଆଦିବାସୀଙ୍କ ଭିତରେ ବି ଦେଖାନାହିଁ । ବାଟ ଚାଲିବା ଅଭ୍ୟାସ ସେତେବେଳେ ଥିଲା । ଚାଲୁଥିଲେ ସାଙ୍ଗଲୋକ କାହିଁ କେତେ ପଛରେ ପଡ଼ି ରହୁଥିଲେ ।

ବନ୍ଟାରୁ ପାନ ଖଣ୍ଡିଏ କଢ଼ା ହୋଇ ଛେଚ୍ଚା ହେଲା । ବନ୍ଟାରେ ପାନ ଥିବାଯାକେ ସୁଲକ୍ଷଣାଙ୍କ ସ୍ପର୍ଶ ବ ପାଖେ ପାଖେ ଅଛୁ ।

ପୁଣି କହିଲେ, "ସେ ମନେ ବାରମ୍ବାର ଆକଟ କରନ୍ତି ଦେହକୁ ରଖି ଥୋଇ ଚଲ, ଦୁଷ୍ଟାମି କର ନାହିଁ । ମୁଁ କଣ ବାର୍ଦ୍ଧକ୍ୟରେ ଜଣ ହୋଇଛୁ ଯେ କାହିଁ ଘୋଡ଼ି ଘରେ ବସିଥିବ ? ଦେହରେ ବଳ ଥିବାଯାକେ ମନ ହେଉଥାଏ ପଥର ଭଗନ୍ତି ପାହାଡ଼ ଓଲଟାନ୍ତି । ନା ନଣ ?"

ମୂଳି କହିଲ, ଡେଉର କଲେ ତେଣେ ମଟରଟା ଚଳେଇ ଯିବ ପଛ, ଯିବା ।

ବାଟ ଦକୋଶ ଗ୍ଭଲଲ ପରେ ସଡ଼କରେ ଦୋକାନ ଘରେ ଅଧଲେଟାଏ ପାଣି ପିଆଗଲ । ତା'ପରେ ମନ ହେଲ ସ୍ପୃହା । କଡ଼ା କଣ ଉଆଣ କର, ସେ କହିଲେ ।

ମଟର ଆସିଲ । ଜାଗା ମିଳଲ । ବାଟରେ ଟିକିଏ ଆଖି ଖୋଲୁ ଖୋଲୁ ବନ୍ଦ ହୋଇଯାଏ, ମେଘ ଟଳ ଟଳ ହୁଏ, ଭାଙ୍ଗିପଡ଼େ, ମୁଣ୍ଡ ନଡ଼ ନଡ଼ ହୋଇ ଏକର ସେକର ହୁଏ । ପଙ୍କ କଲପଣ ଗାଲ ଫୁଲେ ପୁଣି ଅଫା ହୁଏ । ମାନଙ୍ଗସ ଆସ୍ତେ ଆସ୍ତେ ନଗିଡ଼ ପଡ଼େ ଗୁଡ ପକେଟ ଉପରକୁ ।

କନ୍ତୁ ମନ ଭିତରେ ଦ୍ୱିଗ୍ରାହ୍ ଜଳୁଥାଏ । ଲଳୁଥାଏ ଯେମିତ ଅଭ୍ୟନ୍ତରରେ ସେ ଗନ୍ତବ୍ୟ ବାହାଣଛନ୍ତି । ଏଠି ସଡ଼କର ଦୁଇକରେ ଗଛ, ଗାଁ, କ୍ଷେତ । କେଉଁଠି କେଯେ ନୂଆ ନୂଆ ଘର । କେତେ ଅଟ୍ଟାଳିକା ମଣିଷ ଗଢ଼ିଲ । କନ୍ତୁ ବାହାରର ଦୃଶ୍ୟକୁ ସେତେ ନଯା ନଥିଲ । ସ୍ୱପ୍ନପଣ ଅନ୍ତରର ଛିଣ୍ଡା ଛିଣ୍ଡା ସ୍ମୃତି ଦଶି ଦଶି ଯାଉଛି । ସେ ଗନ୍ତବ୍ୟରେ ବୁଲୁଛନ୍ତି । ପାହାଡ଼, ଜଙ୍ଗଲ ସ୍ଥାନେ ସ୍ଥାନେ କେତେ ପଲ୍ଲୀ, କେତେ ମଫସଲ ସହର । ବସ୍ ଗ୍ଭଲଛି । ରେଲ ଗ୍ଭଲଛି କେତେବେଳେ ସାଇକଲ ଚଢ଼ି ଗ୍ଭଲଛନ୍ତି, କେତେବେଳେ ପାଦରେ । ସବୁଠି ରହିବାକୁ ସ୍ଥଳୀ । ଅଟ୍ଟାଳିକା ଲାଗୁନାହିଁ । ଗତିରେ ପ୍ରକାଶ ପାଉଛି ଜୀବନର ଉଲ୍ଲାସ । ପାଉଛୁ ତ ।

ସେ ଉଲ୍ଲାସ ଅଳ୍ପକେ ହ୍ରାସ ହୋଇ ଆସିଲ ଯେତେବେଳେ ସହଯାତ୍ରୀଙ୍କ ବକର ବକର ଓ ଠେଲପେଲରେ ତେଲେଙ୍ଗା-ପେଣ୍ଠୁଠାରେ ତାଙ୍କ ବନ୍ଦ ସମ୍ପୂର୍ଣ୍ଣ ରୂପେ ଭାଙ୍ଗିଗଲ । ଜଗବନ୍ଧୁ ସେମାନଙ୍କ କଥାକୁ କାନେଇଲେ । ମକଦମାବାଲା ପଞ୍ଝାକୁ ପଞ୍ଝା । କଚଶରେ ତାରଖ ଅଛି । ଗ୍ଭକର, ବେପାର, ଅନୁସରଣ, ଡାକ୍ତରଖାନା । ଲୋକଙ୍କର ନାନା କାମ । କେଉଁଠାକୁ କ ଉଦ୍ଦେଶ୍ୟରେ ଯିବାକୁ ପଡ଼ିବ ସବୁ ନର୍ଦ୍ଦିଷ୍ଟ । ଜଗବନ୍ଧୁଙ୍କୁ ଦୁର୍ବଳ ଲଗିଲ । ଏକାଥରେ ମନେ ପଡ଼ିଗଲେ ଘରେ ସୁଲକ୍ଷଣା, ଦୂରରେ ଦୂରରେ ତାଙ୍କ ପିଲାଏ । କଏ କୁଆଡ଼େ ରହିଲେ । 'ଆଉ ମୁଁ ଯାଉଛି କୁଆଡ଼େ ? ହଁ ହଁ, କଟକ । ପ୍ରାଣବନ୍ଧୁ, ବ୍ରଜବନ୍ଧୁ, ବନ୍ଧୁବାନ୍ଧବ, ଟିକିଏ ଦେଖାଗ୍ଭହିଁ, ସେ କ'ଣ କର୍ତ୍ତବ୍ୟ ନୁହେଁ ?'

ଉଗ୍ରାହ୍ ଉଲ୍ଲାସରେ ଯେଉଁ ଯାତ୍ରା ଆରମ୍ଭ ହୋଇଥିଲ ତାକୁ ଠିକ ଦେବାକୁ ପଡ଼ିଲ କର୍ତ୍ତବ୍ୟବୋଧଦ୍ୱାରା ।

ଗାଡ଼ି ଭିତରେ କେମିତି ଛଟପଟ ଲାଗୁଛି । କେହି ଏଠି ତାଙ୍କ ବ୍ୟକ୍ତିତ୍ୱକୁ ଖାତିର କରୁନାହିଁ । ଦଣ୍ଡବତ ତ ଦଣ୍ଡବତ, କେହି ତାଙ୍କୁ ଅନାଉଁ ନାହିଁ ସୁଦ୍ଧା । ଟୋକାମାନଙ୍କର ଦେଶୀ ହାଓ୍ୱାଇ ପିନ୍ଧା ଛନଛନ ଚେହେରା ତାଙ୍କୁ ଦେଖିକି ଟେଡେଇ ହେଉଛି । ସେ ପଦାକୁ ଅନାଇଁ ରହିଲେ ।

ଏବେ ବେଳୁବେଳ ଗାଡ଼ି ଭିତରେ ତାଙ୍କ ଶରୀର ଉପରେ ଚାପ ବଢ଼ି ବଢ଼ି ଚାଲିଛି । ପଛଆଡ଼ୁ କାହା ଆଣ୍ଠୁ, କାନ୍ଧ ଉପରେ କାହାର ଭୁଜଲାର ଓଜନ, ପିଠି ଉପରେ କାହା ଛତା ଅଗର ଚେଞ୍ଚା । କାଣ୍ଡି ଆହୁଦା ଭିତରେ ଗୋଟୁ ଗୋଠ ଖୁନ୍ଦ ଖୁନ୍ଦ ପୂରାଇଲା ପରି ଆହୁରି ଆହୁରି ମଣିଷ ପୂରା ହେଉଛି । ବସିବା ଲୋକଙ୍କ ଛଡ଼ା ଖୁନ୍ଦା ଖୁନ୍ଦ ହୋଇ ଠିଆହୋଇ ରହିଲେଣି ଧାଡ଼ିଏ ଗାଡ଼ିର ଏମୁଣ୍ଡୁ ସେମୁଣ୍ଡ ।

'ଆଉ ଟିକିଏ ତ, ସହିସିବାକୁ ପଡ଼ିବ' ସେ ମନକୁମନ ସାନ୍ତ୍ୱନା ଦେଲେ ।

ପୁଣି ମନେପଡ଼ିଗଲା ଆଉ ଗୋଟିଏ କଥା, ଜୀବନଯାକ ଆଉ ଟିକିଏ ତ ଆଉ ଟିକିଏ ତ କହି କହି ମଣିଷ ସବୁ ସହେ, ପର ପାଖେ ଗୋଲାମି, ଅତ୍ୟାଚାର, ଅବିଚାର, ନିଜର ସବୁ ଦୁର୍ଦ୍ଦଶା । ଚାକିରିରେ ତାଙ୍କ ତଳେ ଥିବା ଲୋକମାନଙ୍କୁ ତାଙ୍କ ଉପରକୁ ଡିଆଁଇଦେଇ ଯେତେବେଳେ ପଦୋନ୍ନତି କରିଦିଆଗଲା ସେତେବେଳେ ସେ ଚାକିରି ଛାଡ଼ି ଦେବାକୁ ତାଙ୍କର ଝୁଙ୍କ ବଳିଥିଲା; କିନ୍ତୁ ଇସ୍ତଫା ଲେଖିବାକୁ ହାତ ଗଲା ନାହିଁ । ସେତେବେଳେ ସୁଲକ୍ଷଣା ବୁଝାଇଥିଲେ, 'ଆଉ କିଏ ମାଛଭାତ ଖାଇଲା ବୋଲି ଛଳ କରି ଆମେ ଆମ ଶାଗଭାତ କାହିଁକି ଛାଡ଼ିଦେବା ?' କିନ୍ତୁ ସେ ମନେ ପକାଉଥାନ୍ତି, କେଡ଼େ ଅପମାନ । ସତେ ଯେମିତି ସେ ଚାକିରିରେ ଅଛନ୍ତି । ଆଘାତଟା କାଲି ସକାଳେ ତାଙ୍କ ଦେହରେ ବାଜିଛି, ଦରଜ ସିଂ କ'ଣ, ହାକୁ ହାକୁ ।

ସେ ଚନ୍ଦ୍ରାକୁ ଫେରିଆସି କେତେବେଳୁ ସେ ନିଜ ଅନୁପସ୍ଥିତି ଯୋଗୁଁ ଘରର ସମସ୍ୟାକଥା ଭାବୁଛନ୍ତି । ବୁଝିପାରିଲେ ତାଙ୍କୁ କ'ଣ ଘାରୁଛି । ସୁଲକ୍ଷଣା ଚଳିବେ କେମିତି ? ନଗୁଟିଆ ଆଜ । ଅପନ୍ତରାଟାଏ ପରି । କେହି କୁଆଡ଼େ ନାହିଁ । ମେଘ ଅନ୍ଧାର ରାତି । ଧର, ଶୁକୁଟା ମା ନଆସିବ, ମୂଳ ଗଉଡ଼ ନଆସିବ, ମାଇପିଟା ଛନ୍ଦବାନ୍ଧ ହେଉଥିବ । ଧର, ଓଉରଣ୍ଡି ଚୋର ପଶିବେ । ଘରଆଁରେ ମଣିଷଟାର ପ୍ରାଣବାୟୁ ଉଡ଼ିଯାଇପାରେ । ଚୋର ନ ଆସୁ, ଖାଲି ଗଛ ଗୁଡ଼ିକ ଦେଖି ସେ ଭେଟେଣା ହୋଇପାରେ । ଏକୁଟିଆ ନିଜ ପାଇଁ ରାନ୍ଧିବାକୁ ମନରେ ସରାଗ ଆସିବ ନାହିଁ, ଓଳିଏ ରାନ୍ଧିଲେ ପଖାଳ କରି ତିନିଓଳି ଚଳାଇ ଦେବାକୁ ଚାହିଁବ । ଧର ତାକୁ ହେବ ଜର, ପାଣିଟୋପାଏ ଦେବାକୁ କେହି ଲୋକ ନଥିବେ ।

କଟକ ସହର ପାଖ ହେଉ ହେଉ ପଦାରେ ଯେତିକି ଗହଳି ହେଉଥାଏ ସେତିକି ସେତିକି ନଗୁଟିଆ ପଡ଼ିଯାଇ ସେ ଆପଣା ଘର କଥା ଭାବୁଥିଲେ ।

ହଁ, ଘରେ ସ୍ନେହ ନ ପଶିଲେ ସୁଖ ବାଗରେ ପକ୍ଷି ଉଡ଼ାଇବା ଅସମ୍ଭବ ନୁହେଁ । ଜାଲ ପାଇଁ ବାଡ଼ ଭାଙ୍ଗିନେବେ । ନଡ଼ିଆ, ପଣସ କଠା, କଦଳୀ, କାକୁ ସବୁ ତୋଳି ନେଇଯିବେ । ଖୋପା ଜାଲ ପକାଇ ମାଛମାନଙ୍କୁ ମାରି ନେଇଯିବେ । ଗୋରୁ ଛଡ଼ାଇଁ ବି ଘେରରୁ ନେଇଯିବେ । ଲାଗିଲା ସତେ ଯେମିତି କଳା କଳା ଛୁଆ ଦଳ ବାଗ ଭିତରେ ଲୋକେ ଏକର ସେକର ହେଉଛନ୍ତି, ଉଡ଼ାଉଛନ୍ତି ।

'ଗୋପାଳ, ତୁଇ ଅଛୁ, ତୁଇ ଜଗିଥିବୁ', ସେ ମନେ ମନେ କହିଲେ । ଲୁଗା କାନିରେ କପାଳରୁ ଝାଳ ପୋଛିଲେ ।

'ବେକ୍ସିବଜାର ।'

ମଟରବାଲାର ଚିତ୍କାରଟା ଠିକ୍ ତାଙ୍କ କାନପାଖେ ଶୁଭିଲା । ମନେପଡ଼ିଲା ସେ ତୁଳସୀପୁର ଯିବା ବାଟରେ ଓହ୍ଲାଇବେ । ଏଥର କୁନାର ଘର ମନେ-ପଡ଼ିଲା । ତାଙ୍କ ସାନଭାଇ ପ୍ରାଣବନ୍ଧୁଙ୍କ ଡାକ ନାଁ କୁନା । ପାଞ୍ଚବର୍ଷ ତଳେ ତା ଝିଅ ଝୁମୀକୁ ବାହାକଲାବେଳେ ସେ ତା' ଘରକୁ ଯାଇଥିଲେ । ଝୁମୀ ବର ଇଂଜିନିୟର, ବମ୍ବେରେ ଥାଏ । ତା'ର ଯୋଡ଼ାଏ ପୁଅ । 'କୁନା ! କୁନା ! କୁନା !' ମନକୁ ନାଁଟା ବାରମ୍ବାର ଉଚ୍ଚାରଣ କରି ସେ ଅତୀତକୁ ଫେରାଇବାକୁ ଚେଷ୍ଟା କଲେ । ଦେହଟି ପୁରିଲା ପୁରିଲା, ଭୋଜନପ୍ରିୟ ପେଟୁ, ନିଦକୁ କୁମ୍ଭକର୍ଣ୍ଣ, ସବୁ କାମକୁ ମାନ୍ଦା, ଅଳସୁଆ, ବୁଦ୍ଧିରେ ଓଲ ଅଁଳିଆ, ତା'ର ସମସ୍ତେ ସବୁ ଜିନିଷ ନେଇ ଚାଲନ୍ତି ସେ ଆପତ୍ତି କରେ ନାହିଁ । ଅତି ଶାନ୍ତ, ଧୀରସ୍ଥିର । ଦଶପଦ ଶୋଧି ଦେଇଗଲେ ସେ ଖାଲି ତବ ତବ ଆଖିରେ ଅନାଇଥାଏ । କିଛି କହେ ନାହିଁ । ତେଣୁ ତା ଉପରେ ରାଗି ହୁଏ ନାହିଁ । ସେହି କୁନା ହେଲା ପୁଲିସ । ଭଲ ନାଁ ଅଛି । ଲୋକେ କହନ୍ତି 'ବଡ଼ା ହାକିମ' । କେହି କେହି କହନ୍ତି ଲୁଣ୍ଠାଙ୍କ ଯମ । ଆଉ କିଏ କହେ ଏତେ ବୁଦ୍ଧି । ହୁଏତ ସେମାନେ ଜାଣିଥିବେ । ସେହି କୁନାର ପାଞ୍ଚପୁଅ ତିନିଝିଅ । ଉମା ଡାକ୍ତରଟି, ଶ୍ୟାମା ପ୍ରଫେସର, ଝୁମୀତ ବାହାହେଲାଣି । ବାକି ପାଞ୍ଚୋଟି । ତାଙ୍କ ନାଁ ସବୁ କଅଣଟି ?

ମନେ ନପଡୁ । ବାବୁଲି, ବୁଢ଼ା, ପୁଅ, ମା', ବୁଢ଼ ବୋଲି ଡାକି ଚଳାଇ ନେଇ ହେବ । ତା' ପରେ ନାଁ ନକେଇ ଜାଣିପଡ଼ିବ ।

ହେଲା ରିକ୍ସା । ରିକ୍ସାରେ ବସିବାଟା ଅଜଣ୍ଡ ହେଲା । ସୁଟ୍‌କେଶ ଓ ତା' ଉପରେ ବିଛଣା ଅଡ଼ୁଆ କରିନଥାଆନ୍ତା । ଅଡ଼ୁଆ ସେଇ ବସ୍ତାଟା । ବିଛଣା ଉପରେ ବସ୍ତା ଲଦା ହେଲା । ଝଙ୍କା ମୋଟା ଖଡ଼ାଗଛ ବହୁତ ଜାଗା ମାଡ଼ିବସି ବସ୍ତାକୁ ଠେଲେଇଛି । ବଳୁଆଣ ନଡ଼ିଆ ଆବୁ ଆବୁ ହୋଇ ବାହାରିଛି । ଗୋଡ଼ ଦି'ଟାକୁ ପାଦାନଠୁ ଉପରକୁ ଟେକି ରଖିବାକୁ ପଡ଼ିଲା ।

ଏଇଠି ରଖରେ ।

ଭଲ ଘର । ପ୍ରକାଣ୍ଡ ଦୋମହଲା । ରାଜପ୍ରାସାଦ ପରି । ବାପା ବୋଉ ଯାହା ରହିଲେ ନାହିଁ ଦେଖିଥାଆନ୍ତେ । ଏତେ ଜାଗା । ଏମିତି ବଗିଚା । ଜାତି ଜାତି ଫୁଲ ଫଳ । ନନ୍ଦନ କାନନ । ଘର ଆଗରେ କେଡ଼େ ସୁନ୍ଦର ରାହୁଆ ପରି ଲୁହା ଓ ସିମେଣ୍ଟରେ ତିଆରି ହୋଇଛି । ନୁଆ ଗଛ ପରି ସଳଖ ଠେଙ୍ଗା ଠେଙ୍ଗା । ଆଉ କାଚଖମ୍ବ ପରି ଖମ୍ବଗୁଡ଼ିକ, ମୋଜାଇକ ଚଟାଣ । କୁନାର ଘର ।

ଝୁମ୍ପୀ ଘରର ବେଳେ ଏ ସାମ୍ନା ପଟଟା ହୋଇନଥିଲା । ଆଖି ପଡ଼ିଗଲା ଘର ଉପରର ଗୋଟିଏ ଫଳକ ଉପରେ, ଲେଖା ହୋଇଛି 'କୁନ୍ତଳା-ନିବାସ ।'

କୁନ୍ତଳା ? କୁନ୍ତଳା ? କିଏ ସେ ? ଓହୋ, ବୋହୂଙ୍କ ନାଁ ହୋଇଥିବ । କୁନାର ସ୍ତ୍ରୀ । ତାଙ୍କରି ନାଁରେ ତେବେ ସେ ଘର । କୁନାର ବୁଦ୍ଧି ଅଛି ।

କଣ୍ଢ ଝାଙ୍କି ଝାଙ୍କି ଯୋଡ଼ାଏ କୁକୁର ଦାନ୍ତ ଦେଖାଇ ଭୁକୁଛନ୍ତି । ବାଃ ବାଃ, ଭଲ ବିଲାତି କୁକୁର । ଇଂରେଜୀରେ ଭୁକୁଛନ୍ତି । ହୁଏତ କୁନା ଏମାନଙ୍କୁ ତାଲିମ ଦେଇଥିବ ଶୁଙ୍ଘି ଶୁଙ୍ଘି ଚୋର କି ଖୁଣୀଙ୍କୁ ଧରିବାକୁ । ରାତି ହେଲେ କଞ୍ଚା ଖାଇଯିବେ । ସେ ଆଡ଼ୁ ମଠେଇ ମଠେଇ ଚାକରଟିଏ ଆସୁଛି ।

ସେ ମୁଣ୍ଡରେ ପିଲା ତିନୋଟି ଖେଳୁଛନ୍ତି, ସେମାନେ ଟିକିଏ ଅନାଇ ଦେଇ ପୁଣି ନିଜ ଖେଳରେ ମନ ଦେଲେଣି ।

ଆପଣ କାହାକୁ ଖୋଜୁଛନ୍ତି ? ଚାକର ପଚାରିଲା ।

ଖୋଜୁଛି ?

ଆପଣଙ୍କର ଘର କେଉଁଠି ?

ଆପଣ—ଆପଣ—ଆପଣ ।

ସତେ ତ ସେ କାହୁଁ ଜାଣିବ ?

କିନ୍ତୁ ସେତେ ଉଦାର ହେଲେ ବି ଭଲ ଲାଗିଲା ନାହିଁ । ଟିକିଏ ଅଟକି-ଯାଇ କହିଲେ ହୁଁ ।

କିନ୍ତୁ ତେଣୁ ଅଠର ବର୍ଷର ଟୋକାଟିଏ ଦଉଡ଼ି ଦଉଡ଼ି ଆସୁଛି, ଗୋଡ଼ ତଳେ ପଡ଼ିଯାଇ ସିଧା ଠିଆହେଲା । କହିଲା, 'ବଡ଼ବାପା, ବୋଉ ଗୋଡ଼ତଳେ ପଡ଼ୁଛି ।'

ଜଗବନ୍ଧୁ ଆଶୀର୍ବାଦ କରି ସାରି ତା' ମୁହଁକୁ ଅନାଇଲେ । ହସି ଦେଇ ସେ କହିଲା ମୁଁ ବୁନା ।

ବୁନା । ଓ, ହୁଁ ହୁଁ—ଅଇଷ୍ଟ କ'ଣ ପଢୁଛ । ତୁ ପରବର୍ତ୍ତେ ଆପେ ଆପେ ତୁମେ ହୋଇଗଲା ।

ବୁନୁ କହିଲା ବି. ଏସ୍‌ସି. ପଢୁଛି ।

ବାଃ ବାଃ ଖୁବ ଭଲ । ତା' ମୁହଁକୁ ଆଉଁସିବାକୁ ହାତ ଟେକିଲେ । ବୁନା ତାଙ୍କଠୁ ଛ'ଇଞ୍ଚ ଡେଙ୍ଗା ।

ଜଣାଗଲା, କୁନା ନାହିଁ ପଢ଼ାକୁ ଯାଉଛୁ ।

କୁନା ତାଙ୍କ ପରୀକ୍ଷାର ଖବର ନେଲା ।

ତା' ତଳେ ଲୁମ୍ମୀ, ଥାର୍ଡକ୍ଲାସରେ ପଢ଼େ, ତା' ତଳେ ମାମୀ, ତା'ର ମାଇନର କ୍ଲାସ, ତା' ତଳେ ଟୁନା, ତା'ର ଚତୁର୍ଥ ଶ୍ରେଣୀ । ପରୀକ୍ଷା ଆରମ୍ଭ ହେଲା । ବସ୍ତା ଖୋଲାଗଲା ।

ଏଗୁଡ଼ାକ ସାନ ସାନ ପିଜୁଳି, ଟୁନା ମନ୍ତବ୍ୟ ଦେଲା, ଆମ ବାଗ ପିଜୁଳି ସ୍ବାଠୁଁ ଦ'ଗୁଣ ବଡ଼, ଆଉ ଯେଉଁ ମିଠା । ତଥାପି ସେହି ପିଜୁଳି ଛଡ଼ାଛଡ଼ି ହେଉ ହେଉ ଲୁମ୍ମୀ, ମାମୀ ଓ ଟୁନାଙ୍କର କଳି ଲଗିଗଲା, କାରଣ ତା' ସଂଖ୍ୟା ଉନରେ ସମ୍ପୂର୍ଣ୍ଣରୂପେ ବିଭାଜ୍ୟ ନୁହେଁ ଓ ସେଥିରେ ହଳଦୀ ଗର ଗର ହୋଇଥିଲା ଗୋଟିଏ ପିଜୁଳି । ଅନ୍ୟାନ୍ୟ ପଦାର୍ଥରେ ସେମାନଙ୍କର ମନ ନଥିଲା ।

ସେମାନେ ସିଏ ଯୁଆଡ଼େ ଆପଣା, କାର୍ଯ୍ୟରେ ଗଲେ । ଏକୁଟିଆ ବସି ରହିଲେ କୁନା ଓ ଜଗବନ୍ଧୁ । କୁନା ଅପେକ୍ଷା କରି ବସିଛୁ, ଯାହା ପ୍ରଶ୍ନ ପଚରାହେବ ସେ ତା' ଉତ୍ତର ଦେବ ।

କିନ୍ତୁ ପ୍ରଶ୍ନ ତ ହେଲା ହିଁ ନାହିଁ ।

ଗୁହା, ଜଳଖିଆ, ପାନ, ସିଗାରେଟ୍, କୌଣସିଥିରେ ତ୍ରୁଟି ନଥିଲା । ସଜାସଜ ହୋଇ ରହିଥିବା କୁଣିଆଘର ବଖରା ଖୋଲା ହୋଇଥିଲା । ସେଥିରେ ଦାମୀ ଖଟ, ବିଛଣା, ଆଲମାରି, ଚଉକି, ଟେବୁଲ ସବୁ । ସବୁ ସଫା ଝକ ଝକ । କଡ଼କୁ ଲଗି ବାଥ୍‌ରୁମ୍ ।

ଘଣ୍ଟା ବିତିଲା । ଘଣ୍ଟାକର ଏକର ସେକର ହେଲା । ଏତେ କାଳକେ ଦେବଶ୍ୱଶୁର ଆସିଛନ୍ତି । ଉଚ୍ଚୁ ଆଳରେ ରହି କୁନ୍ତଳା ଯତ୍ନ ନେଉଥାନ୍ତି ।

ଘଣ୍ଟାଏ ପରେ ପଢ଼ାରେ ଝପ୍ ଶବ୍ଦ ହେଲା । ପୋଷାକ ପିନ୍ଧି ଟୋପିନାଇ ଶ୍ୱଶୁରଜଣ ଓହ୍ଲାଇ ଆସିଲେ । ଆରପାଖକୁ ଗ୍ଲଲିଗଲେ । ଅଳ୍ପ ସମୟ ଭିତରେ ସେହି ବେଶରେ କୁନା ଆସି ପହଞ୍ଚିଗଲା । ଶ୍ୱଶୁରଙ୍କୁ ଦଣ୍ଡବତ ହୋଇ ହସ ହସ ହୋଇ ଠିଆହେଲେ । ଶ୍ୱଶୁରଙ୍କ କଥା, ଝିଅଙ୍କ ପୁରୁଷଙ୍କ କଥା, ଘରକଥା ସବୁ ପଚ୍ଚାରଗଲେ ।

କୁଆଡ଼େ ଆସିଛନ୍ତି ?

ଏମିତ ତମମାନଙ୍କୁ ସବୁ ଦେଖିବାକୁ ଟିକିଏ ।

ଆପଣ ଏଠି ଦନାକେତେ ରହନ୍ତୁ । ଆଦୌ ଆସୁନାହାନ୍ତି କି ରହୁନାହାନ୍ତି ।

ଏଥର ତା' ଉତ୍ତର ଦେବା କଷ୍ଟ ହେଲା ନାହିଁ । ଜଗବନ୍ଧୁ କହିଲେ, "ଆରେ ତେଣେ ତୋ ଶାଉଳ ପରା ଏକୁଟିଆ, ଘରେ କେହି ନାହିଁ । ଗୋରୁ ଗାଈ ଉନଟା । ଗାଁ ଅବସ୍ଥା ତ ଜାଣୁଥିବୁ, ନିଜେ ନରହିଲେ ଯେଉଁ ଅଡ଼ୁଆ । ଆଇଲି, ଏମିତ ଟିକିଏ ଦେଖିଗଲି ।"

ଦୁହେଁଇ ପରସ୍ପର ଆଖିକୁ ଅନାଅନି ହେଲେ । ଦୁହିଁଙ୍କ ସ୍ମରଣ ପିଠିଆଡ଼େ ସତେ ଯେମିତ ବାଳି ମଖାଣକାର ଡାନ୍ନ ପର କ'ଣ ନାଚୁଛି । କାହିଁ କେତେ ଦୂରରେ । ସେମାନେ ଏକା ଗଛ ତଳେ ଏକା ବଇଣାରେ କେବେ ଶୋଉଥିଲେ, ଏକାଠି ଉନ ଉନକର କେତେ ଅନୁଭୂତ ।

ସେ ସ୍ମୃତ ଦୂର ଦେବାଳୟରୁ ଶୁଭୁଥିବା ଘଣ୍ଟାଧ୍ୱନିପର । କିନ୍ତୁ ତାକୁ ଉତ୍ତେଇ ଦେଇ ପାଖକୁ ମାଡ଼ ଆଉ କେତେ ପ୍ରକାର ଶବ, ତୀବ୍ର, କର୍କଶ, ଗୋଳଆମିଶା ।

ଆପଣେ ରହନ୍ତୁ ଭାଇ ।

ତା'ର ଉତ୍ତର ମୂର୍ଚ୍ଛାଣଆ ହସ ।

ପ୍ରାଣବନ୍ଧୁ ଉଠିପଡ଼ିଲେ । କହିଲେ ଟିକଏ କାମରେ ଯାଉଛି ଭାଇ । ଆସୁ ଆସୁ ସଞ୍ଜ ହେବ । ଆପଣ ଖାଇଦେବେ । ମୋ ପାଇଁ ଅପେକ୍ଷା କରିବେ ନାହିଁ । ଆଜିକାଲି ଯେଉଁ କାମଭିଡ଼ ।

ଜିପ୍ ଚାଲିଯାଉଥିବା ଶବ ଶୁଭିଲା ।

ବୁନା କଲେଜକୁ ଗଲା । ଆଉ କେହି ପାଖକୁ ଆସୁନାହାନ୍ତି । ମାମୀଙ୍କୁ ଆଉଁସିବାକୁ ମନ ହେଉଛି, କୁଲୁକୁଲିଆ ଗେହ୍ଲା ଝିଅଟିଏ । ଦେଖା ପଡ଼ିଗଲେ ସେ ହସିଦେଇ ପଳାଇଯାଏ । ଚୁନା ବି ଡାକିଲେ ଆସୁନାହିଁ ।

ଚକ୍ ଚକ୍ ଏଭରବ୍ରାଇଟ୍ ଷ୍ଟୀଲ୍ ବାସନରେ ଓ ଶଙ୍ଖପଣ ପ୍ଲେଟରେ ଭାତ ତରକାରି ଯେନି ଆସି ଖୁଆଖିଆ ଟେବୁଲ ଉପରେ ସଜାଇଦେଲା । କୁକ୍ ଲା ଯତ୍ନରେ ରାନ୍ଧିଛନ୍ତି, ରନ୍ଧାଇଛନ୍ତି । ଦେଢ଼ଶୁର ଆସିଛନ୍ତି । ଗୋଟିଏ ଶ୍ରେଷ୍ଠ ଭୋଜ ।

କିନ୍ତୁ ଜଗବନ୍ଧୁ ସେହି ନାନାପ୍ରକାର ଭୋଜ୍ୟବସ୍ତୁର ଏକତ୍ର ସମାବେଶକୁ ଅନାଇଁ ଦେଲାମାତ୍ରେ ତାଙ୍କୁ ଲାଗିଲା ଯେମିତ ସବୁ ପର-ପର ଅଚହ୍ନା ଅଚହ୍ନା । କୌଣସିଠି କିଛି ତ୍ରୁଟି ନାହିଁ । ବ୍ୟବସ୍ଥା, ଚର୍ଚ୍ଚା ସବୁ ଅତି ଉଚ୍ଚଦରର । ପ୍ରତି ଜିନିଷ ଅତି ସୁଆଦ, ରାନ୍ଧିବା କଳାର ଏ ଯେପରି ଗୋଟିଏ ଗୋଟିଏ ଚମତ୍କାର ନମୁନା । ସବୁ ଅଛି, ଗୋଟାଏ କ'ଣ ନାହିଁ । ତେଣୁ ଖାଇବା ତୃପ୍ତି ହେଲା ନାହିଁ ।

ପାନ ଚୋବେଇ ଚୋବେଇ ନରମ ବଇଣାରେ ଗଡ଼ି ପଡ଼ି ବିଶ୍ରାମ କଲାବେଳକୁ ଆଖିଆଗରେ ଖାଲି ଦିଶୁଥିଲେ, ସୁଲକ୍ଷଣା, ଘର, ବଗିଚା ଗଛତଳ, ପୁଅଝିଅ, ସେମାନଙ୍କ ଘରକରଣା । ଚକ୍ରା ଭ୍ରମି ଭ୍ରମି ଆପଣା ଘରକୁ ଅବୋଉ ଘୂରବୁଲୁଥାଏ । ସୁଲକ୍ଷଣା କ'ଣ କରୁଥିବେ ? ଗୋରୁମାନେ ପେଟଭରି ଖାଉଥିବେ କି ନାହିଁ ? ପଦ୍ମଆ ନନା ଅସିଥିବ କି ନାହିଁ ? ନାନା ପ୍ରଶ୍ନ ଏକାଠି ବଳି ହୋଇ ଠାଣି ହେଲା । ତା' ପରେ ସେ ଉଠିପଡ଼ିଲେ ।

'ଆରେ ଗୋଟିଏ ରିକ୍ସା ଡାକିଦେ ଆଉ କହିଦେ ମୁଁ ଯାଉଛି ।'

ପୂଝାଗ୍ରୀ ଆସି କହିଲା, ମା' କହିଲେ ଆପଣ ଅସୁ ଆସୁ ଗ୍ଭଲିଯିବେନା ? ରହନ୍ତୁ । ବାବୁ ଅସନ୍ତୁ ।

ହଉ ହଉ ହେଲା, ଆଉ କେବେ ଆସିବ । ତେଣେ ସେ ଏକୁଟିଆଟା ଅଛନ୍ତି ପରା । ପାଖରେ ତ କେହି ନାହିଁ । ସେ ସବୁ ଅଡୁଆ ମେମାନେ ବୁଝିପାରିବ ନାହିଁ । ମା'ଙ୍କୁ କହିଦିଅ, ଆଇ ବଳାନ୍ତୁ ନାହିଁ ? ମୁଁ ପୁଣି ଆସିବ ଯେ । ମୋର କ'ଣ କାମ ଅଛି ଯେ ଆସିପାରିବି ନାହିଁ ? ଖାଲି ଟିକିଏ—

ଆଉ ସେ ବୁଝାଇଲେ ନାହିଁ । ଜୋତା ମାଡ଼ିଲେ ।

କବାଟ ଆରପାଖେ ଥାଇ କୁନ୍ତଳା ଶୁଣୁଥିଲେ । ଗୋଟାଏ ଦୀର୍ଘଶ୍ୱାସ ପକାଇଲେ ।

ଶଗଡ଼ ଆସିଲା, ପିଲାଏ ଗୋଟି ଗୋଟି ହୋଇ ଗୋଡ଼ ତଳେ ପଡ଼ିଲେ, ତାଙ୍କ ପଛଆଡ଼େ ଓଢ଼ଣା ଟାଣି ଭୂଇଁରେ ମୁଣ୍ଡ ଲଗାଇ କୁନ୍ତଳା । ମୁହୂର୍ତ୍ତେ ଜଗବନ୍ଧୁ ଭାବପ୍ରବଣ ହୋଇଗଲେ । କହିଲେ,

ହଉ ହଉ ହଉ ଆଶୀର୍ବାଦ କରୁଛି । ଆରେ ସିଏ ଗାଁକୁ ତ ଗଲ ନାହିଁ ଗାଁକୁ ଚହିଲ ନାହିଁ । ପ୍ରାଚୀ ନଈକୂଳ ମୁନିଋଷିଙ୍କ ଆଶ୍ରମ ଥିଲା । ଆଉ— ଆଉ ଦୀର୍ଘଶ୍ୱାସ ଦେଖାଇ କହି ପକାଇଲେ, 'ସେଠି ବଳୁବାଣ ନଡ଼ିଆ ।'

ଚୂନା ପ୍ରତିଧ୍ୱନି କଲା, 'ବଳୁବାଣ ନଡ଼ିଆ ।' ପିଲାଏ ହସିଲେ ।

ଅତି ଉତ୍ସାହରେ ସେ ଶଗଡ଼ରେ ବସିଲେ । ମନରେ ଥିଲା ମୁକ୍ତିର ଆନନ୍ଦ, ଆଖି ଆଗରେ ଦୂରରେ ଦିଶୁଛି, ଶାଗୁଆ ଧଳାଧଳା ଦଳ ଭର୍ତ୍ତି ଶାନ୍ତ ପ୍ରାଚୀ ନଈଧାର, ଆପଣା ଘରଦ୍ୱାର ଅଗଣା । ନଡ଼ିଆଗଛ ବାହୁଙ୍କାରେ ପତ୍ର ହଲି ହଲି ଡାକୁଛି, କଣ୍ଠା ଖଣ୍ଡେ ପିନ୍ଧି ବାଟକୁ ଅନାଇଁ ସୁଲକ୍ଷଣା ଠିଆହୋଇଛନ୍ତି ।

ଶଗଡ଼ ଗ୍ଭଲିଲା ।

ମନେ ମନେ କହିଲେ—'ଗୋପାଳ ଡାକ ପକାଇଛି । ଆଉ କୁଆଡ଼େ ରଖାଇ ଦେବନାହିଁ ମୁଁ ପରା ଜାଣେ ।

କହିଲେ, ଆରେ ବାସ୍ତୁ, ଜଲଦି ଗ୍ଭଲ । ଗ୍ଭନ୍ଦନୀଚୌକ ମଠର ଷ୍ଟ୍ୟାଣ୍ଡ ।

ସନ୍ତ ଆଗରୁ ପ୍ରାଣବନ୍ଧୁ ଫେରିଲେ ଗୋଟାଏ ବଡ଼ ମହାନନ୍ଦୀ ଭଳିଷି ଘେନି ।

ଦୁଣିଆ ଘର ଖାଲି ।

ପଗ୍ଭରିଲେ, ଗ୍ଭଇ କାହାନ୍ତି ?



# ଯୁଧିଷ୍ଠିର

ଦୋମହଲା ଉପରେ ବଖୁରିକିଆ ଘରେ ସେମିତି ସେ ଖଟ ଉପରେ ଶୋଇ ରହିଥିଲେ । ରାତି ୧୦ଟା ବେଳ ଥିଲା । ବୈଶାଖ ଦ୍ୱିପ୍ରହର । ଆପଣା ସଙ୍ଗେ କେତେ ଆଲୋଚନା ଚାଲିଥାଏ, ନିଜେ ନିଜର ସଙ୍ଗୀ । ସେତେବେଳେ ଯୁକ୍ତି ଚାଲିଥିଲା । ଅନେକ ପ୍ରଶ୍ନ । ପୁଣି ତା ଉତ୍ତର ।

କାହିଁକି ଏପରି ହୁଏ ? ମାୟା । ପ୍ରହେଳିକା । ଯାହା ବୁଝିହୁଏ ନାହିଁ ତା ତାଙ୍କର ମାୟା । ସମଗ୍ର ହୃଦୟ ଦେଇ ମୁଁ ତାଙ୍କୁ ଭଲ ପାଇଲି, ସେ କ'ଣ ସତେ ତା ବୁଝିଲେ ? ତା ହୋଇଥିଲେ ଗୋଟି ଗୋଟି କରି ସବୁ ପତ୍ର ଝଡ଼ି ପଡ଼ୁଥାନ୍ତା କାହିଁକି? ମୋର ଝଡ଼ୁଛି, ଆଉ କାହାର ନୁହେଁ । ହେଇ ତ ଦିଶୁଛି ଗହଳି ଆମ୍ବ ତୋଟା, କାଳିଆ, ହାଲୁକା, ଶାଗୁଆ, ଆଉ ପାଖରେ ଏଇ କଲମି ଗଛ କେଇଟି, ସତେକି ଗୋଲ ହୋଇ ଅଧିର ଛିଡ଼ା ହୋଇଛନ୍ତି ଶୂନ୍ୟ ଉପରକୁ, ସେମିତି ସେ ରହିଯାଇଛି, ନିଜ ନିଜ ସ୍ଥାନରେ ପ୍ରତ୍ୟେକ ରେଣୁ । ଏ ଗଛମାନେ କ'ଣ ମୋ ଠାରୁ ବଳି ହୃଦୟ ଢାଳିଦେଇ ତାଙ୍କୁ ସ୍ମରଣ କରନ୍ତି ? ହଟହଟା, ହନ୍ତସନ୍ତ ତା'ର ଅନ୍ତ ନାହିଁ । ନିତି ସେଥିପାଇଁ ତାଙ୍କର ନୂଆ ଭିଆଣ, ଦେଖିଲେ ବାଇ ହୋଇପଡ଼େ । ମୁହିଁ ତ ଲଖ, ଆଉ କିଏ ?

ଶାସ୍ତ୍ର ବଖାଣେ ନୀତି, ଜୀବନ ତା'ର ଓଲଟା କହେ, ଏଠି ପୁଣ୍ୟ ହିଁ ହାରେ ପାପ ଜିତେ । ଅନ୍ୟାୟ ଚାଲେ ପଟୁଆର କରି ।

ତଥାପି ଗାଇବାକୁ ପଡ଼ିବ ତାଙ୍କର ଉଦ୍ଦେଶ୍ୟ ମଙ୍ଗଳମୟ, ତାଙ୍କର ରାଜ୍ୟ ନ୍ୟାୟର, ସୁବିଚାରର । ଖାଲି ଛଳନା ପ୍ରବଞ୍ଚକତା । ଏତେ ଡାକ ଡାକ ଯାହାଙ୍କୁ ମୁଁ ଆଖିରେ କେବେ ଦେଖିଲି ନାହିଁ ରୂପରେ ଗାଇବି ନୀଳ କଇଁ ପରି ତାଙ୍କର ଆଖି, ପଦ୍ମଫୁଲ ପରି ତାଙ୍କର ପାଦର ତଳି । ସେ ସୌନ୍ଦର୍ଯ୍ୟର ଅବତାର । କହିବି ନାହିଁ । ଲୋକ ତାଙ୍କୁ ସ୍ୱାର୍ଥ ପାଇଁ ସ୍ତୁତି କରେ । ମୋର କି ସ୍ୱାର୍ଥ ? ଲୋକ ତାଙ୍କୁ ଡରି ହରି ସ୍ତୁତି କରେ । ମୋର କି ଡର ? ତୁମେ—"ସବୁଥିରୁ ବଞ୍ଚିତ କରି କେଉଁ ଯଶବାନା ଉଡ଼ାଇବ ହେ—"

ହେ ଅରୂପ, ହେ ନିଷ୍ଠୁର, ହେ ବଞ୍ଚିକା, ହେ ମାୟାର ସ୍ରଷ୍ଟା, ହେ— ।

"ମୁଁ ତୁମକୁ ଅସ୍ୱୀକାର କରୁଛି ।" ଏଁ ! କିଏ କହିଲା ! କିଏ କାହାକୁ ଅସ୍ୱୀକାର କରିବ ?

ଅଖି ଯୋଡ଼ିକ ବଡ଼ ବଡ଼ କରି ସେ କର ଲୋଟେଇ ଲକଆ ଉପରକୁ ଓଟାଣ ହୋଇ ଡିଗ୍ ଦେଇ ଓଷ୍ଠ ଯୋଡ଼ି ପଦାକୁ ଅନାଇଲେ । ଝରକା ସେ କରେ ତାଙ୍କର ଅତି ପ୍ରିୟ ବଢ଼ିଲ ଗଛଟି । ସତେ କି ତାହାଠାରୁ ସେ କ'ଣ ଉତ୍ତର ଶୁଣିବାକୁ ଅପେକ୍ଷା କରି ରହିଲେ । ତା'ପରେ ଆପଣ ଭିତରେ ସେ ଆନ୍ତ ପ୍ରକାରେ ଗୁଣୁଗୁଣୁ ଶୁଣିଲେ । ଓଠରେ ହସ ଖେଳିଲା, ଗାଲ୍ ପାରି ଅଖି ବୁଜି ପଡ଼ି ରହିଲେ ଆପଣା ଭିତରୁ ଆତୁର ସଙ୍ଗୀତ ଶୁଣିବାକୁ । ସେଠି ବାଜୁଛି ସୁନ୍ଦର ରାଗିଣୀ । ଏଇଆ ତ ସବୁଠୁ ଭଲ, ଖାଲି ତୁମେ ଆଉ ମୁଁ, ତେଣୁ ମୁଁ ସବୁ ଦେବାକୁ ଆଉ ତୁମେ କିଛି ରଖିନା, ଖାଲି ତୁମରି ଉପରେ ସବୁ । ତମର ସ୍ପର୍ଶ ଶକ୍ତି ଛଡ଼ାଇ ନେଇଛ, ଦେଇଛ ମନର ସ୍ପର୍ଶଶକ୍ତି; ସୌନ୍ଦର୍ଯ୍ୟ ଛଡ଼ାଇ ନେଇଛ, ଦେଇଛ ତୁମର ଅକ୍ଷୟ ସୌନ୍ଦର୍ଯ୍ୟରେ ରମିବାର ଚେତନା, ଦୁଃଖ ନେଇ ଦେଇଛ ହସିବା ହସାଇବାକୁ ମନ, ମୋର ବସ୍ତୁକୁ ଶ୍ମଶାନ କରି ସେଥିରେ ଥୋଇଛ ହସକୁରି ଚଞ୍ଚଳ ଜୀଅନ୍ତା ଶ୍ରେଷ୍ଠ ପିଲ, ଶବର ମୁଣ୍ଡରେ ଟୋପି ଥୋଇଛ, ତୁମେ—

ଶାମା ସେହି ହସିଲା ହସିଲା ଅଖିବୁଜା ମୁହଁକୁ ଅନାଇଁ ତନ୍ନ ହୋଇ ଠିଆ ହୋଇ ରହିଲା ଆଉ ତାକୁ ଖୁସି ଲାଗିଲା । ବାବୁଙ୍କର ଏ ଠାଣି ବୁଝି ସେ ଆପଣା ଅଭିଜ୍ଞତାରେ ଅର୍ଥ କରିପାରେ । ମନରେ ଜଞ୍ଜାଳ କି ଚନ୍ତାର ଲେଶ ମାତ୍ର ନାହିଁ । ଏତେ ଟିକେ ଭୁଲ୍ଭୁଲ୍ ନାହିଁ, ଠିକ୍ ସତେ କି ଏ ମଣିଷ ଏ ଦେହରେହିଁ ନାହିଁ । ମନେ ମନେ ସୁନ୍ଦର ସଙ୍ଗୀତଟିଏ ପ୍ରସବ ହେଉଛି, ନୂଆ ଛନ୍ଦଛନ୍ଦଆ । ଅଖି ଖୋଲିଲେ ହରି ବାବୁଙ୍କ ଡକରା ପଡ଼ିବ ଗୋଡ଼ପଟ କାନ୍ଥକୁ ଓହ୍ଲେଇବ ପୁରୁଣା ତାନପୁରାଟି । ହରିବାବୁ ତାନ୍‌ପୁରା ଧରିବେ, ବାବୁ ଗାଇବେ । ତା'ପରେ ହରିବାବୁ କାଗଜ କଲମ ଧରିବେ, ବାବୁ କହିବେ ସେ ଲେଖିବେ । ତା'ପରେ ଚାଲିବ ସେ ସଙ୍ଗୀତ ଆତୁରି ଡାକ ଘୁରିବାନପାକେ, ଯେତେବେଳେ ମନ ସେତେବେଳେ । ଲୋକେ ଯେ ଗୀତ ଲେଖନ୍ତି ତାକୁ ଅନ୍ୟମାନେ ପଢ଼ନ୍ତି । ବାବୁ ଯେଉଁ ସଙ୍ଗୀତ ରଚନା କରନ୍ତି ସେ ସଙ୍ଗୀତମାନେ ସତେ ଯେମିତି ରକ୍ତମାଂସର ଜୀଅନ୍ତା ରୂପମାନେ, କୁଣିଆ ହୋଇ ଆସନ୍ତି, ଦୁଃଖ ସୁଖ ବୁଝନ୍ତି, ତା'ପରେ ବିଶାଳ ଦୁନିଆ ଭିତରକୁ ଚାଲିଯାଆନ୍ତି ଆଉ କାହାପର ଅଲୁଅ କରିବାକୁ, ସେହି କେଉଁଦିନ ବାବୁଙ୍କର ସତେକି ନରମ ପୁତୁ ପୁତୁ ମନ କେଉଁ କରିଲା । ଜଟା ପଦେ କହିଦେଲେ ଲାଗେ ଦେହ ପଞ୍ଜରେ ଆଉଁସି ଦେଲାପରି ।

"ଶାମା, ତତେ ବାଧୁଥିବ । ସମସ୍ତେ ତ ଗୁଡ଼ା ଚାଲିଗଲେ, ତୁ ଅବା ଲାଗି ରହିଚୁ କାହିଁକି ? ଆଉ ଏ ଦେହଟା କେଉଁଦିନକୁ ? ମୋର ତ ତାକୁ ଲୋଭ ନାହିଁ । ତୋର ଅବା ଅଉ କାହିଁକି ?"

ନ ହେଲେ, 'ଶାମା, ତୋ ଉପକାର ଏ ଜନ୍ମରେ ତ ମୁଁ ଶୁଝି ପାରିବି ନାହିଁ, ଆର ଜନ୍ମରେ ତୋ ବାରିରେ ଲଙ୍କାମରିଚ ଗଛ ହୋଇ ହେଲେ ଶୁଝିବିରେ

ଶାମ। । ଏ କୁଷ୍ଠ ରୋଗୀଟାକୁ ଛୁଇଁବା କଥା ଶୁଣିଲେ ଲୋକେ କୋଡ଼ିଏ ହାତ ଡେଇଁ ପଳାଇବେ, ଆଉ ତୁମେ ଏଇଟାକୁ ଜଗି ରହିଚ , ପାଳୁଚ , ଚଲାଉଚ ତୁ କ'ଣ ? ମଣିଷ ନା ଦେବତା ?"

ଶାମା ଦୀର୍ଘଶ୍ୱାସ ପକାଇଲା । ଏଇ ସାଆନ୍ତେ—ସେ କ'ଣ ଥିଲେ ! ଆଉ ହେଲେ ଏ ଦଶା ! କେଉଁ ପୁରୁଷର ନାଁ ତାଙ୍କ ବଡ଼ ଜମିଦାର ଘର, ପାଞ୍ଚ କୋଶ ଭିତରେ କିଏ ତାଙ୍କର ଖାଇ ନାହିଁ ବୋଲି କହିପାରିବ ନାହିଁ । ପନ୍ଦରକୋଶ ଭିତରେ ଅନେକେ ତାଙ୍କପାଖେ କୃତଜ୍ଞ । କି ଚେହେରା ଥିଲା । ତତଲା ସୁନା ପରି ଦେହର ରଙ୍ଗ । କି ଗଢ଼ଣ କି ଆଖି କି ମୁହଁ । ସେହି ଦେହଟାକୁ କେତେ ଲୋକ ଲୋଭେଇ ଚାହୁଁ ଥିଲେ । ସାଙ୍ଗସୁଖ ହସଖୁସି ସଙ୍ଗୀତ ଭୋଜ ପଙ୍ଗତରେ ଦିନ ବୋହି ଯାଉଥିଲା । ତା' ପରେ ସବୁ ବଦଳିଗଲା ଧରିଲା କୁଷ୍ଠରୋଗ, କେତେ ଯାହା ଉପାୟ କଲେ ଅଟକିଲା ନାହିଁ, ଦେହଟାକୁ ବିକୃତ କଲା । ମାଲିମକଦ୍ଦମା ଲଗିଲା ପଇସା ସରିଲା । ଜମିଦାରୀ ଉଠିଗଲା ଆସ୍ଥି ସରିଗଲା । ପଡ଼ି ରହିଛି ହାଉଁହାଉଁଆ ଘରଗୁଡ଼ାକ, ସମ୍ପତ୍ତି ସରିଛି । ଏତେ ଯେ ଥିଲେ ଚାକରବାକର ପୋଇଲାପରିବାରୀ ସେମାନେ ଛାଡ଼ି ଚାଲିଯାଇଛନ୍ତି । ଆଉ ଚାଲିଯାଇଛନ୍ତି ବନ୍ଧୁମାନେ । ଅଳ୍ପ କେତେଜଣ ଏବେ ବି ଆସନ୍ତି, ସେମାନେ ଆସନ୍ତି ସାଆନ୍ତଙ୍କର ରଚନା ଶୁଣିବାକୁ, ସେଥିରେ ସାଆନ୍ତଙ୍କର ଖ୍ୟାତି ନାଁ, ଜାଣିବା ଲୋକେ କହନ୍ତି ଏପରି ସୁନ୍ଦର ଗୀତ ଆଉ କେହି କେବେ କରି ନ ଥିଲେ । ଶାମା ସେ ଗୀତ ଭଲ୍‌କରି ବୁଝିପାରେ ନାହିଁ, ମଣିଷ ମନ ଭିତରର କେତେ କ'ଣ କଥାସବୁ; କିନ୍ତୁ ସବୁ ନ ବୁଝିଲେ କ'ଣ ହେଲା, ଶୁଣୁ ଶୁଣୁ ହୃଦଭିତର ଘାଣ୍ଟି ଚକଟି ହୁଏ, କେଵେ କେବେ କାନ୍ଦ ମାଡ଼େ ।

ଦେହରେ ମୁହଁରେ ସ୍ଥାନେ ସ୍ଥାନେ ପଟି ପଡ଼ିଛି । ଅଚଳ କୁଷ୍ଠରୋଗୀ, ପର ଉପରେ ନିର୍ଭର । ଏତେ ଦୁଃଖରେ ମଣିଷ କେମିତି କବିତା ରଚନା କରିପାରେ । ଆଉ ହସିପାରେ, ହସେଇ ପାରେ ! ଯେତେ ଯାହା ଦୁଃଖ ଆସୁ, ଏ ମୁହଁରୁ ହସ ଲିଭେ ନାହିଁ, ଯେମିତି ଯେତେ ବଡ଼ ବିପତ୍ତି ପଡୁ, ଏ ଦେକ କେବେ ନଇଁ ନାହିଁ । ଏ ମଣିଷକୁ କାବୁ କରି ପାରିବ ସେପରି ମଣିଷ ସତେ କି ଜନ୍ମ ହୋଇ ନାହିଁ ।

ଶାମା ପୁଣି ସ୍ନେହରେ ସେହି ଦେହକୁ ଚାହାଣିରେ ଆଉଁସିଗଲା, ଆଉ ଭାବିଲା, ଯେତେବେଳେ ଏ ରୂପ ସୁନ୍ଦର ଥିଲା ସତ; କିନ୍ତୁ ଏ ରୂପ ଆହୁରି ସୁନ୍ଦର । ଏ ସୁନ୍ଦରପଣ ଦେହର ଉପରର ଝଲରେ ଗଢ଼ା ନୁହେଁ, ରୋଗିଣା ହୋଇଯାଇଥିବା ଏଇ କୁତ୍ସିତ ଦେହକୁ ଛୁଣ୍ଡା ଅଖାପରି ଆପଣା ଚାରିପଟେ ଗୁଡ଼େଇ ଯେଉଁ ଅପରୂପ ସୁନ୍ଦର ପୁରୁଷ ଏଠି ବିଶ୍ରାମ ନେଉଛି ସେ ଛପି ରହିଛି ଏ ଦେହର ଆଡ଼ୁଆଳରେ । ଦୁର୍ଦ୍ଦଶାର ପରଶ ପାଇଲେ ତା'ର ତେଜ ଫୁଟେ, ସେହି ଏ ଭଙ୍ଗା ଦେହର ରୂପରେ

ବଏ ନାହିଁ ନ ଥିବା ମନକଣା କଥା, ମନଲେଖା ହସ, ବସ୍ୱର, ଠାଣି, ଆଉ ସେହି ସେ ଯେ କବିତା ରଚନା କରେ, ଯାହାର ମହକ ସ୍ୱର ଆଡ଼େ ଚହଲ ପକାଏ। ଏତେ ବିପଦ ଏଡ଼େ ଜଞ୍ଜାଳ ଆଉ ଦୁର୍ଦ୍ଦଶା ଭିତରେ ମନ ଟାଣିରଖି ସହଜ ସରଳ ଅଟଳ ହୋଇ ହସି ହସି ଦିନ ବିତେଇଦେବାର ଏହି ଯେଉଁ ଅଭିଜାତ ଠାଣି ସେ ସୌନ୍ଦର୍ଯ୍ୟ ସେହି ଭିତରର ଆଶ୍ଚର୍ଯ୍ୟ ମଣିଷର।

ସାଆନ୍ତେ ଆଟିଭୂଜ ରହିଛନ୍ତି। ଶ୍ୟାମା ଗ୍ଭଲଗଲା। ସେତିକ ପାଇଁ ସତେ ଯେମିତି ସେ ଅପେକ୍ଷା କରିଥିଲେ। ଆଖି ପୁଣି ଖୋଲିଲା। ଆରାମରେ ନିଶ୍ୱାସ ମାରି ସେ ମନେ ମନେ କହିଲେ—"ଯାଃ, ହେଲା ଏଥର। ଏତେବେଳେ ମଣିଷର ସଙ୍ଗେ ତାଙ୍କର ଦରକାର ନାହିଁ, ପ୍ରତି ମଣିଷ ସ୍ୱଭାବରେ ଯେମିତି ଗୋଟାଏ ଅଦେଖା ଆଲୁଅ ଧାସ ଥାଏ। ସେ କହୁ ନ କହୁ ପଛେ ସେହି ଧାସଟା ବାଜେ, ଅସଜ ଲଗେ। ଶ୍ୟାମା ଯାଇଛି। ଏଥର ଏକୁଟିଆ।

ପୁଣି ସେହି ପୁରୁଣା ଖିଅ ଧରି ସେ ଆଗକୁ ଭାବିଗଲେ। "ତୁମେ ନିଶ୍ଚୟ ଅଦୃଶ୍ୟ ହୋଇ ରହି ମଜା ଦେଖୁଛ। ମନ ଇଚ୍ଛା ଦେଖ; କିନ୍ତୁ ଚେଷ୍ଟାଧିଲାଯାକେ କେତେବେଳେ ଦେଖିବ ନାହିଁ ମୁଁ ତୁମ ପାଖେ ହାରିଛି। ସବୁ ତ ତୁମେ ପୂର୍ଣ୍ଣ କରି ରଖିଛ, ମୋର ଅଭାବ କାହିଁ ମୁଁ ମୁହଁ ଶୁଖେଇ.? ତୁମେ ବଡ଼ ହଠିଆ। ଯେ ତୁମକୁ ଅନାଦର କରେ ତାକୁ ହିଁ ତୁମେ ସୁନାରେ ଫଳ, ଯେ ତୁମକୁ ଭଲ ପାଏ ତାକୁ ହଟହଟାକରି ବ୍ରଜଲୀଳା ରଚ, ପରୀକ୍ଷା,—ପରୀକ୍ଷା,—କେତେ ପରୀକ୍ଷା ନେଇ ନିଅ, ଶୁଖିଲା ମୁହଁ ଦେଖିବ ନାହିଁ।

ହେଇ ଏ ସୁନ୍ଦର ଆକାଶ, ଅନ୍ତ ନାହିଁ, ସୀମା ନାହିଁ। ଆଉ ଏ ଆକାଶ ଯାକ ବ୍ୟାପି ରହିଛନ୍ତି ତୁମେ ଆଉ ମୁଁ। ତୁମେ ପଛେ ହୋଇଥାଅ ଆଲୁଅ, ମୁଁ ତୁମର ଛାଇ, ପାରିବ କେଉଁ ?

ଏଥର ଝରକା ସେପାଖକୁ ଦୃଷ୍ଟି। ମନେ ମନେ ସେ ଉଡ଼ି ଉଡ଼ି ଗ୍ଭଲିଛନ୍ତି। ନଡ଼ିଆ ଗଛର ଅଗର ଲମ୍ବ ବାହୁଙ୍ଗାରେ ଖଗ ଝିଲ ଝିଲ। ଦେଉଳ ଉପରେ ପାରା ବସିଛନ୍ତି। ଶୁଖିଲା କ୍ଷେତ ମଝିରେ ସୁନ୍ଦର ନେଳା ପଥରପଣ ପୋଖରୀଟି। ଆକାଶ ସେ କଣରୁ ତୋଫାନ ଘୋଟି ଆସୁଛି, କଳା ଜକ ଜକ ଡାକୁଣୀ ଲମ୍ବି ଲମ୍ବି ମାଡ଼ି ଆସୁଛି, ଆଉ ତା ତଳେ ରାଉ ରାଉ ପବନ। ଚୋଟା ଝାଙ୍କି ହେଉଛି।

ଏଇ ଧୂଳି-ଝଡ଼ ଉପରେ କଳା ବିଦ୍ରୋହ ଉପରେ କେଉଁଠି ନିଶ୍ଚୟ ରହିଛି ଅଧାଏ ଶାନ୍ତ ଚକ୍‌କଣେ—ନେଳି ଆକାଶ, ଏଇ ବୈଶାଖ ଉପରେ ରହିଛି ଆସନ୍ତା ଶରତର ଆକାଶକୁ ଚେନାଏଁ, ସବୁ ରୂପ ଏହି ଆଖି ଆଗରେ, ଦେଖି ପାରିଲେ ହେଲା।

କବାଟଟା ଖୋଲି ଯାଇଛି।

ଘରପାଖ କାହ୍ନଣା ଲହଡ଼ି ଖେଳୁଛି, ଯେମିତ ଏକାଠି ସମସ୍ତେ କାନ୍ଦୁଛନ୍ତି ।

ନା, ଏ ବାସ୍ତବ ନୁହେଁ ।

ମନ କଲେ ହସି ହେବ ତ, ନ ହସି ମଣିଷ କାନ୍ଦେ କାହିଁକି ? ଆଃ ! ତଥାପି ଏ ଦୁନିଆଁର ଲୋକ କାନ୍ଦିବେ ।

ପାତଶା ସହରତଳିର ଧୂଳିଆ ଗୋଡ଼ି ରାସ୍ତାକୁ ଓହ୍ଲାଇ ପଡ଼ିଲା ପରେ ସେ ଯେପରିକି ସେହି ଅରୁଚିକର ବର୍ତ୍ତମାନ ଆଡ଼କୁ ଚେତନା ଦେଇ ଅବିଶ୍ୱାସରେ ଅନାଇଁ ରହିଲେ । ଅବିଶ୍ୱାସରୁ ଆସିଲା ବିସ୍ମୟ । ତା'ପରେ ହଠାତ୍ ମାସ୍ଟା ସ୍ୱପ୍ନ ଗଲା ଉଭେଇ, ଥରି ଥରି ଗୁଡ଼ିଏ ଫଡ଼ା ଫଡ଼ା ଆଖି । ସେ ସେହି ଦୁଆରମୁହଁ-ଆଡ଼କୁ ଅନାଇଁ ରହିଲେ । ଚେତା ପଶିଲା, ତଳ ମାହାଲରେ ଘରପାଖ ସମସ୍ତେ ହାଉଳି ହୋଇ କାହିଁକି କାନ୍ଦୁଛନ୍ତି । ମନ ହେଲା ଡାକେ 'ଶାମା' ରାତିରେ ଦୁଃସ୍ୱପ୍ନ ଦେଖି ଡାକ ଛାଡ଼ିବାକୁ ବାରମ୍ବାର ପାଟି ମେଲା କଲେ ଯେମିତି ଜଣା ପଡ଼େ ସ୍ୱର ବାହାରୁ ନାହିଁ ତାଙ୍କୁ ସେହିପରି ଲାଗିଲା; କିନ୍ତୁ ଶାମା ସତେକି ସେହି ଅକୁହା ଡାକ ଶୁଣି ଧାଇଁ ଆସିଲା । ଶାମା କାନ୍ଦୁଛି ।

"ସାନବାବୁ—" ଶାମା ଆଉ କହି ପାରିଲା ନାହିଁ । ଭେଁ ଭେଁ କାନ୍ଦିଲା ନଟିଆ ତା'ହେଲେ ଆଉ ନାହିଁ ! କିଏ କହିଲା ! ନଟ ତାଙ୍କର ସାନ ଭାଇ । ବଳିତଳୁ ଫେର ଦିଲ୍ଲୀରେ ନୂଆ ହୋଇ ବାରିଷ୍ଟର ଆରମ୍ଭ କରିଛି । ସେହି ତ ଏ ବଂଶର ଆଶା ଭରସା ! ସ୍ୱାସ୍ଥ୍ୟବନ୍ତ ବଳିଷ୍ଠ ଶାନ୍ତମୂର୍ତ୍ତି ହସ ହସ ନଟ । ନା, ଝିଅ ପର ନଟିଆ, ସବୁବେଳେ ହାତ ଖୁଞ୍ଜୁ ଖୁଞ୍ଜୁ, ଦୁଷ୍ଟଙ୍କ ଶିରୋମଣି, ସବୁବେଳ ଏ ସାହି ସେ ସାହି, ଗହିର ବିଲ, ନଈକୂଳ ଯୁଆଡ଼େ ହେଲେ ବୁଲୁଥିବ । ଖିଆପିଆ ବି ଭୁଲିଯାଏ; କିନ୍ତୁ ଦେଖା ପଡ଼ିଗଲେ ତା'ର ସେ ଦେହ ବଙ୍କାଇବା ଠାଣି ଆଉ ସେ ଅଖଳା ହସ । ରାଗ ପାଣି ଫାଟିଯାଏ । ନଟିଆ ଦୀର୍ଘଜୀବୀ ହେଉ ।

"ଅଇଛା ତା'ର ଅଫିସ୍ ସାଆନ୍ତେ, ଦିନେ ଝାଡ଼ା ହେଲା ତା'ପରେ ସାନବାବୁ ଚାଲିଗଲେ । ମୋ ସାନବାବୁଙ୍କୁ ଆଉ କୋଉଠୁ ପାଇବି ସାଆନ୍ତେ ।"

ଛାତି ଭିତରେ ଦପ ଦପ ଅଟକିଗଲାଣି, ଏଥର ସେହି ତୋଫାନ ଉପରର ସ୍ଥିର ଶାନ୍ତ ଆକାଶ ଆଖି ବୁଜିଲେ ଆଖିରେ ପଡ଼ୁଛି । ସେହି ସେ ନବଦୂର୍ବାଦଳ ଶ୍ୟାମ ବର୍ଣ୍ଣ ।

ନା, ନଟିଆ ନାହିଁ ।

ଶାମା ଚାଲିଗଲାଣି ।

କାହ୍ନଣାର ଲହଡ଼ି ଉପରେ ଉଠ୍ ମନ ଉଠ୍, ଉପରେ ଶାନ୍ତ ସ୍ଥିର ଆକାଶ । ଓଃ ! ନଟିଆ ନାହିଁ ।

"ନଟ ! ନଟରେ !" ଲମ୍ବେଇ ଲମ୍ବେଇ ଲହରେଇ ଲହରେଇ ଏ

ଟଙ୍କାର କେଉଁଠୁ ବାହାରୁଛୁ । ସେହି ଟଙ୍କିଗୁ ଟଙ୍କାର ବାହାରିବା ମାନେ ଶୁଭୁଛୁ ତଳେ କାନ୍ଦଣାର ଝାଙ୍ଗ ବଢ଼ି ବଢ଼ି ଉଠୁଛୁ । ଏଇ ଦେହଟୁ ସେ ଟଙ୍କାରର ଉତ୍ପତ୍ତି । ଏଇ ଯେଉଁ ମୁହଁଟା ଅନ୍ଧାରକୁ ଅବୋଧ ଚାହାଣିରେ ଉଗାଡ଼ ହୋଇ ପଡ଼ି ରହିଛୁ ଆଉ ତହିଁରୁ ବୋହି ଚାଲିଛୁ ଗଳଗଳ ଆକାଶ ଫଟା ବରଷା ଏ ଘଡ଼ଘଡ଼ି ଶବ୍ଦ ତାହାର ।

ଆଉ ତୁମେ ! ତୁମେ ହସଟା ଦେଖୁଛ ! କେମିତା ହାତ ଟାଙ୍କି ସାଁ ସାଁ ନିଶ୍ୱାସ ଗ୍ରୁଡ ଜାଲ ଝଲଝଲ ଚାହାଣୀରେ ମୁହଁ ଟେକ ଅନାଇଁ ଦେଲ ବେଳକୁ ମନ ଭିତରେ ଗୁଞ୍ଜରି ଉଠିଲା ସେହି ପୁରୁଣା ରାଗିଣୀଟି—

"ସବୁଥିରୁ ବଞ୍ଚିତ କରି କେଉଁ ଯଣବାନା ଉଡ଼ାଇବ ହେ" ଟପ ଟପ ଲୁହ ଝଡ଼ି ପଡ଼ିଲା ତୁହାକୁ ତୁହା ।

ହେଇ ଲାଗୁଛି ସମୁଦ୍ରର ସଙ୍ଗୀତ ଶୁଭୁଛି । ଝାଉଁବଣ କାନ୍ଦୁଛୁ । ଶୁନ୍‌ଶାନ୍ । ଖାଁ ଖାଁ । ସମୁଦ୍ର ଧରିଲାଣି ସେହି ଏକାପରି ଧୁନ, ଗୋଟାଏ ଛନ୍ଦ । ଅଚ୍ଛନ୍ନା, ତା'ପରେ ହଠାତ୍ ପୁଣି ଏ କ'ଣ ହେଲା । ଯେମିତ ପ୍ରକାଣ୍ଡ ପ୍ରକାଣ୍ଡ ବନ୍ୟାର ଲଢ଼ାଲଢ଼ି । ନା, ସମୁଦ୍ର ନୁହେଁ, ତଳେ ଘରଯାକ ମଣିଷ ଆତୁରି ଆକୁଳ ହୋଇ କାନ୍ଦୁଛନ୍ତି । ଦେହଟା ଥରି ଉଠୁଛି । ଉତ୍ପ୍ରେକ୍ଷାର ଚମକରେ ଟଣ ଟଣ ହେଉଛି । ଏଇ ସ୍ତରରେ ଆନନ୍ଦ ଆଉ ଦୁଃଖ ସମାନ । ସେହି ଭିତରେ କିଏ ଯେମିତ ତୁନି ତୁନି କହି ଦେଉଛି, ଦଅ ଆହୁରି ଦଅ ।

କାନ୍ଦ କାନ୍ଦ କର୍ମି କର୍ମି ଦୁଆର ମୁହଁବାଟେ ଆସୁଛି ଖଣ୍ଡିଆ ଭୂତ, ଶାମା । ବେସୁରା ହୋଇ ବାଜିଲା ହେଲା "ମା ସାଆନ୍ତାଣୀ ଅଫିମ ଖାଇଦେଲେ ସାଆନ୍ତେ । ଡୋଲା ଖୋସି ଦେଲେଣି ହାତଗୋଡ଼ ନାଠି ଦେଲେଣି ।"

ମୁଣ୍ଡ ଭିତର କ'ଣ ହୋଇ ଯାଉଛି । ଶାମା ନାହିଁ । କେହି ନାହାନ୍ତି । କାହିଁ କେତେ ତ ପାହାଡ଼ ଉପରେ ଏକୁଟିଆ ସେ ବସିଛନ୍ତି, ଆଖି ଯେତେଦୂର ଯାଉଛି ଖାଲି ବରଫ ବରଫ ବରଫ । ତା' ଉପରେ ସ୍ନିଗ୍ଧ ଅଲୁଅ ଧାସ ଖେଳୁଛି । ଉପରେ ଶରତ୍-ନେଳି ଆକାଶ । ଗ୍ରୁଡ ନାହିଁ, ଗଛ ନାହିଁ, ସାହା ସାଥୀ ନାହାନ୍ତି ।

"ତୁମେ ଅଛ, ମୁଁ ଅଛି, ମୁଁ ଯୁଧିଷ୍ଠିର, ସ୍ଥିର ଅଟଳ ରହିଛି । ଆଉ ହସଟା ଲଗାଇବ ? ଲଗାଅ, ପାରିବ ନାହିଁ । ହେଇ ଦେଖ ମୁଁ ହସୁଛି ।" ଅନ୍ତର ଭିତରେ ପୁଣି ସେହି ସଙ୍ଗୀତର ଗୁଣୁଗୁଣୁ । ଏଥର ଟେହିଲା ପରି ତା'ର ଲହର—

"ସବୁଥିରୁ ବଞ୍ଚିତ କରି କେଉଁ ଯଣବାନା ଉଡ଼ାଇବହେ—ତା'ପରେ ହଠାତ୍ ଯେପରି କାଛ ସମସ୍ତ ପାଇଁ ଗଲି କଟିଗଲା । ସୁଖ ନାହିଁ, ଦୁଃଖ ନାହିଁ ।



# ଅନୁଭୂତି

ମୁହଁ ଉପରେ କୁଅଁର ସୁନେଇ ।

ନଟବର ସହରକୁ ଆସିଥିଲେ ଲୁଗା କଣି ।

ତାଙ୍କ ଅଡ଼ର ଜଣେ ଚଳ୍ପା ମୋହଣ୍ଟର ଘରେ କଣି ଆଣିଥିବା ଲୁଗା ଓ ବଜାର ସଉଦାତକ ଥୋଇ ଦେଇ ପଦାକୁ ବାହାରଲ ବେଲକୁ ଗ୍ରୁଇ ନେଉଛି ଅସୁଛୁ । ସହରରେ ଗୃଣଅଡ଼େ ବ୍ୟସ୍ତତା । ହଠାତ୍ ଅଳସପଣରୁ ଉଦାସ ଲଗିଲ, ମନେପଡ଼ଲ ପିଲଦିନର କାହାଣୀ-ଇସ୍କୁଲ ଗଲ ପିଲଟିଏ ଯାହାକୁ ଖେଳିବାକୁ ଡାକୁଛି ତାକୁ ଡର ନାହିଁ, ପିମ୍ପୁଡ଼ିକୁ ବ ବେଲନାହିଁ, ମହୁମାଛିକୁ ବ ବେଲ ନାହିଁ । ଶେଷରେ ପିଲଟିକୁ ଇସ୍କୁଲ ଯିବାକୁହିଁ ପଡ଼ିଲ । ଏମାନେ କଣ ସେହି କାହାଣୀ ପଢୁଥିବେ ?

ନଟବର ଗୃହିଁଲେ ରାସ୍ତାକଡ଼ର ଗୋଟିଏ ସହରଅ ଗୃହାଳି ଆଡ଼କୁ । ଭିନ୍ନ ଭିନ୍ନ ଶ୍ରେଣୀର ପିଲ ଏକାଠି ଦଲ ହୋଇ ପାଠ ଗର୍ଜୁଛନ୍ତି । ଗର୍ଜନହିଁ ଶୁଭୁଛି, ପାଠ ଶୁଭୁନାହିଁ । ରାସ୍ତା ଆରପଟେ କାମ କରୁଛି ଗୋଟାଏ କରତକଲ, ଇଞ୍ଜିନ୍ ଲଗା । ତାର ବକଟ ଶବ୍ଦ । ସେହି କଲ ସାମନାରେ ଅଁକଣ ଅନାଇଁ ପାଞ୍ଚମିନଟ୍, ପୁଣି ମନ ଗ୍ରୁଡ଼ିଗଲ, ପୁଣି ରାସ୍ତା ।

ସାନପୁଅ କୁନାଟି କଣ କରୁଥିବ ଅଇଗ୍ରୁ ? ଆହା, ବଡ଼ ଦୁର୍ବଳ ବିଚରାଟି, ଖାଁ। ବଇଦ କହୁଛି ପେଟରେ କୃମି ଅଛି । ଦେହ ଜଳଜଳ, ପେଟ ଫୁଲଫୁଲ, ହାତ-ଗୋଡ଼ ତାଙ୍କ ସରୁ ସରୁ, ମୁଣ୍ଡଟି ବଡ଼ । ହେଲେ କ'ଣ ହେଲ, ପାଠ ଯିଇଯାଉଛି, ଏଇ ଦଶବର୍ଷ ବୟସରୁ ଓଡ଼ାଙ୍କ ସାରଲଣି । ସପୁଗ୍ର କହୁ। ଛେଚ ଛେଚ ପେଇପେଇ ରୋଗ ବୋଲ ମାନୁନାହିଁ, ଯେମିତକ ସେମିତ । ଲୋକେ କହୁଛନ୍ତି ଏଇ ବାପର ଏଇ ପୁଅ ! ବଡ଼ପୁଅ ବୁନା—ବାଳ୍ୟବାଡ଼ ସବୁ ବୁଝେ । ଏଇ ମକୁଣୀରରେ ତାର ଶୁଭକାର୍ଯ୍ୟ କରଦେବାକୁ ଇଚ୍ଛା । ସେଥିପାଇଁ ତ ଆଜ ଗ୍ରଡକ ସହରରେ ମାଣ୍ଡେଇ ଯିବାକୁ ପଡୁଛି । ଆଜ ତାଙ୍କ ଘରେ ଆସିବେ କହୁଛନ୍ତି, ମୋହଣ୍ଟର ଥାଇ ଦବାନବା କଥାଟା ପଡ଼ିଯିବ ।

ବଣ୍ଡଘର ମକୁଣୀର ଡେରିବ ନାହିଁ, ବୁନାବୋଉର ଦେହ ଆଉ ଭଲ ହେଲ ନାହିଁ । ଆଃ—ବିଚରା ବୁନାବୋଉ, ଦୂରରେ ଥାଇ ଦ୍ୱବଲେ ବଜାଲ ଲଗେ । ଚମ୍ପାଫୁଲ ପର ଗୋରା । ଗୋଟାଏ ଗ୍ରୁଡ଼ିଲରେ ଗଢ଼ା, ମୁଣ୍ଡ ବାଳଫିଟେଇ ଦେଲେ ବଳାଗଣ୍ଠି କ ପାଏ । କୁଆଡ଼େ ଗଲ ସେ ରୂପ ସେ ବଳ, ସେହି ମଣିଷଟା

ତ ସେ, ଅଇଗ୍ର ଧର ପକେଇଦେଲେ ବେଲେଶାପେଣ୍ଡରେ ଝୁଣ୍ଟି ବେଲଲ୍ପର ହେଲ ହୋଇଗଲାଏ । ପାଞ୍ଚବର୍ଷ ସାନ ତ, କେତେ ହେବ, ଅତ ବେଶିରେ ଷ୍ଟାଲିଶି ବର୍ଷ । ସେଥିରେ ଖାଲି ହାଡ଼ଚମ, ବାଲ ଝମ୍ପୁଡ଼ ଟାଉଛି, ମୁଣ୍ଡ ବୁଲଏ, ପାଦତଳ ପୋଡ଼େ, ଦେହ ଥରେ । ବଇଦ କହେ ବାତପିତ୍ତ । ଆଶଙ୍କା ହୁଏ, ତା ସଙ୍ଗକୁ କଫଟା ଯଦି ମିଶିଯିବ ତେବେ କଏ ରଖିବ ? ଶାସ୍ତ୍ର କହୁଛି, "ବାତ କଫ ପିତ୍ତ ଏକାଠି ହୋଇବେ ତଣ୍ଟି ଶୁଭୁଥିବ ଘଡ଼ ଘଡ଼ ଘଡ଼ ଘଡ଼, ଆରେ ଶୁଖା ଖଡ଼ଖଡ଼ ।" ମିଛ ମାସ୍ଟାସରୁ । ମିଛ ମାସ୍ଟାରେ ପଢ଼ା ହେଉ ଲଡ଼ବଡ଼, ଲଡ଼ବଡ଼, ଆରେ ଶୁଖା ଖଡ଼ ଖଡ଼ । •

ସବୁ ଖାଲି ଜୁଆର ଅଉ ଭଟ୍ଟା । ତଳହଟିରେ ଆପଣା ଗାଁ ତଳ ଅଠରବାଙ୍କ ନଈ ମନେ ପଡ଼ିଯାଏ । ଜୁଆର ଅସେ, ଜୁଆର ଯାଏ, ରୂପ, ଯୌବନ, ଧନ, ସମ୍ମାନ ।

ଗାଁ ଧରୁଛି ମନ । ଏଥକ ବେଳଆ । ନଈକୂଳେ ବରଗଛ ମୂଳେ ଝୁଙ୍କି ବାଛୁଛି ବାବାଜୀଟା । ଚିଲମ ଧରେଇ ଦିଅନ୍ତା । ମନଜାଣି କହନ୍ତା କଥା ପଦେ—"ଦେଖ୍ ବାପା, ନଈରେ ଜୁଆର ଆଇଚ । ଏମିତିଆ ମଣିଷର ଘରକରଣା— ।" ସୁଙ୍ଖ ଏଠି ନାହିଁ । ଇଏ ସହର । ନିଜ ବାଟେ ନିଜେ ସମସ୍ତେ । ଖାଲି ଚାଲି ଯାଉଛନ୍ତି, ଚାଲି ଆଉଛନ୍ତି । ପଦେ କଥା ନାହିଁ, ପଦେ ସହାନୁଭୂତ ନାହିଁ ।

ଦୀର୍ଘଶ୍ୱାସ ପକେଇ ନଟବର ଚାଲି ଲଗିଲେ । ଉଦେଶ୍ୟ ନାହିଁ । ଖାଲି ବୁଲୁଛନ୍ତି । ସେ କୌଣସିମତେ ଆଜକ କଟେଇ ଦେଲେ କାଲିକ ମଟର ଧର ଗାଁ ।

ନାଲି ଟୁକୁଟୁକୁ ଓଠ, ଗାଲରେ ଦଟୋପ୍ଟି ଫଳର ଚକ୍‌କଣ ଆଉ ଧଳାଙ୍କ, ରଙ୍ଗଢ଼ଙ୍ଗିଆ ଶାଢ଼ୀ, ଖୋଲା ଶକ୍‌ସାରେ ଯୋଡ଼ ଯୋଡ଼ ହୋଇ ବସି ସହରର ମାଇପେ ବୁଲି ଚାଲିଛନ୍ତି ।

ଖାଲି ମନେପଡ଼େ ବିଚରା ବୃନାବୋଉ ! ବାରମ୍ବାର ପ୍ରସୂତ, ବାରମ୍ବାର ମେଲେରିଆ, କଣ କି ଅବସ୍ଥା ହେଲଣି ସେ ! ମନଟା ବେଶି ଖରାପ ହେଲା । ବୃନାବୋଉ ଖାଲି ଦେଇ ଜାଣିଛି, ଦେଇ ଦେଇ କାଙ୍ଗାଳ, ହାତପାତ କେବେ ମାଗି ନାହିଁ ।

ବୃନାବୋଉ ତାର ବଳ ବହପ ସୌନ୍ଦର୍ଯ୍ୟ ବାଣ୍ଟି ଦେଇଛି । ମାଟି ଘରର କାନ୍ଥ ଚଟାଣ ଚକ୍‌କଣ ପାଳିସ । କଂସାବାସନ କାଚପରି ଜକ୍‌ଜକ୍ କରେ । ଦୁଆର କୋଣରେ କାଗେଜି ଗଛ ଝାଲୁକୁଣୀ ପରି ବଢ଼ି ଉଠି ଫଳ ଅଜାଡ଼ି ଦିଏ । ସେମିତ ବଲବାଶ, ତୋଟା, ପୋଖରୀ, ସମସ୍ତ ଘରକରଣା । ଶିକାରେ ଓହଳ ଓହଳ ଭଡ଼ା ଭଡ଼ା ଆମ୍ବୁଲହାଣ୍ଡି, ବଡ଼ିହାଣ୍ଡି । ସଫାସୁତୁରା ଝୁହାଲର ତଳ, ମାଛ ଖସି ପଡୁଛନ୍ତି ଗୋରୁଗାଈ କେତୋଟିଙ୍କ ଦେହରୁ । ପିଲାଝିଲାଙ୍କ ମୁହଁରେ

ସଢ଼ ସଢ଼, ଘଡ ଅନ୍ଦ୍ରା ରହୁ; ମଶା ହୁରୁଡ଼େଇ ହୁରୁଡ଼େଇ ତାଙ୍କର ଯତ୍ନ । ଏତେ ବର୍ଷରେ ଧନୁଧନ ଏତେଠି ଛୁଆଡ଼ ଦେଇଚ ବୁନାବୋଉ ତାର ଯୌବନ, ତାର ରକ୍ତର ତେଜ, ଦେହର ବର୍ଣ୍ଣ । ନିଜ ପାଇଁ କିଛୁ ରଖିନାହିଁ । ଯେତେ ମନାକଲେ ବଡ଼ ଅବ୍ବାରୁ ଘୂଚ ଅଧଯାକେ ଖାଲି କାମ କାମ·········

ଏଇ ନଟବର ! ପରିପୁଷ୍ଟ ଦେହ । ସରଳ ମନ । ଯେଉଁଆଡ଼େ ଗଲେ ବି ଆପଣା ଘରସଂସାରରେ ଅବଶ ।

ବୁଲୁ ବୁଲୁ ବଡ଼ ସହରର ବଡ଼ ପଡ଼ିଆ । ଓଃ, କେତେ ଲୋକ । ସହରର ଅଧେ ଲୋକ ସତେ କି ଏଠି ଠୁଳ ହୋଇଛନ୍ତି ! ଏତେ ମୁଣ୍ଡ—ଥାଳି ମାରିଦେଲେ ଥାଳି ଗଳିଯିବ । ଜନତାର ସମଷ୍ଟିଗତ ପ୍ରଭାବ ନଟବରଙ୍କ ସ୍ୱତନ୍ତ୍ର ବ୍ୟକ୍ତିତ୍ୱକୁ ଡୁବେଇ ଦେବାକୁ ଲାଗିଲା । ଉଡ଼ିଗଲା ବୁନାବୋଉ, ହଜିଗଲା ଘର ! ସାମନାରେ ଜନତା, ମନ ଭିତରେ ତାହିଁ ସଙ୍ଗେ ସମତାଳ । ଗୋଠମୁହାଁ ଗୋଟିକିଆ ମେଣ୍ଢାପରି ସେତିକି ବାଟ ଢ'ଖୋପା କରିଦେଇ ନଟବର ଦଉଡ଼ି ଚାଲିଗଲେ ।

ପଡ଼ିଆରେ ସେତେବେଳେ ଫୁଟବଲ ମ୍ୟାଚ ଲାଗିଥିଲା । ଦୁ' ଦଳ । ପାଖେ ବାରିପଦା ପାଖେ ଜୟପୁର । କେଉଁଠି ବାରିପଦା କେଉଁଠି ଜୟପୁର ? କେହି ଗୋଲ୍ ଖାଇନାହାନ୍ତି, କିଏ ଯେ ଗୋଲ୍ ? ଖାଲି ଶୁଣାଶୁଣିରେ ଜ୍ଞାନ । ପାଖେ ନାଲି କାମିଜ୍ ପାଖେ ସାଦ୍‌କା । ଚାଲିଛି ଖେଳ ଏମୁଣ୍ଡ ସେମୁଣ୍ଡ ଉଠପଡ଼ ଗୋଡ଼ିଆ ଗୋଡ଼ ।

ପ୍ରଥମେ ଚାହିଁଦେଇ ମନଟା ଫିକା ପଡ଼ିଗଲା । ସଂସାରୀ ବୁଦ୍ଧିରେ କଳି ଦେଖିଲେ ନଟବର—କିବା କାମ ଯେ ଏଥିପାଇଁ ଏତେ ଭିଡ଼ ? ଝାଳନାଳ ହୋଇ ଧାଇଁଛନ୍ତି ବାଇଶିଜଣ ଭେଣ୍ଡା, କିବା କାମ ? ଖାଲି ଗୋଟାଏ ଚମଡ଼ାର ପବନଫୁଲା ପେଣ୍ଡୁ ଉପରେ ମଣିଷପଣ ପରଖ କରିବାକୁ ? ଏଇଥିପାଇଁ ଟଙ୍କା କଉଡ଼ି ଦେଇ ବାପ ମା'ପିଲାଙ୍କୁ ପାଠ ପଢ଼ାନ୍ତି—ପେଣ୍ଡୁ ଉପରେ ଗୋଇଠାମାରି ଶିଖେଇବାକୁ !

ବାଇଶଟା ଭେଣ୍ଡା—ଏକାଠି ହେଲେ ଗୋଟାଏ ଘରତୋଳାର ମାଟି ଚକଟି ପାରନ୍ତେ, ତାଡ଼ି ପାରନ୍ତେ, ମାଡ଼ି ପାରନ୍ତେ, ଖଞ୍ଜି ପାରନ୍ତେ, ଗଢ଼ି ପାରନ୍ତେ । ଧର ଯଦି ଜଣ ଜଣକେ ଗୋଟାଏ ଲେଖାଁ ହଳ ଧରେଇ ଦେଇ କହନ୍ତି ଏ ପଡ଼ିଆଟା ଚଷିବାକୁ, ପାରନ୍ତେ ନାହିଁ ? ବାରମାଣ ସମତଳ ଜମି, ଖାଲି ଘାସ ବଢ଼ିଛି, ଏଇ ବାଇଶିଜଣ ଭେଣ୍ଡା ଏଠି ଫସଲ ଉପୁଜାନ୍ତେ ଗଦା' ଗଦା । ତା ନକରି ଖାଲି ଏ ତାମସା ! ସହରିଆ ଲୋକଙ୍କର ଅଜବ ଖିଆଲ । ପେଟକୁ ପଖାଳ କଂସାଏ ନ ଖାଇ ସ୍ୱର ପଇସା ଦେଇ ସିଗାରେଟ କିଣି ଧୂଆଁ ଶୋଷିଦେବେ । ସେମିତି ଏ । କାହିଁ ବାରିପଦା, କାହିଁ ଜୟପୁର !

ହାଫ୍ ଟାଇମ ପାଖ । ପ୍ରଚଣ୍ଡ ଘୋ ଘୋ ଭିତରେ ବାରିପଦା ଜୟପୁରକୁ ଗୋଟିଏ ଗୋଲ୍ ଦେଇଛି । ଜୟପୁର ପ୍ରାଣପଣେ ଚେଷ୍ଟା କରୁଛି ଗୋଲ୍‌ଟି ଶୁଝିଦେବ । ହେଇ ଅଗେଇ ଚାଲିଛି ଜୟପୁର, ଥାକୁକୁ ଥାକ ଥାକୁ... ଥାକ । ବଲ୍‌ଟା ବାରିପଦାର ଗୋଲ୍‌ଖୁଣ୍ଟି ପାଖ ହେଲାଣି । ଲାଗିଛି ଲଢ଼ାଲଢ଼ି ଧରପଗା, ଲାଗିଛି ଚକ୍ରବ୍ୟୂହ । ଜୟପୁରର ସେଇ ବାଲଫୁରୁଫୁରୁ ଚେପ୍‌ଟା ନାକ ହାଡ଼ୁଆମୁହଁ କଳା ମିଚ ମିଚ ଡେଙ୍ଗା ଲୋକଟି, ବାହାଦୁର୍ ସେ—ପବନ ବେଗରେ ଧାଏଁ ପଥର ପରି ମାଣିଷଟା । ହେଇ ବଲ୍ ଛଡ଼େଇ ନେଲା । ଗୃହିଆଡ଼ୁ ପାଟି—"ଆରେ କନ୍ଧଆ ମାରି ନେଲାରେ !" କନ୍ଧ କି ସେ ? ନେହେଉ ଦେବ ଏଥର । ଦେ, ଦେ, ଲଗା କିକ୍ । ଦେ ଗୋଲ୍ ଦେ ଦେ— !

ଖେଳର ନିଶାରେ ମତ୍ତ ନଟବର । ଗ୍ରେଡେଇ ଛପି ନୂଆ ଚେତନା ମନକୁ ଅଧିକାର କରି ବସିଛି । ପ୍ରକୃତରେ ନୂଆ କି ? —ନା, ଅତି ପୁରୁଣା ଆଦିମ ପ୍ରବୃତ୍ତି । ମାରପିଟି ଛଡ଼େଇ ନେବାର । ଧରି ରଖିବାର ଶତ୍ରୁକୁ କଡ଼ିବାର । ଯାହା ବାଧା ବିପଦ ଆସୁ ଆପଣା ଅଭୀଷ୍ଟ ଲାଗି ପିଠି ପଥର କରି ଅଣ୍ଟାଭିଡ଼ି ଲାଗି ପଡ଼ିବାର । ସେମିତି ଲାଗେ ଗୃହୀ । ଲାଗି ରହିଛି ବୃନ୍ଦଆବୋଉ । ଗାଁ ମକଦ୍ଦମା, ସାକ୍ଷୀ ମେଳ । ଜମି ଉଜୁଡ଼େଇ ଘର ଉଚ୍ଛନ୍ନ କରି ଗୋଟାଏ ବାଧା, ଫଟା ଚଟକଣାର ପ୍ରତିଶୋଧ ନେବାକୁ ତିନି ତିନି ବର୍ଷ ଧରି ମାଲିମକଦ୍ଦମା—ସେଇ ତ ସେ—ଦଳରେ ରହି ଆତ୍ମପ୍ରକାଶର ଚେଷ୍ଟା । ଦେ ଗୋଲ୍—ଦେ ଦେ । ମନ ଅଜାଣତରେ ଜୟପୁର ପଟ ସହିତ ନଟବର ନିଜକୁ ମିଶେଇ ସାରିଲେଣି, କେବଳ ଜୟପୁର ପଟ ନୁହେଁ, ସେଇ କାଳିଆ ଡେଙ୍ଗା ଖେଳୁଆଡ଼ ସହିତ ଯେପରି ନିଜେ ସେ, ତା ସୁଖଦୁଃଖ ତାଙ୍କର ସୁଖଦୁଃଖ । ସେ ଅଚିହ୍ନା ହେଉ ପଛେ, ନଟବରଙ୍କ ନିଜ ମନର ଗୋଟାଏ ଦିଗ ମୂର୍ତ୍ତିମନ୍ତ, ମନ ସାଫଲ୍ୟ ଖୋଜେ ତାହାର ସାଫଲ୍ୟରେ । ତେଣୁ ଉଚ୍ଚାଟ ହୋଇ ଚିତ୍କାର—"ଲଗା ଲଗା ଦେ ଗୋଲ— ଦେ—ଦେ— ।"

ନଟବର ଉଦ୍ବୁଙ୍ଗ ଗଲେଣି—କନ୍ଧୁଣିଆଁ ମାରି ଠେଲିପେଲି ଲୋକଙ୍କ ଟପି ଆଗକୁ ।

କିନ୍ତୁ ଏତେ ପାଟି ସତ୍ତ୍ୱେ ଗୋଲ୍ ହେଲାନାହିଁ, ଫସ୍କି ଗଲା । ଦୂରରୁ ଜଣେ ଭିଡ଼ନ୍ତୁ ଲାଇନ୍ ବାହାରକୁ ଠେଲି ଠେଲି ଆସୁଛି । ନିଜେ ପଛେଇ ଚଳେ, ମନ ଦୁଃଖ । ଜୟପୁର ପାରିଲା ନାହିଁ ।

କେତେବେଳୁଣିକା ହାଫ୍ ଟାଇମ୍ କଟିଗଲା । ସୋଡ଼ା ପିଇସାରି କୁଲି କୁଲି ଲେମ୍ବୁ ଖାଇ ଝାଳମାରି ପୁଣି ଯୋଦ୍ଧାମାନେ ସଜ ହେଲେ । ଏଥର ପଟ ଅଦଳ ବଦଳ । ନଟବର ଜୟପୁରର ସାଫଲ୍ୟପାଇଁ ମଙ୍ଗଳ କାମନା କରି ଠାକୁରଙ୍କୁ ଡାକି

ଏକାଗ୍ର ହୋଇ ଖେଳ ଦେଖିବାକୁ ଲାଗିଲେ । ଏଥର ଜୟପୁର ଆଗକୁ ଗ୍ରସି ଚାଲିଛି । ହେଇ, ନେଇ ଚାଲିଲେ ବଲ୍ । ଗୋଲ !!

ନଟବର ଛତାକୁ ଉପରକୁ ଟେକି ପୁଣି ଧରି କୁଦାମାରି ଆନନ୍ଦ ପ୍ରକାଶ କଲେ । ଏଠି ସେଠି ଅନେକ ସେପରି ନାଚୁଛନ୍ତି କେହି କେହି । ଦର୍ଶକ-ମଣ୍ଡଳୀରେ ଘୋର ବିଶୃଙ୍ଖଳା, ଘୋର ଯୁକ୍ତିତର୍କ, ପାଟି । ଥୋକେ ଜୟପୁର ପଟ ଥୋକେ ବାରିପଦା ପଟ । ଏ ପାଖ 'ଅପ୍ ଅପ୍' କହି ଉତ୍ସାହ ଦେଲା ସରିକି ଆରପାଖ 'ଡାଉନ୍ ଡାଉନ୍' କହି ସାନ କରିବାର ଚେଷ୍ଟା ।

ତେଣେ ଖେଳ ଲାଗିଛି ଘମାଘୋଟ । ଉଭୟ ପକ୍ଷ ଜାଗ୍ରତଆଖି । ଥରେ ଏ ପଟ ମାଡ଼ିଗଲେ, ଥରେ ଆରପଟ ମାଡ଼ି ଆସୁଛନ୍ତି ।

ଜୟପୁରର ସେହି କଳାଲୋକଟି ବଲ୍ ନେଇ ଛୁଟିଛି । 'ଅପ୍ ଅପ୍'— ନଟବର ବ୍ୟତିକ୍ରମରି ସ୍ୱହିଁ ଚିତ୍କାର କରୁଥାନ୍ତି, 'ଅପ ଅପ୍ ଜୟପୁର—' କିଏ ଜଣେ ପାଟି କରୁଛି—"ଡାଉନ୍ ଡାଉନରେ ଘୋଡ଼ା ଅପ୍ ବାରିପଦା" ଚଳୋଇଛନ୍ତି ବର୍ହେଁ ଦୁଇ ପ୍ରକାର । ଆଉ ଜଣକ ଚିତ୍କାର କରୁଛି—"ଗଲା ଗଲାରେ ଘୋଡ଼ା, ଧର ଧର ।" କଥାଟା କାଟିଲା, ନଟବର ବୁଲିପଡ଼ିଲେ ।

"କାହାକୁ ଘୋଡ଼ା କହୁଚ ?"

"ହେଇ ଯୋଉଁ ବଡ଼ ବଡ଼ ବାଳ । ଆରେ ଧରରେ, ଘୋଡ଼ା ଗଲାରେ—"

"ମୁହଁ ସମ୍ଭାଳି କଥା କୁହ ।"

"କାହିଁକି ? ତମେ କଣ ଘୋଡ଼ାର ବଡ଼ଭାଇ ହାତୀ ବୋଲି ନା କଣ ?"

"ଆରେ ତୁ ତ ଓଟ—"

"ଆଉ ତୁ ତ ଗଧ, କେଡ଼େ କେଡ଼େ କାନ ହେଇଚି ।" ସେହି ମନ ଅଜାଣତରେ ଆପଣା ବାଁ ହାତଟା ଜୋର୍‌ରେ ବସିଥିଲା ସେ ଲୋକଟାର ଗାଲରେ । ସରୁଆ ହାଡ଼ୁଆ ଲୋକଟା, ପୁଳାଏ ଦାଢ଼ି, ଟାକୁଆ ଗାଲ, ଚଷମା । ମୁଣ୍ଡରେ ପଠାଣ ଟୋପି । ଅନଭ୍ୟସ୍ତ ଗୋଟାଏ ବାସ୍ପା ବସିଲା ତାହାରି ଗାଲରେ, ପାଟିବାଟେ ରକ୍ତ ବାହାରିଲା, ଚଷମାଟା ଛିଟିକି କରି ପଡ଼ୁ ପଡ଼ୁ ଅଳ୍ପକେ ବଞ୍ଚିଗଲା । ଲୋକଟା ସେହି ରକ୍ତବୁହା ପାଟିରେ ଚିତ୍କାର କଲା "ଫଜ୍ଲୁ ଭାଇ, ମାର୍‌ଡାଲ୍‌ରେ ।" ହୁହୁଁ ହୁହୁଁ ରେ ରେକାର କରି ଦଳେ ଲୋକ ଉଠି ଆସି ପହଞ୍ଚିଗଲେ । ଚାରିଆଡ଼େ ଖାଲି "ମାରେ ମାରେ" ରବ । ଦେଖାଦେଖି ତାଙ୍କର ଏକ ବିରୋଧିଦଳ ଉଠି ଠିଆ ହେଲେ । ଆଖି ପିଛୁଳାକେ ଲାଗିଗଲା ଫୌଜଦାରୀ । ବିଧା, ଠେଙ୍ଗା, ଟେକାବୃଷ୍ଟି, ଠେଲାପେଲା । ହୋ, ହା ଚିତ୍କାର, ନାନାଜାତି । କିଏ ବାଡ଼େଇ ଲାଗିଛି, କାହାକୁ ବାଡ଼ୋଉଛି ଭାବିବାକୁ ତର ନାହିଁ । କିଏ ହୁଁ ହୁଁ ରହ ରହ କହୁ କହୁ ତା ପିଠିରେ ବସୁଛି ଘୁମ୍‌ଗାମ୍ । ଭିଡ଼ ଭିତରେ ଭେଁ ଭାଁ ହୋଇ ଛୁଆ

ଚାହୁଛନ୍ତି । କିଏ ଫଲୋଉଛି । ହଠାତ୍ ଠେଙ୍ଗାବାଡ଼ି ସହ ପୁଲିସ ଫଉଜର ପ୍ରବେଶ । "ହଟ୍ଟୋ—ହଟ୍ଟୋ, ଭାଗୋ—ଭାଗୋ ।"

ଭିଡ଼ ପାତଳ ହେଉଛି । ମୁଣ୍ଡରେ ମାଡ଼ଖାଇ ମୁଣ୍ଡ ଫାଟି ରକ୍ତ ବୋହୁଛି କି ନାହିଁ ଦେଖିଲା ନଟବର । ପୁଲିସ ଲାଠି ଧୀରେ ଧୀରେ ପଡ଼ୁଥିଲା, ଟିକିଏ ନାକୁ ଫାଟିଗଲା । ଯା' ହେଉପଛେ, ଯୁଦ୍ଧ ଭାଙ୍ଗିଗଲା । ପଡ଼ିଆ କରରେ ଢିପ ଉପରେ ସଡ଼କ ବଙ୍କେଇଛି । ବାରିପଦା ଗୋଲ୍ ଦେଲା । ଗହଳି ହୋଇ ଶୁଭୁଛି ଗର୍ଜନ—"ଗୋଲ୍...ଅଫ୍ ବାରିପଦା... "

କାହିଁ, ମନରେ ଇଚ୍ଛା ଆସୁ ନାହିଁ ତ ।

ନଟବର ଥଣ୍ଡା ମୁଣ୍ଡରେ ବସାକୁ ଲେଉଟୁଛନ୍ତି ।

କେବଳ ବଲ୍‌ର୍ ଫାଳେ ମୁଣ୍ଡରେ ଲାଗିଯାଇଛି । ମଫସଲର ସବୁଦିନିଆଁ ଆଶାବାଦୀସୂଜ ଆଉଣ୍ଡି ନଟବର ଭାବ ଭାବ ଯାଉଛନ୍ତି—କେତେ ଟେଷ୍ଟ ଆଜି କଟିଗଲା ଏହିବାଟେ । ଚୂନାବୋଉ ଶୁଣିଲେ କଣ କହିବ !



# ନାଁ ମନେ ନାହିଁ

ହଠାତ୍ ଦିନେ ସକାଳ ଆଠଟାବେଳେ ଅଶୋକ ଅନୁଭବ କଲା, ତା'ର ସ୍ମରଣରେ କିଛି ଗୋଳମାଳ ଘଟିଛି ; ନାଁ ମନେ ରହୁନାହିଁ । ଅଶୋକ ସଭ୍ୟ-ସମାଜର ଜଣେ ସର୍ବବ୍ୟାପୀ ଜୀବ; ରାସ୍ତାକୁ ବାହାରିଲେ ସହରର ପ୍ରଧାନ ଅପ୍ରଧାନ ରାସ୍ତା ସମେତ ଦିନକେ ଅନ୍ତତଃ ତା'ର ଦେଖା ମିଳିପାରେ ଛଅ ଥର । କେଉଁଠି ପ୍ରବଳ ବେଗରେ ତା'ର ପୁରୁଣା ହର୍କ୍ୟୁଲିସ ସାଇକଲ ଖଣ୍ଡି ଚଢ଼ି ଉଡ଼ କଟେଇ ସେ ଚାଲିଥିବ । ସୁସ୍ଥ ସୁଶ୍ରୀ ନଉଯୋଆନ୍ ଭେଣ୍ଡା, ସାଇକ୍ଲ ଚଲାରେ ଖୁବ୍ ବୀର ଦର୍ପ, ସାଇକ୍ଲର ପୁରୁଣା ହ୍ୟାଣ୍ଡେଲରେ ଧଳା ଟକ୍ ଟକ୍ ଏକ ପ୍ରକାଣ୍ଡ ଗୋଲ ଘଣ୍ଟି, ଘୋଡ଼ାଗାଡ଼ିର ଘଣ୍ଟି ପରି ସେ ଅବାଜ କରେ ଠଣଣ ଠଣଣ ଠଂ । କେଉଁଠି ପାନ ଦୋକାନ ପାଖେ ସେ ନୂଆ ସିଗାରେଟ ଏକ ପ୍ୟାକେଟ କିଣୁଥିବ, କେଉଁଠି ରାସ୍ତା ବନ୍ଦ କରି ସାଇକ୍ଲ ଉପରେ ପିଠି ନୁଆଁଇ ଦେଇ ବନ୍ଧୁ ଦଳେ ଭେଟିଲାଇ ସେ ରାଜ୍ୟର ବିଭିନ୍ନ ସମସ୍ୟା ଉପରେ ସ୍ୱାଧୀନ ତୁଣ୍ଡରେ ଟାଣୁଆଁ ବକ୍ତୃତା ଦେଉଥିବ, ମତାମତ ଶୁଣୁଥିବ, ଗୋଲ ଗୋରା ମୁହଁରେ ପ୍ରଜାପତି ନିଶ ତଳେ ଧୋବ ଦାନ୍ତ ଫାଙ୍କରେ ସିଗାରେଟର ଧୂଆଁ ଛାଡୁଥିବ ମଠେଇ ମଠେଇ, ଦୂରରୁ ଜାଣିହୁଏ । କାରଣ ସେ ନାତିଉଚ୍ଚ ଜନଗୋଷ୍ଠୀରେ ଅପେକ୍ଷାକୃତ ଡେଙ୍ଗା ଓ ତା'ର ଓସାର ଗ୍ରୀବ । କେଉଁଠି ସେ ସାଇକ୍ଲଟିକୁ ହାତରେ ଧରି ଦେହ ସିଧା କରି ମାର୍ଚ୍ଚ କଲା ଭଙ୍ଗୀରେ ଗୋଟିଏ ଗ୍ରେଟ ଦଳ ସଙ୍ଗେ ଚାଲିଚାଲି ଯାଉଥିବ ଏବଂ ସବୁଠି ବାଟ ମଝିରେ, ରାସ୍ତା କଡରେ, ଘରର ପିଣ୍ଡା ଉପରୁ, ଚଳନ୍ତା ଗାଡ଼ିରୁ "ନମସ୍କାର ଅଶୋକବାବୁ, ନମସ୍କାର, ନମସ୍କାର ।"

ସୁତରାଂ, ହଠାତ୍ ଯଦି ଏପରି ଲୋକର ସ୍ମୃତିନାଶ ହୁଏ ଯେ ନାଁ ମନେ ରହେ ନାହିଁ, ବିପଦ ନିଶ୍ଚୟ ।

ଅବଶ୍ୟ ତା'ର ସ୍ମରଣଶକ୍ତିରେ ଅନ୍ୟ କୌଣସି ଉପଦ୍ରବ ଘଟିନାହିଁ, କେବଳ ନାଁ ଭୁଲିବା ଛଡ଼ା । ପରିସ୍ଥିତି ବିଷୟରେ ସେ ସମ୍ପୂର୍ଣ୍ଣ ସଚେତ, ତା'ର ବୈଷୟିକ ଜ୍ଞାନର ଏତେ ଟିକିଏ ବି କ୍ଷୟ ହୋଇନାହିଁ, ସମାନ ଭାବେ ସେ ଆଗପରି ଚଳାଇପାରୁଛି ତା'ର ଓକିଲାତି ବୃତ୍ତି, ସାଧାରଣ କିଛି କିଣାକିଣା ବେପାର, କିଛି ରାଜନୀତି ଚର୍ଚ୍ଚା ଏବଂ ନାଁ ବି ତା'ର ସବୁ ଭୁଲି ହୋଇନାହିଁ; ପର୍ବତର ନାଁ ହିମାଳୟ, ଦେଶର ନାଁ ଭାରତବର୍ଷ, ନଈ ନାଁ କାଠଯୋଡ଼ି, ସେହିପରି ଦେଶର ନାମଗଣ୍ୟ ଲୋକଙ୍କ ନାଁ । ଆଲୋଚନା ପଢ଼ିଲେ ଖବରକାଗଜର ବଡ଼ ବଡ଼ ନା

ଟିକଟିକ ହୋଇ ତା'ର ମନେ ଅଛି । ସେ ଖେର୍ ଓ ଖାରେ ଏ ଦୁଇ ନାଁର ଦୁଇ ଲୋକଙ୍କ ବିଷୟରେ ଅଲଗା ଅଲଗା ସବୁ କହିପାରେ; ଯେହିପରି କାଶିଅପ୍‌ପା ଓ କୁମାରପ୍‌ପା । କିନ୍ତୁ ଭୁଲିଯାଉଛି ସାଧାରଣ ଲୋକଙ୍କ ନାଁ, ଚିହ୍ନାଜଣା, ବନ୍ଧୁ-ବାନ୍ଧବ, କିଏ ସାଙ୍ଗପଢ଼ୁଆ, କିଏ ସହକର୍ମୀ, କାହାଠୁ ଟଙ୍କା ଧାରିଛି ତ କାହାଠି ପାଉଣା ଅଛି କିଛି, ଏହି ନିତିଦିନିଆଁ ଲୋକେ—ଯାହାଙ୍କ ବିଷୟରେ ସେ ସବୁ ଜାଣେ । ସେମାନେ ତା ପକ୍ଷରେ ଖେର୍ ବା ଖାରେ ନୁହନ୍ତି, ନୁହନ୍ତି ହିମାଳୟ ବା ଭାରତବର୍ଷ, ଅଥଚ ନିଶ୍ୱାସ ନେଉଥିବା ପବନ ପରି, ପିଉଥିବା ପାଣି ପରି ସେମାନେ ତା'ର ସବୁଦିନିଆ—ନାଁ ମନେ ନାହିଁ ।

ସକାଳ ଆଠଟା ବେଳ । ଶାଗବିକା ବୁଢ଼ାଟି ଆସିଛି । ଚାହା ଖାଉ ଖାଉ ଅଶୋକ ମୁହଁ ଟେକି ଚାହିଁଲା । ମୁଣ୍ଡରେ କୋଉରି ଠେକା, ଗୁଡ଼ବାଳ ଧଳା, ପେଟ ଉପରେ ଯାଏ ଅଗ୍ରାଏ । ଏଇ ତ ସେ । କିଏ ନାଁଟା କି ? ଗୋପିଆ ? ମଧୁଆ ? ଜଗୁଆ ? ନୁହେଁ । ବୁଢ଼ା ବିଷୟରେ ସବୁ ସେ ଜାଣେ । ଜାଣିବାର କାରଣ ଅଛି ବି । ଭାବିଲେ ଦିଶିଯାଏ ତା'ର ଦି ବଖୁରିଆ ଚାଳଘର, ବୁଜା ବାଡ଼ । ସାହିଠୁ ଅଲଗା । ବୁଢ଼ାର ଯୁବତୀ ଝିଅ ସ୍ୱାମୀଠୁ ଅଲଗା । ଦିନେ ଆସି ବୁଢ଼ା କହିଥିଲା—"ବାବୁ, ମୋ କଥା ଟିକିଏ ବୁଝିଦେବ ନାହିଁ ? ବାଡ଼େଇ ପିଟି ଘରୁ ତଡ଼ିଦେଲା ; ଆଉ ଗୋଟାଏ ଆଣିଲା । କେବେ ସେ ଦୁଧରେ ଆଣ୍ଠୋଇ ଘିଅରେ ପାଣି ସାନ୍ଧୁଚି, ଏବେ ସେ ଉପାସରେ ଗଡ଼ୁଚି । ଦିଅନ୍ତୁ ଭଲ କାନ ମୋଡ଼ି ଖୋରାକ ପୋଷାକ ଅସୁଲ କରି ବାବୁ, ଜମ ଯଶ ରହନ୍ତା, ବୁଢ଼ା କଇଲଣ କରନ୍ତା ।"

"ହଉ, ସିବା ତୋ ସାଙ୍ଗେ ତୋ ଘରକୁ ଦିନେ ; ଝିଅଠୁ ସବୁ କଥା ବୁଝି ତା ପରେ ଉପାୟ କରିବା ।"

ଯାଇଥିଲା । ସେ ସ୍ମୃତି ବି ମନେ ଅଛି । ଭଗବାନ ଅବହେଳାରେ ସଢ଼ିବାକୁ ଏତେ ରୂପ ଦିଏ ? ପାଠ ନ ପଢ଼ିଥିବା ସାଧାରଣ ମନରେ ଦିଏ ଏତେ ଚତୁରପଣ ପୁଣି ଏତେ କବିତା ? ବର୍ଷେକାଳ ସେମାନଙ୍କ ସଙ୍ଗେ ସମ୍ବନ୍ଧ । ଖୋରାକ ପୋଷାକ ହେଲା, ଆହୁରି କିଛି ବି ହେଲା, ଶେଷରେ ଦିନେ ଅକାଳରେ ବସନ୍ତ ରୋଗରେ ଅଦିନରେ ମଉଳି ପଡ଼ିଲା ଫୁଲ । ଝିଅ ଚାଲିଗଲା । ବୁଢ଼ା ତଥାପି ଶାଗ ବିକୁଛି । ତା'ର ସ୍ମୃତି ଭୁଲି ହୁଏ ନାହିଁ । କିନ୍ତୁ ନାଁଟି କଣ ? ଉମା, ରମା, ମଲ୍ଲୀ, ମନେ ନାହିଁ ?"

"ଆରେ ହେ, ହେ ବୁଢ଼ା !"

ନାଁ ପଚାରିବ ? କାଲେ କଣ ଭାବିବ ଏ ବୁଢ଼ା । ଯୋବଧାଉଳିଆ ବାବୁ ଯେତେ ସମସ୍ତଙ୍କର ଏମିତିଆ ମନ ; କାମ ସରିଗଲେ ମନରୁ ଅନ୍ତର ! ଏତେ ସ୍ନେହ, ଆଦର; ଏତେଦିନର ସୁଖର ସ୍ମୃତି । ମନର ତଳେ ତଳେ ଅଦ୍ୟାପି ସେ ରହିଚି ।

ଖୁବଲେ ଅଣି ପରିଚିଆ ହୁଏ । ତାର ନାଁ ମନେ ନାହିଁ ! ଆପଣାର ମନ କହୁଛି, ପଚାରିଦେଲେ ବୁଢ଼ା କ୍ଷମା କରିବ ନାହିଁ । ହଲଦିଆ କୋଟରିଆ ଆଖି ଗାରଡ଼େଇ ଚାହିଁବ, ଯେମିତି ସେ ଚାହୁଁଥିଲା ତା'ର କୋଉଁ କଥା ପଡ଼ିଲେ ।

"କଣ କହୁଚ, ବାବୁ ?"

ପାଖେ କଥା ବାଆଁରେଇ ପାଖେ ଅଯାଚିତରେ ଛପିଯାଇ ଅନ୍ୟମନସ୍କ ହେଲା ପରି ଅଶୋକ କହିଲା, "ପଚାରୁଚି, ଅମୃତ୍ତା ବକ ଆଣିଛୁ କ ?"

"ଅମୃତ୍ତା ? ଅମୃତ୍ତା ତ କେବେ ଆଣେ ନାହିଁ, ବାବୁ ! ଏ ଦିନେ କ ଅମୃତ୍ତା ? କଷି ବ ଧରି ନ ଥିବ ଗଛରେ ।

ଆଶ୍ଚର୍ଯ୍ୟ ହୋଇ ବୁଢ଼ାଟି ଅନେଇଁ ରହିଲା ।

ଅଶୋକ ଉଠି ଚାଲିଗଲା ଘର ଭିତରକୁ ।

ସେତେବେଳଠୁ ସେ ଯାଉଚି ଦେଉଛି, ପ୍ରକୃତରେ ତା'ର ନାଁ ମନେ ରହୁନାହିଁ । କେବଳ ଆଜି ନୁହେଁ, ଖୁବଲେ ଜଣାପଡୁଛି, କେତେଦିନ ହେଲା ଏପରି ଅବସ୍ଥା ତା'ର ଆସିଲାଣି । କାଲି ସନ୍ଧ୍ୟାରେ ଜଣେ ବଡ଼ଲୋକଙ୍କ ଘରେ— ପାର୍ଟିରେ ଜଣେ ଆଗନ୍ତୁକଙ୍କ ଆଗରେ ଦୁଇଜଣ ଭଦ୍ରମହିଳାଙ୍କ ଚିହ୍ନା କରେଇ ଦେଇ ଦେଇ ସେ ସେମାନଙ୍କ ସ୍ୱାମୀ ଦୁହିଙ୍କ ନାଁକୁ ଓଲଟପାଲଟ କରିଦେଇଥିଲା—"ଏହେ ହେଉଛନ୍ତି ମିସେସ୍ ବିଶ୍ୱନାଥମ୍, ଏହେ ମିସେସ୍ ପଣ୍ଡୁକିତନ୍ ।" ଠିକ୍ ତା'ର ମୁହଁ ଉପରେ ମିସେସ୍ ବିଶ୍ୱନାଥମ୍ ଚିତ୍କାର କରିଉଠିଥିଲେ, "ଆପଣ ଭୁଲ କହିଲେ ଯେ, ମିସେସ୍ ପଣ୍ଡୁକିତନ୍ ହେଉ ସେ ।" ଆଗନ୍ତୁକ ତା'ର ମୁହଁକୁ ହସି ହସି ଚାହିଁଥିଲେ, ଯେପରି କ ତାକୁ ସେ ବୁଝେଇବାକୁ ଚାହାନ୍ତି ଅପରପକ୍ଷ ଜ୍ଞାନର ପରିଣାମ ।

ତା ପରେ ଆଜି ସକାଳେ ଏ ବୁଢ଼ା ।

କେବଳ ଏତକ ନୁହେଁ, ରାସ୍ତାକୁ ବାହାରି ଚିହ୍ନା ଲୋକଙ୍କୁ ଅନେଇଁ ନାଁ ଖୋଜେ, ଦେଖେ, ନାଁ ମନେ ନାହିଁ । ଯେତେ ଅଧିକ ଖୋଜେ ସେତେ ଅଧିକ ଭ୍ରମରେ ପଡ଼େ । ଠିଆ ହୋଇଛନ୍ତି ମାଧବବାବୁ । ପାନ କିଣୁଛନ୍ତି । ପାଞ୍ଚମାସ ତଳେ କହି ଦି'ଖଣ୍ଡ ପତ୍ର ଫେରେଇଦେବେ ବୋଲି ନେଇଥିଲେ, ତା ପରେ ଆଉ ଦେଖା ନାହିଁ । ଅଶୋକ ଚିତ୍କାର କଲା, "ଶଙ୍କରବାବୁ ହୋ ଶଙ୍କର ବାବୁ !" ମାଧବବାବୁ ଶୁଣୁନାହାନ୍ତି ; ନିରୁଦ୍‌ବିଗ୍ନ ମନରେ ପାନ କିଣୁଛନ୍ତି—"ଭୁଲିରେ ଖଇର ଦେଇଦେଲ ଯେ ! ଆଉ ଖଣ୍ଡେ ଛାଙ୍କ । ଦେଖ, ଚୂଆମିଶା ଗୁଣ୍ଡି ଦିବ ନାହିଁ ।" ବାରମ୍ବାର 'ଶଙ୍କରବାବୁ' 'ଶଙ୍କରବାବୁ' ଡାକିଲେ ବି ଟିକିଏ ଅନୋଉନାହାନ୍ତି । ଅଶୋକ ପହଞ୍ଚୁ ପହଞ୍ଚୁ ସେ ପାନ କିଣିସାରି ସାଇକେଲରେ ପାଦ ଥୋଇଲେଣି । ଆଗକୁ ଓଗାଳି ଅଶୋକ କହିଲା, "କଣ ଆଜ୍ଞା, ଡାକିଲେ ବି ଶୁଣୁନାହାନ୍ତି ଯେ ? ଖୁବ କାର୍ଯ୍ୟବ୍ୟସ୍ତ ନିଶ୍ଚୟ ?" ହସି ହସି ମାଧବବାବୁ କହିଲେ, "କାର୍ଯ୍ୟର କଥା ଆଉ କହନ୍ତୁ ନାହିଁ ଆଜ୍ଞା,

ଆପଣଙ୍କ ପରି ସ୍ୱାଧୀନ ଲୋକ ବୋଲିଥିଲେ ଆଉ କଥା ନ ଥିଲା । ଯା ହଉ, ଦେଖା ହେଲେଁ ବହୁତ ଦିନରେ । ସବୁ ଭଲ ତ ?''

''ସ୍ୱାଗତ, ''ଅଶୋକ କହିଲା, ''ଡାକି ଡାକି ଯୋଉଠୁ ଜବାବ ନ ପାଇଲି, ଭାବିଲି ଆପଣ ଭୁଲିଗଲେଣି ।''

''ମତେ ଡାକୁଥିଲେ ଆପଣ ?''

''ହଁ, ଖୁବ୍ ବଡ଼ପାଟିରେ ।''

''ଆଶ୍ଚର୍ଯ୍ୟ ! ତେବେ ମୋର କାନ ଦି'ଟା ଥିଲା କୁଆଡ଼େ ? ହେଇ ତ ଶୁଣୁଥିଲି ଡେଙ୍ଗୁରା ଦେଇ ଦେଇ ଜଣେ ଗଲା, ମ୍ୟୁନିସପାଲିଟି ହତାରେ ଗୋରୁ ପୂରେଇଲେ କାଞ୍ଜି ଆଉଦାରେ ଦେବେ । ତା ପରେ ଡାକି ଡାକି ଗଲା ପଣିବାଲା 'ଲିବ—ଲହର ଜେଣ୍ଟି' । ହଁ, ଭୁଲିଯାଉଚି, ଜଣେ କିଏ 'ଶଙ୍କରବାବୁ ଶଙ୍କରବାବୁ' ପାଟି କରି କରି ଗଲେ । ବୋଧହୁଏ ପଛରେ ଦୋକାନ ଅଛି ଶଙ୍କର ପାନବାଲାର; ତାକୁହିଁ ଖୋଜୁଥିବେ । ଆଜିକାଲି ସମସ୍ତେ ବାବୁ କିନା ! —ଆଉ ମତେ କେତେବେଳେ ଆପଣ ଡାକିଲେ ?''

ଅଶୋକର ମୁହଁରୁ ଝାଳ ବୋହିବାକୁ ଆରମ୍ଭ କଲାଣି । ଜଣାଗଲା, ଏ ଶଙ୍କରବାବୁ ନୁହନ୍ତି । ନାଁ ଅନ୍ୟ କିଛି । ''ଗୁଡ଼'', ସେ କହିଲା, ''ମୁଁ ତ ଆଉ ବୋବାଉ ନ ଥିଲି । ଆସ୍ତେ ଆସ୍ତେ ଡାକୁଥିଲି ।''

''ତେବେ ବି ନ ଶୁଣିବି କାହିଁକି ? କାନରେ କିଛି ଟୋପା ସୋରିଷତେଲ ପକାଏଁ, ଆଜ୍ଞା, ଡାକିଲେ ଆଉ ଥରେ କେମିତିଆ ଡାକୁଥିଲେ ।''

''ଥାଉ, ଆପଣ ଯାଉଛନ୍ତି କାନରେ ସୋରିଷତେଲ ପକାନ୍ତୁ । ନାକରେ ପକାନ୍ତୁ ନାହିଁ ତ ? ନହେଲୁ ସିଗାରେଟ୍ । ହଁ, ବହି ଦି'ଖଣ୍ଡି ପଢ଼ା ସରିଲା ?''

''କୋଉ ବହି, କହିଲେ ?''

ଫେର୍ ବିପଦ । ବହିର ନାଁ ମନେ ନାହିଁ । ''ସେଇ ମ, ଆପଣ ସେ ଯୋଉ ବହି ଦି'ଟା ମୋଠୁଁ ଆଣିଥିଲେ—ପଢ଼ିସାରିଲେଣି ଯଦି ଫେରେଇଦେଲେ ଭଲ ହୁଅନ୍ତା । ନ ପଢ଼ିଛନ୍ତି ଯଦି, ରଖନ୍ତୁ ଆଉ ସାତ ଆଠଦିନ, କଣ ହେଲା ?''

''ବଡ଼ ଆଶ୍ଚର୍ଯ୍ୟ କଥା ! ଅଶୋକବାବୁ, ଆପଣ ମତେ ବିଶ୍ୱାସ କରନ୍ତୁ, ମୁଁ ଆପଣଙ୍କର କୌଣସି ବହି ନେଇନାହିଁ । କି ନାଁ କହିଲେ—ସବୁ ବହି ତ ଦାଣ୍ଡଘର ଆଲମାରିରେ ଥାଏ ; ମୁଁ ହେଲେ ଖୋଜି ଦେଖିବି ।''

''ଥାଉ, ଆପଣ କଣ ଅନ୍ୟ କାର୍ଯ୍ୟରେ ଯାଉଛନ୍ତି, ନାଁ ଭୁଲିଯିବେ । ଆପଣ କେତେବେଳେ ଘରେ ଥିବେ, କହିଲେ ?''

''ଆଜି ତ ଛୁଟି, ବର୍ତ୍ତମାନ ବଜାରରୁ ବୁଲିସାରି ମୁଁ ଏଗାରଟା ପରେ ବରାବର ଘରେ ଅଛି । ଆପଣ ଆସନ୍ତୁ । ନିଜେ ଟିକିଏ ଖୋଜି ଦେଖିବେ ।

କାଳେ ବନ୍ଦ ଥାଏ । କଲୁ ମୋର ଠିକ୍ ମନେ ଅଛୁ, ବନ୍ଦ ନାହିଁ । ଆଣିନାହିଁତ, ଥିବ କୁଆଡ଼ୁ ? ଆପଣ ହେତୁ କରନ୍ତୁ । ହଉ, ନମସ୍କାର ।"

ସେ ଚାଲିଗଲା ପରେ ଅଶୋକ ତାଙ୍କ ପଛେ ପଛେ ଚାହିଁରହିଲା ବହୁତ ବେଳ । ରାଗ ଆସିଲା, ମଣିଷ ଏମିତି ଭୁଲୁଡ଼େଇ ଦେଇପାରେ ? ଦୁନିଆର ରାତି କଥା ଭାବି ଭାବି ଚାଲୁ ଚାଲୁ ମନର ଅନ୍ୟମନସ୍କପଣ ଭାଙ୍ଗିଲା କାହାର "ଅଶୋକବାବୁ, ଅଶୋକବାବୁ" ଡାକରେ । ଅତି ଆଗ୍ରହରେ ଦ'ହାତ ବଢ଼େଇ ଦେଇ ମାଡ଼ି ଆସୁଛନ୍ତି ବନ୍ଧୁବର । ହସରେ ସୁନାତାରରେ ବନ୍ଧା ଲମ୍ବ ଲମ୍ବ ପୋକରା ଦାନ୍ତ ଛବି । ଖଦ୍ଦେ ସାବକା ହାଓ୍ୱାଇ ସାର୍ଟ, ଖାକି ପ୍ୟାଣ୍ଟ, ମୁଣ୍ଡରେ ନାସ-ବର୍ଣ୍ଣର ଫେଲ୍ଟ ଟୋପି, ହାତରେ ଚମଡ଼ା ମୁଣି ।

"ହେଲେ,—ହେଲେ,—ୟୁ ସି—ୟୁ ସି—ଅଶୋକବାବୁ, କଣ କେମିତି ଚାଲିଚି, ଦୁନିଆର ଖବର କଣ, ହାଉ ଡୁ ୟୁ ଡୁ, ସବୁ ଭଲ ତ ?"

ଆଦୌ ମନେ ପଡ଼ୁନାହିଁ ଏ କିଏ ; ଅଥଚ ଲାଗୁଛି, ଚିହ୍ନା ଚିହ୍ନା । ଅଶୋକର ମନ ତାତ୍ପ୍ରଭାବେ ଭାବ ଲଗିଲା ସେ କିଏ ହୋଇପାରନ୍ତି ; ପାରିଲା ନାହିଁ ।

ଏଣେ ବନ୍ଧୁ—ଖାକି ପ୍ୟାଣ୍ଟ୍ର ପକେଟ୍ରୁ ସିଗାରେଟ୍ ଟିଣ କାଢ଼ି ବଢ଼େଇ ଧରିଲେ, କହିଲେ, "କେମିତି ? ୟୁ ସି—ବହୁଦିନ ପରେ । ହ୍ୟାଭ୍ ଓ୍ୱାନ୍, ତା'ପରେ ସବୁ ଭଲ ତ ?"

ଲୋକଟା କିଏ ? ଏତେ ଆପଣାର ପରି କଥା ହେଉଛି । ବେଶଭୂଷା, କଥାର ଭଙ୍ଗୀ, ଚେହେରା, ସବୁଥିରୁ ଅନୁମାନ ଉଠାଇ ଅଶୋକ ଅନୁମାନ କଲା, ଏ କେହି ଏ. ସି. ଏସ୍. ଓ. ସମ୍ଭବତଃ ଗଡ଼ଜାତରେ ପୋଷ୍ଟିଂ । ସି. ଏସ. ଓ. ନୁହନ୍ତି, ନୁହନ୍ତି ସୁପରଭାଇଜର, ନିଶ୍ଚୟ ଏ. ସି. ଏସ୍. ଓ. ହଠାତ୍ ଏ ସିଦ୍ଧାନ୍ତରେ ପହଞ୍ଚିବାର ବି ସେ ସ୍ଥୂଳ କାରଣ କିଛି ପାଇଲା ନାହିଁ । ଗୋଟାଏ କିଛି ଅନୁମାନରେ ବାଜେ, ତା'ପରେ ମନଯାକ ସତେ କି ଚହଲି ପଡ଼େ ; ଭାବେ, ଏଇ ଠିକ୍, ଏଇ ଠିକ୍ ।"

"କଣ ଆପଣଙ୍କ କଥା କହନ୍ତୁ ଆଗ, ବହୁଦିନ ପରେ ଦେଖା ।"

"ହଁ, ଚାଲିଚି ; ମନ୍ଦ ନୁହେଁ, ୟୁ ସି ।"

"ତା ତ ଚାଲିଥିବ । ତା'ପରେ ?"

"ୟୁ ସି—ଫାଦର ଇନ୍ ଲ' ଏକ୍ସପାୟାର୍ କଲେ ।"

"କରନ୍ତେ ତ, ବୁଢ଼ା ହେଇଯାଇଥିଲେ ।"

"ହ୍ୱାଟ୍ ଡୁ ୟୁ ମୀନ୍ ? ବୁଢ଼ା ! ପଚିଶଚାଳିଶ ବର୍ଷର ଲୋକଙ୍କୁ ବୁଢ଼ା କୁହାଯାଏ, ୟୁ ସି !"

"ବୁଢ଼ା ଆଜିକାଲି ସମସ୍ତିଙ୍କି କୁହାଯାଇପାରେ, ଆଜ୍ଞା, ଦୁନିଆର ଯେଉଁ ଅବସ୍ଥା, ମିଶା ତେଲ, ମିଶା ଘିଅ, ପାଣି ଦୁଧ ଖାଇ ସ୍ୱାସ୍ଥ୍ୟ ବି ଯାଉଛି । ଅର୍ଥଚିନ୍ତା କିନ୍ତୁ କାନ୍ଧୁ ମନ ଭାଙ୍ଗିପଡ଼ୁଛି । ଅବଶ୍ୟ ସେ ଚିନ୍ତା ଆପଣଙ୍କର ନାହିଁ ।"

ବନ୍ଧୁ କପଣ ଯେପରିକି ଅପ୍ରସ୍ତୁତ ହେଲେ; କହିଲେ, "ଗୁଡ଼ଲୁ, ଆମେ ବେଶି ଫର୍ମାଲ୍ ହେଇଯାଉଚୁ, ୟୁ ସି—"

"ଆଚ୍ଛା, ଏଥର ତେବେ ଇନ୍‌ଫର୍ମାଲ୍ ହେଉ। ଆପଣଙ୍କ କାମ କେମିତି ଚାଲିଚ ?"

ବନ୍ଧୁ ହସିଲେ, କହିଲେ, "ଆମ କାମ ଆପଣ ଖବରକାଗଜରୁ ଦେଖି-ପାରୁଥିବେ।"

"ଦେଖିଛୁ ତ। ତା ସତ୍ତ୍ୱେ ? ଆପଣ କଣ ଶୁଣୁଛନ୍ତି ?"

ବନ୍ଧୁ ମୁହଁ ଭୂକୁଞ୍ଚେଇଲେଣି। ଗମ୍ଭୀର ହୋଇ କହିଲେ, "କାମ ଚାଲିଚ ଯେମିତି ଚାଲିବା କଥା, ମୁଁ ଆଉ ଶୁଣିବି କଣ ?"

"ଆପଣଙ୍କର କଲେକ୍ଟର କେମିତି ଅଛନ୍ତି ?"

"କଲେକ୍ଟର ? ହ୍ୱାଟ୍ ଡୁ ୟୁ ମୀନ୍ ? ୟୁ ସି, କି କଲେକ୍ଟର ?"

ହଠାତ୍ ଅଶୋକର ଧୈର୍ଯ୍ୟଚ୍ୟୁତି ଘଟିଲା। ଲାଗିଲା, ତେବେ ଏ ଲୋକ ଏ. ସି. ଏସ୍. ଓ. ବି ନୁହନ୍ତି ! ତେବେ କଣ କିଏ ବାଜେ ଲୋକ ? ନା, କେଉଁ ଇନ୍‌ସୁଅରେନ୍‌ସ ୱାଲା, 'ଆମ କାମ ଆପଣ ଖବରକାଗଜରେ ଦେଖିପାରୁଥିବେ', ହାତରେ ମୁଣି। ଉପରେ ପଡ଼ି ଆକ୍ରମଣ, ହଠାତ୍ ସିଗାରେଟ ଯଚ୍ଚ, ଯାବତ କଥାର ଫନ୍ଦି। ସମସ୍ତ ବନ୍ଦେ ଗଲାଣି। ଅଶୋକ ବିରକ୍ତ ହୋଇ କହିଲା, "କ୍ଷମା କରିବେ, ଆଜ୍ଞା, ଆପଣଙ୍କ ନାଁଟା କଣ କହିଲେ ? ମୋର ଆଦୌ ମନେ ପଡ଼ୁନାହିଁ।"

ବନ୍ଧୁ ମୁହଁ ଲମ୍ବେଇ ସୁ-ସୁ ଶବ୍ଦ କରି ପବନ ଶୋଷିଲେ ଦୁଇ ମିନିଟ। ବଡ଼ ବଡ଼ ଆଖିର ଦୃଷ୍ଟି ଅଶୋକବାବୁଙ୍କ ମୁହଁରେ ସ୍ଥିର ରଖିଲେ। କହିଲେ, "ଗୁଡ୍ ହେଭ୍‌ନସ୍—ୟୁ ସି ! କି ତାଜୁବ କଥା ! ଭୁଲିଗଲେ ? ଆପଣଙ୍କ ସାନଭାଇକି ଟିଉସନ କରୁଥିଲି ଏକବର୍ଷ—"

"ଅନେକ ତ ପଢ଼ାଉଥିଲେ—"

"ଏକାଠି ଲ' ପରୀକ୍ଷା ଦେଲେ—"

"ସେ ତ ଅନ୍ତତଃ ଅଢ଼େଇଶ ଜଣ ଦେଇଥିଲେ।"

"ଆପଣଙ୍କ ବାପାଙ୍କ ସାଙ୍ଗେ ମୋର ଏତେ ଘନିଷ୍ଠତା—"

"ବାପାଙ୍କ ବନ୍ଧୁଙ୍କ ସଂଖ୍ୟା ଶୁଣିଲେ ଆପଣ ଆଶ୍ଚର୍ଯ୍ୟ ହେବେ।"

"ତା'ପରେ କଟକରେ ଦେଖାଦେଖି—କଥଣ ଆପଣ କହୁଚନ୍ତି, କିଛି ମନେ ନାହିଁ ?" ତାଙ୍କର ଆତ୍ମାଭିମାନ ଅପମାନ ବାଡ଼ରେ ଚିତ୍କାର କରିଉଠିଛି। କିନ୍ତୁ ଅଶୋକର ବିରକ୍ତି ବଢ଼ୁଛି। ସାଇକଲରେ ଏକ ଘୋଷରି ଦେଇ କହିଲା, "ଲମ୍ବ କାହାଣୀ ଶ୍ରେଷ୍ଟ କରିଦେଇ କହନ୍ତୁ ନା, ଆଜ୍ଞା, ଆପଣଙ୍କ ନାଁ—"

"ଓ ! ଆଇ ସି—" ବନ୍ଧୁ କହିଲେ, "ମୋ ନାଁ ନୀଳମାଧବ ଦାସ।

ଆଇ. ଏ. ଏସ ହେଲ ପରେ ବର୍ତ୍ତମାନ କାଶ୍ମୀର କମିଶନରେ ଅଛୁ । ଫାଦର ଭିନ୍‌ଲ ହଠାତ୍ ଏକ୍‌ସପାୟାର କଲେ କନା, ତେଣୁ ଛୁଟିରେ ଆସିଥିଲି, ୟୁ ସି । ଭୁଲିଗଲେଣି ତା ହେଲେ ? ହଉ, ଆପଣଙ୍କ ଦୟା—ନମସ୍କାର ।"

ଲଜ୍ଜାରେ ଥର ଥର ହେଲି ଅଶୋକ, କହିଲି, "ଓଃ, ଏତେ ଦିନ ଏତେ ରାତି ଏକାଠି ! ଆପଣ ଚପ୍ ଖାଇବାକୁ ଭଲ ପାଉଥିଲେ, ତେଣୁ ପାର୍କ ହୋଟେଲ—ନରବାବୁ—ଆଉ—ଗ୍ରାଣ୍ଡହୁଲ୍ ! ସବୁ ମନେ ଅଛି, ଆଜ୍ଞା ! ଆପଣଙ୍କୁ ଭୁଲିପାରେ ? ଆପଣ ଦୁଃଖିତ ହେବେ ଶୁଣି, ମୋର ନର୍ଭସ୍ ବ୍ରେକ୍‌ଡାଉନ୍ ହୋଇଛି । ସବୁ ଭୁଲି ଯାଉଛି । କ'ଣ କରିବ, କହନ୍ତୁ ?"

କିନ୍ତୁ ବନ୍ଧୁ ଯେପରିକି ବିଶ୍ୱାସ କଲେ ନାହିଁ—ବୁଲିପଡ଼ିଲେ—କହିଲେ, "ହଉ, ନମସ୍କାର ।"

"କାଶ୍ମୀର ପହଞ୍ଚି ଚିଠି ଦେବେ, ଆଜ୍ଞା !"

ବନ୍ଧୁ ନ ଶୁଣିଲାପରି ଚାଲିଯାଉଥାନ୍ତି ।

ତା'ପରେ ରାସ୍ତାରେ ସବୁଦିନ ପରି ଶୁଣିଆସୁ "ନମସ୍କାର, ନମସ୍କାର", "କି ଅଶୋକବାବୁ, କେମିତି ଅଛନ୍ତି ?" ଅଭ୍ୟାସ ଅନୁସାରେ ତା ତରଫରୁ ବି ପ୍ରତି-ନମସ୍କାର, ଦୁଃଖସୁଖ । କିନ୍ତୁ ଆଜି ସେ ନାଁ ଖୋଜୁଛି, ନାଁ ପାଉନାହିଁ । ଏମାନଙ୍କ ସଙ୍ଗରେ ଏତେ ସମ୍ବନ୍ଧ, ଏତେଦିନର ହସଖେଳ, ସୁଖଦୁଃଖର ଜୀବନଯାତ୍ରା । ଅଥଚ ନାଁ ମନେ ପଡ଼ୁନାହିଁ ! ଆଶଙ୍କା ହେଉଛି, ଯଦି ପୁଣି ସେପରି ଅବସ୍ଥା ଉପୁଜେ, ଯେତେବେଳେ 'କ'ର ନାଁକୁ ସେ 'ଖ' କହିବସିବ । ତେଣୁ କାହାକୁ ଡାକ ଛାଡ଼ିଲେ, ସେ ନାଁ ଧରୁ ନାହିଁ, କେବଳ ଓଡ଼ିଆ ସମ୍ବୋଧନ ପଦରେ କାମ ଚଳାଉଛି—'ହୋ', 'ହେ', 'ଆଜ୍ଞା', 'ରେ—'

ତଥାପି ଦ'ଖଣ୍ଡ ନେବାକୁ ପଡ଼ିବ । ଏଇ ସେ ବାବୁଙ୍କ ବସାଘର ନା କଣ ? ଜଗତରେ ଏତେଲୋକ, ସମସ୍ତଙ୍କ ଗୁଡ଼ଇତଳ ବିନା ବଞ୍ଚିପାରେ ନାହିଁ ଜଣକ । ଏକାପରି ମଣିଷ, ଏକ ନିଦାନ ଉପାଦାନ, ଦେଖିଲେ ଯେନ ପାର୍ଥକ୍ୟ ; ଯେତେ ଗାଇ ସେତେ ଘର, ଯେତେ କନିଆଁ ସେତେ ବର । କିନ୍ତୁ ନାଁ ମନେ ନ ରଖି ଚଳିପାରିବ କେମିତି ? ନାଁ ମନେ ରଖିବାକୁ ହେବ, ଲମ୍ବୁ ସେଥିପାଇଁ ଯେତେ ବ୍ରାହ୍ମୀଘୃତ, ଯେତେ ଟନିକ୍, ଯେତେ ଔଷଧ । ନାଁ,—ଚଳନ୍ତି ଦୁନିଆ ସହିତ ଗଣ ସହିତ ଜଣକର ଡୋର ; ତାକୁ ଅତୁଟ ରଖିବାକୁ ପଡ଼ିବ ଯେକୌଣସି ଉପାୟରେ । କିନ୍ତୁ ସବୁ ସବୁ ସ୍ମୃତି ଚହଲି ଚହଲି ଯାଉଛି, ବାମ୍ପ ହୋଇ ଉଡ଼ିଯାଉଛି ଉଗ୍ର କେନ୍ଦ୍ରକତା । ଏଇ ତ ସେ ବାବୁଙ୍କ ବସା ନା କଣ !

ଆକୁଳ ଆଖିରେ ଏପାଖ ସେପାଖ ଅନେଇଁ ଅଶୋକ ଭାବିଲାଗିଲି, ନାଁ କଣ ? କି ନାଁ ତାଙ୍କର ? ତଥାପି ଦ'ଖଣ୍ଡ ଅସୁଲ କରିବାକୁ ହେବ ଯେ କୌଣସିମତେ । ମନେ ପଡ଼ିଯାଏ—ସହରର ଭଦ୍ରଲୋକ ଏମାନେ ; ଖଣ୍ଡିଏ

ଖଣ୍ଡି ଏ କନ୍ଧ ନେଇ ତା'ପରେ ପାପୋଷ ପକାଇବାହିଁ ଏମାନଙ୍କର ସ୍ୱଭାବ । ଏଥିରେ ଦବିଲେ, ବ୍ୟକ୍ତିଗତ ସମ୍ପତ୍ତି ବଜାୟ ରହିବାହିଁ ଅସମ୍ଭବ । ସୁତରାଂ— ।

ଅଢ଼ କୋରରେ ଭାବ ଭୁଲିଗଲା ଅଶୋକ ଯେ ବଡ଼ ସହରରେ କାହା ଘରକୁ ଯାଇ ଡାକିଲେ ତାଙ୍କର ନାଁ ମନେ ରଖିବା ଆବଶ୍ୟକ ପଡ଼େ ନାହିଁ— କେବଳ ପଦେ 'ବେହେରା' ବା 'ପୁଷ୍ଟାଶ୍ୱ', ତା'ପରେ ଖାଲି ଦେହରେ ଲୁଙ୍ଗୀପିନ୍ଧା ବାବୁ କଣେହିଁ ବେହେରା ବା ପୁଷ୍ଟାଶ୍ୱ ବେଶରେ ଆସି ପଚାରିବେ, "କ'ଣ ଆଜ୍ଞା ? କାହାକୁ ଖୋଜୁଛନ୍ତି ?"

ସାଇନ୍ ବୋର୍ଡ ଦିଶୁଛି, ଇଂରେଜୀରେ ଲେଖା ହୋଇଛି "ଏମ୍. ସି. ମହାନ୍ତି" । ଅଶୋକ ଅସ୍ୱସ୍ତିର ହସଟାଏ ହସି ସେହି ଆଡ଼କୁ ଚାହିଁ ରହିଲା । ନାଁଟା ଯେପରିକି ମନେ ପଡ଼ୁ ନାହିଁ । ଜିଭ ଅଗରେ ଥାଇ ପାପୋଷ ହୋଇଯାଉଛି । ଏମ. ସି.—ମନଶ୍ଚନ୍ଦ୍ର, ମୋହନଚରଣ, ହଠାତ୍ ଯେପରିକି ଶୂନ୍ୟରେ ଆଲୁଅ ଝଲସିଲା,—ଠିକ୍ ଠିକ—ମାର୍କଣ୍ଡଚରଣ—ୟୁରେକ୍‌କା ! ଦମ୍ଭ ଗମ୍ଭୀର ଗଳାରେ ଦୋଳି ସ୍ୱରର ପୂର୍ଣ୍ଣତେଜ ଅଜାଡ଼ିଦେଇ ଅଶୋକ ଉଡ଼ାଇଲାଗିଲା—'ମାର୍କଣ୍ଡବାବୁ, ହୋ ମାର୍କଣ୍ଡବାବୁ, ମାର୍କଣ୍ଡବାବୁ ଘରେ ଅଛନ୍ତି ?"

ଭିତରୁ ଝରକାବାଟେ ମୁହଁ ଦେଖାଇଲେ କଣେ ସ୍ତ୍ରୀ ଲୋକ, ଆଶ୍ଚର୍ଯ୍ୟ ହୋଇ ଅନାଇଁ ରହିଲେ । ଭିତରେ କାହାକୁ ଯେପରି କ'ଣ କହୁଚନ୍ତି । କଣେ କିଏ ପଦାକୁ ଆସିଲା, ବଚନକା ନ କରି କହିଲା—"ମାର୍କଣ୍ଡବାବୁ ଫାର୍କଣ୍ଡବାବୁ ନାହାନ୍ତି କେହି ଏଠି, ଆଗରେ ଦେଖନ୍ତୁ ।"

"କଣ ? ଏ ମାର୍କଣ୍ଡବାବୁଙ୍କ ଘର ନୁହେଁ ? ମୁଁ କଣ ମାର୍କଣ୍ଡବାବୁଙ୍କ ଘର ଚିହ୍ନି ନାହିଁ, ଭାବଚ ? ଯା, କହିଦିଅ, ଅଶୋକବାବୁ ଡାକୁଛନ୍ତି ?"

"କୋଉ ମାର୍କଣ୍ଡବାବୁ, ଆଜ୍ଞା ? ଆପଣ ଭୁଲ କରୁଚନ୍ତି । ଏଠି କେହି ନାହାନ୍ତି କହିଦେଲି ପରା—ଯାଉନ୍ତୁ, ଆଗରେ ପଚାରନ୍ତୁ ।" ଲୋକଟା ଅବଜ୍ଞାଭରେ ଅନ୍ୟ କଥା ନ କହି ଦୂରରେ ଯାଉଥିବା ମାଛବାଲାକୁ ଦେଖି ପାଟିକଲା, "ହେ ମାଛବାଲା, ହେ—ଆଇଲୁ ଆଇଲୁ ।" ଅଶୋକ ବିରକ୍ତ ହେଲାଣି । ସହରର ପିଲା, ସହରର ଫାଜିଲମି ବୁଝେ । ସାଇକେଲକୁ ପିଠିପଟେ ଡେରିଦେଇ ଅଉଜାପଡ଼ ଗୁଡ଼ିକୁ ପୁରା ଓସାର କରିଦେଇ ସାମ୍ନାକୁ ଚାହିଁ କହିଲା—

"ହୋ !"

"କଣ ?"

"ତମ ସାଙ୍ଗେ ବୁଝାଶୁଝା ଅଛି ।"

"ଏଁ, ବୁଝାଶୁଝା ?"

"ହଁ, ତମେ କିଏ କହି ତ ?"

"ମୁଁ ଏ ଘରର ଚାକର ।"

"ହୁଁ, କେତେଟଙ୍କା ଦରମା ପାଅ ?"

"କଅଣ ବାବୁ, ମୁଁ କେତେ ଟଙ୍କା ପାଇଲେ କାହାର ସେଥିରେ କଣ ଯାଏ ?"

"କିବ ନାହିଁ ? ବୋକା ଚାକର ରଖିଲେ ଘରମାଲିକର ସବୁ ଯାଏ; ବଜାଣ ଚାକର ରଖିଲେ ସର୍ବନାଶ ହୁଏ । ଶସ୍ତା ଚାକର ରଖିଲେ ମଣିଷ ଶେଷରେ ମହଙ୍ଗାରେ ପଡ଼େ । ଏ ଘର ଭିତରର ଅନ୍ଧସନ୍ଧି କନ୍ଦି ବିକନ୍ଦି ସବୁ ମତେ ମାଲୁମ୍, ତମେ ଜାଣିଚ ? ଫାଜିଲାମି କରୁଚ କାହା ସଙ୍ଗେ ? ମତେ କହୁଚ କଣ ନା ଏ ମାର୍କଣ୍ଡବାବୁଙ୍କ ଘର ନୁହେଁ, ଏଁ ? ଜାଣିଚ, ତମ ମୁନିବ ମୋର ପୁରୁଣା ବନ୍ଧୁ, ମୋର ଦୋସ୍ତ, ମଝିରେ ଯନା କେତେ ଆସିପାରି ନାହିଁ ସିନା; ବରାବର ଏ ଘରକୁ ମୋର ଆତାଯାତ ଥିଲା । ଏଇ ଦାଣ୍ଡଘରେ କେତେଥର ଯେ ବସି ଉଠି ଯାଇଚି ତା'ର ଲେଖା ନାହିଁ । କଣ ଭାବିଚ ତମେ ? ମୋ ସାଙ୍ଗେ ଫାଜିଲାମି ?"

କଥାଗୁଡ଼ାକ କହିବାକୁ ମନେ ମନେ ସେ ଯୋଜନା ପାଇଲା ଘରର ଝରକା ଆଡ଼କୁ ଚାହିଁ । ସେଠି ତଥାପି ରହିଛି ସେହି ମୁହଁ । ରାଗ ଭିତରେ ସାନ୍ଧି ଧର ପରିଚୟ ଦେବାକୁ ସେହି ଯେପରିକି କହିଦେଉଛି । ଘରର ଚାକର ଚାହିଁକି ଉଠି "ଦେଖିବଟି ହୋ" "ଅନେଇବଟି ହୋ" ବୋଲି ପ୍ରତ୍ୟାକ୍ରମଣ କରି ଉଠିଲାବେଳକୁ ସେହି ଝରକାବାଟେ ସରୁ ଗଳାରେ ଡାକ ଆସିଲା—

"ଭଗିଆ, ଭଗିଆ—ଶୁଣିଯା ।"

ଭିତରକୁ ଯାଇ ଅଖିପିଛୁଡ଼ାକେ ଫେରିଆସି ଚାକର କହିଲା—

"ଆପଣଙ୍କ ବନ୍ଧୁ ମାର୍କଣ୍ଡବାବୁ ଏ ବସାରେ କେବେ ଥିଲେ, ମା ପଚାରୁଛନ୍ତି ।"

ଅପରିଚିତ ଲୋକ ଆଗରେ 'ମା ପଚାରୁଛନ୍ତି' ଯୋଡ଼ିବାକୁ ଠିକଏ ବୋଲି ବାଟୁଲି ବାଜିଲା ନାହିଁ ତା ପାଟିରେ—ନିଜର ଆତ୍ମସମ୍ମାନ ଖାତିରରେ । କୋଉ ମାର୍କଣ୍ଡବାବୁ, ତା'ର କି ଯାଏ ?

"ବରାବର ଥିଲେ, ବରାବର ଅଛନ୍ତି" ଅଶୋକ କହିଲା, "ହେଇ ତ ନ'ମାସ ତଳେ ଦେଖା ହୋଇଥିଲା ଏଇ ଘରେ ।"

ଝରକାବାଟେ ପିଚ୍‌କିନା ପାନପିକ ପଡ଼ିଲା । ମୁହଁଟି ଦିଶିଲା ଏଥର ଅତି ପରିଷ୍କାର । ଭିତରୁ ଶୁଭିଲା, "ଭଗିଆ, କହିଦେ—ଆମେ ଏଇ ବସାରେ ପାଞ୍ଚବର୍ଷ ହେଲା ଅଛୁଁ । ଏଠି ମାର୍କଣ୍ଡବାବୁ ଫାର୍କଣ୍ଡବାବୁ କେହି ନାହାନ୍ତି । ଏଠି ଥାଆନ୍ତି ମାଧବଚନ୍ଦ୍ର ମହାନ୍ତି, ସାଇନ୍ ବୋର୍ଡରେ ନାଁ ଲେଖା ଅଛି, କହି ଦେ—"

ଅଶୋକ ଆଉ ଦଣ୍ଡେ ବି ଅପେକ୍ଷା କଲା ନାହିଁ; ସିଧା ସାଇକେଲ୍ ମାରି ଦାଣ୍ଡେ ଦାଣ୍ଡେ। ଏତେବେଳକେ ହଠାତ୍ କୁହୁଡ଼ିଆ ସ୍ତୁପ ଭିତରେ ସତରେ ସତର ସୂର୍ଯ୍ୟ ଉଇଁଛି। ସତେ ତ! ମାଧବବାବୁ ସେ, ଏମ୍. ପି. ମହାନ୍ତି, ନଟବରର ଚହଲା ମାଧବବାବୁ। ଆଉ କେତେ ମୂର୍ଖ ସେ ନିଜେ? ମାଧବଙ୍କୁ ମାର୍କଣ୍ଡ! ଝରକା ସେ ପାଖର ସେଇ ମୁହଁ ଦିଶିଯାଉଛି। ମନେ ମନେ ଲଜ୍ଜା ଘାରୁଛି। ସେଇ ମୁହଁ ସତେ କି ଦୂରକୁ ଠେଲିଦେଉଛି—ପଳା, ପଳା, ଦୂର ପଳା।

ଦୂରରୁ ଦିଶୁଛି, ମାଧବବାବୁ ନିଜେ ଆସୁଛନ୍ତି। ଦେଖା ହେଲେ ହୁଏତ ବହି ଦି'ଖଣ୍ଡ ମିଳିପାରନ୍ତା। କିନ୍ତୁ ଯଦି ବନ୍ଧୁତାର ଅତିଶଯ୍ୟରେ ସେ ଘରକୁ ଭିଡ଼ନ୍ତି, ତେବେ? ସେଇ ଝରକା—।

ଯାଉ ପଛେ ବହି, ଯଃ ପଳାୟତି ସ ଜୀବତି।

ଆପଣା ଘରମୁହାଁ। ଖଣ୍ଡେ ଦୂର ଗଲା ପରେ ପୁଣି ମନେ ପଡ଼ିଲା ସେଇ ମୁହଁ ଓ ତା ସଙ୍ଗେ ଆଉରି ଗୋଟିଏ ମୁହଁ—କମଳୀର। କମଳୀ ପଡ଼ୋଶୀର ଝିଅ, ଭାଇ ବୋଲି ଡାକୁଥିଲା ପିଲା ଦିନୁଁ, କମଳୀ ବିଭା ହୋଇଯାଇଛି। ତା ଛଡ଼ା, କମଳୀର ଜାତି ଭିନେ, ସେ ଏମ୍. ପି. ମହାନ୍ତିଙ୍କ ସହଧର୍ମିଣୀ ହେବା ଅସମ୍ଭବ।

କିନ୍ତୁ କି ସାଦୃଶ୍ୟ! ଅବିକଳ ସତେ କି କମଳୀ। ଝାବୁ ଝାବୁ ମନ ପୁରି-ଉଠେ; ଅତୀତର ଯେତେ ଛିଡ଼ାପଡ଼ା ମଇଳା ପଡ଼ିଥିବା ପୃଷ୍ଠାସବୁ ସତେ କି କିଏଁ ଲାଉଠି ସଜେଇହୋଇ ରହେ ଆପଣା ସ୍ଥାନରେ। ମନ୍ଦକ ଉଠେ ଚେତନା—କମଳୀ ଅବିକଳ ତ!

ଭୁଲ ମନରେ ସାନ୍ତ୍ୱନା ଆସୁଛି ଆପେ ଆପେ, ଗୁଣ ଭୁଲ ହୁଏ ନାହିଁ, ଆପଣା ଚେତନାର ଦର୍ପଣରେ ଫଳନ୍ତ ମରମ ଛବିର ଛବି ଭୁଲ ହୁଏ ନାହିଁ। ବୈଷୟିକ ସମ୍ପର୍କରେ ଭିଷ୍ଟା ପଡ଼ିବ ପଡୁ, ଜୀବନ ବଞ୍ଚିହେବ। ଗୋଟାଏ ଦେହ—ଯାହା ହେଉ ତା'ର ନାଁ—ଏକା ମନୁଷ୍ୟ ଦେହ, ସେଠି କିଛି ଅଲଗା ନାହିଁ, ସବୁ ବିଧାତାର ସୃଷ୍ଟି। ଅବସ୍ଥା ଅନୁପାତରେ ଜୀବର ସେଇ ଏକ ପ୍ରକାର ବ୍ୟବହାର, ସେଇ ମନ, ସେଠି କିଛି ସୁଖଦୁଃଖର ଲହର, ଛାଇ ଆଲୁଅର ଖେଳ। ସେଇ ଜୀବନର ଜଳ ସବୁ ଘଟରେ' ପାତ୍ରରେ ବିଚିତ୍ରତା। ଦର୍ଶନର ତଥ୍ୟ ଆଜନ୍ମ ଦିଏ ମନକୁ, ଚକ୍ଷୁ ଦିଏ ଭିତରଟା ଦେଖିବାକୁ। ସେଇ ଚକ୍ଷୁରେ ସେ ଦେଖି-ଲାଗିଲା। ସେ ନିଜେ ବି ହୋଇପାରିଥାନ୍ତା ମାଧବବାବୁ—।

ଆଉ ଝରକା ସେ ପାଖେ ସେ—ଅବିକଳ କମଳୀ।

ସେ ନିଜେ ବିଭା ହୋଇନାହିଁ—ନ ହେଉ; ଦାଣ୍ଡଘରେ ଏପାଖ ସେପାଖ ଦଉଡ଼ା ଦଉଡ଼ି କରୁଥିଲା ଗୋଟିଏ ଶ୍ରେଷ୍ଠ ପିଲା। ସେ ହୋଇପାରିଥାନ୍ତା ତା'ର ଆତ୍ମଜ, ତା'ର ସନ୍ତାନ।

ହୋଇପାରନାହିଁ, ନହେଉ—ନାଁ ଭୁଲିଲେ ଉପାଦାନ ସମାନ ।

ଝୁରି ଝୁରି କରୁଣ ହୋଇଆସୁଛି ମନ । ଦିନ ଚାଲିଯାଇଛି, ସେ ଉଚ୍ଚ ଉଡ଼ି ଚାଲିଛି, ବସା ଧରିନାହିଁ । ଯୌବନ ନ ସରୁଣୁ ଓହ୍ଲାଇଛି ବିସ୍ମରଣ, କାହିଁକି ? ସେ କଣ ଚିଆଁ ଲାଗା ମନର ହାକୁହାକୁ ଭୁଲିବା ପାଇଁ ପ୍ରକୃତିର ଅଞ୍ଜନ ?

ହେଇ, ଜଣେ ଯାଉଛି । ତିରିଶଟା ଟଙ୍କା ଧାରେ ସେ । ଅସମୟରେ ଉଧାର ନେଇଥିଲା । ତା'ପରେ ସବୁ ଭୁଲିଯାଇଛି । ଅଶୋକ ମୁହଁ ଟେକି ଚାହିଁଲା । ନାଁଟା ମନେ ପଡ଼ୁନାହିଁ । ଲୋକଟା ତରତର କରି ପାଖ ଗଳିରେ ପଶୁଛି । ଅଶୋକ ଅପେକ୍ଷା କଲା ନାହିଁ । ସାଇକେଲ୍‌ର ବେଗ ବଢ଼ାଇ ପିଁ ପିଁ କରି ଉଡ଼ିଗଲା ତା'ର ପଛେ ପଛେ ।



# ହସିବାକୁ ହେବ

ସକାଳୁ ନିଦରୁ ଉଠି ବିନୟ ଚାରିଆଡ଼କୁ ଚାହିଁଲା । ବହଳ ହୋଇ କୁହୁଡ଼ି ଘୋଟିଛି । ଏ ଯେପରିକି ଏକ ଭୂତ-ପୃଥିବୀ । କିଛି ପରିଷ୍କାର ହୋଇ ନ ଦିଶିଲେ ବି ଆଖି ସମ୍ପୂର୍ଣ୍ଣ ଅନ୍ଧ ନୁହେଁ । ଅର୍ଥାତ୍, ଦିଶୁଛି ତ କିଛି, ଯଦିଓ ସେ ଦୃଶ୍ୟ ସାଧାରଣ ଦେଖିଲା ଦୃଶ୍ୟ ନୁହେଁ । ସବୁ ଗଛ ଗଛ, ଭୂତଆ ଭୂତଆ, ଆଉ ଫାଲ ଫାଲ, ଚଉଡ଼ା ଚଉଡ଼ା । ସବୁ ଆଉଟି ଗୋଳି ହୋଇଯାଇ ହୋଇଛି ଗୋଟାଏ ସମୁଦ୍ର ଏବଂ ସଂସାର ଗୋଟାକଯାକ ଯେପରି ତା'ରି ତଳ ପତ୍ତନରେ ଗୋଟାଏ ମାୟା ସୃଷ୍ଟି । କୁକୁରଟାଏ ଦଉଡ଼ୁଛି, କିନ୍ତୁ ସମୁଦ୍ର ଭିତରେ ଦୌଡ଼ ଦୌଡ଼ି ନାହିଁ ; କେବଳ ଅଛି ପହଁରା । ଏମିତି ପହଁରି ପହଁରିକା କିଏ କେତେବେଳେ ତା'ର ଦୃଷ୍ଟିକୁ ଭେଟୁଛି, ତାପରେ ଅଦୃଶ୍ୟ ହୋଇଯାଉଛି । ଦୂରେଇ ଦୂରେଇ ବଡ଼ ବଡ଼ ଗଛ, ଗଛ, ଘର, ଆଲୁଅ ଖୁଣ୍ଟ, ଇଟା ଗଦା, ମିଞ୍ଜି ମିଞ୍ଜି ହୋଇ ଦିଶୁଛି, ପୁଣି ଅଦୃଶ୍ୟ ହୋଇଯାଉଛି । ଲାଗୁଛି, ପହଁରି ପହଁରିକା ସେଗୁଡ଼ା ବି ପାଖକୁ ଆସିବ ; ପୁଣି ଭାସିଯିବ ।

ବିନୟ ଖୁସି ହୋଇ ଏ ନୂଆ ଦୁନିଆକୁ ଅନେଇଁ ରହିଲା । ଭାବିଲା, ସେ ବାଇସ୍କୋପ୍ ଦେଖୁଛି । ପିଲାଦିନେ ବାଇସ୍କୋପଦେଖିବାକୁ ଭାରି ମନ ଥିଲା ; କିନ୍ତୁ ଟିକଟର ଦାମ୍ ଭାରି ଚଢ଼ା, ଦେଖିଯିବା ସମ୍ଭବ ହୁଏ ନାହିଁ । ଅଫିସ ଯାଉଣୁ ଆସୁଣୁ କାନ୍ଥରେ ବାଡ଼ରେ ନୂଆ ନୂଆ ସିନେମାର ବିଜ୍ଞାପନ ଛବି ଦେଖି ଦେଖି ଯାଏ; କେଉଁ ସିନେମାଟା କେତେ ଭଲ ତା'ର ଆଲୋଚନା ଶୁଣେ, ଲୋକେ କହନ୍ତି । ସନ୍ଧ୍ୟାବୁଡ଼େ ରାତି ପହରକେ ଅନେକ ଥର ଶୁଣେ ବାଇସ୍କୋପ ଘରର ବାଜଣା, ଗୀ.. । ଅଖାତର ମନଟା ନିଦ ଭାଙ୍ଗିଲା ସାପ ପରି ଫଁ ଫଁ ହୁଏ, କାନ ଠିଆ କରି ଟଂ ଟଂ ଆଖିରେ ରାସ୍ତାକୁ ଅନାଇଁ ଭାବେ, ଯିବ ବାଇସ୍କୋପ୍ ଦେଖି । ସଙ୍ଗେ ସଙ୍ଗେ ମନେ ପଡ଼େ—ଖାଲି ଏକୁଟିଆ ସେ ଯିବ ?

ସକାଳୁ ରାତିଅଧଯାଏ ଘର କାମରେ ଲାଗିଛି ତା'ର ସ୍ତ୍ରୀ; ପିନ୍ଧିଛି ଛିଣ୍ଡା ମଇଳିଆ ଲୁଗା, ମୁଣ୍ଡକୁ ତେଲ ନାହିଁ ; କାହିଁ ତାକୁ ତ ସିନେମା ଦେଖାଇ ନେବାକୁ ପଇସା ନାହିଁ । ପିଲା ଯୋଡ଼ିକ—ଅଜୟ ଆଉ ଉଷା—ଗୋଟିକୁ ଦଶ ବର୍ଷ, ଆରଟି ଆଠ ବର୍ଷର । କଷ୍ଟେ ମଷ୍ଟେ ଶାଗପଖାଳ ଖାଇ ମଣିଷ ମରା ମଟର ଗହଳରେ ରାସ୍ତାଏ ରାସ୍ତାଏ ଚାଲି ଚାଲି ଯାଇ ଇସ୍କୁଲରେ ପଢ଼ିଆସନ୍ତି ; ବଜାରରେ ଜିନିଷ ଦେଖି ରଙ୍କସରସର ହୁଅନ୍ତି । ବାରମ୍ବାର ଲଗାନ୍ତି, "ବାପା, ଯିବା ନାହିଁ ବାଇସ୍କୋପ ଦେଖି ?" ସେମାନଙ୍କୁ ତ ନେଇହେବ ନାହିଁ ।

ଦୀର୍ଘଶ୍ୱାସ ସଙ୍ଗେ ସଙ୍ଗେ ତା'ର ଦୁଃସ୍ଥ ମନରେ ରାଗ କୁହୁଳି ଉଠେ । ସ୍ଥିରପାରେ ନାହିଁ ସେ କେଉଁ ଜଣକ ଉପରେ ରାଗିବ । ବହୁତ ଲୋକଙ୍କୁ ଏକାଥରେ ଦାୟୀ କରିପକାଏ ତା'ର ଦାରିଦ୍ର୍ୟ ପାଇଁ । ଦାନ୍ତ କଡ଼ମଡ଼ କରି ଆଖି ତରାଟି କହେ—"ସଂସାର, ଏ ଅନୀତି ରହିବ ନାହିଁ ।"

ରାଗରେ ତା'ର ଅବସ୍ଥା ସୁଧୁରେ ନାହିଁ ; ନିଜେ ଅଶାନ୍ତ ହୁଏ । କିନ୍ତୁ ଗୋଟାଏ ପୁରୁଣା ବିଶ୍ୱାସରେ ସେ ଭରସା ପାଏ ; କହେ ମାୟା ସବୁ, ସବୁ ଦି'ଦିନିଆ ।

ଅଭାବର ଚୋପଡ଼ମାଡ଼ ଖାଇ ସେ ଦୁନିଆକୁ ପ୍ରହାରେ ଦର୍ଶନଶାସ୍ତ୍ରର ମାୟାପାଶ । ସେହି ତଥ୍ୟ ବଖାଣି ବସୁ ବସୁ ତା'ର ଆସ୍ପର୍ଦ୍ଧା ବୀରତ୍ୱ ବାହାରେ । ସେହି ବାଟେ ସେ ଅବସ୍ଥା ସହିତ ସାଲିସ କରେ ।

ସକାଳର କୁହୁଡ଼ି ତା'ର ମାୟାବାଦ ସହିତ ଖାପିଯାଇଥିଲା । ଏମିତି ତ ସବୁ, ବିନସ୍ତୁ ଭାବୁଥାଏ, ରାତି କଥା ସକାଳକୁ ନାହିଁ, ସକାଳ କଥା ଦ୍ୱିପହରକୁ ଭିନେ, ଆଉ ଏ ଅଭାବ, ଏ କଷ୍ଟ, ଏ ବି ଖାଲି ମାୟା । ଭାବି, ମନ ଖରାପ କରି କଣ ହେବ ? ଭାଗବତରେ ଲେଖିଛି ତ, "ଏ ସବୁ ବିଜୁଳି ପ୍ରକାଶ ।"

ପଚିଶିଜ ବଜାୟ ରଖି ସମାଜକୁ, ସଂସ୍କାରକୁ ମୁଣ୍ଡପାତି ଗ୍ରହଣ କରିନେଇ ବିନସ୍ତୁ ଭାଗବତ ପଦ ଗାନ ବଢେଇଦିଏ । ଆଉ ଭୁଲିଯିବାକୁ ଚେଷ୍ଟା କରେ ଯେ, ଦେହ ରଖିବାକୁ ହେଲେ ଖାଦ୍ୟ ଦରକାର—ଗୋଟିଏ ଚଳିବାମାନିଆ ସୁସ୍ଥ ମନ ରଖିବାକୁ ଗୋଟାଏ ଚଳିବାମାନିଆ ସ୍ୱଚ୍ଛଳ ଅବସ୍ଥା ଦରକାର—ଆବଶ୍ୟକ ମେଣ୍ଟାଇବାକୁ ହେଲେ ପରିଶ୍ରମ କରିବା ଦରକାର—ବାଧାବିଘ୍ନ ଦେଖିଲେ ତାକୁ ଏଡ଼ିବାକୁ ବଳ ଦରକାର ।

ଆପଣା ଆବଶ୍ୟକ ପାଇଁ ଦର୍ଶନଶାସ୍ତ୍ରର ପଥ ଗ୍ରହଣ କଲେ ବି ଆପଣା ମନ ଭିତରୁ ସେ ରାଗ, ଦୁଃଖ ଓ ଅଶାନ୍ତି ଦୂର କରିପାରେ ନାହିଁ; ତା'ର ପୂଜା ହୁଏ ଖାଲି ଗୋଟାଏ ନିଜକୁ ଠକିଲା ଭଳି ଭେକ, ଭିତରେ ଡହଳବିକଳ ମନ, ଡହଡହ ଭାବନା ।

ଏଇ କୁହୁଡ଼ିଆ ସକାଳେ, ସମସ୍ତଙ୍କର ଯେତେବେଳେ ନିଦ ଭାଙ୍ଗିନାହିଁ, ରାସ୍ତାରେ ଗହଳ ଚହଳ ବଢ଼ିନାହିଁ, ଅଭାବବୋଧ ବିଛୁଆତି ପରି ଦେହରେ ଲାଗିନାହିଁ, ବିନସ୍ତୁ ସେହି କୁହୁଡ଼ିର ଅଲୀକ ସୃଷ୍ଟିରେ ଆପଣାକୁ ଉଦାରଭାବେ ଲୁରିଆଡ଼େ ବିଛେଇ ଦେଇପାରିଲା ।

ଆଉ ମନେ ପକାଉଥିଲା ବନ୍ଧୁ ନାରଣର ସଦୁପଦେଶ—ହସିବାକୁ ହେବ ଯେ, ନ ହେଲେ ଆଉ ସଂସାରରେ ମଣିଷ କ'ଣ ? ଅଭାବ ଦୁର୍ଦ୍ଦଶାରେ ବି ହସିବାକୁ ପଡ଼ିବ, ରୋଗରେ ଶୋକରେ ହସିବାକୁ ପଡ଼ିବ, ତେବେ ଯିନା ସଂସାରକୁ ଜିତିହେବ । ଲୋକେ ଏତେ ଆଦର୍ଶ ପଛରେ ଧାଆଁନ୍ତି, ଏତେ ଯୁଝୁ କରନ୍ତି ;

ମୋର ତ ଭାଇ ଗୋଟିଏ ଆଦର୍ଶ, ଗୋଟିଏ ଗୁରୁ—ଫୁଟବଲ । ତାକୁ ଯେତେ ପିଟିବ ସେ ସେତେ ଜୋରରେ ଡେଇଁବ; ହଟିବ ନାହିଁ ।

ନାରଣର ଆଦର୍ଶ କଥା ଶୁଣିଲାବେଳକୁ ବିନସ୍ତକୁ ହସ ମାଡ଼ିଲା । ସେ ଆପେ ଗୋଲଗାଲ ଗେଟମ୍ ଗାଟମ ହୋଇ ଗୋଟିଏ ଫୁଟ୍‌ବଲ୍ । ଘରେ ସବୁଦିନେ ବେମାରିଆ ସ୍ତ୍ରୀ, ତା ଅବସ୍ଥା ଦିନୁ ଦିନ ଖରାପ ହୋଇଯାଉଛି । ଟଙ୍କାଏ ପାଇଁ ଡାକ୍ତର ଡାକ ଡାକ ଔଷଧ କିଣି କିଣି ନାରଣ କରଜରେ ବୁଡ଼ିଲାଣି । ସାତଟି ପିଲା, ତାଙ୍କ ପାଇଁ ମା'ର କାମ ବି କରିବାକୁ ହୁଏ । କେତେ ରାତି ଅନିଦ୍ରାରେ କଟେ, ରୋଗିଣୀର କଷ୍ଟ ବଢ଼େ, ସେ ଛଟପଟ ହୁଏ । ସକାଳୁ ନାରଣ କସରା ଆଖିରେ ବାସନ ମାଜେ, ରୋଷେଇ ବସାଏ, ବଜାର କରେ, ଡାକ୍ତର ଡାକେ, କରଜ ଆଣିଯାଏ, ପୁଣି ପାନ ଚୋବେଇ ଚୋବେଇ ଠିକ୍ ସାଢ଼େ ଦଶଟାରେ ଅଫିସରେ ପହଞ୍ଚେ, ରହସ୍ୟ ଲଗେଇ କଥା କହେ, ହସରେ ପେଟ ନଚାଏ, ଆଉ ବଖାଣେ ଫୁଟ୍‌ବଲ ତତ୍ତ୍ୱ ।

ଏପରି ଅବସ୍ଥାରେ ବି ମଣିଷ ହସିପାରେ, ନା ?

କିନ୍ତୁ ନାରଣ ହସେ, ହସି ହସି ତା ମୁହଁରେ ସବୁବେଳେ ହସର ଦାଗ ଲାଗିରହିଛି; ଆଖି ତଳେ ପାଟି ଉପରେ ଗୁଡ଼ାଏ ସ୍ୱାଭାବିକ ଭଙ୍ଗ, ଭଲ ଇସ୍ତ୍ରି ହୋଇଥିବା ଟାଣ କନାର ଜାମାର ଭଙ୍ଗ ପରି, ତାକୁ ଯେତେ ଝାଡ଼ିବ, ଯେତେ ଓଲଟିବ, ତଥାପି ସେଥିରେ ଦିଶୁଥିବ ସେହିପରି ଭଙ୍ଗ, ସେହି ଭଙ୍ଗରେ ଖଞ୍ଜା ହୋଇ ଗୋଟିଏ ହସକୁରା ମୁହଁ ହେବାକୁ ଯେପରିକି ନାରଣର ମୁହଁର ସ୍ୱାଭାବିକ ପ୍ରବୃତ୍ତି । ପଚାରିଲେ କହେ, "ହସ ଏକାଦିନକେ ଆସେ ନାହିଁ । ସେ ବି ଏକ ସାଧନା । ସବୁଦିନେ ଟିକିଏ ଟିକିଏ ପ୍ରାକ୍‌ଟିସ୍ କଲେ ଆସି ହୁଏ । ପ୍ରାକ୍‌ଟିସ କର, ଦେଖିବ, ଆୟୁଷ ବଢ଼ିଯିବ, ରୋଗ ଭଲ ହୋଇଯିବ, ଆଉ ତୁମେ ବି ଖାଲି ପଖାଳ ତୋରାଣି ଖାଇ ବମ୍ ବନିଯିବ ଗୋଲ୍‌ଗାଲ୍ ଫୁଟବଲ ପରି ।"

ବିନସ୍ତ ସବୁଦିନେ ଯେଉଁ ପୃଥିବୀକୁ ଦେଖେ, ସେଥିରେ ନାରଣର ତତ୍ତ୍ୱ ଲାଗେ ପାଗଳର ପ୍ରଳାପ ପରି । ଘରେ ଏତେ ଅଭାବ ଯେ ମଣିଷ ପରି ମୁଠାଏ ଖାଇବା ତ ଅସମ୍ଭବ, ପିଲାଏ ସବୁବେଳେ ଖିନ ଖିନ, ଗୃହିଣୀ ସବୁବେଳେ ଚଢ଼ାଚଢ଼ି, ନିଜର ବୋଲି ଘର ନାହିଁ କି ଜମି ନାହିଁ, ଖାଲି ଅଳ୍ପ କେଇଟଙ୍କା ଦରମାର ଏଇ ଷ୍ଟକର ଖଣ୍ଡିକୁ ଭରସା, ଏ ଦି'ଦିନର ଚାଳଗଛ ଟ୍ରୁଇ ଅପସରିଗଲେ କଣ ହେବ, ଶୁଣିଲାବେଳକୁ ଗୋଡ଼ତଳେ ବସୁନ୍ଧରା ଫାଟି ଆଁ କରେ; ଏଥିରେ ମଣିଷ ହସିବ କଣ ? କେବଳ ଯେତେବେଳେ ଆଖିରୁ ଲୁହ ଶୁଖିଯାଏ, ସେତେବେଳେ ଗୋଟାଏ ମୂକ ନିରାଶାରେ ଭଗବାନଙ୍କୁ ମନେ ପକାଇ ବସ୍ତ୍ରହରଣ ବେଳେ ଦ୍ରୌପଦୀ ଦି'ହାତ ଉପରକୁ ଟେକିଦେଲା ପରି ତାଙ୍କୁହିଁ ସବୁ ସମର୍ପିଦେଇ ଆଖିକାନ ବୁଜି ଦିନ ବିତେଇ-ଦେବା କଥା; ହସିବ କ'ଣ ? ମଣିଷ ପାଗଳ ନ ହେଲେ ହସିବ ?

କିନ୍ତୁ ଅପଣା ସମସ୍ୟା କଥା ହଉନେଇ ନାରଣ ସଙ୍ଗେ ଯଦି ସେ ଆଲୋଚନା କରେ, ନାରଣ କହେ, "ତମେ କାନ୍ଦ କାନ୍ଦ ଯେମିତି, ମୁଁ ହସି ହସି ଯେମିତି । କାନ୍ଦିଲେ ଯଦି ଅବସ୍ଥା ସୁଧୁରେଇପାରିବ କାନ୍ଦ ତେବେ, କାନ୍ଦ କାନ୍ଦ ମହାନଦୀ ବୁହାଅ, ବସିଚ କାହିଁକି, କାନ୍ଦ—ଇଁ ଇଁ ଇଁ— ।" କାନ୍ଦିବାକୁ ଅନୁପଯୁକ୍ତ ତା'ର ମୋଟା ମୁହଁରେ ସେ ଏମିତି କାନ୍ଦ କାନ୍ଦେ ଯେ, ଯେ ଶୁଣନ୍ତି, ହସି ହସି ତାଙ୍କ ପେଟ ଫାଟିଯାଏ ।

ସ୍ଥାନର ଚେହେରା ବଦଳିବା ସଙ୍ଗେ ସଙ୍ଗେ ଯେଉଁ ନିୟମରେ ଆପଣା ଧାରଣା ବଦଳିଯାଏ ସେହି ନିୟମରେ କୁହୁଡ଼ିଆ ମାୟା ପୃଥିବୀକୁ ଦେଖି ବିନୟର ପୁରୁଣା ଧାରଣା ଓଲଟିଥିଲା । ସକାଳଟାକୁ ସେ ଭାବିଲା, ସତେ ତ, ନାରଣର ମତଟାକୁ ଟିକେ କାର୍ଯ୍ୟରେ ପରୀକ୍ଷା କରି ଦେଖିଲେ କ୍ଷତି କ'ଣ ? ଲୋକେ ଏତେ ଉଦ୍ଦେଶ୍ୟରେ ଚେଷ୍ଟା କରନ୍ତି; ଭଲ ମୁଁ ଚେଷ୍ଟା କରିବ ଟିକିଏ ହସିବାପାଇଁ, ଖୁସି ରହିବାପାଇଁ, ଦେଖାଯାଉନା ।

ଭଲ, ତେବେ ଆଜି ମୁହଁ ଶୁଖେଇବ ନାହିଁ, କାହା ଉପରେ ରାଗିବ ନାହିଁ, କାହା କଥାକୁ ଛଳ କରିବ ନାହିଁ । ଅଫିସ ବାହାରିଲାବେଳକୁ ଯଦି ତରକାରୀ ହୋଇ ନ ଥିବ, କି ପାନ ଭାଙ୍ଗିବାକୁ ଗୁଆ ନ ଥିବ ତେବେ ଆଦୌ ଚିଡ଼ିବ ନାହିଁ । ଅଫିସରୁ ଫେରିଲେ ଯଦି ଶୁଣେ, ଏକାଥରକେ ସବୁ ସରିନାହିଁ, ପୁଣି ବଜାରକୁ ଯିବାକୁ ପଡ଼ିବ, କାରଣ 'ସେ' ସକାଳେ କହିବାକୁ ଭୁଲିଯାଇଥିଲେ, ତେବେ ଆଦୌ ବିଗିଡ଼ିବ ନାହିଁ, କି ତାଙ୍କୁ ଗାଳି ଦେବନାହିଁ । ପିଲାଏ ଜିଦ ଧରିଲେ ଆଦୌ ଚିଡ଼ିବ ନାହିଁ । ଅଭାବ କଥା ଭାବି ମନ ଖରାପ କରିବ ନାହିଁ ।

ଏହିପରି ମନକୁ ମନ କେତେ ପ୍ରତିଜ୍ଞା ।

ପ୍ରତିଜ୍ଞା କଲାବେଳକୁ ସତକୁ ସତ ସେ ଅଧା ଖୁସି ହୋଇସାରିଥିଲା, ମନ ଉଦାର ହୋଇଥିଲା, ସଜ ସକାଳ ପରି ସଜ ମନରେ ସେ ଭାବୁଥିଲା, ସମସ୍ତଙ୍କି ସେ କ୍ଷମା କରିପାରିବ, ଏପରିକି ନିଜ ଭାଗ୍ୟକୁ ବି ।

ବହୁଦିନର ଘୁମ୍‌ସୁମ୍ ବିନୟ ଗୁଣୁ ଗୁଣୁ ହୋଇ ବିନା ଭାଷାରେ 'ନାନାନାନା' କରି କୌଣସି ରାଗିଣୀ ଆରମ୍ଭ କରିଦେଲା । କୁହୁଡ଼ି ପାତଳ ହୋଇଆସୁଛି, ସକାଳ ଆଉରେଇଲାଣି । କାନ ଅତରା ପକେଇ କାଉ ରଡ଼ିଲେ, ଗୋରୁଗାଈଙ୍କ ବୋବାଳି ଶୁଭିଲା, ଦୂରରୁ ଶୁଭିଲା କାର୍ତ୍ତିକର ସକାଳୁଆ ନଗର ସଂକୀର୍ତ୍ତନ । ଅଳକବୋଉ ଉଠି ବୋଷେଇଘରେ ପାଉଁଶ କାଢ଼ିବାକୁ ଚାଲିଗଲେ । ଅଖି ମଳି ମଳି ଉଷା ଆସି ଠିଆ ହେଲା । ଅଳକଟିର ତେଣରେ ନିଦ ଭାଙ୍ଗେ; ସେ କର ଲେଉଟାଇଲା । ବିନୟର ମନ ଭିତରେ ସତେକି ମୋଡ଼ି ମୋଡ଼ି ହୋଇ ମୁଲୁଁଚି ଯାଇଥିବା ପକ୍ଷସବୁ ପୁଣି କଅଁଳି ଉଠିଲା; ଆଉ ମନେ ପଡ଼ିଲା—ଏ ସକାଳକୁ ସେ କେଡ଼େ ଭଲ ପାଉଥିଲା ସତେ !

ସବୁ ସବୁ ଟହଲ ଖରା କୁହୁଡ଼ି ଭିତରେ ହସି ଉଠୁଛି । ଏଥର ସେ ବାରିଆଡ଼େ ପଡ଼ିଥିବା ଗୋଟିକିଆ ପଥର ଉପରେ ଓ ଆଖପାଖରେ ଡାଳି ହୋଇପଡ଼ିବ । ସେହି ପଥର ଉପରେ ବସି ବସି ବନସ୍ତ ବହୁତ ବେଳଯାଏ ବୁଢ଼ାଖିରେ ଦାନ୍ତ ଘଷେ । ବୁଢ଼ାଖି ଘଷୁ ଘଷୁ ପାଟିରୁ ଯେତେବେଳେ ଚୂନ୍ ଚୂନ୍ ହୋଇ ଲାଳ ବୋହୁଥାଏ ମୁଣ୍ଡ ଭିତର ଝିମି ଝିମି ଲାଗୁଥାଏ, ଦେହରେ ବାଜୁଥାଏ କଅଁଳ ଖରା, ସେତେବେଳେ ଅଳସେଇ ଅଳସେଇ ବସି ବସି ସେ ଏକ ପ୍ରକାର ବ୍ୟସନ ସୁଖ ଅନୁଭବ କରେ ଓ ସେତିକି ସମୟ ଆପଣାକୁ ଆପେ ପାଇ ଆପଣା ଦୁର୍ଦ୍ଦଶା କଥା ଭାବେ । ସେଇଠି ଆଜି ସେହିପରି ବସିରହି ସେ ଗାଳି ଖୁସିକିଆ ଭାବିବାକୁ ପଣ କରିଛି । କାରଣରେ ଅନୁଶାସନକୁ ଦେବ ସେ ଆଜି ଗୋଟାଏ ଅନୁଶୀଳନ, ତା'ପରେ ଆଲୋଚନା ପଡ଼ିବ ପରେ ।

ତା'ର ରହିବା ବସାରେ ଚାଳ ତଳେ ଗୋଟାଏ ଖୁମ୍ବ ଉପରେ ଶୁଖିଲା ପତରେ ମୋଡ଼ାହୋଇ ଥୁଆ ହୋଇଥାଏ ଟେଳାଏ ଦାନ୍ତଘଷା ବୁଢ଼ାଖି ।

ବନସ୍ତ ସେଠିକି ହାତ ବଢ଼େଇଲା ।

କିଛି ନାହିଁ ।

ଆଲୋ ଲୋ ! ତା'ର ଛାତି ଛୁଉଁ କଲା । ଥକ୍କା ହୋଇ ଦଶ ସେକେଣ୍ଡ ସେ ସେହି ଖୁଣ୍ଟ ପାଖେ ଠିଆ ହୋଇ ରହିଲା । ଯେପରିକି ସୁସ୍ଥ ହୋଇ ବାଟ ଚାଲୁ ଚାଲୁ ହଠାତ୍ ଖସିପଡ଼ିଯାଇ ସେ ବୁଡ଼ିଯାଇଛି ଗଭୀର ପୋଖରୀର ଦ ପୂରୁଷ ପାଣି ଭିତରେ । କାନ ଭଁ ଭଁ ହେଉଛି, ଚେତନାରେ ନିଶ୍ୱାସ ବନ୍ଦ ଉଦ୍ଭୁମୁଦା ଅବସ୍ଥା । ଖୁଣ୍ଟ ଉପରେ ବୁଢ଼ାଖି ପତଟି ନାହିଁ ।

ଆଖିକାନ ବୁଜି ବିକଳ ହୋଇ ହାତଗୋଡ଼ ଛାଟି ଉଚ୍ଛୁଳି ହୋଇ ଉପରକୁ ଉଠି ସ୍ୱାଭାବିକ ସ୍ତରକୁ ଲେଉଟିପିବାକୁ ଚେଷ୍ଟା କଲା ପରି ବନସ୍ତ ଚଞ୍ଚଳ ଚଞ୍ଚଳ ଏକର ସେକର ଖୋଜିଲାଗିଲା । ଚାଳ ତଳ ଅଣ୍ଡାଳୁଛି, ଖୁଣ୍ଟ ଚାରିକରେ ଖୋଜୁଛି, ଓଳିତଳେ ନଇଁ ଦେଖୁଛି, ଦ ଖେପାରେ ଏକର ସେକର ହୋଇଯାଉଛି ଯାନ ବସା ଟିର ଏମୁଣ୍ଡ ସେମୁଣ୍ଡ, ବଣୁଆ ଜନ୍ତୁର ଆଦିମ କାମନା-କ୍ଷୁଧା ଅରଣ୍ୟ ଚକ୍କାର ପରି କର୍କଶ ବିକୃତ ଅସ୍ୱାଭାବିକ କଣ୍ଠରେ ଗର୍ଜନ ଛାଡ଼ୁଛି—"ଏଇ, ମୋ ବୁଢ଼ାଖି କୁଆଡ଼େ ଗଲା ? ଅରେ, ମୋ ବୁଢ଼ାଖି କିଏ ନେଇଛ ?"

ବୋଷେଇଘରୁ ଅଜିବୋଉ ଜବାବ ଦେଲେ—"ତମ ବୁଢ଼ାଖି ଫେର୍ କିଏ ନେଲା ମ ? ତମେ ତ ଯେତ, ଆଉ କିଏ କୁଏଁ ଯେ, ନେଇଥିବ ? ତମର ତ ସେମିତି ଭୁଲା ମନ ; କୋଉଠି ରଖି କୋଉଠି ବୋଲି ଖୋଜୁଥିବ—"

ବନସ୍ତ କାହାର କଥା ଶୁଣିବାକୁ ନାରାଜ !

କୁଦାକୁଦି କରି ଓଲଟି ଓଲଟି କରି ଖୋଜି ଖୋଜି କଥା ପଡ଼ିଗଲା— ଖଣ୍ଡିଏ ଅଳ୍ପ ଦୂରରେ ଲୁଡ଼ାଖୁ ପଥରଟି ପଡ଼ିଛି । ଗବେଷକ ତା'ର ଅନ୍ୱେଷିତ ସନ୍ଧାନ ପାଇଲା ପରି ବନସ୍ତିର ଆନନ୍ଦ ଉଚ୍ଛୁଳିଲା । ପିଣ୍ଡା ତଳକୁ ଡେଇଁପଡ଼ି ଅଳିଆ ଉପରୁ ସେ ମୋଡ଼ାମୋଡ଼ି ଶୁଖିଲା ପଥରଟି ଉଠେଇନେଲା । କହିଲା, "ଏଇଟି ଖସିପଡ଼ିଚ, ଆଉ ମୁଁ ଏତେ ଖୋଜିଲିଣି !"

ଏଇ ମୁହୂର୍ତ୍ତିରେ ସଂସାର ଭିତରେ ତାକୁ ସବୁଠୁ ବେଶି ଯାହା ଆନନ୍ଦ ଦେବ ତା ରହିଛି ଏହି ମୋଡ଼ା ପଥ ଭିତରେ । ଖୋଲିଲାବେଳକୁ ତା ଆଙ୍ଗୁଠି ଯେପରିକି କାବ୍ୟରସିକ କଳାବିତ୍ତର ଆଙ୍ଗୁଠି ପରି ଭାବବିହ୍ୱଳ ହୋଇ ଥରଉଠିଥିଲା । ଲାଗିଥିଲା, ଜୀବନ ସୁନ୍ଦର, ଜୀବନ ସରସ ।

ବନସ୍ତି ପଥପୁଡ଼ିଆକୁ ଖୋଲିଦେଲା ।

ତେଥିରେ କିଛି ନାହିଁ, ସବୁ ଚଟାଚଟି, ପୋଛାପୋଛି । ଅତି ଦୁଃଖରେ ହେଉ କି, ଦି ଦିନ ହେଲା ଲୁଡ଼ାଖୁ ସରିଯାଇଛି । ଦି ଦିନ ହେଲା ବୁଢ଼ା ଆଙ୍ଗୁଠି କରରେ ଖାଲି ପଥକୁ ଅଞ୍ଜୁଳି ଅଞ୍ଜୁଳି ସେ କାମ ଚଳେଇଛି । ଆଉ ନାହିଁ । ହଠାତ୍ ସୁନ୍ଦର ସୃଷ୍ଟି କୁତ୍ସିତ ହୋଇଗଲା ; କବିର ସାଇତା ବଗିଚା ଶୁଖି ଉଡ଼ିଗଲା ତତଲା ଧକ୍‌କା ଝରଡ଼ି ବତାସରେ । ତା'ର ମନ ଦରମଲି ଡାଳ ଓ ଲଟାକୁ ଚରିବଛଲେ ଘଇଜଯାଉଛି ଯେତେ ଉଟାଗୁରି ଛେଳି, ଗଧ, ଖେଚର, ଆଉ ଓଲିଆ ଗୋରୁ, ଆଉ ଅମରାବତୀର ତୋରଣଦ୍ୱାରରେ ସତେ କି ଶୁଭିଲା ଭୀତ-ବିହ୍ୱଳ ଭୂତପଳଙ୍କ ସମବେତ ହୁଙ୍କାର । କିଛି ନ ହେଲେ ସ୍ୱର୍ଗରେ ଚଢ଼ି ହେନା-ରଞ୍ଜିତ ଦାଢ଼ିକୁ ବି ସେମାନେ ଓପାଡ଼ି ପେକିଯିବେ ଗୋଟିଏ ଗୋଟିଏ ।

ଏଠି ଜାନ୍ତବ ଆଦବଶୀଙ୍କ ତାଡ଼ନାରେ ବନସ୍ତି ଏକର ସେକର ହେଲା । ମନେ ପଡ଼ିଲା, ଲୁଡ଼ାଖୁ ଘସି ଘସି ଶେଷ ଶେଷି ଯାହା ରହେ ତାକୁ ସେ ଖୁଣ୍ଟରେ କାନ୍ଥରେ ମାରିଦିଏ । ଘୂରି ଲାଗିଲା ତା'ର ଗବେଷଣା ସବୁ ଖୁଣ୍ଟ ଗୃହପାଖ ଦବାଣ୍ଡି ଦବାଣ୍ଡି, ଚଟାଣ ତଳ ଉଣ୍ଡି ଉଣ୍ଡି ।

ହଠାତ୍ ତା'ର କବୁଟା ଆଖି ଆବିଷ୍କାର କଲା, ଗୋଟିଏ ଖଣ୍ଡ ତଳେ କଣ ଟେବାଏ ଥୁଆ ହୋଇଛି । ବିରବିର କଲା । କନକକ । ଫଉଲଗଲେ ଲୁଡ଼ାଖୁ ଟେଲାଟା ଏହିପରି ଦିଶେ । ଆଗ୍ରହରେ ସାଉଣ୍ଟି ନେଇ ଅଭ୍ୟସ୍ତ ଆଙ୍ଗୁଠି ଅଗରେ ସେଥିରୁ ଟିକିଏ ନାକ ଅଗ ପାଖେ ଦେଖାଇଲା । ପରଖ କରିବ, ଉପଯୁକ୍ତ ପରିମାଣରେ କଡ଼ା ଅଛି କି ନା ।

ଇସ୍, ଥୂଃ—ଲୁଡ଼ାଖୁ ନୁହେଁ, ବେଙ୍ଗ ଘୁଅ ।

ଭାଗ୍ୟର ଏ ବିକଟ ଉପହାସ ପରେ ଦପ୍ କରି ତା'ର ଖୋଜିବା ସାଉଣ୍ଟିବା ଉତ୍ସାହ ନିଭିଗଲା ।

ଘୁଡ଼ାଖୁ ନାହିଁ—ଲଗେଇବାକୁ ତେଲ ନାହିଁ—ପିନ୍ଧିବାକୁ ସଫା ଦର୍‌ଜ୍ଞ ଲୁଗା ନାହିଁ—କେତେ କଥା ନାହିଁ, ଗୋଟି ଗୋଟି ହୋଇ ମନେପଡ଼ିଲା ।

ଏଥର କୁହୁଡ଼ୁଡ଼ କୁହୁଳା ରାଗ ଜଳିଉଠିଲା । ଉଷା ଗ୍ରେସ୍ପେଇଦର ସାମନାରେ ଦାନ୍ତ ଘଷୁଛି । ଦଉଡ଼ିଯାଇ ବନସ୍ତ ଦାଉିକଣ ଗୋଇଠାଏ ଯୋଇଦେଲା । ଆକସ୍ମିକ ବ୍ଲକ୍ ଆକ୍ରମଣରେ କାବା ହୋଇଯାଇ ଉଷା କାନ୍ଦିବାକୁ ଭୁଲିଗଲା ; ମୁହଁ ଟେକ ଦୋଷପଦ୍ମ ଗ୍ଲହାଣିରେ ବାପା ମୁହଁକୁ ଅନେଇ ରହିଲା । ଗେହ୍ଲା ଝିଅ, ତାକୁ ନାଉ କଣ ନ ବୁଲିଲେ ବନସ୍ତର ଆତ୍ମା ଶାନ୍ତ ହେଉ ନ ଥିଲା । କିନ୍ତୁ ବନସ୍ତ ଗର୍ଜନ ଗ୍ଲଡ଼ିଲା—ଅଲକ୍ଷଣା ପିଲା, ହଜାରେ ଥର ମନା କରୁଚ ଓଳିତଳେ ପାଣି ଢାଳ ନା, ଜକୋଉଚ ବୋଲି ; କେବେହେଲେ ମୋ କଥା ମାନିବ ନାହିଁ ।”

“ଭାଇ ତ ଏଠି ଆଗ ଦାନ୍ତ ଘଷି ଗଲା—”

“ଫେର୍, ଫେର୍ ଦଉଚୁ ଜବାବ୍ ! ତୋ ମୁହଁ ଭାଙ୍ଗିଦେବି, ଜାଣିଚୁ ? ହାଇବେ, ଅଜ ! କୁଆଡ଼େ ଗଲୁ, ଆ, ତତେ ଦେଖୁଚ । ଆଜ ତୋର ଦନେ କ ମୋର ଦନେ ।”

‘ଅଜ’ ‘ଅଜ’ ରଡ଼ି—ବନସ୍ତ ଘରଆଡ଼େ ରଡ଼ି ରଡ଼ି ବୁଲିଲା । ଅଜ ପାଇଖାନାରୁ ବାହାରିଲା ନାହିଁ ।

ବନସ୍ତ ଶାନ୍ତ ସ୍ଥାପନା ବାହାନାରେ ଯୁଦ୍ଧ ଘୁହେଁ । ଜଲନ୍ତା ବଢ଼ିଗ୍ଲଲ ପର ଘୁହେଁ ନଜେ ଜଳ ସବୁଥରେ ଫୋଡ଼ କରିବାକୁ । ମଝିଦୁଆରେ ଠିଆ ହୋଇ ରଡ଼ି ଗ୍ଲଡ଼ିଲା—

“ଯେତେ ଅବାଧ୍ୟତା, ଯେତେ ଅଲକ୍ଷଣା ପ୍ରକୃତ, ସବୁ ମା’ଙ୍କ ଗୁଣ ।”

ଅଜବୋଉ ତା’ର ଯୁଦ୍ଧ ପ୍ରସ୍ତାବ ଗ୍ରହଣ କଲେ ନାହିଁ । ଗ୍ରେସ୍ପେଇଘରେ ଜଳଉଠିଲାଣି ହସ ହସ ଚୂଲି । ମାନବ ସଭ୍ୟତାର ନଦାନ ମୂଳକୁ ସ୍ଥାପନା କରିସାରି ଘରର ଘରଣୀ ହସି ହସି କହିଲେ—

“ଆଗୋ, ଏ କଏ କଣ କରିବ ? ଘୁଡ଼ାଖୁ ନାହିଁ ବୋଲି ତେମେ ବେଙ୍ଗ ଘୁଅ ସାଉଁଟିବ, ସେ କଣ ମୋର ଦୋଷ ? ଘୁଡ଼ାଖୁ ପେଇଁ ତେମେ ଏ ଘରଦୁଆର ଭାଙ୍ଗିବ ? ମା ଲୋ ; ମିଣିପେ ଯେବେ ଏମିତ ହେବେ, ତେବେ ଗୋଧକୁ ମଣିଷ କାହିଁକ ଧୂଓ ଧୂଓ କହିବ ? ଛ’ଅଣା ପଇସା ତ ପଡ଼ିଚ ମୋ କୋଥଲିରେ । ନଉନା ଦ’ଟା ପଇସା, ଘୁଡ଼ାଖୁ ଅଣ । ପିଲୁଟିରେ ଅଜ, କୁଆଡ଼େ ଗଲୁ,— ବାପାପେଇଁ ଘୁଡ଼ାଖୁ ଦ’ପଇସାର କଣିଆଣ ।”

ବନସ୍ତ ଏଥର ହୋ ହୋ ହୋଇ ହସିଲା ।

ସ୍ୱବଳ, ନାରଣରେ ଫୁଟ୍‌ବଲ୍ ତଥ୍ୟକୁ ଏଇ ତା'ର ପ୍ରଥମ ଅନୁଶୀଳନ । ହସିବାକୁ ପଡ଼ିବ, ବଢ଼େଇ କରି କହିବ, ଅଭାବ ସତ୍ତ୍ୱେ ସେ ହସିପାରୁଚି ।

ଛ'ଅଣା ପଇସା ଅବିଷ୍କାର ହେବାର ଶୁଣି ଅଳ ବାଉଥାନ୍ତ୍ୟ ଅସି ଅଳ କଲା, "ବୋଉ ଲେ, ପେନ୍‌ସିଲ୍ ନାହିଁ, ମତେ ଢଳଅଣା ପଇସା ହେଲେ ଦେ—"

ଉଷା ମାଂସ ଖାଇବାକୁ ଭଲ ପାଏ, ପାଏ କ୍ୱଚିତ୍ । ବୋଉର ଥୋମଣିରେ ହାତ ବୁଲେଇ ଅଲ୍‌ଅଳୀ ହୋଇ ପାଟିକଲା, "ବୋଉ, ଆଜ ମାଉଁସ ଆଣ୍, ମାଉଁସ ହବ !"

ସବୁ ଶୁଣି ବନସ୍ତ୍ୱ ମନକୁ ମନ କହିହେଲା, "ହସିବାକୁ ପଡ଼ିବ ।" କ୍ରମେ ତା'ର ହସ ନିଃସ୍ୱ କାଣ ପରି ବଢ଼ି ବଢ଼ି ଗ୍ଲାଲା । ତାକୁ ଦେଖି ପିଲାଏ ବି ହସିଲେ । ଆଉ ଅଳବୋଉ କହିଲେ, "ଆଉ ମଁ, ଏତେ କାହିଁକ ହସୁଚ ? ଶ୍ଳେପରି ହଉଚ ?"



# ଆଭା

ସୂର୍ଯ୍ୟ ଅସ୍ତ ହୋଇଯାଉଛି ।

ସୀମାହୀନ ଆକାଶ ସତେ ଅବା ଆଶା ପ୍ରତୀକ୍ଷାରେ ଝଲଝଲ ମୁହଁଟିଏ ନ ପାଇ ସଙ୍କେଇହେବା ବେଳର କଳା ପାଣି ବୋହି ପଡୁନାହିଁ ସେ ମୁହଁରୁ, ପାଇ ପାଇ ନିଃସ୍ବ ହେବାର ବିରସ ପିତଳ ଛାଇ ନାହିଁ, ନିର୍ଜୀବ ରୂପେଲି ପାଣି ନାହିଁ, କହି ହେବନାହିଁ ଯେ ଆକାଶରେ ସେତେବେଳେ ଗୋଟାଏ ବର୍ଣ୍ଣ ଅଛି, ଯାହାକୁ ଗୋଟାଏ ନିଦା ଅଚଳ ଜଡ଼ ପଦାର୍ଥର ଉପର ଖୋଳ ସଙ୍ଗେ ଏକାଠି ଲିପ୍ତ ହୋଇ କହି ହୁଅନ୍ତା ଏଇଟା ନେଳି, (ଯେମିତି ଧୋବା ନେଳି), କି ଏଇଟା ଶାଳୁଆ (ହେଇ ଯେମିତି ସାମ୍ନାରେ ସେ ଲୁହା ଆଲମାରି ଉପରେ ବୋଳା ହୋଇଛି) କି ଏଇଟା ଅମୁକ ବର୍ଣ୍ଣର (ଯେମିତି ଲୁଗା ଦୋକାନର ଶାଢ଼ୀ ଖଣ୍ଡି ଟି ମାନ) । ବର୍ଣ୍ଣରେ ବାନ୍ଧି ସେ ଆକାଶର ବର୍ଣ୍ଣନା କରି ହେବନାହିଁ, ଗୋଟାଏ ସ୍ପଷ୍ଟ ନିର୍ଦ୍ଦିଷ୍ଟ ନାଁ ଦେଇ ହେବନାହିଁ (ଯେମିତି ଅଙ୍କରେ କହିବାକୁ ଗଲେ, କୋଡ଼ିଏ ହଜାର ତିନିଶହ ଟଙ୍କା ଛୟାଳିଶ ନୟାପଇସା, ବାଲେଶ୍ୱରି ଦି'ମହଣ ଚାଉଳ, ରିଇନ୍‌ଫୋର୍ସଡ୍ କଂକ୍ରିଟ୍‌ରେ ତିଆରି ଦୋମହଲା କୋଠା, ଏ ଯେମିତି ଗୋଟାଏ ଗୋଟାଏ ନିଦାପଣର ସଙ୍କେତ), ଖଣ୍ଡିକ ଖଣ୍ଡି ଅଠାକାଣ୍ଡିଆ ଯୋଖି ଯୋଖି ଧରି ହେବ- ନାହିଁ ତାର ରୂପ, ବ୍ୟାକରଣ ଆଉ ଶବ୍ଦକୋଷରୁ ଗୁଣି ଗୁଣି ଯେତେ ବିଶେଷଣର ତାରକସି କାମ ଏକାଠି କଲେ ମିଳି ପାରିବ ନାହିଁ ସେ ଆକାଶକୁ ।

ଏତେ ଟିକିଏ କାଣିଚାଏ କି ଟୋପାଏ ବୋଲି ଏ ଚେତନା ଭିତରେ, ଯେତେ ପଟେ କହି—

"ମହାର୍ଣ୍ଣବର ଅକଳନ ଅଥଳ ସମୁଦ୍ର ପରି ସେ ଆକାଶ, ଅସୀମ ଅସୀମ— ଅସୀମ, 'ଭୂମା' 'ଉପନିଷଦ'ର ଆକାଶ, ନିତ୍ୟ ସନାତନ",

କିମ୍ବା "ୟୁକ୍ରେନ୍‌ର ଗହମକ୍ଷେତରେ ପୂରା ଫସଲ ଋଦ୍ଧ ହୋଇଥିଲାବେଳେ ଯେମିତି ଦିଶେ ସେମିତି, ଏ— ।"

ଅଥବା "ସେ କେଉଁ" ସାଇବେରିଆର ବରଫ ତରଳିଲା ପରେ ଘାସର ବିସ୍ତୃତି, କି ସ୍ୱାମାଟାସାରୁର ମଲ୍ଲ ଆଗ୍ନେୟଗିରିର କୋଟର ଭିତରେ ଶୋଇ ରହିଥିବା ଗନ୍ଧକ ଗୋଳା ପାଣି, ଯାହା କୂଳରେ ଚେରି ଗଛ ମୂଳେ ଶଙ୍ଖ ମଲମଲ ପଥରରେ ଅଛି ପ୍ରେମପାଗଳିନୀ ନର୍ତ୍ତକୀ ସୋହାଦାର ସ୍ମୃତି ମନ୍ଦିର, ସେ କେଉଁ' ନିରନ୍ଧ୍ର ମଧ୍ୟ ଆଫ୍ରିକାର ନିବିଡ଼ ନାଭିମଣ୍ଡଳର ଉଙ୍ଗୋଉଙ୍ଗୋର ବଣ ଯେଉଁଠି

ବେକ ଟେକିଥାଏ କିଲ୍ଲଫ୍, କି ଅବା ଆଇସଲ୍ୟାଣ୍ଡ୍ ପାଖ ସମୁଦ୍ରରେ ଭାସୁଥିବା ବରଫ ପର୍ବତ ଉପରର ବର୍ଣ୍ଣିଚ୍ଛଟା।"

ବା "କେଉଁଲ ଖଣି ଭିତରେ ପଶି ଏକାଠି ହଜାରେ ଶ୍ରମିକ ପ୍ରଥମ ଥର ଯେତେବେଳେ ଗର୍ଜିତ ସ୍ୱେଟ ହାଣନ୍ତି, ସେ ଯେଉଁ ଧୂଳି ଧୂଆଁ ଉଠେ ଆଉ ତା ପଛେ ପଛେ ଥାଏ ଘନ ଶେଷରେ ମଜୁରର କଳ୍ପନା, ସେମିତି ସେ ପହିଲି ଚେତନାର ବର୍ଣ୍ଣ ପରି ସେ ଆକାଶ—"

କହୁ ଯେ ଯେତେ, ତଥାପି ପାଏ ନାହିଁ, ଅଣ୍ଟେ ନାହିଁ, କେତେ ଧୂଆଁ ଉଠେ, ବଡ଼ର ସିଗାରେଟର, ସୁଠାର, ପିଙ୍ଗାର, ନୁଖୁରୁ ଗଳତାର, ଅଳିଆ ମଇଳା ଅଗଛୁଆ ପୋଡ଼ା ହେବାର, ସ୍ୱୋପେଇ ଘର ଚୁଲିର, ସେ ରୂପ ଆଙ୍କେ ନାହିଁ। ହଜଯାଏ।

ସେ ଆକାଶ ଗୋଟାଏ ଆସ୍ୱ, ମୁହୂର୍ତ୍ତିକର ଜୀବନର ଝଲକ,ଥରେ ଖାଲି ଲଙ୍ଗିରୁକ ଯାଇ ମିଳେଇ ଯିବାକୁ, ସ୍ମୃତିକୁ ଆପଣାର କରି ଆଣେ ପର କରି ଦେବାକୁ, ଭୁଲେଇ ଦେବାକୁ,

ସେମିତି ସେ ଆକାଶ, ସୁମନ୍ତର ହେରୁ ପଡ଼ିଥିଲି, ଆଉ ତା ସଙ୍ଗେ ସଙ୍ଗେ—

ସତେ ଯେମିତି ତା ଆଖି ଯୋଖି ହୋଇ ରହିଛି, ଗୋଟାଏ ଲମ୍ବା ଲୁହା ନଳିର ଏ ମୁଣ୍ଡରେ, ଧର ଗୋଟାଏ ଗୁଳି ନ ପଶିଥିବା ବନ୍ଧୁକ ପିଠିଆଡ଼େ, ପରଖିଲା ପରି ଦେଖୁଛି, ସଂଚକ ଦେଖୁଛି ଆପଣା ଅତୀତକୁ, ଠାଏ ଖଣ୍ଡେ ବାଟ ସଫା ପରିଷ୍କାର ଦିଶୁଛି, ମୁନ୍ଦୁସ୍ତ ନାହିଁ, କଳ୍ପ ସ୍ପଷ୍ଟତା ବି ନାହିଁ, ନାନା ଘଟନାର ଆଲୁଅର ତାଉ ଏକାଠି ଆଉଟି ହୋଇଛି, ଖାଲି ଆଲୁଅ ଝଲ ଝଲ ହେଉ ହେଉ ସେ ମୁଣ୍ଡରେ ସେହି ଅଛୁଣ୍ଡା ଫାଙ୍କାପଣଟାହିଁ ଦିଶୁଛି, ଆଉ ସେହି ଆକାଶକୁ ଗୁହିଁଦେଇ ନଳି ସେ ମୁଣ୍ଡରେ ଦିଶୁଛି ହସ ହସ କଳା ମୁହଁ ଟିଏ, ଭୁଣ୍ଡରେ ଘୁଣୁ ଘୁଣୁ ଗୀତ,ମୁଣ୍ଡରେ ବାଲିସନ୍ଧିଯାକ ମଲ୍ଲିଫୁଲ, ଗୋଟାସୁଦ୍ଧା ଫୁଟି ଉଠୁଛି ଚେହେରାଟି, ନେଳିଶାଢ଼ୀ, ବେକରେ ଫୁଲହାର, ହାତଯାକ ଫୁଲହାର ଗୁଡ଼ା ହୋଇଛି, ନାଚଲି ପରି ଗୁଲିଛି, ଏଥର ସେ ଏପଟକୁ ମୁହଁ ବୁଲେଇ ହସିଦେବ ଟିକିଏ, ଖନ୍ଦାଖନ୍ଦି ମଛି କନ୍ଧୁଆ ଦାନ୍ତଗୁଡ଼ିକ, ସଡ଼କ ମଝିରୁ ଗୁଉଁକିନା ଚହଲି ଆସିବ ତା ଗୃହାଣି, ଦୋରଣ୍ଡା ବାଡ଼ ଡେଇଁ, ଗୋଲାପ ବଗିଚ୍ଚ ଡେଇଁ, ଗଙ୍ଗଶିଉଳି ଗଛର କରବାଟେ, ସେହି ଯେଉଁଠି ପଲେ ନାଲି କୁକୁଡ଼ା ମାଟି ଖୁମ୍ପି ଖୁମ୍ପି କଣ ଖୋଜୁଛନ୍ତି, ତାଙ୍କ ଉପରବାଟେ ବସିଛି ସାମ୍ନାପଟୁ ଚଢା ଓସାରମୁହାଁ ପଟ୍ଟନାଇକଙ୍କ, କ୍ରୁକ୍ସ ଦଓ୍ୱାନ୍ ଚଷମା ପିନ୍ଧା ମୁହଁଟି ସବୁବେଳେ ବିନା କାରଣରେ ବି ଦିଶୁଥାଏ ଖୁବ ବିହ୍ୱଳ, ସେହି ଗୃହାଣୀ ରାସ୍ତା ମଝିରୁ ଚହଲି ଅସିବ ପଟ୍ଟନାଇକଙ୍କ ମୁହଁବାଟେ

(ତାର ହୃତ୍‌ଲର କଣ), ବନ୍ଧବ ସୁମନ୍ତର ଅଖିରେ, ଗ୍ରୀବ ଦପ୍ ଦପ୍ ହେବ, ଆସିବ ଗୋଟାଏ ଦୀର୍ଘଶ୍ୱାସ, ଗୃଣଆଡ଼ୁ ଚୂପୁଡ଼ ଚୂପୁଡ଼ ସରୁ ସାନ ସୁଗନ୍ଧରାଜ ଗଛ ଅଗରେ ଫୁଲ୍‌ଟିଏ ଫୁଟିଲ ପରି ! ସେହି ମୁହୂର୍ତ୍ତକ ତ । ତାପରେ ପୁଣି ବୃଲ ପଡ଼ିବ ସେ ମୁହଁ ଟେଉ ପରି ଅଗକୁ ମାଡ଼ିଯିବ ସେ ରୂପ, ଟିକଏ ଆଗରେ ସେ ଯେଉଁ ଖପର୍ଲି ଘରେ ଗୃହା ହୋଟେଲ ହୋଇଛୁ, ତା ସାମ୍ନାରେ ଟିଣ ଘରେ ଠକ୍ ଠାକ୍ ଲୁହାପଥ ପିଟା, ଟୁଙ୍କ ଝଆଗ ହୁଏ, ଯେଉଁଠି ସଢ଼କର ବାଙ୍କ; ଲଳିତା ସେଇଠି ଅଦୃଶ୍ୟ ହୋଇଯିବ ।

ତାପରେ ଆକାଶର ଅଭ୍ର ହେବ ବର୍ଣ୍ଣପୁଟ, ଖ୍ୱପାର ଫନ୍ଦ ଭିତରେ ତାକୁ ବାନ୍ଧି ହେବ । ପଟ୍ଟନାଇକଲୁ ପ୍ରକ୍ଷଣ ଦୃଷ୍ଟିରେ ସୁମନ୍ତକୁ ଗୃହିଁ ଦେବ, ଆଉ ହସି ଦେବ ।

ହୁଏତ ସେ କହିବ । "କଲା ଭଅଁର ପରି କଲାଡୋଳା, ହରିଣୀ ଗୃହାଣି ପରି ଗୃହାଣି, କ ନାକ ! କ ମୁହଁ ! କ ଗଢ଼ଣ ! କ ଗୃଲି ! ସତେ ଏକା, କଲାଲୋକ ଯେତେବେଳେ ସୁନ୍ଦର ହୁଏ, ସେ ପ୍ରକୃତରେ ହୁଏ କଲା ।"

ସୁମନ୍ତ କହିବ, "ଭାରି ପ୍ରେମିକ ତୁମେ ଗ୍ୱୟ ଗ୍ୱମାନନ୍ଦ, ଆଉ ଭାଷାରେ ନନ୍ଦା ବନ୍ଦା କାଠି, କହିବଟି ତୁମ ପାଲକ୍ରଣ୍ଡା ଟୋର ଓଡ଼ିଆ ବୋଲ୍‌ଟା,—କେମିତି କହନ୍ତିଟି । ବାପ ପଖାଳ ଖାଇ ବସିଥିବ, ପୁଅକୁ କହିବ ଶିକାରୁ ପିଆଜ ଆଣିଦେ,—କହି,—କଣ ଉଟି (ଶିକା) ଉପରୁ—"

ପଟ୍ଟନାଇକଲୁ ହସି ହସି କହିବ—"ଉଟି ଉପରୁ ଉଲି କାଛଲୁ (ଫଳ) ଆଣିଷ୍ଟ୍ଲୁ (ଆଣିଲୁ) ? କଥା ବଦଳୋଉଚ, ସେକଥା ନୁହେଁ । ଏଇ ଦେଖିଲ ତ, ଲଳିତା ! ସବୁଦିନେ ଗୃହୁଁଛ, ହସୁଛ, ଗୃଲିଯାଉଛ । ଖାଲି କଣ ଆଖିରେ ଅନେଇ ଦେଇ ଯାଉଚ ଭାବୁଚ ? ତା' ହାତ ଗୋଡ଼ ସବୁ ଅନେଇଁ ଅନେଇଁ ଯାଉଛନ୍ତି । ତାର ପିଠିଟାବି ତମ୍କୁ ଅନୋଉଚ ।"

"ମତେ ନା' ତମ୍କୁ ? ଗୃଲ ଗୃଲ ଭୁଲିଯିବ ।"

କଲୁ ଭୁଲ ବାଟରେ ଲଳିତା ଅଖିରେ ପଡ଼େ ନାହିଁ । ପଲ୍ ପଲ ମୂଲଅଣୀ ଝିଅ ଘରକୁ ଫେରୁଥାନ୍ତି । ସେମାନେ ବି ଫୁଲ୍ ନାଇ ଥାନ୍ତି, ଗୁଣୁ ଗୁଣୁ ହୋଇ ଗୀତ ବି ବୋଲୁଥାନ୍ତି କେହି କେହି । ଦୁମୁ ଦୁମୁ ଗୃଲି, କହି କହି ହସ, କାହା କାହା ଗୃହାଣି କେମିତି ଓଦା ଓଦା, କାହା ଗୃହାଣି ଅଠାଳିଆ । ସୁମନ୍ତ ଗୃହେଁ ନାହିଁ ।

ଅଲୋଚନା ପଡ଼ିଯାଏ । ଦେଶରେ ଅବସ୍ଥା । ଶାସନର ଅବସ୍ଥା । ରାଜନୀତି । ଗ୍ରାମାଞ୍ଚଳ ପରିସ୍ଥିତି । ମଣିଷ । ସେହି ବିଷୟରୁ ସବୁଠୁ ବେଶି କୌତୁକିଆ, ବେଶି ଚମକପ୍ରଦ । କିଏ କି ପ୍ରକାର ଉପାୟ ଧରିଛି, ଷଡ଼ଯନ୍ତ୍ର କରୁଛି, ମେଣ୍ଟ ଗଢ଼ୁଛି ହାତଆର ପକୋଉଛି । କିଏ ଚିତ୍‌ପଟାଙ୍ଗ ହେଲା, କିଏ

ଉପରକୁ ଝେପା ମାରିଲା । କଏ ହସୁଚ, କଏ ଖସୁଚ କାହା ଧନକାଳ ଆସୁଚ । ପୃଥିବୀରେ ଲଗି ରହିଚ କେତେ ଅନ୍ୟାୟ, ଅତ୍ୟାଚାର, ପରେ ଲଗି ରହିଛ ରୋଗ, ଅଭାବ, ସମସ୍ୟା ।

ସଡ଼କ ପରେ, ତୋଟାମାଳ ଅପେ, ବଡ଼ ପୋଖରୀ ଆପେ, ତା ପେକରେ ଠିଆ ହୁଏ କେଉଁ କାଳର ବୁଢ଼ା ପର୍ବତ । ପର୍ବତ ତଳେ ଅଛି ପୁରୁଣା ଭଦ୍ରେଶ୍ୱର ଦେଉଳ ! କେତେ ପାନଖିଆ ପରେ, କେତେ ସିଗାରେଟ୍ ପୋଡ଼ିଯାଏ । ଖଇରିଆ ଆକାଶ ଆଡ଼କୁ ଚାହିଁ ରହି ଅଣ୍ଟାରେ ହାତ ଦେଇ ଠିଆ ହୋଇ ରହି ପଟ୍ଟନାଇକଙ୍କୁ କୁତୂହଳରେ କେବେ କଦବା ସୁମନ୍ତ ପଚାରେ ପଦେ,

"କଏ ସେ ପେ, ଟୋକୀଟାର ଖାଇ, ଲଳିତା ?"

ସେହି ଟେହେରାଟା ମନେ ପଡ଼ିଯାଏ, ସେମିତକ ପ୍ରଶ୍ନର ସେ ଉତ୍ତର । ସେ କଏ ମୋ ପଟ୍ଟନାଇକଙ୍କୁ ଜାଣେ ନାହିଁ ! ସେ ଦିନେ କେବେ ଶୁଣିଥିଲା କଏ ଜଣେ ମାଙ୍କୀ ଲଳିତା ବୋଲି ଡାକଥିଲା, ହିଁଅଟି ଓ' କଲା, ସେ ଜାଣିଲା, ତା ନା ଲଳିତା । ସେତକ ସେ ଜାଣେ । ସେ କୁଲି କାମ କରେ । ଫୁଲକୁ ତାର ଖାଉ ଶରଧା. ପଟ୍ଟନାଇକଙ୍କୁ ଦେଖିଛି ସେ ଫୁଲହାଟରୁ ଏକାଥରେ ଓଳଅଣା ଚାରିଅଣାର ଫୁଲହାର କିଣିଛି । କେବଳ ସେତକ ।

ଗଲା, ଦିନଟିଏ । ଦୁଇ ବନ୍ଧୁ ଫେରିଆସନ୍ତି, ତରୁଣ ଇଞ୍ଜିନିଅର ସୁମନ୍ତ ମିଶ୍ର, ପୋକମରା କର୍ମଚାରୀ ଭି: ସ୍ୱେଲ୍ ସ୍ୱେନ୍ ପଟ୍ଟନାଇକଙ୍କୁ, ଦେଶର ଉନ୍ନୟନ ଯୁଗର ଯୋଡ଼ିଏ କର୍ମୀ, କେବଳ କଥା ପଡ଼ିଲେ କୁହା କୋହି ହୁଅନ୍ତି—"ଆମେ ଖାଇ ଭଲରେ ଅଛୁ, ଆମର କଷ୍ଟ ନାହିଁ କି ଚାନ୍ତ ନାହିଁ ।"

ଗସ୍ତରେ ନ ଯାଇ ସହରରେ ଥିଲେ ପୁଣି କେବେ ସେହି ସୂର୍ଯ୍ୟାସ୍ତ ବେଳେ ହଠାତ୍ ଛୁଟିଟା ଚାହିଁ କରେ, ଲାଗେ ହେଇ ସେ ଆସୁଥିବ । ଯଦି ନ ଆସେ ମନ ଭିତରେ ସନ୍ଦେହଟା ଦବ ଦବ ଯାଏ । ନ ହେଲେ ସନ୍ତକୁ ସନ୍ତ ସେବାକେ ସେ ଯାଏ, ଅନ୍ୟମନସ୍କ ହେଲ ପରି ବେକ ଉଞ୍ଚା କେଇ ସୁମନ୍ତ ଅନାଇଁ ରହିଥାଏ । ଲଳିତା ମୁହଁ ବୁଲାଏ, ସେମିତ ଟିକେ ଚାହିଁ ଦିଏ, ହସିଦିଏ ଚାଲିଯାଏ ।

କେବଳ ଆଉ ଦିନକର ଘଟନା । ସେଦିନ ବି ବସିଥିଲା ଭି ସ୍ୱେଲ୍ ସ୍ୱେନ୍ ପଟ୍ଟନାଇକଙ୍କୁ । ଲଳିତା ମୁହଁ ବୁଲେଇ ହସି ଦେଲା ମାତ୍ରେ ସେ ଡାକ ଗୁଡ଼ିଥିଲା, "ଲଳିତା !" ଘଟନାଟା ଏତେ ଆକସ୍ମିକ ଯେ ସୁମନ୍ତ ଚମକ ପଡ଼ିଲା । ମନା କରିବାକୁ ଭାବିବା ଆଗରୁ ଲଳିତା ଫାଟକ ପାଖକୁ ଚାଲି ଆସି କହିଲା, "କଣ କହୁଚ, ବାବୁ ?"

ସୁମନ୍ତର ମୁହଁ ଝାଳେଇଲା । ଲଳିତା ତଳକୁ ମୁହଁ ପୋତ ଠିଆ ହୋଇଥାଏ । ଆଜ ତାର କମଳାଲେମ୍ବୁ ବର୍ଣ୍ଣର ଶାଢ଼ୀ । ଗଳାରେ ବହଳ-ମରୁଆ ମାଳର ଗୋଳେଇ ମଝିରେ, କଟା କଅଁଫୁଲର ଅଗ ଗୋଜିଆ ହୋଇ ଠିଆ

ହୋଇଚି । ବେକରେ ବାହାରେ ହଳଦିଆ ଅଁଳାଫୁଲର ହାର । ସୁଠାମ ସୁଲଳିତ ଅବବ୍ୟସ୍କ ଜୀବନ ଆଉ ଯୌବନର ଆଭା ଚହଟାଇ ଅଲୌକିକ ଶିଳ୍ପୀ ହାତର ଅପୂର୍ବ କଳାସୃଷ୍ଟି । ଲଳିତା ଡୋଳା ଟେକି ସୁମନ୍ତଙ୍କୁ ହିଁ ଚାହିଁଲା । ଆଗରେ କିଏ ଡାକିଲା, "ଲଳିତା" ! ଲଳିତା ତୁନି ହୋଇ ଚାଲିଗଲା । ଯେପରି ଗୋଟାଏ କିଛି ବଡ଼ ଘଟଣା ଘଟିଯାଇଛି । ପଞ୍ଚାନାଇକୁଲୁ ଗମ୍ଭୀର ହୋଇ ତଳକୁ ଚାହିଁ ରହିଛି । ସୁମନ୍ତ ବକା ଫଣ ସଡ଼କକୁ ଅନାଇଁ ରହିଛି । ଚଳ ପାଞ୍ଚ ମିନିଟ୍ । ଉତ୍ସବେ ସତେ କି ଗୋଟାଏ ମୁହୂର୍ତ୍ତକୁ ସ୍ମରଣକରି ସମ୍ମାନ ଦେଖାଉଥାନ୍ତି । ଠିଆ ହୋଇ ନ ଥିଲେ, ଚୌକିରେ ବସିଥିଲେ, ଏତିକି ଯାହା ସାମ୍ନାରେ ଟେବୁଲ୍ ଉପରେ ଥୁଆ ହୋଇଥିଲା ମୋଡ଼ିଏ ଖାଲି ଚାହା କପ୍, ଚାହା ସରିଥିଲା, ଗୋଟିଏ ପାନ ଥାଳିଆ,—ପାନ ସରିଥିଲା ।

"ପଞ୍ଚାନାଇକୁଲୁ ।"

ସେ ତ ଅପେକ୍ଷା କରିଥିଲା । ଉଦାସ ହୋଇ କହିଲା, "କହ । ଠିକ୍ ହେଲ ନାହିଁ ।"

ପଞ୍ଚାନାଇକୁଲୁ ପ୍ରତିବାଦ କରିବାକୁ ତେଜି ଉଠିଲା, ବାଧା ହସ ହସି କହିଲା, "ଫୁ' ।"

ସୁମନ୍ତ ଆଉ କିଛି କହିଲା ନାହିଁ । କିନ୍ତୁ ପଞ୍ଚାନାଇକୁଲୁ କହିଲା । ସେ ସତେକି ବଳକା ବାହାଦୁରୀ ଦେଖାଇ ନିଜର ଦୁର୍ବଳ ମନକୁ ଛାଡ଼ିଦେଇ ଟେକିବାକୁ ଆଗୁସାର । କହିଲା, "ଆଃ ! ମଜା କରି ଡାକ ଦେଲ, କିଏ ହୋଇଗଲା ? ଆମ ଆଖିରେ ସେ ଗୋଟାଏ ଚଳନ୍ତା ଛାଇ, ମନ ଭେଳି ଛାଇଟା ପଦେ କଥା କହୁତ, ମୂର୍ତ୍ତି ହଉ । ଦେଖିଲ ତ ଡାକିଲେ ପାଖକୁ ଆସୁଚ । ସେମିତି ସେ ।"

ସୁମନ୍ତ କହିଲା, "ସେ କବିତା ହେଲନାହିଁ ବାବୁ, ସେ ପୋକମରା ।"

"ନା ନା, ନିର୍ଜ୍ଜୀବ ଖଣ୍ଡ ଉପରେ ଆଲୁଅ ଜଳିଉଠିଲା ।"

"ମୋଟେ ନୁହେଁ, ସେ ପୋକମରା । ସେ ସେମିତି ବୋଲି କହି ତୁମେ କ'ଣ କହିବାକୁ ଚାହୁଁଛ ? ମଣିଷର ନାନା ସେମିତି ଗୁଣ ଅଛି । କବି କୁହ, ବାବାଜି କୁହ, ମହାପୁରୁଷ କୁହ, ସେମାନେ ସମସ୍ତେ ନିତ୍ୟକର୍ମ ସାରନ୍ତି । ସମସ୍ତଙ୍କର ମଣିଷ ଶରୀର, ଜୀବ ଅଛି ବୋଲି ଜଡ଼ କୁଆଡ଼େ ଯିବ ? ସେଇଥିପାଇଁ କହୁଥିଲି, ସେ ଯେମିତି ହେଉଥାଉ ତମର ସେଗୁଡ଼ାକ ପାଖରେ କ'ଣ ଅଛି ?"

"ହଉ ହଉ ଚାଲିଯିବା ଚାଲ ।"

ତା'ପରେ ଆଉ ପାଞ୍ଚ ସାତ ଦିନ ବିତିଗଲା, ଲଳିତା ଯେବାଟେ ଚାଲିଚାଲିଗଲେ ଆଉ ବୁଲିପଡ଼ି ଅନାଇଲା ନାହିଁ । ସତେ ଯେପରି ସେ ଘରଦ୍ୱାର ସେଠି ନାହିଁ ; ଖାଲି ସପ୍ନ ।

ତା'ପରେ ପୁଣି ଯେବେ ସେବାଟେ ଗଲାବେଳେ ସେ ଖୋଜିଲା ଖୋଜିଲା ପରି ଅନାଉଁଥିଲା, ସୁମନ୍ତ ଘର ଭିତରୁ ପଦାକୁ ବାହାରି ଆସିଥିଲା। ଲଳିତା ଗଲଣି। କେବେ, ଅକସ୍ମାତ୍ ଦେଖା ଯିବନାହିଁ।

କିଏ ତା'ର ଲଳିତା ? କେହି ନୁହେଁ। ସ୍ରୋତରେ ଜଞ୍ଜାଳରେ ଆନନ୍ଦରେ କେବେ ତା'ର ଯୁଝ ପଡ଼ନାହିଁ। କେବେ ସେ ଫାଟକ ପାଖକୁ ଆସିନାହିଁ। ସଡ଼କରେ ଗୋଟାଏ କେହି—ନୁହେଁ ମଣିଷ, ସୁମନ୍ତର ଇତିହାସର ପୃଷ୍ଠା ଉପରେ କେଉଁଠି ବୋଲି ନାହିଁ ତା'ର ନାଁ। ତା'ର ସ୍ୱତନ୍ତ୍ର ସୁଖଦୁଃଖର ଜୀବନ, ତା'ର ପରିବାର, ସ୍ତ୍ରୀ ସନ୍ତାନ ବନ୍ଧୁବାନ୍ଧବ, ସାଙ୍ଗସାଥି, ତା'ର କର୍ତ୍ତବ୍ୟ, ବୃତ୍ତି, ବନ୍ଧୁତା, ଶତ୍ରୁତା। ହେଲା ନ ହେଲା ମିଳିଲା ନ ମିଳିଲାମସ୍ତ ଜୀବନ କାହାଣୀ ଭିତରେ ତା'ର ସମ୍ପର୍କ ସମ୍ବନ୍ଧମାନ ଦିନ ବାର ମାସ ସନ ଘଟଣା ଓ ଝଡ଼ ପବନର ମାପରେ ମାପି ହୁଏ କେତେ ବାଟଯାଏ। ସେଥିରେ ନ ଥାଏ ଲଳିତାର ନାଁ ଗାଁ। ଲମ୍ବି ଗଲାନି କାହାଣୀ। ସ୍ଥାନ ବଦଳି ହେଲା। ପଛନାଇକୁଲୁ ରହିଗଲା। ଏମିତି ରହିଲେ କେତେ ବନ୍ଧୁ। କେତେଠୁଁ କେତେ ବନ୍ଧି ହୋଇ ହଜି ହଜି ଗଲା ତା'ର ମୁହୂର୍ତ୍ତିକର ଅନୁଭୂତି।

ତା'ପରେ ହେଲ ଆଗରେ ଗ୍ରେଟ ରେଲ ଷ୍ଟେସନ ପାଖେ ଗୋଟାଏ ଗ୍ରେଟ ବସ୍ତି। ଆଗର ଜାଗାଠୁ ଦେଢ଼ ଶହ ମାଇଲ ଦୂରରେ ଛପ ଉପରେ ବସ୍ତିଟା ବସିଛି। ତହିଁରୁ ଫାଲେକେ ଅଗ୍ରଏ ଜାଗାରେ ଗୋଟାଏ ଇଲେକ୍ଟ୍ରିକ ସବ୍-ଷ୍ଟେସନ ଗଢ଼ାହେଉଛି। ଜଣାଜଣା କୁଳିଆ ଗୁଡ଼ାଏ। "ଯେତେ ଆମର, ତାର ଗେରେ ହେଉଛି ଯନ୍ତ୍ରପାତି ଯାଉଛି ସବୁ ଏଇ ବଦମାସ ଗୁଡ଼ାକଙ୍କ କାଣ୍ଡ ଆଜ୍ଞା, ଦୁ'ଟା ଧରାହେଲେଣି ତଥାପି ଯେଉଁ କଥାକୁ ସେଇ କଥା। କୁଆଡ଼ କୁଆଡ଼ର ସବୁ, ପରିବାର ପରି ବସିଛନ୍ତି ସିନ କିଏ କୋଉଠୁ ଆସିଛି ଜଣାନାହିଁ। ରାତି ହେଲେ ଏଠି ଗୋଟାଏ ଆଡ଼ଡ଼ା ବସିବ, ମଦ, ଜୁଆ ଗୁଡ଼ାକୁ କ'ଣ ଆଉ କହିବ। ହେଇ ସେଇ ଟୋକି ଘରଟା ଦେଖୁଛନ୍ତି, ସେ ପିଜୁଳିଗଛ ପାଖଟା ସେଇଟାତ ସାକ୍ଷାତ୍ ସଇତାନର ବସା। ଏଗୁଡ଼ାକ ଏଠୁ ଉଠି ଯାଉନାହାନ୍ତି, ସବୁ ଗଣ୍ଡଗୋଳର ମୂଳ ଏ ଜାଗାଟା। ସ୍ୱାଙ୍କର ବି ଭାରି ବଡ଼ ବଡ଼ ସମର୍ଥକ ଅଛନ୍ତି, କ'ଣ ଆଉ କରିବା, କରନ୍ତୁ।"

ସ୍ଥାନୀୟ କର୍ମଚାରୀ ଅଭିଯୋଗ ବଖାଣୁଥିଲେ। ପିଜୁଳିଗଛ ମୂଳରୁ ପଦାକୁ ବାହାରିଲା ମାଇପିଟିଏ। ମୁରୁକି ଲୁଗା ଲୁହାରେ ତିଆରି ଆଂଶିଆଂଶିଆ ମୂର୍ତ୍ତି, ସଫା ଛଡ଼, ସେଥିରେ ଘୁରି ହୋଇଛି ହାଲୁକା ଶାଗୁଆ ନାଇଲନ୍ ଶାଢ଼ୀ, ବ୍ଲାଉଜ। ଦୁଇଧାର ହୋଇ କାନ୍ଧ ଉପରୁ ସାମ୍ନାକୁ ବେଣୀ ଓହଳିଛି। ସ୍ନୋ ପାଉଡରେ ଚୋଲା ହୋଇ ଘଷା ହୋଇ ହାଡ଼ୁଆ ମୁହଁଟା ଦିଶୁଛି ମୁର୍ଦ୍ଦାରିଆ, ଆଖି ପତାରେ

ବହଳ କଳା ଅସ୍ତର, ଉପର ଓଠ ଉପରେ କାଳିଚା କାଳିଚା ହୋଇ ଦିଶୁଛି କ'ଣ କଣେଗାରେ ପରି । ଓଠ ଦି'ଟାରେ ସତେ କି କଷାରକ୍ତ ବୋଳା ହୋଇଛି । ଡାହାଣ ହାତ ପାପୁଲିକୁ ବଙ୍କେଇ ମୁହଁ ଆଗରେ ଅଳ୍ପ ଉଢ଼ୁଆଳ କରି ସେ ଗୋଟିଏ ଆଡ଼କୁ ଢଳିପଡ଼ି ସାମ୍ନାକୁ ଚାହିଁଲା । ତା'ର ନଖଗୁଡ଼ାକ ଲମ୍ବି ଯାଇଛି । ନଖ ଉପରେ ବି ସତେଜ ଗାଢ଼ ନାଲି ରକ୍ତବୋଳା ହୋଇଛି ।

ସ୍ଥାନୀୟ କର୍ମଚାରୀ ସୁମନ୍ତର କାନ ପାଖେ କହିଲେ, "ଏଇ ସେଇ ସଇତାନ୍ ସାର୍, ସବୁ ନାଟର ଗୋବର୍ଦ୍ଧନ । ନକଲି—ନକ୍ସଲି—ଏ ବାଳଗୁଡ଼ାକ ବି କିଣିଆଣି ଲଗେଇଚି । ଏ ଦାନ୍ତ ବି ତା'ର ନୁହେଁ । ତିନିଟା ବଡ଼ ବଡ଼ ଝିଅ ଅଛନ୍ତି ତା'ପାଖରେ, ତିନିହେଁ ଚାରି ପ୍ରକାର, ହେଇ ହେଇ ଆସିଲେ ଯେ— ।"

ଗୋଟାଏ ବଡ଼ ବିଲେଇ ପାଖରେ ତିନିଟା ସାନ ବିଲେଇ ଘୁରେଇ ହେଲା ପରି, ସୁମନ୍ତ ଚାହିଁ ଦେଖୁଛି, ସେପାଖ ଜଣକ ଡେଙ୍ଗା ଆଉ ଶଙ୍ଖ ଧଳା, ତା' ପାଖଟି ଗୋଲଗାଲ ହୋଇ ବାଙ୍ଗର ହୋଇ କାଳୀ ହୋଇ ସ୍ତ୍ରୀଲୋକଟିଏ, କାନ୍ଧ ଆଉ ମୁଣ୍ଡ ଲାଗି ଯାଇଛି, ଆରକ ସରୁ ଧେଡ଼େଙ୍ଗୀ ଗୋରା ସ୍ତ୍ରୀଲୋକ, ଚଟା ମୁହଁ, ସାନ ନାକ, ସରୁ ସରୁ ଆଖି । ନାଇଲନ୍ ଆଉ ଲିପଷ୍ଟିକ୍ ଆଉ ଭ୍ୟାନିଟି ବ୍ୟାଗ । ଧାଡ଼ିହୋଇ ଠିଆହୋଇ ଏପାଖକୁ ବଲ୍‌ବଲ୍ କରି ଅନାଇଛନ୍ତି । ସେମାନଙ୍କ ପରିଦର୍ଶନ ସମ୍ଭବତଃ ସରିଗଲା, ଗୋଟି ଗୋଟି ହୋଇ ଫେରିଗଲେ ।

ଶେଷରେ ବୁଲିପଡ଼ି ଗଲା ମୁଣ୍ଡୁଚାଣିଆ ଲୁହା ଛଡ଼ ପରି ସ୍ତ୍ରୀଲୋକଟି । ପିଠିଆଡ଼ୁ ଦିଶୁଥିବା ତାର ଚାଲିର ବିଶେଷତ୍ୱ ଦେଖୁ ଦେଖୁ ସୁମନ୍ତର ଆଖି ଆଗରେ ଯେପରି କି ଲମ୍ବିଗଲା ଗୋଟାଏ ପୋଲ୍ ନଳି ଆଉ ସିଧା ସେ ମୁଣ୍ଡରେ ବସିଗଲା ଯେପରି କି ସେଇ ଅତୀତର ହଜିଲା ମୂର୍ତ୍ତିଟା । ତାର ତଳି କର୍ମଚାରୀ ପିଠି ବୁଲେଇ ପଛକୁ ଚାଲିଯାଉଛନ୍ତି । ସୁମନ୍ତ ସ୍ଥାନ କାଳ ଭୁଲି ଡାକ ଛାଡ଼ିଲା, "ଲଳିତା—"

ସ୍ଥାନୀୟ କର୍ମଚାରୀ ବୁଲିପଡ଼ି ଅନାଇଲେ । ଅଗନ୍ତୁ ମୁରୁଚାଖିଆ ଲୁହାର ମୂର୍ତ୍ତି ବୁଲିପଡ଼ି କର୍କଶ ପାଟିରେ ଚିତ୍କାର କଲା ।

"କିଏ ଡାକୁଚି ମତେ ?"

ସେପଟେ ମାଲଗାଡ଼ିଟାଏ ଥୁଆ ହୋଇଥିଲା, ସେ ବି ବଲିବଲେଇଲା ପରି ଘଠି ଚର୍ଚ୍ଚିରେଇ ଧକ୍ ଧକ୍ ହୋଇ ଚାଲିବାକୁ ଆରମ୍ଭ କଲା ।

ସୁମନ୍ତ ସଙ୍ଗେ ସଙ୍ଗେ ବୁଲିପଡ଼ି କାମ ଆଡ଼କୁ ଚାଲିଲା । ତଳ କର୍ମଚାରୀ ଆଶ୍ଚର୍ଯ୍ୟ ହୋଇ ତା ମୁହଁକୁ ଅନାଇଲେ, ତାଙ୍କର ଅଭିଯୋଗ କୁଆ ଯେପରିକି ସରି ନ ଥିଲା, କହିଲେ, "ଦେଖିଲେ ନା ସାର୍ ସେମାନଙ୍କୁ, ସେଗୁଡ଼ାକ—"

କଥା ଉପରେ କଥା କହି ସୁମନ୍ତ କହିଲା, "କହନ୍ତୁ ଆପଣଙ୍କ ନୂଆ

ଟ୍ରାନ୍‌ସଫାର୍ମର୍‌ର ଖବର କଣ ? ଏଗୁଡ଼ିକ ନୂଆ ହୋଇ ଆମ ଦେଶରେ ତିଆରି ହେଉଛି ନା, ନୂଆ ନୂଆ ଆସୁଛି । ମତେ ତ ଲାଗୁଛି ସ୍ୱେ ସେ ବିଦେଶୀ କମ୍ପାନୀଠୁ ଭଲ୍ ପଡ଼ିବ । ନା କଣ ଆପଣଙ୍କ ମତ ?''

ସେ କ ଉତ୍ତର ଦେଲେ ପାଖରେ ଥାଇ ବି ସେ ସେସବୁ ଶୁଣି ପାରିଲା ନାହିଁ । ସେ ଦେଖୁଥିଲା କେଉଁ ବାର ବର୍ଷ ତଳେ ଦେଇଥିବା ଆକାଶର ଆଖି, ଛୁଲକା ଛୁଲକା ଦୃଶ୍ୟ, ଶାଗୁଆ ଦୋରଣ୍ଡା ବାଡ଼ ସେକରେ ମୁହୂର୍ତ୍ତିକର ମୁହଁଟିଏ, ସଜ, ସୁନ୍ଦର, ସେଠି ମୁକୁଟ ଲାଗି ନାହିଁ । ଆଖିରେ ଅମଳାନ ଯୌବନର ଅଞ୍ଜନ ବୋଲି ଉଦାର ସହାନୁଭୂତିରେ ସେ ଦେଖୁଥିଲା ।

ହଠାତ୍ କହିଲା, ''ଆପଣ ଡ଼ାକ୍ତର କାହିଁକି ଆଜ୍ଞା, ଆପଣ କବାଟ ନ ଖୋଲିଲେ କେହି ପଶି ଆସିବେ ନାହିଁ । କେହି କିଛି କରିପାରିବେ ନାହିଁ ।

କବାଟରେ ଖଡ଼ ଖଡ଼ ଶୁଭିଲା, ''—ସେଇତ ଅଡ଼ୁଆ ।'' ହସିଦେଲା, ଆଗରେ ସତେ ଯେମିତି ଠିଆ ହୋଇଛି ଭି. ସ୍ୱେଲ. ସ୍ୱେନ୍ ପଟ୍ଟନାଇକଲୁ ।



# ଚକ୍ରପାଣି

କିଏ କେତେ ବିସ୍କୁଟ୍ ନ ଖାଆନ୍ତି ? ଆଜି ଏତେ କଷ୍ଟ କରି ବିସ୍କୁଟ୍‌ର ନିର୍ମାତାମାନେ ବିସ୍କୁଟ୍ ପ୍ରସ୍ତୁତ କରି ଟିଣରେ ବନ୍ଦକରି ତା' ଉପରେ ଛବିମାରି ଏତେ ଦୂରକୁ ଦୂରକୁ ପଠାନ୍ତି ବା କାହିଁକି ଯଦି ତାକୁ ମଣିଷ ନ ଖାଇବେ ? କିନ୍ତୁ ମେଉଁଢନ ଗାଁର ସତୁରି ବର୍ଷର ବୁଢ଼ା ସନାତନପନ୍ଥୀ ଚକ୍ରପାଣି ମହାପାତ୍ରେ ଶେଷରେ ଶେଷରେ ତାଙ୍କ ନାତି ସାତ ବର୍ଷର ପିଲା ଦଣ୍ଡପାଣିଠାରୁ ଛଡ଼େଇ ନେଇ ଯାନ କରି ଖଣ୍ଡିଏ ବିସ୍କୁଟ୍ ଖାଇଦେଲେ, କଥାଟା ଚାରିଆଡ଼େ ଚହଳ ପଡ଼ିଗଲା। କେବଳ ଚକ୍ରପାଣି ଗାଁରେ ବୋଲି ନୁହେଁ; ଆଖପାଖର ସାତଖଣ୍ଡି ମଉଜାରେ, ଆଉ ଏଣିକି ଯେ ଯାହାକୁ ହାଟରେ ବାଟରେ ଯେଉଁଠି ଦେଖିଲେ କୁହାକୋହି ହେଲେ, "ଶୁଣିଲୁଣି, ଚକ୍ରପାଣି ମହାପାତ୍ରେ ବିସ୍କୁଟ ଖାଇଲେଣି।"

ଚକ୍ରପାଣି ସେ ଅଞ୍ଚଳର ଜଣେ ବିଶିଷ୍ଟ ଲୋକ। କେବଳ ଜମିଦାର ବୋଲି ନୁହନ୍ତି ବା ଡାକ୍ତର କମ୍ବୁପାଣିଙ୍କର ସମ୍ମାନାର୍ହ ପିତୃଦେବ ବୋଲି ନୁହନ୍ତି। ସଂସ୍କୃତରେ ଓ ଜ୍ୟୋତିଷଶାସ୍ତ୍ରରେ ତାଙ୍କର ଅଗାଧ ପାଣ୍ଡିତ୍ୟ ଥିଲା। ସଂସ୍କୃତ ଜ୍ଞାନରେ ଯଦି ତାଙ୍କୁ ହରି ବ୍ରହ୍ମା ମହାଶୟଙ୍କ ସଙ୍ଗେ ଲୋକେ ସମକକ୍ଷ ବୋଲି ମଣୁଥିଲେ, ତେବେ ଜ୍ୟୋତିର୍ବିଦ୍ୟାରେ ମଣୁଥିଲେ ଶ୍ରୀଯୁକ୍ତ ଭୋଜରାଜ ଉଦ୍‌ଗାତା ଶାସ୍ତ୍ରୀଙ୍କ ସମତୁଲ। କିନ୍ତୁ ବ୍ରହ୍ମା ଓ ଉଦ୍‌ଗାତାଶାସ୍ତ୍ରୀ ଉଭୟେ ସ୍ୱର୍ଗାରୋହଣ କରି-ସାରିଛନ୍ତି। ତେଣୁ ଜ୍ଞାନର ପର୍ବତ ପରି ରହିଛନ୍ତି ଏକା ସେ। ଏତେ ଗାଁ ମଝିରେ ଯଦିଚ ସ୍ୱାର୍ଥୀ ମଲ୍ଲ ପରିଠାରୁ ଗତ ପନ୍ଦରବର୍ଷ ହେବ ସେ ଏକମାତ୍ର ପଞ୍ଜିକାନ ଅର୍ଥାତ୍ ଆଧ୍ୟାତ୍ମିକ ଚର୍ଚ୍ଚାକୁ ଆଶ୍ରୀକରି ଆପଣା ଘର ସାମ୍ନାରେ ଥିବା ବିଷ୍ଣୁମନ୍ଦିରରୁ ପ୍ରସାଦ ପାଇ ଦାଣ୍ଡଘର ବଖରାକରେ ବାବାଜି ପରି ରହିଛନ୍ତି। ଚଉରା ପାଖେ ଉଞ୍ଚ ଦାଣ୍ଡ ପିଣ୍ଡାରେ ବସି ଟେକିଁଥିବା ସମସ୍ତଙ୍କ ସେ ଝୁଲିମୁଣି ଧରି ମାଳା ଗଡ଼ାଉଥାନ୍ତି ଓ ପଦାକୁ ଅନାଇଁଥାନ୍ତି। ଆଉ ସେହି ପଦାଏ ପଦାଏ ଚାଲେ ଗାଁ ଗୋଟାକର ଜୀବନର ଚଳନ୍ତି ଦୃଶ୍ୟ—ଲୋକେ ହଳ ନେଇ ବିଲକୁ ଯାଆନ୍ତି, ଗୋରୁ ଗାଈ ଅଡ଼େଇ ଅଡ଼େଇ ଫେରନ୍ତି, ବିଲରୁ ଆସନ୍ତି ପାଳ ମୁଣ୍ଡେଇ କି ଜାଲ ମୁଣ୍ଡେଇ, ବସ୍ତାନି କାଖେଇ ପିଲାଏ ଚାହାଳିକି ଯାଆନ୍ତି। ବୋହୂ ଘରକୁ ଭାରଯୋର ଯାଏ, ଜାମାଯୋଡ଼ ହୋଇ ଛତା ବାଡ଼ି ଧରି ଲୋକେ ଯାଆନ୍ତି ସହରକୁ, ମୁଣ୍ଡି ଝୁଲେଇ ଡାକବାଲା ଆସେ। ଉର୍ଦ୍ଦି ପିନ୍ଧି ଚଉକିଆ ଯାଏ ଥାନାରେ ରିପୋର୍ଟ କରିବାକୁ।

ଆଉ ଦିନମାନ ଗଛର ଛାଇ ବଢ଼େ କମେ, ପିଲା ଜନ୍ମ ହୁଅନ୍ତି ବଡ଼ ହୁଅନ୍ତି, ବୁଢ଼ା ଅନ୍ତର୍ଦ୍ଧାନ ହୁଅନ୍ତି । ସେଇଠି ବସି ଚକ୍ରପାଣି କହନ୍ତି "କୃଷ୍ଣ—କୃଷ୍ଣ—କୃଷ୍ଣ—" ।

ଯେପରିକି ତୁଣ୍ଡରେ ଏହି କୃଷ୍ଣନାମ ଉଚ୍ଚାରଣ କରିବା ପାଇଁ ସେ ବଞ୍ଚି ରହିଛନ୍ତି, ଆଉ ଯେ ଆସି ଓଲଗି ହେଲେ ସାମାନ୍ୟ ହସି ମୁଣ୍ଡ ହଲେଇ ହଲେଇ ନୀରବରେ ତାଙ୍କୁ ଆଶୀର୍ବାଦ କରିବାକୁ ।

କାହାର ପିଲାଟିଏ ଜନ୍ମ ହେଲେ ତା'ର ଦୀର୍ଘାୟୁ କାମନା କରି ଷଠୀ ପୂଜା ଦିନ ବହୁଦିନ ବଞ୍ଚିଥିବା ବୁଢ଼ାମାନଙ୍କ ନାଁ ତୁଣ୍ଡରେ ଧରି ଯେତେବେଳେ ଦଉଡ଼ିରେ ଗଣ୍ଠି ପକାହୁଏ, ସେତେବେଳେ ଲୋକେ ଆଗ ଧରନ୍ତି ତାଙ୍କର ନାଁ । ସରଳ ଗାଁ ଲୋକଙ୍କ ଗାଁ ମାଟିଗଢ଼ା ଧର୍ମଭାବରେ ବିଶ୍ୱାସ ଅନୁସାରେ କଳି ଦେଇ ଲୋକେ କହନ୍ତି, ସେ ଏକ ଜୀଅନ୍ତା ଠାକୁର । କ୍ଳେଶ ବିବାଦ ଥିବା କୌଣସି କଠିନ କାମ କରିବାକୁ ଗୋଡ଼ ବଢ଼ାଇଲେ ଲୋକେ ଆଗ ଆସନ୍ତି ତାଙ୍କ ପାଖେ ମୁଣ୍ଡିଆ ମାରିବାକୁ । ଆଉ ସେ ବସି କହୁଥାନ୍ତି, "କୃଷ୍ଣ—କୃଷ୍ଣ—"

କିନ୍ତୁ ସେ ବିଶ୍ୱାସରେ ନଥିଲା କୌଣସି ବିସ୍କୁଟ ଖିଆ ଲୋକର ପରିକଳ୍ପନା—ତା'ତ ଇଂରେଜୀ ପଢ଼ୁଆ ଥିବା ଲୋକେ ଖାଆନ୍ତି ହିଁ, ସେଥିରେ ନଥିଲା ନାଟ ଦେଖା ଭୋଜିଖିଆ ମଉଜ୍ ଫୁର୍ତ୍ତି ରଙ୍ଗରସର ହାଲୁକା ଜୀବନ, ସେ ଜୀବନ ଗାଁ ଲୋକେ ନିଜେ ବଞ୍ଚନ୍ତି, ସେଥିରେ ଥିଲା ଖାଲି ଏକ ଉଗ୍ର ଶୁଷ୍କ ନୈଷ୍ଠିକତା, ପୂଜା, ବ୍ରତ, ଏକାଦଶୀ, ଦେହରେ ନାମାବଳି, ବେକରେ ମାଳି, ଦେହସାକ ଚନ୍ଦନ ଛାପା କୃଷ୍ଣ-କୃଷ୍ଣ-କୃଷ୍ଣ, ମଲରେ ଚୁଟି, ଆଉ ହୁମ୍‌ହୁମ୍ ହଲଚଲ ଶୂନ୍ୟ ପାକଳ ହୋଇ ଜଣେ ବୁଢ଼ା ଲୋକ, ଯାହାର କହିବା କଥାଠୁଁ ନ କହିବା କଥାହିଁ ବେଶି ଆଶ୍ୱାସ ଦେବ ଦେଶ ଲୋକଙ୍କୁ ରୋଗରେ ଶୋକରେ ସନ୍ଦେହରେ, ବିପଦରେ, ତାହାର ସାକ୍ଷାତ୍ ଅବତାର ଥିଲେ ଚକ୍ରପାଣି ମହାପାତ୍ର, ତେଣୁ ସୁସ୍ଥ ବିଶ୍ୱାସରେ ଦୋହଲୁଥିବା ମହୁଫେଣାରେ ଟେକା ପଡ଼ିଲା ପରି ଚାରିଆଡ଼େ ଉଁ ଉଁ ବୁଲିଲା ସେହି ଗୋଟାଏ ଶେଷ କଥା—"ଚକ୍ରପାଣି ମହାପାତ୍ରେ ବିସ୍କୁଟ୍ ଖାଇଲେଣି ।"

ସତେ ଯେପରି ଫେର୍ ଏକ ଆଦର୍ଶର ସମାଧି ଘଟିଲା ଜନତାର ଆଖି ଆଗରେ । ଫେର୍ ଭାଙ୍ଗିପଡ଼ିଲା ଏତେ କଷ୍ଟରେ ଗଢ଼ାହୋଇଥିବା ଗୋଟାଏ ମଣିଷଠୁଁ ଉଚ୍ଚ ବିଶ୍ୱାସର ସୌଧ, ଯେ ଆଶ୍ୱାସ ଦେଇଥାନ୍ତା "ନରରୂପୀ ନାରାୟଣ ଅଛନ୍ତି, ସମସ୍ତେ ଦୁର୍ବଳ ନୁହନ୍ତି । ସାଧନା କଲେ ସାଧାରଣ ଗୃହସ୍ଥ ବି ଏପରି ହୋଇପାରିବ । ସମାଜରେ ମନସପକ୍ଷରେ ଉତ୍କର୍ଷତାର ବଢ଼ଢର ଚିହ୍ନ ପରି ଯୁଗେ ଯୁଗେ ଆସନ୍ତି କେହି କେହି ଜଣେ ଜଣେ ଲୋକ, ଅନ୍ୟମାନେ ଯେତେ କହିବା ହେଉନ୍ତୁ ପଛେ ସେ ଯୁଗରେ ସେହି ଉତ୍କର୍ଷ ହିଁ ମଣିଷର ବଡ଼ଢର ମାପ ।" ଗାଁ ନଗର ନାହୁଲ କହି କହି ବୁଲିଲେ, ଉତ୍ତରରେ ପାଇଲେ କୌଣସି କୌଣସି ଶ୍ରୋତାଠୁଁ ଆଗ ଟିକିଏ ଡୁଲୁଚାଟେକା ଆଶ୍ଚର୍ଯ୍ୟ ଭାବ, ତା'ପରେ ଗୋଟାଏ

ଦୀର୍ଘଶ୍ୱାସ, ତା'ପରେ ନିଘ୍ରଣାର ଶୁଖିଲା ହସ କିଛିଏ, ତା'ପରେ ବିଶ୍ୱାସ ଭାଙ୍ଗିଲା ପରେର ଶ୍ଳେଷୋକ୍ତି କିଛିଏ—"ହୁଁ ଏ କଳି ଯୁଗରେ ସବୁ ଘଟେ, ଦେବତା ତ ପଥର ଆଉ କାହାକଥା କ'ଣ କହିବା ?" କାହାଠୁଁ ଅବା ଖାଲି ଦୀର୍ଘଶ୍ୱାସ ।

କିନ୍ତୁ ଯାହା ବିଷୟରେ ଏତେ ଚହଳ ପଡ଼ିଗଲା, ସେ ଏ ବିଷୟରେ ଥିଲେ ନିର୍ଲିପ୍ତ ଓ ନିର୍ବିକାର ! ଭାବି ପାରି ନଥିଲେ ଯେ ତାଙ୍କର ଏପରି କ'ଣ ପରିବର୍ତ୍ତନ ଘଟିବ ଯହିଁରେ ତାଙ୍କର ସଗୁଣନିର୍ଗୁଣର ଏକାପ୍ରକାର ବ୍ୟକ୍ତିତ୍ୱଠିଁ ଲୋକେ ନୂଆ ଘଟ ଦେଖି ପାରିବେ । ସବୁର ସୃଷ୍ଟି ଭଗବାନ୍, ବିସ୍ତୃତିର ବି । କେତେବେଳେ କେଉଁ ବିଷୟ ପ୍ରତି ସେ ଆସକ୍ତ ଉପୁଜାନ୍ତି । କେତେବେଳେ ଭୁଟାନ୍ତି ସେ ଆସକ୍ତି, ସାଧାରଣ ମଣିଷ କେବଳ ଆସକ୍ତିରେ ହିଁ ଘାଣ୍ଟି ହୋଇ ପଡ଼ିରହେ । ଅଧ୍ୟାତ୍ମମାର୍ଗର ଉନ୍ନତ ମଣିଷ ଆସକ୍ତିର ହେତୁ ଅର୍ଥାତ୍ ଭଗବାନଙ୍କୁ ହିଁ ଦେଖେ ଆଉ ସବୁ ଗ୍ରହଣ କରିନିଏ ପ୍ରସାଦ ପରି; ସେହିପରି ତ ସେ ଉଦାନ୍ତ କ'ଣ ?

ଭାବିବସିଲେ ପଛକୁ ଦେଖି ହସମାଡେ, ପିଲାଦିନେ କେତେ ଭଲ ଲାଗୁଥିଲା କଣା ପିଜୁଳି ଖେଳିବା, ପଢ଼ିଲା ବିବାହବେଳେ ଆପଣା ସ୍ତ୍ରୀର ମୁହଁକୁ ଚାହିଁଲେ ସବୁ ଭୁଲିହୋଇଥିଲା, ତା'ପରେ ଟଙ୍କା ପଇଁଗଲା ଆପଣା ଘର ବଢ଼େଇବାରେ, ତା' ପରେ ନିଜ ପାଗଳପଣ ଉପରେ, ସବୁ ଭୁଲିଯାଇ ଆଶା ରହିଲା କେବଳ କୃଷ୍ଣନାମ ଜପିବା ଉପରେ, ସେହି ତ ଜୀବନ, ଆଉ କଣ ?

ଆପଣା ଦୃଷ୍ଟାନ୍ତରେ ଜୀବନ ବଞ୍ଚିବାର ଲକ୍ଷ୍ୟ ବି କେତେ ଚଞ୍ଚଳ ବଦଳି ବଦଳି ଆସିଛି, ପିଲାଦିନେ ଦୁମ୍‌ଦୁମ୍ ହୋଇ ଧାଁଧପଡ଼ କରିବାରେ ଯାହ ଛନ୍ଦା-ପଡୁଥିଲା ଜୀବନ ମୁହଁସଞ୍ଜବେଳେ ଜୀବନର ପରିଚୟ ଖାଲି ମାଳା ଗଡ଼େଇବାରେ । ଗୋଟାଏ ସ୍ତରରୁ ଆଉ ଗୋଟାଏ ସ୍ତରକୁ ଉଠିଆସିଲାବେଳେ ଥାଏ କିଛି ଘଟନା, କେଉଁଟା ହସର, କେଉଁଟା କାନ୍ଦର—ଏହି ଯେପରି ପରମାର୍ଥ ଧରିବା ପୂର୍ବରୁ ସ୍ତ୍ରୀଙ୍କର ମୃତ୍ୟୁ; କିନ୍ତୁ ସବୁ ସହ୍ୟ ହୋଇଯାଏ ପରେ ; ପୁରୁଣା ଧରଣ ପୁରୁଣା ସ୍ତରକୁ ଅପଣା ଭାରିପାଖେ ଅନ୍ୟ ଲୋକଙ୍କଠି ଦେଖିଲେ ବି ସେଇଟା ଭୁଲ୍ ବୋଲି ଲାଗେ, ନିଜ ଗୁଣରେ ତା' ପ୍ରତି କ୍ଷମା ବି ଆସେ—ଆଉ ସବୁ ତ ଠାକୁରଙ୍କ ଇଚ୍ଛା, ସେଥିରେ କ'ଣ ଅଛି ?

ଏହିପରି ଭାବି ଭାବି ଚକ୍ରପାଣି ମହାପାତ୍ରେ ଆପଣା ଅତୀତଟାକୁ କ୍ଷମା କରିପାରିଥିଲେ, ଭୁଲିଯାଇଥିଲେ ସବୁ ସୁଖ ଅନୁଭୂତିର ଧକ୍ ଧକ୍ ଛଟପଟ, କେବଳ ପିଣ୍ଡା, ଠାକୁରଘର ଆଉ ସେ—ଆଉ ତୁଣ୍ଡରେ କୃଷ୍ଣନାମ ।

ଏହିପରି ସେଦିନ ଗୁଇନେଉଟାବେଳେ ବସିଥିଲେ ସେ ଦାଣ୍ଡ ପିଣ୍ଡାରେ, ପଦାକୁ ଚାହିଁ ଚାହିଁ ନାମ ଜପୁଥିଲେ । ତାଙ୍କର ହଳଦିଆ ଖୋଲି ଆଖି ଦୁଇଟା ଉପରେ ପଡ଼ିଥିଲା ଫୁଲ ଲଦାଲଦି କୃଷ୍ଣଚୂଡ଼ା ଗଛର ଛାଇ, ଆଉ ସାମ୍ନାର ସେ ବଡ଼ କଦଳୀବାଡ଼ିର, ଆଉ ଟିକି ଟିକି ଘରଘର । ସେଠି ଘରଚଟିଆ ଏକର

ସେକର ଉଡ଼ୁଥିଲେ, ଖୁଣ୍ଟିରେ ବନ୍ଧା ହୋଇଥିବା କାଳୀ ଛଡ଼ାଟି କନ କନ ହୋଇ ଏପାଖ ସେପାଖକୁ ଅନେଉଁଥିଲା, ଫଁ ଫଁ ନିଶ୍ୱାସ ଛାଡ଼ୁଥିଲା, କାନ ହଲଉଥିଲା । ବେକ ଘୁଞ୍ଚୁଥିଲା, ଗମ୍ଭୀର ହୋଇ ରଡ଼ି ଦେଉଥିଲା—"ମେଁ—ଭେଁ—"

ଚଷା ହୋଇଥିବା ଚଟାଣ ଉପରେ ଗୋଲ ଗୋଲ ହୋଇ ଘାସ ଶୁଖୁଥିଲା । ବୁଢ଼ୀ ବାଉରାଣୀ ନେତେଇମା କହୁଣିଯାକେ ଗୋବର ସର ସର ହୋଇ ନୂଆ ଘାସ ପାଗମାଉଥିଲା । ଏକ ମନରେ, ଆପଣା ମନକୁ ମନ କହୁ ଲାଗିଥିଲା—"ମଲା, ଏ ଛଡ଼ାଟାକୁ ଏଇଠିକନା ଖଟେଇ ଦେଇଗଲେ କାହିଁକି ବା, କୁଆଡ଼େ ପଦାକୁ ନେଇଯାଇଥାନ୍ତେ ନା, ଏ ତ ତାଢକର ରହିଛି—କୁଟା ପଡ଼ିଛି ମୁହଁ ଟେକୁନାହିଁ ; କଢ଼କି ଗଲେ ମାରିବ, ଆଉଟିକକୁ ପଘା ଛିଣ୍ଡେଇବ, ସେଇଠୁ ବାଇ ଲାଗିଲା ପରି କୁଦା ମାରିବ ସେ କ'ଣୁ ନାହିଁ କ'ଣ କରିବ କେଜାଣି । ମଲା ଏ ଲୋକେ ଜାଣିଶୁଣି ବାଟରେ ଘାଟରେ ନିଆଁ କୁଢ଼େଇ ରଖନ୍ତି କାହିଁକି ବା ? ନିଆଁକୁ ଘିନା ପାଣି, ଏ କୋଉକଥା ହେଲା ?"

"କୃଷ୍ଣ-କୃଷ୍ଣ-କୃଷ୍ଣ-କୃଷ୍ଣ—" ପଦାରେ ଅସରନ୍ତି ଗୁଣ-ଅଳୁଅର ଘଡ଼ିଘଡ଼ିକେ ନୂଆ ଖେଳ, ପଦାର ଦୃଶ୍ୟ ଅତି ସାନ ହୋଇ ଛପା ମରିହୋଇ ରହିଛି ହଳଦିଆ କୋଟରିଆ ଆଖିର କଳା ଡୋଳା ଉପରେ । କୃଷ୍ଣ-କୃଷ୍ଣ-କୃଷ୍ଣ—ଏଇତ ବଞ୍ଚିବାର ସୁଆଦ, ବୟସ ଯେତେ ବଢ଼ିଲେ ବି ବଞ୍ଚି ବଞ୍ଚି ଘୋଳି ଲାଗେ ନାହିଁ—ଆଖିରେ ଏଇ ଦୃଶ୍ୟ, ଦେହରେ ଏଇ ପବନ କାନରେ ଅତି ପରିଚିତ ଆପଣା ସଉକର ସଙ୍ଗୀତ ପରି ମଣିଷ ପାଟିର କଥା—ସବୁ ସେହି ଅସରନ୍ତି ସର୍ଜନର ଲୀଳା, ଖାଅ ନ ଖାଅ ଅଜାଡ଼ି ହୋଇ ପଡ଼ିବ ତା'ଉପରେ, ତା'ଉପରେ ଏଇ ଏତେ ନୂଆ ପତ୍ର, ନୂଆ କଢ଼, ନୂଆ ଶିଣ୍ଢୁ, ନୂଆ ଫଳ, ଅଷାଢ଼ର ହାତୀ ଶୁଣ୍ଢରେ ପାଣି, ଆଉ ଏ ଦିନେ ଏତେ ରୂପ ରସର ସମ୍ଭାର । ପୋଥି ପଢ଼ା ଶାସ୍ତ୍ରର କଥା ଆଦୌ ମନେପଡ଼ୁନାହିଁ' ସେ ନେତେଇମା ଗଛର ନୀରସ ବକଲକୁ ହିଁ ଛୁଏଁ, ଗହ୍ୱରକୁ ଭେଟେ ବୋଲି ବିଶ୍ୱାସ—"ବିଶ୍ୱାସେ ମିଳଇ କୃଷ୍ଣ ତର୍କେ ବହୁଦୂର" ।

ଚେତନା ଭିତରେ ଚେଇଁଉଠିଲା ନେତେଇମା ବାଉରାଣୀର କଥା କେତେ ଯଧ । ନନ୍ଦପାଣି ନୂଆ ଦୃଷ୍ଟିରେ ତାକୁ ଅନାଇଁଲେ । ତାଙ୍କର ଅଛିନ୍ନ ସ୍ୱପ୍ନ ଭିତରେ ହଠାତ୍ ଯେପରିକି ସୂର୍ଯ୍ୟୋଦୟ ହେଲା, ପୁଣି ହଠାତ୍ ସେ ବୁଢ଼ୀ ବୁଢ଼ୀ ଆସି ବସିଗଲା ସୂର୍ଯ୍ୟାସ୍ତ । ହେଇ ତ କାଲି ସକାଳେ—ସପନାର ସ୍ୱରଯା ନୂଆ ବୋହୂ ହୋଇ ଏ ଗାଁକୁ ଆସିଥିଲା । ବଳିଲ ବଳିଲ ହାତଗୋଡ଼, ପୂରିଲା ପରି ଗୋଲ ମୁହଁ, ଟଂ ଟଂ ଆଖି ଏକର ସେକର । ତା'ର ହାତରେ ଥିଲା ମୋଟାମୋଟା ପିତ୍ତଳର ଖଡ଼ୁ ଛ'ସେର, ଗୋଡ଼ରେ ଗିଲଟି ବଳା, ବଙ୍କା ବଙ୍କା । ଏଇ ଉହୁଠୁ ଖଣ୍ଡେ ଛାଡ଼ି ବାଉରିବଣ ସେ ପାଖେ ତାଙ୍କ ଘର । ଏ ବାଟେ କେତେ ଯାଏ, ଏଘରେ କେତେ କାମ କରେ, ଅଳ ବେଳରେ ଡୋଟାରେ ମୁଆଡ଼େ ଗଲେ ସବୁଠି

ସେ । କାହିଁ ସେତେବେଳେ ତ ଦେଖିଲେ ମନରେ ଆସୁ ନଥିଲା ଯେ, ସେ ସେ ବାଉରାଣୀ ଘର ଝିଅ, ଗେଣ୍ଡା କୋଚଆ ଖାଏ, ଅସନା କାମ କରେ ସତେଙ୍କ ଦୁଃଖ ଧନ୍ଦା କରି ସଢ଼ିବା ପାଇଁ ତା'ର ସେ ବଳିଷ୍ଠ ଦେହକୁ ବିଧାତା ମର୍ତ୍ତନ କୁନ୍ଦିଛି । ସେତେବେଳେ ମୁହଁଟା ନଥିଲା ତାର ଏତେ ବିଭଙ୍ଗ, ଏତେ କର୍କଶ କଠିଣ, ବେଙ୍ଗ ଛାଲରେ ଗୁହଣି ହୋଇ ହାଡ଼, ଗୋଡ଼ ଆଉ କୋରଡ଼, ସ୍ୱର ଥିଲା କେଡ଼େ କଅଁଳ ଆଉ ନରମ, ଦେହ ରଙ୍ଗ ପରି ଆଦୌ ନୁହେଁ । ସପନାର ସ୍ୱରଯା ବାଉରି କୁଳରେ ଜନ୍ମ ହୋଇ ସାଜିଥିଲା ସାଧାରଣ ମଣିଷକୁଳର ସ୍ୱାସ୍ଥ୍ୟ ଓ ଶିକ୍ଷାର ବିଧାତା ଗଢ଼ା ଆଦର୍ଶ, ନଅଁ ଜାଳେ, ପାଣି ଢାଳେ, ଶସ୍ୟ ଉପୁଜାଏ, ଘର ପାଳେ—ହସ ଖୁସି ଆରାମ ଓ ଶାନ୍ତିର ସାଧାରଣ କାରିଗର ।

ଆଖି ସେଠି ମାଢ଼େଇ ରହୁଥିଲା ।

କୃଷ୍ଣଚୂଡ଼ା ଯେପରିକି ଓଲଗ୍ନ ଓଲଗ୍ନେ ରଙ୍ଗ ଗଦା ।

ଦେହରେ ବାଜୁଛି ପବନ, ସାକ୍ଷାତ ଉଠିଆସିଛି ଗାଁର ବଡ଼ ବଡ଼ ବନ୍ଧୁଆ ପୋଖରୀରୁ ।

ହଠାତ୍ ବୁଢ଼ା ଚକ୍ରପାଣି ଭାବି ଲାଗିଲେ "କୁଆଡ଼େ ଗଲା ସପନା ସ୍ୱରଯା ? —କିଏ ସେ ସ୍ୱପ୍ନ—ଯୋଜକଡ଼ା ବୁଢ଼ୀଟା ? ସପନା ସ୍ୱରଯା ବୁଢ଼ୀ ହେଲା କେବେ ?"

ସ୍ମୃତି କାନ୍ଧରେ ବୁହା ହୋଇ କୋଳେଇରେ ପଡ଼ି ଚାଲିଯାଉଛନ୍ତି କେତେ କିଏ—ସେ ତ ଅଖିଦରଣା ଯାତ୍ରା । 'ରାମ ନାମ ସତ୍ୟ ହେ'ର ଗମ୍ଭୀର ଉଦାସ ଘୋଷା, ଫଟା ବାଇଦର ତର୍ଣ୍ଣି ବସା ରଡ଼ି, ଯାହାରେ ହନୁମାନ ଲାଙ୍ଗୁଡ଼କୁ ଖଣ୍ଡେ ପରି ଉଦ୍ୟତ ନଅଁ ବରେଇ, ପଛେ ପଛେ ଗହଳ ଘୋଷଣାରେ ଭାହାଣା ବୋବାଳି । ଲୋକେ ଜାଣନ୍ତି, ଗାଁରୁ ଜଣେ ଗଲା । ଏମିତି ଗଲେଣି କେତେ—ଅଢ଼ ଦୀର୍ଘ ଅବସର ସତୁରିଟା ବର୍ଷ । ଦ'ବର୍ଷ ସ୍ମୃତିବର୍ଷର ଫାଙ୍କ ଗୁଡ଼ ଗୁଡ଼ ଗାଁରେ ମହାମାରୀ ଯୋଟେ । କେବେ ହଇଜା, କେବେ ବସନ୍ତ, କେବେ ଠେଙ୍ଗାଜର, ମ୍ୟାଲେରିଆ ତ ଲାଗିରହୁଛି ପ୍ରାୟ, ଅଖପାଖରେ ନଳିତା ଗ୍ରୂଷ ବଢ଼ିବା ସଙ୍ଗେ ସଙ୍ଗେ ବଢ଼ିଲାଗିଛି । ମହାମାରୀ ଉହାଇ ଉହାଇ ଗାଁକୁ ନକ୍ଷେତ୍ରି କରେ, ପୁଣି ମରଣକୁ ହସି ଉହାଇ ଉହାଇ ଗଦା ହୁଅନ୍ତି ନୂଆ ପିଲ ଯୂଥ ଯୂଥ, କିନ୍ତୁ ହେବ କ'ଣ, ଜୀବନରେ ଥାଉତା ନାହିଁ, ଗାଁର ଭେଣ୍ଡା ପଦା ହେଲେଣି, ଏଣିକି ଖାଲି ଭୋଗ୍ୟ—

ସ୍ୱପ୍ନ ତ ଗଲା ସତେ ସତେ ମରଣ, ଦେହର ମରଣ—ଯାହାକୁ ଲୋକେ ଦେଖନ୍ତି, ବାହୁନ ହୁଅନ୍ତି । କିନ୍ତୁ ଯେଉଁ ମରଣ ନିଃଶବ୍ଦରେ ପଟେ, ସେଇ ଦେହ ଠିଆ ହୋଇଛି, ସେହି ନାଁ ଧରି ଲୋକେ ଡାକୁଛନ୍ତି, କିନ୍ତୁ ସେ ମଣିଷ ନାହିଁ ; ସେ ରୂପ ନାହିଁ, ସେ ମନ ସେ ସ୍ୱଭାବ ନାହିଁ । କେଉଁଠୁଣି କମ ସେ ଦେହ ମରଣେ ।

ଏମିତ କେତେ ବର୍ଷ ଥାଉ ଥାଉ ମରଯାଅନ୍ତ, ବାଉଁଶପାହର ଭେଣ୍ଡା ପଦା ହୋଇଛନ୍ତ । ବଲୁଆ ପଶିଲେ ଭଡ଼ିବାକୁ ଖାଲି ଧେଡ଼ କୁକୁର, ଧୂର୍ତ୍ତ ଧୂର୍ତ୍ତ କହିବାକୁ ମାଇକନିଆ ପୁଞ୍ଜାଏ, ମା' କୋଡ଼ରେ ପଶି ମୁହଁ ଲୁଚେଇବାକୁ ପିଲା ଗଣ୍ଡାଏ ପାଞ୍ଚଟା ବର୍ଷର ହେଇ ସପନା ସରଯା, ସତେ ସତ ସେ ବର୍ଷ ନାହିଁ, ସେ ନୁହେଁ ସେ ଧୋକଡ଼ୀ ବୁଢ଼ୀ ପଣ···କୃଷ୍ଣ-କୃଷ୍ଣ-କୃଷ୍ଣ—ଚେତ ଉଠି ଫେର୍ ଚକ୍ରପାଣି ମାଳା ଗଣିବାରେ ମନ ଦେଲେ ।

ଗୁଉଁ କର ଉଠିଲ ମନ ଭିତରେ —ନାଁ-ନାଁ-ନାଁ—ମୃତ୍ୟୁ ମିଛ । କେବଳ ଘଟ ପରିବର୍ତ୍ତନ, ବାପ ଘର କହୁଥିଲ, ପୁଅ ଘର କହୁଛି, ଶାଶୁ ଟୋକୀ ହୋଇ ଭିତର ପିଣ୍ଡାରେ ଗୋଡ଼ ଲମ୍ବେଇ ବସି ଚକୁଣିରେ ମୁଣ୍ଡ କୁଣ୍ଡାଉଥିଲା, ହସି ହସି ଆପଣା ମୁହଁକୁ ଆପେ ଆରସିରେ ଦେଖୁଥିଲ, ଖାଲି ଖାଲି ହାତକୁ ହାତ, କଣ୍ଠରେ କିଆଫୁଲ ଫେଣ୍ଡ ଅଛି, ଗଣ୍ଠିରେ କଣ୍ଟା ମାରଦେଇ କିଆଫୁଲ ଚରୁଡ଼ାରେ ଖୋଷି ଦେବ, ତର ସହୁନାହିଁ—ବୋହୂ ପେଇଆ କଟୁଚି, ଉବୁଡ଼ବଆ ବସହରେ ଦାଣ୍ଡ ଦୁଆରେ ଥିଲ ନୋକା ଯୋଗୀ, ଖଡ଼ୁ କାଚ କଜଳପିନ୍ଧା, କଅଁଳିଆ ହାତରେ ଚୁଡ଼ାଇ ଅଞ୍ଜୁଳିରୁ ଯୋଗୀ ଥାଳରେ ଭିକ ଦେଉଥିଲା, ଆଜି ବି ଅଛି ସେ, ମୃତ୍ୟୁକୁ ସ୍ୱୀକାର କରିବେ ସେ ! କଦାପି ନୁହେଁ ।

"ନେତେଇମା, ତୋ ବୋହୂ କେମିତି ଅଛି ?"

"ହଃ, ଚୂଲି-ଗାତ-ରଡ଼—"ନେତେଇମା ବଡ଼ ବଡ଼ ହେଲା, ଗାଇଗୁଳିଲା ବୋହୂ ବିରୁଦ୍ଧରେ ତା'ର ସବୁଦିନର ଅଭିଯୋଗ—"ଖାଲି ନାଟରେ ହବ ରାଣୀ, ସାଆନ୍ତ୍ରେ, ପେଟକୁ ଖାଇବ ଦିହକୁ ମାଜିବ ଆଉ ଦନ୍ଦରେ ମୁହଁରେ ବୋଲିବାର ଆଜିକାଲିକା ମେନ୍ତେ ଅପରଛନ, ଯାହା ଆମ ଆଖି ଦେଖି ନଥିଲା ସେଇ ଚୂଲି ପାଉଁଶ ଲୁଗାକ ବୋଲି ହଉଥିବ ଆଉ ଗାଁଯାକ ଧେଇ ଧେଇ । କହିଲେ କହିବ ତୋର କଣ ଗଲା ? ତୁ କହିବାକୁ କିଏ ସେ ଲୋ । ତା' ଉଲୁରୁ ତ ଦନୁ ଦନ ବଢ଼ୁଚି ସାଆନ୍ତେ, ମୋ ଉପରେ ଷଣ୍ଢ ହେଇଚି ମତେ ଛେଳି କଲାଣି, ଗୋଟାଏ ପେଟକୁ ଅଲଗା ଗୋଟାଏ ହାଣ୍ଡି । କହିଲି ଆଲୋ ସନ୍ଧାଖାଇ ତୁ ଏଠି ରହିଚୁ କାହିଁକି ଲୋ, ଲାଜରେ ଆଉ ମୋ ମୁଣ୍ଡ ଉଠେଇ ପାରୁନାହିଁ । ପୁଅ ତ ମଲା, ତୋର ତ ଜାଣି ବୟସ ବେଳ ତୁ ଯୋଗିଣୀଖାଇ ଏଠି ତୋ ମୁହଁ ପୋଡ଼ୁଚୁ କାହିଁକି ଆଉ କାହା ହାତ ଧରି ଚାଲିଯାଉନୁ କାହିଁକି ? ଓଲଟି ମତେ କହୁଚି କାହିଁକି ଯିବ ? ମୋ ମନକୁ ମନ ମୁଁ ତୋ ଘଟିକି ଆଇଥିଲି କି ? ପୁଅ ମଲେ ମଲା, ମୁଁ ତ ଅଛି, ମୁଁ ଥାଉଁ ଥାଉଁ ମୋ ଭିଟଟା କିଏ ଛଡ଼େଇନେବ ? ଭଲରେ ଭଲ, ବିଧାତା ତତେ ଏଇଆ ଜନମ ଦେଇଥିଲା—ମୋ'ର ଛାତି ଉପରେ ଚେକା ପକାଇ ବସି ମୋ'ର ଜଉଟା ଓଟାର ଓଟାଇ ମୋ ରକ୍ତ ମାଉଁସ ଟୁଣିକଣି ଖାଉଥିବୁ—କି ଘର ଥିଲା ମୋର, କି ଘର ହେଲା, କୁଆଡ଼େ ଗଲା ଆମ ବାଉରକୁଳ ଇଜତ ମହତ

ଜନସ୍ରୋତ ଯେତେବେଳେ ଦେଖ ଲୁଗୁର ପଶିଲା ପରି ମଣିଷ ପଲ ପଲ—କୋଉଟା ଓଳିତଳେ ନାକେଇଚି, କୋଉଟା ପିଣ୍ଡାରେ ଗୋଡ଼ ଲମ୍ବେଇ ବସି ପିଙ୍କା ଟାଣୁଚି, କୋଉଟା କଅଁବୁଦା ଉହ୍ଲାଡ଼ରେ ଛପି ବସି ଖଣ୍ଡିକାଣ ମାରୁଚି—କିଏ ଟାକସି ଫୁଟାଉଛି, କିଏ ଚୂଲପଣା ପିଠି ମାରୁଛି, କାହାକୁ ମନା କରିବ ? ପଚ୍ଚରିଲେ କହିବେ ଏଇଟା ତ ସ୍ଥଳକୁ ଯିବା ବାଟ, ଏବାଟେ ଯିବାକୁ କ'ଣ ମନା ? ସହଜ ଲୋକଙ୍କ ଯିବା ବାଟ କ'ଣ ମୋର ଦୁଆର ବାଟ କହିଲ ସାଆନ୍ତେ ! ଯେବେ କହିଲ ହୁଇଓ ଏ ବାଉରି ଘର ପିଣ୍ଡାଟାରେ ବସୁଚ କାହିଁକି, ତମୁକୁ କ'ଣ ଗଛମୂଳ ନାହିଁ ତେବେ କହିଲେ, କ'ଣ ହେଲା ବାଉରି ଘର ହେଲେ । ଆଜିକାଲି କ'ଣ ସେ ଯୁଗ କଥା ଅଛି, ଅଇନା ତ ସଭିଏଁ ସମାନ ଗୋଟାଏ ଛୁଆଁ ଛୁଇଁ ବାରଣ କ'ଣ, ଖରା ଲାଗିଲେ କି ଦେହ ଢୋଲା ହେଲେ ଯାହାର ପିଣ୍ଡାରେ ବସିପଡ଼ିବୁ । ତମ ପିଣ୍ଡା କ'ଣ ଯୋର ହୋଇଯାଉଚି ? ଅଉ ଘର ଭିତରୁ କରି କରି ହୋଇ ହୁସିଥିବ ସେ । ଭଲ କହିଲ ସାଆନ୍ତେ ଏତେ ବାଟ ଥାଉ ଥାଉ ଖାଲି ମୋର ବାଟଟା ବାଟ, ସେଇଠି ସମସ୍ତିଙ୍କି ଯୋଳ ଲାଗିବ ପିଣ୍ଡାରେ ବସିବାକୁ, ମୂତ ମାଡ଼ିବ, ହଗ ମାଡ଼ିବ, ବାଡ଼ତଳେ ବସିବାକୁ, ଅଉ ତମ କାଳ ନାଇ ସାଆନ୍ତେ—"

ଚେଙ୍କ ଝିଠି ନେତେଇମା କହିଲା—"ତମ ବେଳେ ତେମେ ଥିଲ ଗାଁପାକରେ ଗୋଟାଏ ବୋଲି ଷଣ୍ଢ, ତମେ ତ ପରମାର୍ଥ ଧରିଲ, ଅଲଗୁ ଗାଁ ଗୋଟାକ ଏକୁ ଆରେକ ମହାବଳି, ଗାଁଯାକ ସମସ୍ତେ ହେଲେ ଷଣ୍ଢ—ନା ମାନ୍ୟ ନା ମାନନ୍ତା, କାହା କଥା ଶୁଣୁଚି କିଏ, ମାନୁଚି କିଏ ? ସବୁ ଦେଖିବ ନାହିଁ ଜଳିପୋଡ଼ିଯିବ—"

ନେତେଇମାର ବୋହୂ ଗାଁ ଭିତରେ ଗୋଟାଏ ସମସ୍ୟା, ସମସ୍ତେ ଜାଣନ୍ତି ସତେକି କାହାର କିଛି କହିବାର ନାହିଁ, କରିବାର ନାହିଁ—ଗାଁମଝିର ଦଳୁଆ ପଙ୍କୁଆ ପୋଖରୀଟା ପରି ସମସ୍ତେ ଅନୁଭବ କରନ୍ତି, ସେଇଟା ନ ଥିଲେ ଭଲ ହୋଇଥାନ୍ତା ! ସେଠି ଏତେ ବଳଢଳ ଭିଡ଼ ନ ରହିଥିଲେ ଗାଁଟାର ସ୍ୱାସ୍ଥ୍ୟ ଭଲ ହୁଅନ୍ତା—କିନ୍ତୁ କାଢ଼ିବାକୁ ହାତ ଉଠେନାହିଁ । ସଦୁପଦେଶ କରାଯାଏ ବହୁତ, କାମ ବେଳକୁ କିଛି ନାହିଁ ।

ନେତେଇମା ବଡ଼ ବଡ଼ ହଉଚି—"ମତେ ମରଣ ନାହିଁକି ତାକୁ ବାଡ଼ ନାହିଁ—ସାତ ଶରଧାର ଯୋଉ ଜୀବନ, ସେ କେମିତି ପାଣିଫୋଟକା ପରି ବୁଅଡ଼େ ଚାଲିଯାଉଚି ଲେ, ଆଉ ଯାହାର ଅଲୋଡ଼ା ଜୀବନ ଖାଲି ହନ୍ତସନ୍ତ ଦହଗଞ୍ଜ, ତାଙ୍କ ବେଳକୁ ନଈ ପୋଖରୀ ନାହିଁ କି ବାଡ଼ ନାହିଁ କି ମରୁଡ଼ି ନାହିଁ—"

ନା-ନା-ନା—ଅସମ୍ଭବ ଏ କଳ୍ପନା—ଅସମ୍ଭବ—ଅସମ୍ଭବ—ଦେହ ଖାଲି ଦେହର ବିକାରକୁ ଆବୋରି ସଂସାର ଜଞ୍ଜାଳକୁ ହେତୁ କରି କରି ଏମିତି କଲବଲ ଛଟପଟ ହୁଏ, ନ ହେଲେ ଆଉ କ'ଣ ଅଛି ?

ଜୀବନ—ସେ ସୁନ୍ଦର, ସେ କାମ୍ୟ—ବଞ୍ଚି ନ ଜାଣି ଧର୍ମକୁ ହୁଡ଼ି ଲୋକ ଜୀବନକୁ ଧିକ୍କାର ଦିଏ, ନାଚ ନ ଜାଣି ତାଳର ଦୋଷ—

ନେଡେଇମା ଜାଣେ ନାହିଁ ।

ତା'ର ଶେଷ କଥା କେଇପଦ ମନରେ ଆଣିଥିଲା ଗୋଟାଏ ପ୍ରବଳ ପ୍ରତିବାଦର ନାହିଁ ନାହିଁ—କିନ୍ତୁ ତା'ର ଆଗ କଥା—ତା'ର ବାହୁନା ଶୁଣୁ ଶୁଣୁ କେମିତି କୁରୁ କୁରୁ ଘଲ ଘଲ ଲାଗିଥିଲା, କିଏ ଯେପରି କ ମୁଣ୍ଡର କେଉଁ ସ୍ନେହ କେନ୍ଦ୍ରରେ ଟିପ ମାରି ମାରି ହଜିଲା ଧାରଣା ଚଖାଇ ଦେଉଛି । ମନେ ମନେ ସଂସ୍କାରକଙ୍କ ପ୍ରତିବାଦର ମାମୁଲି ସ୍ୱଷା ଆଉଣ୍ଡୁ ଆଉଣ୍ଡୁ ଆପେ ବନ୍ଦ ହେଉଛି ଭୁଲିଯାଇଥିବା ଏକ ଦାୟିତ୍ୱହୀନ ଜୀବନ, ଜୀବନରେ ଗୋଟିଏ ଭୁଲ ସ୍ତର ସ୍ମୃତି କେତୋଟି ଅସୁଛି, ଝୁଖିଲାଲୁଛି ।

ନେଡେଇମାର ବଲ୍ଲତା ମଝିରେ ଚକ୍ରପାଣିଙ୍କର ଦୁ' ଘଣ୍ଟା ଦୀର୍ଘଶ୍ୱାସ ଉଠିଥିଲା । ଦୀର୍ଘଶ୍ୱାସ ଉଡ଼ିଗଲା । ଅନୁଶୋଚନା ଉଭେଇଗଲା, କୃଷ୍ଣ ନାମର ପାଟି ସ୍ଥିର ହୋଇ ରହିଲା, ଆଖି ରହିଲା ଦୂରକୁ ଡେରି ହୋଇ । ହେଇ ସେହି ଫୁଲଭର୍ତ୍ତି କୃଷ୍ଣଚୂଡ଼ା କେଉଁ ଆଦିମ ରଙ୍ଗର ଆଦିମ ସ୍ୱରର ଉଚ୍ଛ୍ୱାସ ପରି ଠିଆହୋଇଛି । ଦୁର୍ଦ୍ଦାନ୍ତ ପବନରେ ଫଡ଼ ଫଡ଼ ହେଉଛି । ତା' ପଛ ଅଡ଼େ ଶାଳର ଚରନ୍ତନ ଗଛ—ଗହଳ ଗଛ ସେ ପାଖେ ଚକ୍ରବାଳ ଘରରେ କେଉଁଠି ହଜିଥିଲା ତାଙ୍କ ଯୌବନ, ଦୁର୍ଦ୍ଦାନ୍ତ ପବନରେ ସତେକି ଧାଇଁ ଧାଇଁ ଲେଉଟି ଆସୁଛି ।

ଏହି ପଟ୍ଟଭୂମିରେ ଘଟିଥିଲା ଗୋଟିଏ ସାଧାରଣ ଘଟଣା—ନାତି ଦଣ୍ଡପାଣି ଖଣ୍ଡେ ବିସ୍କୁଟ ଖାଇ ଖାଇକା ପଦାକୁ ବାହାରିଥିଲା । ବାଁ ହାତରେ ଅଧିକ ଦୁ'ଖଣ୍ଡ । ହାଫପ୍ୟାଣ୍ଟ ଆଉ ହାଫ୍ କାମିଜ୍ ପିନ୍ଧିଛି, କାନ୍ଧରେ ଓହଳିଛି ଏକ ମୁଣି । ସେଥିରେ ସିଲଟ ବହି ଖାତା, ସେ ଇସ୍କୁଲକୁ ବାହାରିଛି । ନଦଜ ଲଗେଇ ନାତି କହିଲା—"ଜେଜେ, ବିସ୍କୁଟ ଖାଉଚି । ଖାଇବ ଖଣ୍ଡେ ?"

"ଦେ, ଦେ—"

"ତମ ଦାନ୍ତରେ ହବ ନା ?—"

"ଦେ, ଦେ—"

"ଏଥିରେ ଓମ୍ଫ ପଡ଼ିଚି, ଯାହାର ହାତର ପାଣି ପଡ଼ିଚି, ଜାଣିଚ ଜେଜେ—"

"ଆରେ ଦେ, ଦେ—"

ଗେଲରେ ଗେଲରେ ଦଣ୍ଡପାଣିର ବେକ ବେଢ଼େଇଧରି ଗେଲରେ ଗେଲରେ ଚକ୍ରପାଣି ମହାପାତ୍ରେ ତା' ହାତରୁ ବିସ୍କୁଟ୍ ପଟେ ନେଇ ଧରିଲେ—ଦଣ୍ଡପାଣି ଆଶ୍ଚର୍ଯ୍ୟ ହେଲା । ପୃଥିବୀରେ ଏଇ କେଇଦିନର ଅଭିଜ୍ଞତାରେ ସେ ଦେଖିଛି, ଜେଜେ ଏ ଗୁଡ଼ାକ ଛୁଅନ୍ତି ନାହିଁ, ସତେକି ଛୁଇଁଲେ ଛୁଆନ୍ତା ଲାଗିବ । ବୋଉ ବି କହେ—"ଆଇଁସ କି ବିସ୍କୁଟ କି ଓମ୍ଫ ହାତ କରିଥିଲେ ଜେଜେଙ୍କ ପାଖକୁ ଯିବୁ ନାହିଁ, ବୁଝିଲୁ ଖବରଦାର, ସେ ଭକ୍ତିମାର୍ଗର ମଣିଷ ।" "ଭକ୍ତିମାର୍ଗ କ'ଣ ?"

"ଏମିତ ଯୋଉମାନେ ଏ ଘୂଡ଼ା ଛୁଅନ୍ତି ନାହିଁ, ଖାଲି ଠାକୁର ପୂଜା କରୁଥାନ୍ତି ସେମିତଆ ଲୋକେ ଭକ୍ତମାର୍ଗର ମଣିଷ ।"

କାହା ଘଞ୍ଚିଲା ପରେ ସେ କହିଲା—"ଜେଜେ ତେମେ ପରା ଭକ୍ତ ମଣିଷ ? "କିନ୍ତୁ ସେତେବେଳକୁ ଜେଜେ ଖଣ୍ଡକୁ ଖଣ୍ଡ କରି ଦ'ଖଣ୍ଡ ବିସ୍କୁଟ ପାଟିରେ ପୁରେଇ ସାରିଥିଲେ, ଦାନ୍ତଶୂନ୍ୟ ମାଢ଼ିଆର ସ୍ତୁପରେ ଚକା ଉପରେ ଚକା ପେଷିଲା ପରି କଲଟା ବୁଲେଉଥିଲେ । ତାଙ୍କର ଯେପରିକି କିଛୁ ଘଟିନାହିଁ ସେହିପରି ସରଳ ସେ ମୁହଁର ଠାଣି—ନିତ ଦେଖା ଦୃଶ୍ୟ, ଗାଈ ଘାସଖାଉଛୁ—ଆଉ ଅଧିକ କ'ଣ ?

ଦଣ୍ଡପାଣିର ଆଁ, ଆଁ ହୋଇ ରହିଗଲା, ହଠାତ୍ ସେ ଅନୁଭବ କଲା ଦୁଇଟା ବିସ୍କୁଟର ସ୍ୱାଦ, ଚାଲିପରି ଛୁଟିଲା ଖଞ୍ଜା ଭିତରକୁ, "ବୋଉ ଶୁଣିଲୁଣି—"

ଚୂଟି ନାମାବଳୀ ଦେହଯାକ, କୃଷ୍ଣଗୁପ୍ତା ହାତରେ ମୁଣିମାଳି ସମାଜପତ୍ର ଚକ୍ରପାଣି ମହାପାତ୍ରେ ବସି ରହିଲେ ସେହି ଜାଗାରେ । ଧୀରେ ଧୀରେ ଓଠ ଉପରେ ଜଭର ଅଗ ବୁଲି ଲଗିଲା—ଏକାର ସେକାର, ଏକର ସେକର—

ଡାକି କହିଲେ—"ନେଚେଇମା, ତୋ ବୋହୂ ଆସେ ନାହିଁ ଏଠିକି କାହିଁକି ?

ଭଲ ଲୋକଙ୍କ ପାଖେ ବସିଲେ ଉଠିଲେ ସିନା ଦ'ପଦ ଭଲକଥା ଶିଖନ୍ତା ତା ମତ ବଦଳନ୍ତା, ଘରଟାରେ ବସି ରହିଥିଲେ କ'ଣ ହବ ? କହିଦବୁ, ଶୁଣିଯିବ ।

କହିଦେବ ସାଆନ୍ତେ କହିଦେବ—ସେ ଗୁଣ୍ଡାଳୁଣୀ କ'ଣ ଶୁଣିବ ? ଦଣ୍ଡପାଣିର ବୋଉ ଶୁଣିଲେ, କଥାଟା ବିଶ୍ୱାସ କଲେ ନାହିଁ ।

କିନ୍ତୁ ସେହି ସନ୍ଧ୍ୟାରେ ସବୁଦିନପରି ଗିଲାସିଆରେ ଆଉଟା ଦୁଧ, ଥାଳିରେ ଖଇ ଚକଟା ଓ ପାଚିଲା କଦଳୀ ଦୋ'ଟି ଧରି ଯେତେବେଳେ ସେ ଆସିଲେ, ଜଳଖିଆ କରିବାକୁ ଅନୁରୋଧ କରିବାକୁ, ସେତେବେଳେ ଚକ୍ରପାଣି ହସିଦେଇ କହିଲେ, "ଏତିକି ହବ ନାହିଁ, ଗୁରି ଖଣ୍ଡି ବିସ୍କୁଟ ଆଣି ଦିଅ, ଭଲ ଲାଗିଲା ।"

ବୋହୂ ତାଟକା ହୋଇ ତାଙ୍କ ମୁହଁକୁ ଅନେଇ ରହିଲେ । ଚକ୍ରପାଣି କହିଲେ—

"ବିସ୍କୁଟ ଗୁରିଖଣ୍ଡ ଆଣ, ଏଥର ଆମେ ବିସ୍କୁଟ ଆଉ ଚା' ଖାଇବା—"

"ଆପଣଙ୍କ ପାଇଁ ଆଣିବ ?"

"କାହିଁକି ଆଣିବ ନାହିଁ ? ତେମେ ସବୁ ତ ଖାଉଚ ପୁଣି, ଆମେ ଖାଇଲେ ଦୋଷ କ'ଣ ହେବ ?"

ଚୂପ୍‌ଚାପ୍ ଚାଲିଗଲେ କମ୍ବୁପାଣିଙ୍କ ସ୍ତ୍ରୀ । ସେହି ସନ୍ଧ୍ୟାରେ ତାଙ୍କଠିଁ ଗୋଟାଏ ଆତଙ୍କ ପଶିଗଲା, ଭାବିଲେ—"ଶଂଗ୍ରେ କ'ଣ ଗୁଲିଲେ ସତେ ! ଅତି କଟ୍ଟର ହୋଇ ଗୋଟାଏ ବିଦାୟ ବେଳର ଧାରଣା, ଏତେଦିନଯାକେ ଖୁଣ୍ଟ ପରି

ବସିଥିଲେ, ଖାଲି ନାଁଟା ଥିଲା ବୋଲି ଲୋକେ ମାନୁଥିଲେ, ଘରଟା ଝିଙ୍କୁଥିଲା, ନହେଲେ ଯେତେ ଯାହା ହେଲେ 'ସ୍ୱେ' ତ' ବାରବୁଲା ଚକରଆ, ଯେଉଁଠିଥିଲେ ହେଲେ ସ୍ଥିର ହେବାକୁ ବେଳ ନ ଥାଏ। ଏ ସତେ ବୁଝିବେ ଗାଁ, ଘର, ଜମି କଥା ? ଲୋକେ କହନ୍ତି ମରିବା ଆଗରୁ ଲୋକେ ପ୍ରକୃତିଛଡ଼ା ହୁଅନ୍ତି, ଯେତେବେଳେ ଏଣୁତେଣୁ ଖାଇବାକୁ ମନ ବଳାନ୍ତି, ତେବେ ନିଶ୍ଚୟ ସେଇଆ ଘଟିବ ସ୍ୱାଙ୍କର। ଲାଗିଲା, ଘରକୁ ସତକୁ ସତ ମୃତ୍ୟୁ ଆସୁଛି, ପଦାର ଅନ୍ଧାରର ଆଜି ନୂଆ ରୂପ, ଘର ଚାରିପାଖ ନଡ଼ିଆଗଛ ଉପରକୁ ଅନେଇଁଲେ ଲାଗୁଥିଲା ସେହି ଗହଳ ବାହୁଙ୍କା ସନ୍ଧିରେ ଅନ୍ଧାର ଭିତରେ କ'ଣ ଗୋଟାଏ ଲୁଚି ବସିଛି, ଘଣ୍ଟ ବରଗଛକୁ, ସାହାଡ଼ା ବୁଦାକୁ ଅନେଇ ହେଲାନାହିଁ, ସେଠି ବି କ'ଣ ସତେକି ଅଜଣା ଭୟ। ଖୁଡ଼୍ କରି ହେଲେ ସେ ଚମକି ପଡୁଥିଲେ। ଚେମେଣି ଚଢ଼େଇ ଓଗ ବାଉଁଶ ତଳେ ଫଡ଼ ଫଡ଼ ହେଲାବେଳେ ନିରେଖି ଚାହୁଁଥିଲେ—ସେଇଟା ନୁହେଁ ତ ! ତାଙ୍କର ସ୍ଥିର ବିଶ୍ୱାସ ଆସିଥିଲା, ମରଣ ଆସୁଛି, ହେଇ, ଆସିଗଲା ପରା। ତହିଁ ଆରଦିନ ସ୍ୱାମୀଙ୍କ ପାଖକୁ ଚିଠି ଲେଖିଦେଇ ଡାକକୁ ପଠାଇଦେଲେ।

କିନ୍ତୁ ସେହି ଗୋଟାଏ ରାତିରେ ବିସ୍କୁଟ୍ ଖାଇ ଚା' ଖାଇ ଚକ୍ରପାଣିଙ୍କର ଯାହା ପରିବର୍ତ୍ତନ ହୋଇଥିଲା, ସେ ଅବସ୍ଥା ମରିବାଠୁଁ ବହୁଦୂର। ଭାଗବତ ପୋଥି ନାଁକୁ ଖୋଲିଲା, ଇଚ୍ଛା ହେଲା ପଦାରେ ଯାଇ ଅନ୍ଧାରରେ ଟିକିଏ ବସେଁ, ଆଜି ପବନରେ ହଜିଲା ହାତ ସାଇଁଲା ଆଉଁସା ଅଛି, ଆଉ ମନ ହେଉଛି ଦେହଟାକୁ ମାଟିରେ ଭରିଦେଇ ତାରଫୁଟା ଆକାଶ ଉପରକୁ ମନଟା ହାଉଲେ ଉଡେଇ ଦେବାକୁ—ପିଲାଏ ଯେମିତି ଘୁଡ଼ି ଉଡ଼ାନ୍ତି ସେହିପରି। ଆଜି ଠାକୁରଙ୍କ ନାଁ ନେଲାବେଳକୁ ମନ ଭିତରେ ହଠାତ୍ ନାନା ଅଭିଳାଷ ମୁଖର ହୋଇ କଥା କହିବାକୁ ଲାଗିଲେ, ମୁଣ୍ଡ ଭିତରେ ବହୁତ କଥାଭାଷା, ନିରୋଳା ହେଲେ କାନ ଶୁଣିବାକୁ ଚାହେଁ କ'ଣ ସେ କଥା କୁଆଡ଼ୁ ତାର ଗତି। କୃଷ୍ଣ କୃଷ୍ଣ କହି କହି ଆଖିବୁଜି ଦେଇ ଘଡ଼ିଏ ବସିପଡ଼ିଲେ ବହୁଦିନର ଅଭ୍ୟାସ ଅନୁଯାୟୀ। ପ୍ରଥମେ ଅନ୍ଧାର ତା'ପରେ ଆଲୁଅ ତା'ପରେ ଖାଲି ଅଧ ଅଧ ନେଳି ଆଲୁଅ ତା'ପରେ କେଉଁ ଚନ୍ଦ୍ରା ଛବିର ଚତୁର୍ଦ୍ଧା ମୂର୍ତ୍ତି, ତା'ର ଚାରିପାଖ ଆବୋରି ଗୋଟିଏ ଧଳା ଓଡ଼ିଆ ଅକ୍ଷରରେ ଓଁକାର, ସେଥିରୁ ତାରି ଆଲୁଅର ଧାସ ପରି ଧାର ଧାର ହୋଇ ଧାସ ଛୁଟିକରି ନେଳି ଆକାଶକୁ। ଏହିପରି ଏକ ଦୃଶ୍ୟ ଦେଖି ଦେଖି ସେ ଆନନ୍ଦ ପାଉଥିଲେ। ଆଜି ହଠାତ୍ ପଚିଶବର୍ଷର ସଂସ୍କାର ବଦଳେଇ ଦେଇ ଚାହା ବିସ୍କୁଟ୍ ଖାଇଦେଲା ପରେ ଯେତେବେଳେ ସେ ଅଭ୍ୟାସ ଅନୁସାରେ ଆଖିବୁଜି ବସିଲେ, ସେତେବେଳେ କୌଣସି ସ୍ପଷ୍ଟ ଦୃଶ୍ୟ ଦେଖିବାକୁ ମିଳିଲାନାହିଁ। ଅନ୍ଧାର ଦେଖିଲା ପରେ ପରେ ସ୍ପଷ୍ଟ ଅନୁଭୂତ ହେଲା ଧୀପରି ଧାସ ଆଖିପତା ଉପରେ ପଡୁଛି, ଅନ୍ଧାର ଜଳ ଜଳେଇଲା, ଅନ୍ଧାରହିଁ ରହିଲା, ତା'ପରେ ଓଟାରି ଓଟାରି ଆଖିପତା ମାଡ଼ିରଖିବାକୁ ଚେଷ୍ଟା କଲାବେଳେ ଅଷ୍ଟତର କେତେ ମୁହଁ ମନେପଡ଼ିଗଲା, ଇଚ୍ଛା

ମେଲ ଆଖି ଖୋଲି ହେଉ ପକାଏଁ, ସବେଁ । ଭଗବତ ବନ୍ଦ କରିପାରିଥିଲେ, ଆଖି ଖୋଲିଦେଲେ । ହଠାତ୍ ସନ୍ଦେହ ହେଲା—ଭଗବାନ ଦେଖାଦେଲେ ନାହିଁ ଆଜି, ଭଗବାନ ରାଗିଲେ କି ?

ସନ୍ଦେହଟା ଆପଣା ଆପେ ମେଣ୍ଟିଗଲା ଶାସ୍ତ୍ରର ଯୁକ୍ତିରେ—ସେ ତ ନିର୍ଗୁଣ । କିସବାରେ ସେ ରାଗୀ ହୁଅନ୍ତି ନାହିଁ, ସେ ରାଗିବେ କାହିଁକି ? କାହାର କ'ଣ ଅନିଷ୍ଟ କରିଛନ୍ତି ସେ ? ଏ ନୂଆ ଇଚ୍ଛା ଆସିଲା ବା କାହିଁକି ଯଦି ସେ ଇଚ୍ଛା ଉପୁଜେଇବାରେ ଈଶ୍ୱରଙ୍କର ହାତ ନାହିଁ ; ତ୍ୟାଗର ମାର୍ଗ ଦେଖାଇ ସାରିଛନ୍ତି ସେ ବହୁତ ବର୍ଷ, ଏଣିକି ସେ ଦେଖାଉଛନ୍ତି ଭୋଗର ମାର୍ଗ, ଆଉ ଭଗବତ ତ କହିଛନ୍ତି, "ଆତ୍ମା-କୁଶଳେ ସର୍ବସିଦ୍ଧି, ଉଦ୍ଧବ ପଚାରୁ ତୁ ବୁଧ—" ନା ଏଥିପରି କ'ଣ ।

ସନ୍ଦେହ ଦୂରେଇଗଲା । ଅତି ସହଜରେ ସେ ବିଶ୍ୱାସ କଲେ, ନାରୀର ଇଚ୍ଛା ହିଁ ଭଗବାନଙ୍କ ଇଚ୍ଛା । ଦୁହେଁ ଅଭିନ୍ନ ।

ପରମ ଉତ୍ସାହରେ ଆପଣା ପ୍ରତି ଅନୁକମ୍ପା ଦେଖାଇ ସେ ଭାବିଲାଗିଲେ—ଆପଣାଠିଁ କେତେ ବଳରବ ରହିଛି—ପ୍ରବୃତ୍ତି ଓ ଅଙ୍ଗପ୍ରତ୍ୟଙ୍ଗ ଏକାଠି ହୋଇ ଚହଲ ପକାଇ ଉଠୁଛନ୍ତି—ଆମେ ପାଇନାହୁଁ—ଆମେ ପାଇନାହୁଁ । ଈଶ୍ୱରଙ୍କ ମନ୍ଦିରରେ, ପରମ ଧର୍ମକ୍ଷେତ୍ରରେ ବସିଛନ୍ତି ଖାଲି ଭୋକିଲା ଭିକାରୀ ପଲ ପଲ, ସେମାନେ ପାଟି କରୁଛନ୍ତି, କ'ଣ ହେବ ତାଙ୍କର ଗତି ! କିଏ ହେବ ତାଙ୍କର ଉପାୟ ? ନ ମରୁଣୁ କିଏ ଯେପରିକି ଏକ ଅତୃପ୍ତ କ୍ଷୁଧାମୟ ଅମୋକ୍ଷ ଆତ୍ମା, ଏତେ ଇଚ୍ଛା ଏତେ କାମନାର ଅଶାନ୍ତ ବ୍ୟକ୍ତିତ୍ୱ ଯେନ କି ଉପାୟରେ ମଣିଷ ପାଇପାରେ ସ୍ୱର୍ଗକୁ ? ହୁଏତ ଗୋବିନ୍ଦଙ୍କର ଉଦ୍ଦେଶ୍ୟ କେବଳ ଏତିକି ଦେଖାଇ ଦେବା—କିନ୍ତୁ କାହିଁ ସମସ୍ତ ଆଉ ? କାହିଁ ବଳ ? କାହିଁ ଶକ୍ତି ?

ଅଶାନ୍ତ ହୋଇ ଭାବିଲେ ବହୁତ ବେଳ, ସେ ଭାବନାର ଅନ୍ତ ନାହିଁ, ସେ ସମସ୍ୟାର ସମାଧାନ ନାହିଁ ।

ଯେପରିକି ଆନନ୍ଦକର କେଉଁ ସର୍ଜନ ଆରମ୍ଭ କରିଦେଇ ହଠାତ୍ ସେ ଶୋଇପଡ଼ିଥିଲେ, ତା'ପରେ ସମସ୍ତ ବଦଳିଯାଇଛି, ପରିସ୍ଥିତି ବଦଳି ଯାଇଛି । ନିଦ ଭାଙ୍ଗିଲା ବେଳକୁ ବାକି କାମ ଗଦା ହୋଇ ପଡ଼ିଛି, ଉପକରଣ ନାହିଁ କି ବଳ ନାହିଁ । ଏତେଦିନକେ ତୀବ୍ର ଅନୁଶୋଚନା ଯେନ ମୁହାଁମୁହିଁ ଦେଖାଦେଲା ଆପଣାର ବାର୍ଦ୍ଧକ୍ୟ—ଫମ୍ପା ଘଟ ଭିତରେ ହାଉ ହାଉ ପବନର ଭଉଁରି ଖେଳ, ତା'ର ଗୋଟାଏ ନାଦ—'ସମସ୍ତ ନାହିଁ, ସମସ୍ତ ନାହିଁ ।'

ହଜିଯାଇଥିଲା କେବେ କେଉଁ ସଙ୍ଗୀତର ମୂର୍ଚ୍ଛନା, ତା'ର ଶେଷ ଧାଡ଼ିକ ଯେପରିକି ଶୁଭିଯାଉଛି, ପୁଣି ଆଉ ଶୁଭୁ ନାହିଁ । ନିଭିଯାଇଥିଲା କେବେ କେଉଁ ଆଲୁଅ, ତାର ନିଭିଲା ବେଳର ଶେଷ ଧାସ ପୁଣି ଆଉଥରେ ଦିଶି ଦିଶି ଯାଉଛି,

ପୁଣି ବୁଲୁକି ଆସୁଛି ଅନ୍ଧାର, ଚାଲିଯାଉଛନ୍ତି କେତେ ଲୋକ, କେତେ ଦୃଶ୍ୟ ହଜୁଛି, ମୁହଁ ସଞ୍ଜ ଅଟରେ ଅସ୍ପଷ୍ଟ ଆକାଶ ଆଗରେ ସ୍ଥୂଳ ବସ୍ତୁର ଅନ୍ଧାରି ଛବି ପରି ଠିଆ ହୋଇପଡୁଛନ୍ତି ସେସବୁ, ପୁଣି ଅନ୍ଧାରରେ ମିଶିଯାଉଛି ତାଙ୍କ ଆକୃତିର ପରିସୀମା । ନାମ ଫାଟିପଡ଼ି ହୋଇଛି ସହସ୍ର ନାମ, ସହସ୍ର କାମନା, ଆଉ ସେହି ଅନୁଶୋଚନାର କାନଅତଡ଼ା ଘୋଷା—ସମସ୍ତ ନାହିଁ ସମସ୍ତ ନାହିଁ ।

ନୂଆ ମୁକୁରରେ ତଉଲ ଦେଖୁଛନ୍ତି ଆପଣାର ଅତୀତକୁ । ସେଠି ଉଦ୍ରତାର ଲଗାମ୍, ଖ୍ୟାତି ଅରଜିବାକୁ ପେଟ ରୋକି ମୁହଁ ଲଜ ଅବସ୍ଥା, ପରମାର୍ଥ ଓ ତ୍ୟାଗର ସିଠା ଗେରୁଆ, ପୋଥି ଘାଣ୍ଟିବା ଓ ପାଠ ମୁଖସ୍ଥ କରିବାର ଅନର୍ଥକ ପରିଶ୍ରମ । ସବୁ ସାନ ହୋଇଆସୁଛି, ଆପଣାଠି ଏକ ପ୍ରଚଣ୍ଡ କ୍ଷୁଧା, ଦୂରରେ ସମୁଦ୍ରର ଗର୍ଜନ । କର୍ତ୍ତବ୍ୟ, ନିଷ୍ଠା ଓ ସଂସ୍କାର ଏତେ ବର୍ଷର ଜୀବନ ଆପଣାକୁ ଲାଗୁଥିଲା ସଂକୀର୍ଣ୍ଣ ଓ ଅଲୌକିକ, ଏତେ ଖରି ଦୁଃଖ ରୋଗ ଜ ମୃତ୍ୟୁକୁ ଅଟକାଇ ହୋଇନାହିଁ, ସବୁ ଝଡ଼ିପଡ଼ୁଛି, ଆଉ ସେ ଫେରିବ ନାହିଁ ।

ରାତିରେ ଶୋଇଲାବେଳେ ଏତେ ମୁହଁ ପଛରେ ପୁଣି ସ୍ମୃତି ଭରି ଦେଇଥିଲା ଆଜି ଦେଖିଥିବା ଗ୍ରାଇଲେଉଟାଣି ବେଳର ଦୃଶ୍ୟ ଉପରେ, ସେହି କୃଷ୍ଣଚୂଡ଼ା ଗଛ, ସେହି କନ କନ କାଲୀ ଛତା, ଆଉ ନେଟେଇମା'ର ଅତୀତ ଓ ତା' ବୋହୂର ବର୍ତ୍ତମାନ ଅବସ୍ଥା ଉପରେ । ଠିକ୍ କଥା, ନେଟେଇମା'ର ବୋହୂକୁ ଦେଖିବାକୁ ପଡ଼ିବ, ଆସିବ ତ', ଉପଦେଶ ଶୁଣିବ । ନିଦ ହୋଇଗଲା ।

ତହିଁ ଆରଦିନ ସକାଳେ ଚନ୍ଦ୍ରପାଣି ବୋହୂକୁ ଡାକି ନୂଆ କଥା କହିଲେ —"ମୁଁ ଭାବୁଚି, ମାଛ ମାଂସ ଖାଇବାକୁ ହିଁ ପଡ଼ିବ । ଏ ଦେହ ରଖିବାକୁ ହେଲେ ପୁଷ୍ଟିକର ଖାଦ୍ୟ ଦରକାର । କେତେ ଲୋକ କହନ୍ତି, ମାଛ ମାଂସ ଖାଇଲେ ପାପ ହୁଏ, ଭୁଲ୍ ବୁଝିଚନ୍ତି ସେମାନେ । ଆମେ ନ ଖାଇଲେ କ'ଣ ହେଲା, ଆଉ ଲୋକେ ଖାଉଚନ୍ତି ତ, ସେମାନଙ୍କ ପାଇଁ ତ ମାଛ ମାଂସ ହେବ, ଆମେ ଖାଇଲେ କେତେ ନ ଖାଇଲେ କେତେ, ଆମେ ଖାଇଦେଲେ କ'ଣ ଅଧିକ ପ୍ରାଣୀ ହତ୍ୟା ହୋଇଯିବ ନା ନ ଖାଇଲେ ଅଟକିବ ? ଆପଣା ରୁଚିର କଥା, ରୁଚି ହେଉନଥିଲା ଖାଉନଥିଲି, ରୁଚି ହେଲା, ଏଥର ଖାଇବି । ସହରରେ ବୁଲି ବୁଲି କ'ଣ ସବୁ ଭଲ ରନ୍ଧା ଶିଖି ଆସିଚ ପରା, ଭଲ କରି ରାନ୍ଧିବ, ଆଜିଠୁ ଆରମ୍ଭ ।"

ଦଣ୍ଡପାଣିର ବୋଉ ବିକଳ ହୋଇ ଭାବିଲେ, ଆହା ବିଚରା ବୁଢ଼ା ମଣିଷଟି ! ଖାଉନ୍ତୁ ଯାହା ମନ ହେଉଛି । କିନ୍ତୁ ପୁଣି ଏ କାହାଣୀ ସ୍ୱାମୀଙ୍କ ପାଖକୁ ଚିଠିରେ ଲେଖା ହୋଇ ଚାଲିଗଲା—"ତୁମେ ଶୀଘ୍ର ଆସ, ମତେ ତ କେମିତି କେମିତି ଲାଗୁଛି, ସନ୍ଦ କରୁଛି ଗୋଟାଏ ଘଟିଯିବ ମୁଁ ମାଇପି ଲୋକ, ତୁଲେଇ ପାରିବି ନାହିଁ ।" ପଦାରେ କଥାଟି ପ୍ରକଟ ନ କରିବାକୁ ହିଁ ଚେଷ୍ଟା

କଲେ, କଳୁ ଦଣ୍ଡପାଣି ଇସ୍କୁଲ ଯିବା ପିଲା, ଘରୁ ଇସ୍କୁଲ ଯାକେ ଓ ପୁଣି ଲେଉଟାଣି ସେ ତା'ର ନୂଆ ଜନର ବ୍ୟାଖ୍ୟା କରି କରି ଚାଲନ୍ତି—

"ଆମ ଲୋକେ ମାଛ ମାଂସ ଖାଇଲେଣି, ଏଥର ରୋଜ ଅମ ଘରେ ମାଛ ମାଂସ ହବ, ବୋଉ କହୁଚ।"

ଗାଁ ଲୋକେ ଗୋଟି ଗୋଟି ହୋଇ ଚଢ଼ିବାକୁ ଲାଗିଲେ ଖାଲି ଦେଖିବାକୁ, ପ୍ରଥମେ ଅଳ୍ପ ଅଳ୍ପ, ତା'ପରେ ଧାର ବାନ୍ଧିଲା। ସହାଗ୍ର ଲୋକଙ୍କ ବିଶ୍ୱାସ କରିବାକୁ ନାହିଁ ଯେ ନଈ ବି ଗତି ବଦଳାଏ, ମଣିଷ ତାର ସ୍ୱଭାବ ବଦଳାଏ, ଅତି ବଡ଼ ଗଛ ବି ପବନରେ ଉପୁଡ଼ି ପଡ଼େ, ଯେଉଁଠି ଥରେ ବସ୍ତି ବସିଥିଲା ସେଠି କେବେ ପାଣି ଗଣ୍ଡ ବି ହୁଏ, କମ୍ଭୀର ବସା କରେ। ପୁରୁଖା ଲୋକେ ଧରି ନେଇଥିଲେ, ମରିବା ପୂର୍ବରୁ ଚକ୍ରପାଣି ମହାପାତ୍ରେ ପ୍ରକୃତିଛଡ଼ା ହେଉଛନ୍ତି, ଖୁବ୍ ଶୀଘ୍ର ହିଁ ଆସୁଛି ମରଣ, ଯେତେବେଳେ ଅଉ ପିଣ୍ଡାରେ ବସିଥିବା ପାକଲା ଆମ୍ବ ପରି ବୁଢ଼ା ନଥିବେ, ଗାଁର ଗୋଟିଏ ସାତ ସାଗରେ ସାର ମୁଣ୍ଡ ହଜିଯିବ। ତେଣୁ ସେମାନେ ପେଟପୁରି ଭୋଗ କରିବାକୁ ଆସିଥିଲେ ତାଙ୍କ ସନ୍ନିଧାନ। ଗାଁର ଟୋକାଏ ନବଜ ଦେଖିବାକୁ ଆସିଥିଲେ, ବୁଢ଼ାର ମୁଣ୍ଡ ବିଗିଡ଼ିଛି, ଗୁହୁଁ ଗୁହୁଁ ହୁଏତ ସେ ଥେଇ ଥେଇ ହୋଇ ନାଚିବ, ଏଠି ବଡ଼ ମଜା ଛାଡ଼ିଦେବା ଉଚିତ ହେବ ନାହିଁ। ତେଣୁ ସେମାନେ ଭୂନତାନ ଅଁ ଠିଆ ହୋଇ ରହିଲେ। ଘଟନା ଶୁଣି ମନରୁ ତାଙ୍କ ପ୍ରତି ସମ୍ମାନ ଉଡ଼ିଯାଇଛି, ଚିର ଅଭ୍ୟାସର "ଦଣ୍ଡବତ ଓଳିଙ୍କ—" ବି ଅନେକ ଭୁଲିଗଲେ। କେତେକଙ୍କ ମନରେ ଥିଲା କରୁଣ ସହାନୁଭୂତି ଆଉ କେତେକଙ୍କ ମନରେ କେବଳ ନିର୍ଦ୍ଦୟ ଉପହାସ; କିନ୍ତୁ ମହିର କରିଛଡ଼ା ଦେବାର ସମ୍ମତିମିଶା ହାତ ଯେପରିକି ଅପସରି ଯାଇଥିଲା। ଲୋକେ ପାଖକୁ ଆସି ଠିଆହେଲେ, କଡରେ ବସିଲେ, କିଛି ନ କହି ଚାହିଁରହିଲେ ଖାଲି ଘଡ଼ିଏ ବେଳ।

ହଁ ପରିବର୍ତ୍ତନ ସ୍ପଷ୍ଟ ଆଖିରେ ପଡ଼ୁଛି। ସ୍ୱେ ଥିଲେ ମୌନୀ, ଯେ ମାହା କହୁ କୃଷ୍ଣ-କୃଷ୍ଣ—କହି ମୁଣ୍ଡ ଟୁଙ୍ଗାଉଥିଲେ। ଆଉ ଆଜି ସେ ମୁଖର, ସମସ୍ତଙ୍କ ପାଇଁ ଅଛି କିଛି ହସ, କିଛି କଥା। ଯେପରିକି ଏତେଦିନ ବନ୍ଦୀ ହୋଇ ରହିବା ପରେ ଆଜି ସେ ପଦାକୁ ଆସିଛନ୍ତି, ହଠାତ୍ ଲାଗୁଛି, ସମସ୍ତେ ତାଙ୍କୁହିଁ ସମ୍ବର୍ଦ୍ଧନା ଦେବାକୁ ଆସିଛନ୍ତି, ସମସ୍ତେ ତାଙ୍କର ହିତକାମୀ, ସ୍ନେହୀ ବନ୍ଧୁ, ସଙ୍ଗୋଳ ଆସିଛନ୍ତି କେବଳ। ଆଉ ଏହି ଗଣ-ସାନ୍ନିଧ୍ୟରେ ଝଲସି ଉଠୁଛି ତାଙ୍କର ମୁକ୍ତ ବ୍ୟକ୍ତିତ୍ୱ—

"ଆସ, ଆସ, ବସ ବସ, ଆରେ କିଏ ଅଛ, ପାନ ଆଣରେ। ଗଛରେ କ'ଣ ପଇଡ଼ ନାହିଁ? ଚଢ଼ୁ ଜଣେ, ଖରାରେ ଆସିଚନ୍ତି ଏମାନେ, ପଇଡ଼ଟିଏ ହେଲେ କ'ଣ ନାଙ୍କେସ ହେବ? ହଁ, ବସ ବସ—କ'ଣ କହୁଥିଲଟି, କହୁଚ ରଇଥା—କ'ଣ ସୋଇଁ ପୁଅ, ତାସ ବେଉସା ଭଲ ଚାଲିଚ ତ? ତମର କଣ

ଚଳନ୍ତା, ଅପଣା ହାତେ ହାତେ କାମ, କୋଉ କାହା ଉପରେ ନିର୍ଭର ରଖିଚ ଯେ ପଟେଇ ଅଛି ? ନ ବେହେରାଏ, କେମିତ ଚାଲିଚ କାମଦାମ ? ତମେ ଟିକିଏ ତମ ସାହେବଲୋକଙ୍କୁ କହ, ପାଣି ମିଶେଇଲେ କ'ଣ ଦୁଧ ବେଶି ହବ ? ବେଶି ପଇସାକୁ ଆଶା ତ ଭଲ ଗାଈ ରଖ, ବେଶି ବେଶି ଦୁଧ ହଉ, ମାଠିଆ ମାଠିଆ ପାଣି ମିଶେଇଦେଲେ କୋଉ ଗୁଣ, ସେ ପଇସା କୋଉ କାମକୁ ଯାଏ ? କହୋ ଶୁଣୁଥାଏ, ବାପେ ତ ମୋର ବଟେର ସମୁଦ୍ର ପଢ଼ାଉଥିଲେ, ଏତକାଳକୁ ବିଦ୍ୟାଟା ବି ମୋର ହୋଇ ରହିଲାନି, ଖାଲି ବଟକଣିରେ ତାଳି ମାରିଦେଲେ ସମୁଦ୍ର ହୋଇଗଲା, ଏଇ ଧାର୍ତ୍ତା ଚାଲିଥିବ ନା ବଦଳାଇବାକୁ ଚେଷ୍ଟା ଚଳୁ ହେବ । ଆସିଲୁ ସବୁ, ଖୁବ ଭଲ ହେଲା । ଏ ଗାଁ ବିଷୟରେ କେତେ କଥା କହିବାକୁ ଥିଲା କ'ଣ ତ ମନେପଡ଼ୁନାହିଁ, ରହଥା, ଧୀରେ ଧୀରେ ମନେପଡ଼ିବ । ହଁ ଏ ଟୋକାଗୁଡ଼ାକ ଏମିତ ନିର୍ଜୀବ ହୋଇଯାଉଚନ୍ତି କାହିଁକି ? ଆଗ କାଳେ ଦେଖିଚ ତ, ମଣିଷ ଥିଲେ, ସକାଳେ ତିନ ପା କଞ୍ଚା ଚୂଡ଼ା ଅଣ୍ଟିରେ ପଶିଲା ତ ଆଉ ଦଣ୍ଡେକ ନାହିଁ, କୁଆଡ଼େ ହଜମ ହୋଇ ପାର ହୋଇଯାଇଥିବ । ସେଇଠୁ କଟକ ଅଧସେର ଗୁଡ଼ଲର ବଗଡ଼ା ଖିରି, ଅଧସେରିଆ କଂସାରେ କଂସାଏ ଲେଖାଁ ବେଢ଼ାଳ, ଗୋଟାଏ ବଡ଼ ଶୁଖୁଆ । ସେ ଖାଦ୍ୟ ନାହିଁ, ସେମିତ ଖାଇଲାବାଲା ନାହାନ୍ତି, ସେମିତ ମାଲ ବି ନାହାନ୍ତି, ଆଉ କେତେ କେତେ ପିଠାମାନ—କେତେ କେତେ ବଡ଼ ! କେତେ କେତେ ପିଠା—ଏବର ଏ ବୋହୂ ଝିଅ ତ ତା' କରିବାକୁ ଭୁଲିଗଲେଣି—

କଥା କହୁ କହୁ ଅକାମାର ବସିରହିଲେ କିଛି ବେଳ। ଯେପରିକି ସେ ସେହି ପିଠା ସ୍ୱପ୍ନ ଦେଖୁଛନ୍ତି । ଜାଣିବା ଲୋକେ ମୁହଁ ଚାହାଁଚାହିଁ ହେଲେଣି, ଆହା, ବୁଢ଼ା ବିଚରାଙ୍କର ପିଠା ଖାଇବାକୁ ମନ ହୋଇଛି, ଘରେ ଘରେ ଏଥର ବୋହୂ ଝିଅ ଲାଗି ପଡ଼ିବେ, ଖାଉନା ମଣିଷଟା ପେଟ ପୂରେଇ, ପିଠା ଆସିବ । କିନ୍ତୁ ତାଙ୍କର ପ୍ରତ୍ୟେକ କଥା ସମବେତ ଜନତା ମନରେ କିଛିନା କିଛି ପ୍ରତିଧ୍ୱନି ଉପୁଜାଉଛି, କିଏ ଘେନୁଛି କେଉଁ ଅର୍ଥରେ, କିଏ ଭାବୁଛି ଏ ପାଗଳ, କିଏ ଭାବୁଛି ନା ଏ ସାର କଥା । ଗୋଟାଏ କଥା ଅତି ସ୍ପଷ୍ଟ, ଏ ଭାଷଣରେ ନାହିଁ ଶାସ୍ତ୍ରର ପରମାର୍ଥ କଥା କିଛି, ଖାଲି ଏଥିରେ ସମାଜ ଲୋକର ଜୀବନ ଧାରଣର ସାଧାରଣ ସମସ୍ୟା । ଏତେ ବଡ଼ ପରମାର୍ଥ ନିଷ୍ଠାପର ଧାର୍ମିକ ବୁଢ଼ାଙ୍କ ମୁହଁରେ ଖାଲି ଏଇ ମଡ଼ା ମାଟିର କଥା, ଆକାଶର କଥା ନାହିଁ । କେତେ ବୁଢ଼ା ଫଁ ଫଁ ଦୀର୍ଘନିଶ୍ୱାସ ଛାଡ଼ିଲେ, ଚନ୍ଦପାଣିଙ୍କ କଥାର ଧାରାରେ ସେମାନେ ଦେଖିଲେ ନରକ ଆଉ ପ୍ରଳୟର ବିଭୀଷିକା—ଏତେ ଶାସ୍ତ୍ର ପଢ଼ି କ'ଣ ଏଇ ହେଲା ଫଳ ଯେ ଏଡ଼େ ବୋଧା ପାକଲା ବୁଢ଼ାଙ୍କ ତୁଣ୍ଡରେ ଶାସ୍ତ୍ର ଉପଦେଶ ପଦେ ହେଲେ ନାହିଁ ! ନା ଏ କଳିଯୁଗର ହିଁ ନିୟମ, ପବିତ୍ର ଲୋକେ ଆସ୍ଥା ଛାଡ଼ିବେ, ବାବାଜି ସଂସାର କରିବେ, ସବୁ ଓଲଟି-ଯିବ, ଭୁଷୁଡ଼ିଯିବ, ଭାଙ୍ଗିଯିବ ।

ଦମ୍ ନେଇ ବୁଢ଼ା କହିବାକୁ ଆରମ୍ଭ କଲେଣି—

"ଅସଲ ହଉଚି ବଳ ବୟସ, ନୀରୋଗ ଦେହ । ସେତକ ନ ଥିଲେ ସବୁ ବିଗିଡ଼ା । ହଜାରେ ପଣ୍ଡିତ ହେଲେ କ'ଣ ହେବ ? ପ୍ରାଣଟା ବଳଟା କ'ଣ କିଏ ଦେଇଦେବ କାହାକୁ ? ପିଣ୍ଡରେ ପ୍ରାଣ ଥିଲେ ତ ?

ଲୁଲୁ ଲୁଲୁ କରି ସ୍ତ୍ରୀ' ମୁହଁରୁ ତା'ମୁହଁକୁ ଅନେଇଁଗଲେ, ଯେପରିକି କଥାର ଖିଅ ହଜିଗଲା । ପୁଣି ଟେଲଗ୍ରାଫି ଅଫିଲପରି ଥୂକନା ନଣ୍ଡାଏ ଛେପ ପକାଇ ଦେଇ ପୁଣି ଆରମ୍ଭ କଲେ—"ଯୁଆଡ଼େ ଶୁଣ ଖାଲି ପ୍ରେମ ପ୍ରେମ ପ୍ରେମ—ଏ ଟୋକାଙ୍କର ଯେମିତିକି ଅନ୍ତ କଚ୍ଛ ନାହିଁ । ମୁଁ ଏଠି ବସିଚି ବୋଲି ମୋ କାନଟା କ'ଣ ବନ୍ଦ ଅଛି ? ତୁମ ଗୀତ ସେଇଆ, ସେଇଥିପାଇଁ କମର ଏତେ ନାଟ ଟାଣାରେ ସତ୍ୟକ୍ । କର, କିଏ ମନା କରୁଚି । ଅଣ୍ଟାରେ ତ ବଳ ନାହିଁ, ଦୁହିଁ ଆଣିଲେ ହାଡ଼ ମାଉଁସ ଫଲେ, ତମେ କ ପ୍ରେମକୁ ଯୋଗ୍ୟ ? ମୁଁ ପଚ୍ଚାରୁଚି—" ହୋ ହୋ ହୋଇ ହସି ଉଠିଲା, ଉତ୍ସାହିତ ହେଲା ପରି ଚକ୍ରପାଣି କହିଲେ—"ଯାହା ମନ ତା' ଖାଅ, ଆଗ ବଳୁଆ ହୁଅ, ହଁ ଏଇ କଥା ତ କହିବ କହିବ ବୋଲି ଭୁଲିଯାଇଥିଲି—ଗାଁରେ ଖଣ୍ଡେ ପହିଲମାନ ଆଖଡ଼ା କର, ଭେଡା ପକେଇ ଠଙ୍କା ଠୂଲ କରି ହମ୍ସେର ପୁରୁଆ ପଠାଣ ପହିଲମାନ ଗୁରୁ ରଖ—ସାଧନ ଖାଙ୍କ, ବାଡ଼ି ଖେଲ ମୁଦ୍ଗର ବୁଲାଅ, ଦଣ୍ଡ ପେଲ, ଯାହା ପାରି ତା' କରି ମଣିଷ ହୁଅ—"

ଟୋକା ଭିତରୁ ଜଣେ ପଚାରିଲା—"ଆମେ କୁସ୍ତି ଅଖଡ଼ା କଲେ ଆପଣ ସେଠିକି ଆସିବେ ତ ?"

"କାହିଁକି ଯିବୁ ନାହିଁ ? ଆମେ କ'ଣ ମଣିଷ ନୋହୁଁ ? କୁସ୍ତିଯିନା ନ ଲଢ଼ିବୁଁ, ଦେଖିବାକୁ କ'ଣ ମନା ଅଛି ?"

"ଦେହ ସଜାଡ଼ିବେ ବୋଲି ଆପଣ ମାଛ ମାଂସ ଖାଇବାକୁ ଆରମ୍ଭ କଲେ କି ?"

"ସେଇ ତ କଥା, ମୋ ମୁହଁରୁ ଛଡ଼େଇ ନେଲ । ବସି ବସି ଖାଇଲି ସବୁ ବଷ୍ଟୁରେ ତ ମନ ଦେଲି ଆପଣା ଦେହ ପାଇଁ କଲି କ'ଣ ? ମରିବାକୁ ତ ହେବ, ବୟସ ବଳେଇଲାଣି, ତା' ଆଉ କିଏ ଅଟକେଇବ କହ । ତେବେ ଯେତେଦିନ ଥାଇଁ ସେତେଦିନ ମଣିଷ ପରି ନ ବଞ୍ଚିବା କାହିଁକି ?"

"ମାଛ ମାଂସ ଖାଇଲେ ଫେର୍ ହରିନାମ ?',

"ହରି ନାମ ଅଟକିବ ନାହିଁ । ହରି କୋଉଠି ନାହାନ୍ତି କହ ? ସେ ତ ଦେଖିବା କଥା ନୁହଁ, ଅନୁଭବ କରିବା କଥା, ଅନୁଭବ ଆସିବ ଦେହ ବାଟେ ଫେର୍ ମନ ବାଟେ । ଦେହ ଯଦି ଦେହ ହୋଇ ନଥିବ, ତେବେ ହରିଙ୍କି ଅନୁଭବ କରିବ କ'ଣ ? ପଛିରେ ମୁଣ୍ଡ ବଯୋଉଥିଲେ କି ଜର ହୋଇଥିଲେ କ'ଣ ପବନଟା ପବନ ପରି ଲାଗିବ ନା ପାଣିଟା ପାଣି ପରି । ଆଗ ଏ ଘଟ, ତାକୁ ଆବୋର ସବୁ ।"

"ତେବେ ଏତେ ଦିନ ସେମୁଡ଼ା ନ ଖାଉଥିଲେ କାହିଁକି ?"

"ଦେହର ଅଭାବ ନଥିଲା ମନ ହେଉ ନଥିଲା ଖାଉ ନ ଥିଲି। ଦେହର ଦରକାର ନ ଥିଲେ ମନ ଆଦୌ ହବ ନାହିଁ। ଅଚ୍ଛା ଦରକାର ହେଲା, କ'ଣ ବଗିଡ଼ିଗଲା ସେଥିରେ ? ଶାସ୍ତ୍ର କହୁଚି, ଆସକ୍ତ ନ ଥିଲେ ସବୁକାମ କରି ହବ, ଫେର୍ କହିଁଚି ପରି ବେକ ଗୋଡ଼ ଓଟାଣି ଦେଇ ଆପଣା ଖୋଳ ଭିତରେ, ଯୋଉ ଲକ୍ଷ୍ୟକୁ ସେହି ଲକ୍ଷ୍ୟ। ଆମେ ତ ଗୃହସ୍ଥ, ଏମିତି କେତେ ବାବାଜି ଅଛନ୍ତି। ସେଥିରେ କିଛି ନାହିଁ, କୋଉଥିରେ କିଛି ନାହିଁ, ଆପେ ବଞ୍ଚିଲେ ବାପର ନାମ।"

ଚାଲିଲା ନାନା ଜାତି ପ୍ରଶ୍ନ, ବୁଢ଼ା ଯଥାସାଧ୍ୟ ତା'ର ଉତ୍ତରଦେଲେ। ଗାଁ ଲୋକେ ପଚାରିବାକୁ ବାଗ ପାଇଲା ପରେ ଦେଖାଇ ବସିଲେ ଅଦମ୍ୟ କୁତୂହଳ, ଯତେ ଯେପରି ବିଦେଶରୁ କିଏ ଜଣେ ଆସିଛନ୍ତି ଆଉ ସାମ୍ବାଦିକମାନେ ତାଙ୍କୁ ଘେରି ବସି ନାନା ବିଷୟରେ ତାଙ୍କ ମତ ପଚାରୁଛନ୍ତି। ସେ ଉତ୍ତର ବି ଲାଗିଲା ଠିକ୍ ସେହିପରି ବ୍ୟବହାରରେ, ଯେଉଁମାନେ ଶୁଣିଗଲେ ସେମାନେ ଘରଆଡ଼େ ପ୍ରଚାର କରି ଲାଗିଲେ, ତା' ଉପରେ ପୁଣି ଚାଲିଲା ସମାଲୋଚନା—"ହେଃ ଭଣ୍ଡ ତପସ୍ୱୀ—କ'ଣ କହୁନ୍ତି ନାହିଁ, ମାଛ ନ ଖାଉ, ମଛଲି ନ ଖାଉଁ, ମାଣ୍ଡିଆ କଙ୍କଡ଼ା ପାଇଲେ ପୋଡ଼ିକରି ଖାଉଁ—ଦେହବାଟେ ଅନୁଭବ କରିବେ ହରିଙ୍କି—ଅଚ୍ଛା ଗୋଟାଏ ହରି ପାସୋରି ଯାଇ ଆଉ ସବୁ ହରି ଆଖିରେ ଦିଶୁଛନ୍ତି—ବୋଇଲା ହ ପଳେଇଲା ହରି ଗୋଡ଼େଇଲା ହରି ପଶିଗଲା ହରିରେ, ସେମିତିଆ ସ୍ୱାଙ୍ଗ ହରି।"

"ମୁଣ୍ଡର ଦହି ଛେନା ଛୁଣ୍ଡି ଗଲଣିମ, ମଥା ବଗିଡ଼ା, କଣ ନାହିଁ କଣ ବକି ଯାଉଛନ୍ତି, ସେଥିରେ କଣ ବାଇଣ ଅଛି ?"

କିନ୍ତୁ ଚକ୍ରପାଣି ତୃପ୍ତ ଥିଲେ। ଲାଗିଲା, ଏତେ ଦିନକେ ସେ ତାଙ୍କର ସତ୍ୟ ସନ୍ଦେଶ ପ୍ରଚାର କରିପାରିଛନ୍ତି, ନିଶ୍ଚୟ ସେ ଚେର ମଡ଼େଇବ, ସଂସାରର ମଙ୍ଗଳ ହେବ। ଗପିବା ଆରମ୍ଭ କଲା ପରେ ତାଙ୍କୁ ପ୍ରଚାରକର ନିଶା ମାଡ଼ି ବସିଥିଲା, ବୁଝୁଁ ଥିଲେ ସବୁବେଳେ ଲୋକେ କଅଁରେ ବସିଥାନ୍ତେ ଆଉ ସେ ଗପୁଥାନ୍ତେ। ମୁଣ୍ଡ ଭିତର କେମିତି ଝାଙ୍କିଲା ପରି ଲାଗୁଛି, କପାଳ ତତଲା; ପାଟି ଅଂଁୁଛି, ବେଳେବେଳେ ଖନି ବାଜିଯାଉଛି, ତଥାପି ସେ ପଦାରୁ ଲୋକ ଡାକିଆଣି କଅଁରେ ବସେଉଛନ୍ତି, ଗପୁଛନ୍ତି। କଣା ଅଚ୍ୟୁତ ତେଲ ଡେଙ୍ଗା ପସରା ମୁଣ୍ଡେଇ ଦିପହରବେଳେ ବାଟ ବାହାରିଥିଲା, ହଠାତ୍ ହାଙ୍କଶୁଣିଲା, "ଶୁଣ ଅଚ୍ୟୁତ, ଆସ, ଝାଳ ମାର, ଛାଇରେ ବସ। ଆଚ୍ଛା ତମେ ଏମିତି ଦିନ ନାହିଁ ରାତି ନାହିଁ ଖଟି ମରୁଚ ଯେ, ଖାଉଚ ନା ଗଣ୍ଡାଏ ଭଲ କରି ଆପଣା ପେଟକୁ ? ନା, ଖାଉ ନ ଥିବ ଖାଲି ମୋ ପୁଅ, ମୋ ନାତି, ମୋ ଭାଇଜା, ମୋ ବୋହୂ, ଏ ଗୁଡ଼ା କଣ ?

କି କଥା ଏ ? ଏ ଖାଲି ଲୁବ୍ଧକ ବନ୍ଧନରେ ପଡ଼ି ଛଟପଟ ହେବା କଥା । ଏ ଖାଲି ମାୟା ।" ଅଚ୍ୟୁତ ମୁଣ୍ଡ ଟୁଙ୍ଗାରିଲା, ସତ କଥା ତ ମାୟା ନୁହେଁ ତ ଆଉ କ'ଣ ? ତେଣେ ବକ୍ତୃତାର ବରଷା ଗାଳୁଛି, 'ସବୁରି କର୍ତ୍ତା ତ' ଆଉ ଜଣେ, ଭଲା ତମେ ଆମେ ହାଇଁପାଇଁ ହେଲେ କାହାରି କିଛି କରିପକେଇବା ? ତମେ ଯଦି ମୋ କଥା ମାନନ୍ତ, ତେବେ ପେଟେ ବାସି ପଖାଳ ଆଉ ପିଆଜ ଦେଇ ଗଣ୍ଡେ ମାଛ ପୋଡ଼ା ଏକାଠି ଖାଇଦେଇ ଥିରକରି କାନ ପାରି ଦେଇ ଗଛ ତଳେ ଘଡ଼ିଏ ଶୋଇପଡ଼ନ୍ତ, ଆଉ ଝରମାକୁ କହନ୍ତ ନେ ମୋ ଗୋଡ଼ ଦି'ଟା କୋଡ଼ରେ ଥୋଇ ଆଚ୍ଛା କରି ଘଷି ଦେ, ପଛ ଭକ୍ତି ଶିଖ୍ । ସେ ସୁଖ ଆଉ କୋଉଠୁ ପାଇବ ? କି ସୁଖ ପାଇବ ? ସବୁଦିନେ ଖାଲି ପେଟ ଭୋକ ମୁହଁ ଲାଜ, ପେଟରେ ଭୋକ ଗରଜ ଗରଜ ମଲା, କାହା ମୁହଁକୁ ଚାହିଁ ବି ପାରିଲା ନାହିଁ ମଣିଷ, ସେଇଠୁ ଯୋଉଠୁ ଅଇଷ ସରସିବ, ଖାଇ ହବ ନାହିଁ, ଝୁରି ହଉଥିବ ଆହା, କାହିଁକି କଲି ନାହିଁରେ, ଭୋଗ ଭାଗ୍ୟ କରିବା ଲୋକ ଭୋଗ କଲେ, ମୁଁ ଖାଲି ଖୋଲପା ଗୋଟେଇଲି । ଅଚ୍ୟୁତ, ଯାହା କହୁଚି ମନ ଦେଇ ଶୁଣ, ଗୋପ୍ୟ ବିଦ୍ୟା ଏ ଶୁଣି—

କଣା ଅଚ୍ୟୁତ ଟେଲ୍ ନିଃସହାୟ ହୋଇ ଗୁରୁଆଡ଼କୁ ଚାହିଁଲା, ତା'ପରେ ପେଟରେ ହାତ ଗେଣ୍ଡି ମୁହଁ କେମିତି ଗୋଟାଏ "ଆହା—" କଲା, କହିଲା, "ପେଟ ମୋଡ଼ି ହଉଚି, ପିଆଦା ଡାକିଲାଣି—" ଆଉ ପଯସ ଧରି ଉଠି ପଡ଼ି ଝଟ୍ ଝଟ୍ ପଳେଇଲା ।

ବୋଦ୍ଧୁ ଆସି ଆଢ଼େଇ ହୋଇ ଠିଆହେଲେ, ତଳକୁ ମୁହଁ ପୋତି ଆସ୍ତେ ଆସ୍ତେ କହିଲେ, "ବେଶି କଥା ଗପିଲେ ଦେହ ଖରାପ ହବ, ଖିଆପିଆ ବଢ଼େଇଦେଇ ଶୋଇପଡ଼ିଲେ ଭଲ—"

"ହଉ ହଉ ଶୁଣିଥାଅ ଦି'ପଦ, ଆମେ ଯେତେଦିନ ବଞ୍ଚିଛୁ । ପରେ ଆଉ କୋଉଠୁ ପାଇବ ? ପାଟିଟା ତ ଅଛି । କଥା ନ କହିବ କେମିତି ?"

ଅଭିମାନ ହେଲା, ଲୋକେ ତାଙ୍କୁ ଭୁଲ୍ ବୁଝିଛନ୍ତି । ଆପଣା ଗୁଆଁକୁ ହସିଦେଇ କହିଲେ, "ସେଥିରେ ଆଉ ବିଚିତ୍ର କ'ଣ ଅଛି କି ? ଯେତେ ମହାତ୍ମା ଯେତେ ଧର୍ମପୁରୁଷ ସମସ୍ତିଙ୍କି ଲୋକେ ଭୁଲ ବୁଝିଥାନ୍ତି, ଏ ଲୋକେ ! ଗୁଡ଼ ସ୍ୱାଙ୍କ କଥା, କୁକୁର ଲାଙ୍ଗୁଡ଼ ବାରବର୍ଷ ନଳୀଭିତରେ ପୁରେଇ ରଖିଲେ ବି ସେ ଅଉ ସିଧା ହେବନାହିଁ । କ'ଣ କରିଯାଏ ? ଆପଣା କର୍ତ୍ତବ୍ୟ ତ କରିବାକୁ ପଡ଼ିବ । ଧର୍ମ ପ୍ରଚାର କରିବାର ସେହି ହେଲା ପନ୍ଥା, ଲୋକେ ଶୁଣିବୁନାହିଁ ଶୁଣିବୁନାହିଁ ବୋଲି ଧାଇଁ ପଳେଉଥିବେ, ଆଉ ତୁମେ ଶୁଣିଯା ଶୁଣିଯା କହି ତାଙ୍କ କାନରେ ଧର୍ମନାଦ ଢାଳିଢାଳିକା ପଛେ ପଛେ ଧାଇଁଥିବ, ତେବେ ଯିନା ବିଧର୍ମୀଙ୍କି ତାରି ପାରିବ ମୂର୍ଖଙ୍କୁ ବୁଝେଇ ପାରିବ ; ଆଶା ଛାଡ଼ିଦେଲେ ତମେ ଯେମିତି, ସମସ୍ତେ ସେମିତି, ଅଧିକା କ'ଣ ?"

ଖାଇ ବସିଲବେଳେ ବୋହୂଙ୍କୁ କହିଲେ, "ଆମ ପାଇଁ କୁକୁଡ଼ା ଆଉ କୁକୁଡ଼ା ଡିମ୍ବ ରାନ୍ଧ ଏଥର । ମାଛ ମାଉଁସ ଖାଇବା ତ ଭଲକରି ଖାଇବା, ଆଉ ଅଧାଅଧି କ'ଣ ?"

ବୋହୂ ପାଟିରେ ଲୁଗା ମାଡ଼ିଦେଇ କହିଲେ, "ହଉ ।"

ମାଛ ଲଣ୍ଡକୁ ଅଉଁଷି ଅଉଁଷି ସେଥିରୁ ମାଂସ ଓଟାରୁ ଓଟାରୁ ମଲା ସ୍ତ୍ରୀ କଥା ମନେ ପକାଇ ଚକ୍ରପାଣି କହିଲେ, "ଖାଇଲାବେଳେ ସତରଗୁଣ୍ଡା ହଉଥିଲା, ମୁହଁ ଛୁଞ୍ଚାଡ଼ି ଦେଉଥିଲା, ସେ କେତେ ଲଗାନ୍ତି ଖାଅ ବୋଲି, ମୁଁ ମନା କରେଁ । ଆଉ ଅଛୁଞ୍ଚା ମନେ ପଡ଼ୁଛି । ହଉ, ମନସ୍କାମନା ପୂର୍ଣ୍ଣ ହେଲା ତ ଏଥର ?" ମୁହଁାମୁହିଁ ଗୁହିଁ କଥାଟା ଏପରି ଭାବେ କହିଲେ ଯେପରି ବୋହୂଙ୍କୁ ଲାଗିଲା ତାଙ୍କ ଶାଶୁ ତାଙ୍କ ପଛରେ ଆସି ଠିଆ ହୋଇଛନ୍ତି । ଚମକାପଡ଼ି ପଛକୁ ଚାହିଁଦେଇ ମୁଣ୍ଡ ଉପରେ ଲୁଗା ଓଟାରି ଆଣି ନିଜ ଦେହ ଉପରେ "ଥୂଃ ଥୂଃ ଥୂଃ ଥୂଃ" ହେଲେ, ବୁଢାଙ୍କ ସମ୍ବୋଧନରେ ସବୁ ଗୋଳିଆ ମିଶା ହୋଇଯାଇଥିଲା, କହିଲେ, ମତେ ବଳେଉଥିଲା, ମୁଁ ମନା କରୁଥିଲି, ମୁଁ ବଳେଉଛି ସମ୍ଭାଳ ଏଥର—ହଁ ଆରଓଳାଙ୍କ ଡିମ୍ବହେବ, ହେଃ ହେଃ ହେଃ—"

ବୋହୂ ଅଗ ନାଲି ପଡ଼ିଗଲେ, କାନମୁଣ୍ଡା ଜଳିଗଲା, ତା'ପରେ ଅଜଣା ଭୟରେ ଦେହସାରା ଥରେଇଲା, ଡରି ଡରି ଭାବିଲେ, ସେଠାକବେଳେ ଲାଗିଲା—ସେ ଆସୁନାହାନ୍ତି କାହିଁକି ? କାହିଁକି ମୁଁ ମାଇପି ଲୋକଟା ଉପରେ ସବୁଯାକ ତୋଡ଼ ?

ସ୍ୱାମୀଙ୍କ ପାଖକୁ ଚିଠି ଲେଖିଦେଇ ସେ ନିଶ୍ଚିନ୍ତ ନଥିଲେ, ଲୋକ ଦୌଡ଼େଇଥିଲେ । ଅପେ ବରଗିଡା ବି ଦରକାର ନଥିଲା, ଏଇ ବଦଖତ ଗାଁରେ ଘୁଙ୍ଗାଳି ହେଉଛି, ଖବର ଜାରି କରିବାକୁ ଲୋକେ ବାଦବୁଦିଆ ହେଲେଣି । ବେଶି ଦୂରରେ ନାହାନ୍ତି କମ୍ବୁପାଣି, ମୋଟେ ଆଠକୋଶ ବାଟ । ଆସନ୍ତୁ ଭଲା, ସେ ଡାକ୍ତର ସେ ସମ୍ଭାଳନ୍ତୁ ।

କମ୍ବୁପାଣିଙ୍କ ସ୍ତ୍ରୀ ଘରଆଡ଼େ ଦେଖିଲେ ବିଭୀଷିକା ।

ଆଜି ଦଣ୍ଡପାଣି ବହୁତ ଅଧିକ ଆଦର ପାଇଲା, ଅଡ଼ିବସିଲା, ସେ ଆଜି ପଢ଼ିବାକୁ ଯିବନାହିଁ । "ନଯା ମୋ ବାପ, ମୋ ଧନ, ଖାଇପିଇ ଦେଇ ଶୋଇପଡ଼୍ ।" ଖରା ଢଳିଲା ଖାଁ ଖାଁ । ଘର ଉପରେ ଗୋଟିକିଆ ଡାମରା କାଉଟା ଯେତେବେଳେ ବୋବେଇଲା, ଲାଗିଲା ସେ କିଛି ଅଶୁଭ କଥା କହୁଛି; ଡାହାଣ ଆଖିଟା ତେଇଁଲା ପରି ଲାଗିଲା । ସାନ ଠାକୁରଘର ବାଗରୁ ଭିତରକୁ ଦେଖିଲାବେଳେ ଟଙ୍ଗା ହୋଇଥିବା ଯୁଗଳ ଛବିଙ୍କ ମୁହଁକୁ ସେ ଅନେଇ ପାରିଲେ ନାହିଁ, ଖଟୁଲି ଉପରେ ଚନ୍ଦନ ଲେପି ହୋଇ ପୋଥିବୁଡ଼ାଏ ପୂଜା ପାଉଛି, ସବୁରି ସମଷ୍ଟି ଆଜି କେବଳ ତିରସ୍କାର, ଧମକ, ଭୟ । ଅମଙ୍ଗଳକୁ ଏଡ଼ିବାପାଇଁ ମନେ ମନେ ଦେବାଦେବୀଙ୍କି ସ୍ମରଣ କଲେ ।

ଚକ୍ରପାଣି ପଦାରେ ବସିଲେ । ଖରା ଭିତରେ ଗ୍ରାମତଳ ଲାଗୁଛି କେତେ ଶୀତଳ ! ଯାଃ, ଏଠି ସୃଷ୍ଟି ଅଛି । ଧୀରେ ଗ୍ରୁସିଗ୍ରୁଲାଲ ଚେତନା—ସବୁଠି ସମୁଦ୍ରର ଢୋଉ ଲାଗିଛି, ମାଟି, ଆକାଶ, ଗଛ, ଗ୍ରୁତ, ଜନ୍ତୁ, ମଣିଷ, ସବୁଠି ସବୁଠି ମାଣ୍ଡେଇ ଯିବାକୁ ମନହୁଏ, କେମିତି କାଟିହେବ ଏ ବନ୍ଧନ ? ନୂଆ ଅର୍ଥ ଦିଶୁଛି ବସ୍ତୁର ଧାରାରେ, କଳ୍ପନାଠୁଁ ବାସ୍ତବ ସୁଖହିଁ ବଡ଼, ଆଉ ଯେତେ ଶାସ୍ତ୍ର, ସଂସ୍କାର, ବଡ଼ ବଡ଼ କଥା—ହଟାଇଲା ଲୋକଙ୍କୁ ସାନ୍ତ୍ୱନା ଦେବାପାଇଁ ସେସବୁ ଚେଷ୍ଟା ହୋଇଛି । ଯାହା ସ୍ୱର୍ଗରେ ମିଠେଇ ଖାଇବା ନାହିଁ ତା'ର ବେଶି ଦରକାର ଜାଣିବାକୁ ଯେ ମିଠେଇ ଖାଇଲେ ପେଟରେ ତୃପ୍ତି ହୁଏ । ବାଃ କେଡ଼େ ସରଳ ଏ ବ୍ୟାଖ୍ୟା ! ଏହିପରି ଅଦ୍ଭୁତ କେତେ ବ୍ୟାଖ୍ୟା ମନେପଡ଼ୁଛି । ଏଇ ତ ନୂଆ ଜ୍ଞାନ, ଜୀବନର ନୂଆ ଅର୍ଥ, ଆଖି ଆଗରେ ନୂଆ ଦର୍ଶନ ପାଇଁ ନୂଆ ଯନ୍ତ୍ର—କିଏ ଏପରି ଦେଖିଥିଲା କେବେ ? କେହି ନୁହେଁ । ଏକା ସେ ନିଜେ, ତା ମଧ୍ୟ ଏତେ ଡେରିରେ । ଏଇ ନୂଆ ଦେଖା ଜ୍ଞାନ ବିତରଣ କରିବେ ଭଲା ଜଗତକୁ ! ଫେର୍ ବିତରଣ ? କିଏ ହେବ ବାଣ୍ଟି ବାଣ୍ଟି, ଅପେ ଖାଇବାକୁ ତ ସମୟ ନାହିଁ । ସମୟ ନାହିଁ, ସମୟ ନାହିଁ, ଆଲୁଅ ପଶିଯିବା ଆଗରୁ ମନଇଚ୍ଛା ଚରିଯିବା ଦରକାର ।

କୃଷ୍ଣଚୂଡ଼ା ଗଛ ସୁନ୍ଦର ଦିଶୁଛି । ଅନ୍ୟଦିନ ଦୂର ତାକୁ ଦେଖିଲେ କୃଷ୍ଣ ମନେପଡ଼ୁନାହାନ୍ତି । ମନକୁ ଆସୁଛି ଜଗତର ଅଶେଷ ସୌନ୍ଦର୍ଯ୍ୟ, ଯାହାକୁ ହାତରେ ପାଇ ସୁଦ୍ଧା ଭୋଗ କରି ହେଲା ନାହିଁ । ଏମିତି ଏ ଗଛ ଠିଆ ହୋଇ ରହିଥିବ, ଆରକରେ କଦମ୍ବ ଗଛଟା, ଏମିତି ଥିବ ବାଡ଼ରେ ସାବଜା ଅଲୁଡ଼ଙ୍କ, ବହଳ ପତ୍ର ତା' ପଛକୁ ତା' ପଛ ଯାଜେ ଥାଟପରି, ଆଗର ବାଙ୍କରେ ଉଦ୍ଧତ ଦର୍ପ, ଥିବ ଏହି ମାଳମାଳ ନଡ଼ିଆଗଛ ତଳେ ମଣିଷର ଚରଣୀତଳ ଗ୍ରୁଳକୁଡ଼ିଆଳୁଡ଼ିକ, ସେଠି ଥିବ ସୃଷ୍ଟିର ଗୋପନ ରହସ୍ୟ, ଆଲୁଅ, ପବନ, ସବୁ ଏମିତି ଥିବ ସବୁଥିବ, ସବୁଥିବ, ଭୋଗକରି ହେଲା ନାହିଁ । ରଙ୍ଗ ରଙ୍ଗର ଭଙ୍ଗା କାଚପରି ଅତୀତର ଯେତେ 'ହେଲା ନାହିଁ' ଯେତେ ଆଉ-ଲ୍ଗ୍ରୁ ଆବେଗମୟ ସ୍ମୃତି ସବୁ ଦେଖେକ ବସ୍ଥିହୋଇ ପଡ଼ିରହିଛି ଆଖି ଆଗରେ । ଭଗ୍ନାଂଶ ହେଲେ ବି ଟାଣ, ଚକ୍‌ଚକ୍, ଅଂଶ ଅଂଶିଆ ଆଉ ସ୍ପଷ୍ଟ ତାର ରୂପ, ଗୃହାଣିରେ ଅମେଣ୍ଟା ଶୋଷା ବଢ଼ିଯାଉଛି, ବଢ଼ିଯାଉଛି । ଗାଁରେ ଚହଲ ଶୁଭିଲା, ଆକାଶରେ ଉଡ଼ୁଛି ଗୋଟାଏ ଉଡ଼ାଜାହାଜ, ତଳେ ଉଡ଼ୁଛି, ବା ହେଉଛି ପରିଷ୍କାର ଆକାଶ ବ୍ୟାପୀ ଗୋଟାଏ ଭଁ ଭଁ ଶବ୍ଦ । ଗାଁର ସ୍ତ୍ରୀ ପୁରୁଷ ବଡ଼ ସାନ ମୁହଁକୁ ଉପରକୁ ଟେକ ବେକ ମୋଡ଼ି ଦେଇ କାଲ୍‌କାଲିଆ ହୋଇ ପଦାରେ ଗଦା ହେଉଛନ୍ତି । ଉଡ଼ାଜାହାଜ ଗ୍ରୁଲିଗଲା, ଲୋକେ ଛପି ଗଲେ । ଚକ୍ରପାଣି ଅନୁଭବ କଲେ ଗୋଟାଏ ଉଦାସ ନିଃସହାୟତା । ଦେହଟା ଶୀତେଇ ଉଠୁଛି । ଅନୁଭବ କରି ହେଉଛି, ଏହି ଲୋକ ଗହଳକୁ ଧରି ତାଙ୍କର ବ୍ୟକ୍ତିତ୍ୱ ପୂର୍ଣ୍ଣ ହୋଇ

ରହୁଛି, ତନେ ଏ ବ କଟିଯିବ । ଯେତେବେଳେ ଏ ମୁହଁ ସବୁ ଆଉ ଦଶିବ ନାହିଁ, ଚହ୍ଲା ଜଣା ଯାହା, ଯେଉଁମାନେ, ସବୁ ପଛେଇ ରହିବେ । ନଗୁଛିଆ ହଡ଼ାଜାହାଜ, କେତେ ନଗୁଛିଆ ଏଇ ଗାଁ ଗାଁ ଯେପରିକ ତା'ର ଅନ୍ତରର ଦୁଃଖ, ଏତେ ଉଷ୍ଣରୁ ତଳକୁ ନିଗିଡ଼ି ପଡ଼ୁଛି । ଲୋକେ କହନ୍ତି ପ୍ରାଣ ଉଡ଼ିଯାଏ, ସେ କ'ଣ ଏମିତ ?···ତରତର ହୋଇ ଖେଳି ବୁଲୁଛି କେତେ ଅହଶ୍ଳିଷ୍ଟ ଧାରଣାର ଛବି କୁକୁଡ଼ା ଡ଼ମ୍ବ, ସିଧା ଠିଆ ନଡ଼ିଆଗଛ, ବଷ୍ଣ ହୋଇ ଅସିଲାବେଳେ ତାଙ୍କ ସ୍ତ୍ରୀଙ୍କର ରୂପ—ଏଥର ପତଲୋନ୍ ପିନ୍ଧବାକୁ ହେବ । ପୁଅ ପିନ୍ଧେତ—ନେତେଇମାର ବୋହୂ—ଆଉ ଗୋଟାଏ ଅନୁଶୋଚନା ଯେ ସେ ଆସିଲା ନାହିଁ—ନିଶ୍ବାସ ଟେକ ମୁହୂର୍ତ୍ତେ ଟିକିଏ ପ୍ରତୀକ୍ଷା କଲାପରି, ତା'ପରେ ଧନୁର ଗୁଣ ଶୁଣିଲାପରି ଗୋଟାଏ ଟଣେକା କଲୁ ଝଁଣ ଝଁଣ ହେଲାପରି ଅନ୍ତରସାଗ—ତା'ପରେ ଆଉ ନାହିଁ । ଆଉ ନାହିଁ ।

ଡାକ୍ତରବାବୁ ଆସିଲାବେଳକୁ ସେ ସେହିପରି ତେରେଇ ହୋଇ ବସିଥାନ୍ତି । ଆଖି ଖୋଲା ଥାଏ । ଗହଳି ବେଢ଼ିଥାନ୍ତି ।

ସଙ୍କୀର୍ତ୍ତନ କର ଗାଁ ଲୋକେ ଉଠାଇ ନେଲାବେଳକୁ କୁହାକୋଇ ହେଉଥାନ୍ତି ଓହୋ, କେତେ ବଡ଼ ପୁଣ୍ୟାତ୍ମା ଥିଲେ ।



# ଆଦମୀ

ରେଲ୍ ଷ୍ଟେସନ୍ । ଭିଡ଼ । ଦକ୍ଷିଣଗାମୀ ଗାଡ଼ି । ସେକେଣ୍ଡ୍ କ୍ଲାସର ଦୁଆରମୁହଁ ବାଟେ ପୂର୍ଣ୍ଣଚନ୍ଦ୍ର ଆଗ ତାର ବୁଢ଼ୀମା'କୁ ଭୁଣ୍ଡେଇ କାଖେଇ ଭିତରକୁ ଠେଲିଦେଲା । ହାତ ଧରି ଉଠାଇ ଦେଲା ତାର ସ୍ତ୍ରୀକୁ ।

ତାପରେ ନିଜେ ସେ ଉଠିପଡ଼ିଲା ବେଳକୁ ମୁହାଁମୁହିଁ ହେଲା ପ୍ରତିବାଦର, —"ଏଠି ଜାଗା ନାହିଁ,ବୃଥା କାହିଁକି ଉଠିଲେ, ଏଁ ?"

ପ୍ରଶ୍ନକର୍ତ୍ତା କଥା ନ କହିଥିଲେ ବି ବାରି ହୋଇପଡ଼ିଥାନ୍ତେ,—"ଝିଙ୍ଗିଆ ହାଡ଼ୁଆ ଭଦ୍ରଲୋକ, ଗାଲୁଆ ମୁହଁରେ ମୋଟା ଚଷମା, ଧୋବ ପଞ୍ଜାବୀ, ହଲ ହଲ ଗୋଡ଼ତଳେ ଝମର ଝମର ଚପଲ । ଅଧପୋଡ଼ା ସିଗାରେଟ୍‌ର ଲାଞ୍ଜକୁ ମୁହଁରେ ରେଖି ଶୋଷି ପୂର୍ଣ୍ଣଚନ୍ଦ୍ରକ ଉପରେ ଉପରେପଡ଼ି ଆଧ୍ୟପତ୍ୟ ବିସ୍ତାର କରି ସେ କହିଲେ, "ମୁଁ ବାରମ୍ବାର ଆପଣଙ୍କୁ ସତର୍କ କରେଇଛି ଏ ବଗିରେ ଜାଗା ନାହିଁ, ତଥାପି ଆପଣ ଏଠି ଆସିଲେ, ଦେଖନ୍ତୁ ବର୍ତ୍ତମାନ୍, ଜାଗା ତ ନାହିଁ ।"

କୁଲିକୁ ପଇସା ଦେଇ ଦେଇ କେଉଁ ସ୍ଥାନରେ ନିଜର ଜିନିଷପତ୍ର ରଖା ହୋଇଛି ଥରେ ଆଖି ବୁଲେଇଆଣି ଅନ୍ତ ଆଖିରେ ପୂର୍ଣ୍ଣଚନ୍ଦ୍ର ସେ ଭଦ୍ରଲୋକଙ୍କୁ ଦେଖିନେଲା, ତାପରେ ସେ ମୋହିଲା ଗୋଟାଏ ହୋଲ୍‌ଡଲ୍ ଖାଲି ପଡ଼ିଥିବା ବର୍ଥ ଆଡ଼କୁ । କହିଲା "ବୋଉ, ଠିଆ ହୋଇ ରହିଲୁ କଣ ? ବିଛଣା ବିଛାଇ ଶୋଇପଡ଼ୁ ତୁ ଏଠି ।"

"ଆରେ-ଆରେ-ଆରେ-," ଭଦ୍ରଲୋକ ହାଙ୍କିଲେ, "ସେଠି ଲୋକ ଅଛନ୍ତି, ଯାଇଛନ୍ତି ପଦାକୁ ।"

ପୂର୍ଣ୍ଣଚନ୍ଦ୍ରକ ଦେହ ବଙ୍କେଇ ଗୁହିଁଲା, ଭଦ୍ରଲୋକ ଚୁପ୍ ହେଲେ । ପୁଣି କହିଲା "ବୋଉ, ଶୋଇ ପଡ଼ ଏଠି ।" ତରତର ହାତରେ ବିଛଣା ବିଛେଇ ପକେଇଲା । କିନ୍ତୁ ବୋଉ ବସିଲେ ଶୋଇବାକୁ ନାମଙ୍ଗ । ସ୍ତ୍ରୀ ବି ସେଠି ବସିଲା ।

"ତୁମେ ବି ଶୋଇପଡ଼" ପୂର୍ଣ୍ଣଚନ୍ଦ୍ରକ କହିଲା, କିନ୍ତୁ ଏକା ସ୍ଥାନରେ ବୋଉ ଓ ସ୍ତ୍ରୀ ସ୍ଥାନରେ ଉଭୟଙ୍କ ପାଇଁ ଜାଗା କରିବା ଅସମ୍ଭବ । ଦେଖିଲା, ଝରକାପାଖ ସୀଟ୍‌ରେ ଜାଗା ଅଛି ପ୍ରଚୁର । ଜଣେ ବୁଢ଼ୀ, ଅଳଙ୍କାର ନାଇ ଜଣେ ବୋହୂ, ଦୁହେଁ ବସିଛନ୍ତି, ତେଣିକି ଖାଲି ପଡ଼ିଛି । ଆପତ୍ତିକାରୀ ଭଦ୍ରଲୋକ ପହୁଞ୍ଚିଗଲେଣି

ତବା ସେ ମୁଣ୍ଡକୁ, ସେଠି ପାଇଖାନା କବାଟ ପାଖ ସାନ ସୀଟ୍‌ରେ ସେ ଓ ଜଣେ ଯୁବତୀ, କଥୋପକଥନରେ ଲାଗିଲେଣି ।

"ଶୋଇପଡ଼ ଏଇ ଝରକା ପାଖେ, ପବନ ବାଜିବ ।" ସ୍ତ୍ରୀ ଶୋଇଲେ ମୁଣ୍ଡପାଖେ ଅଚକ୍ଷା ବୋହୂଟି ।

ଗାଡ଼ି ଛାଡ଼ିଦେଲା ।

ଏଥର ଆଉ ବୁଢ଼ୀଙ୍କ ଆପତ୍ତି, "ଏମିତି ସବୁ ଲୋକେ ଆସି ଲମ୍ବ ଲମ୍ବ ହୋଇ ଶୋଇବେ, ତେବେ ଆମେ ଆଉ ବସିବୁ କାହିଁକି ?"

"ଆପଣ ବି କେଉଁଠି ଶୋଇପାରନ୍ତି," ପୁଣ୍ଡରୀକ କହିଲା ।

"ଏଇ ସୀଟ୍ ତ ଖାଲି ଥିଲା, ମୁଁ ଏଇଠି ଶୋଇଥାନ୍ତି ।"

"ଶୋଇ ତ ନାହାନ୍ତି, ଶୋଇଲେ କଣ ଜାଗା ନାହିଁ ?"

"ବାଃ ରେ" ବୁଢ଼ୀ କହିଲେ, "ମୁଁ ପଇସା ଦେଇ ଟିକେଟ୍ କାଟିଛି ନା ମାହାଲିଆ ? ନେଇଯାଅ ତମ ବୋହୂକୁ ଏଠୁ । ମୋର ଦରକାର ହେଲେ ମୁଁ ଶୋଇବି ।"

"କାହିଁକି ବୃଥା ବକ୍ ବକ୍ କରୁଛନ୍ତି ?" ପୁଣ୍ଡରୀକ ବିରକ୍ତ ହୋଇ କହିଲା । ବୁଢ଼ୀ ଚୁପ ହେଲେ, କାରଣ ଦେଖିଲେ ତାଙ୍କ ପକ୍ଷ ନେବାକୁ କେହି ନାହିଁ । ସୁଟ୍‌କେସରେ ବସି କରପଟେ ହାତେ ଜାଗା ଫାଙ୍କା ରଖି ତଥାପି ସେ ବକ୍ରଦୃଷ୍ଟି ଢାଳି ଲାଗିଲେ ପୁଣ୍ଡରୀକ ଉପରକୁ, ତାର ଶୋଇଲା ସ୍ତ୍ରୀ ଉପରକୁ, ତାର ବୋଉ ଉପରକୁ ।

ସାମ୍ନାରେ ଏକ ଅସଙ୍ଗ ଦୃଶ୍ୟ, ମନ ଭୁଲେଇବାକୁ ପୁଣ୍ଡରୀକ ଏମାନଙ୍କ ଉପରେ ନଜର ଦେଲା । ତବାରେ ଅନ୍ୟ ସମସ୍ତେ ଶୋଇଛନ୍ତି, ଉପର ବର୍ଥରେ, ତଳ ବର୍ଥରେ । ସେହି ଆପତ୍ତିକାରୀ ଭଦ୍ରଲୋକ ବୟସ ଚାଳିଶ ପଚାଶ ହେବ । ପୁଣ୍ଡରୀକ ଦେଖିଥିଲା । ସେ ଏ ବୁଢ଼ୀ ଓ ଏ ବୋହୂ ସହିତ କଥାଭାଷା କରି ଯାଉଛି । ଭାବି ଲାଗିଲା, କପରି ଏମାନଙ୍କ ସମ୍ପର୍କ ?

ବୁଢ଼ୀ ଓ ବୋହୂ । ବୋହୂର ବୟସ ତିରିଶ ଉପରେ, ହୁଏତ ସେମାନେ ଶାଶୁ ବୋହୂ ହୋଇଥିବେ । ଚାଳିଶ ବର୍ଷର ଚଷମା ଦିଆ ଲୋକଟି ଓ ତା ଉପରେ ଅଧାଆଉଜା ହୋଇ ବସିଥିବା ଯୁବତୀଟି,—କଣ ସେମାନେ ପରସ୍ପରର ? କଣ ସେମାନେ ଏ ଶାଶୁ ବୋହୂଙ୍କର ? ଆପଣା ଭିତରେ ହସାହସି ପ୍ରଚୁର, ଗାଡ଼ି ନାଚ ନାଚ ଚାଲିଛି, ସେହି ନାଚ ସହିତ ତାଳ ମିଳେଇ ନାଚୁଛନ୍ତି ସେ ଦୁହେଁ ବି । ଯୁବତୀଟି ପ୍ରାୟ ବସି ପଡ଼ିଲାଣି ଯୁବକ ଉପରେ, ବେଶ୍ ମୋଟା ସୋଟା, କାଟୁନ ଥିବ ?

ଦୁର୍ବଳ ପୁରୁଷ ଅଥଚ ସେ ଯୁବତୀର କାମ୍ୟ ।

ହୁଏତ ତାଠି ଯକ୍ଷ୍ମା ରୋଗ ଅଛି । ତେଣୁ ତାର କାମନା ଉଗ୍ର । ନିର୍ବିକାରରେ ଲୁଟି ନେଉଛନ୍ତି ସେମାନେ ସାନ୍ନିଧ୍ୟର ଆନନ୍ଦ । ମୁହୂର୍ତ୍ତିକୁ ଉଜ୍ଜ୍ୱଳ କରୁଛନ୍ତି ସବୁ ଯେ ଯାହା ।

ଫେର୍ ହସ, ଯୁବତୀର ସୁସ୍ଥ ହସ ଭିତରେ ଶ୍ ଶ୍ ହୋଇ ଶୁଭୁଛି ତାର । ସେହି ତାର ଆନନ୍ଦ ଭୁଗିବାର ହାକୁଟି ।

କିଏସେ ଏମାନେ ? ଏମାନଙ୍କର ଜୀବନର ଦର୍ଶନ ଉପସ୍ଥିତ ମୁହୂର୍ତ୍ତିଟି ଟପି ଆଗକୁ ଯାଏ ନାହିଁ । ପରର ସୁଖ ପ୍ରତି ଅସହିଷ୍ଣୁ, ଈର୍ଷା ପରାୟଣ, କଳହତତ୍ପର, କାହିଁକି ?

ଏହା ପଛରେ ଉତ୍କଟ ଜୀବନ ସଂଗ୍ରାମର ଇତିହାସ, ଅଭାବର ତାଡ଼ନା, ପରସ୍ପରର ସଙ୍କୀର୍ଣ୍ଣତା । ଆଘାତ ପାଇ ଧାଉଡ଼ା ହେଲେ ମଣିଷ ଏହିପରି ହୁଏତ, ହୁଏ ରୋଗରୁ ରୋଗ ଉପୁଜେ । ବ୍ୟକ୍ତିତ୍ୱରୁ ଖସିପଡ଼େ ସମ୍ଭ୍ରମ ଓ ଶାନ୍ତ ।

ଆହା ।

ହୁଏତ ଏମାନଙ୍କର ଆପଣାର ବୋଲି ଗାଁ ନଥିବ, ଘର ନଥିବ । ଖାଲି ଉଡ଼ନ୍ତା ପରିବାର ।

ଯୁବତୀଟିର ବେଶ ଯାହା ହୋଇଛି, ତାକୁ ଭଦ୍ର କୁହାଯିବ ନାହିଁ ଏବଂ ଜାଣି ଜାଣି ସେ ନିଜକୁ ଅଦ୍ଭୁତ ଅସମ୍ଭାଳ କରୁଛି । ହୁଏତ ତାର ଅନ୍ତରରେ ଅତୃପ୍ତ କାମନାର ପ୍ରବାହ ।

ମନେ ପଡୁଛି ବଙ୍ଗୀୟ ଉପନ୍ୟାସର ରେଲଚଢ଼ା ନାୟକ ନାୟିକା ।

ଆହା !

ବୁଢ଼ୀଟି ଝରକା ଆଡ଼କୁ ମୁହଁ ବୁଲେଇ ବସିଛି । ବୋହୂ ମୁହଁ ଲଦ ବସିଛି, ଅତର୍କିତ ଭାବରେ ବେଳେ ବେଳେ ଚାହିଁ ଦେଉଛି ପୁରୁଷଙ୍କ ଆଡ଼କୁ । ପୁରୁଷଙ୍କ ଲଜେଇ ଯାଉଛି । ଚନ୍ଦ୍ରା ବଲେଇ ଦେଉଛି ଏମାନଙ୍କ ପରମ୍ପରା ଆଡ଼କୁ । ବୋହୂର ଆଖି ଏଡ଼ବାକୁ ଚାହୁଁଛି ।

କିଛି ସମୟ ପରେ ସେ ପାଖରୁ ଉଠି ଆସିଲା ସେହି ଯୁବକଟି । ସତେ ଅବା କ୍ଳାନ୍ତ, ତାର ମୁହଁରେ ଝାଳ । ସତେ ଯେପରି କ୍ଳାନ୍ତରେ ଗୌରବ ଅନୁଭବ କରୁଛି, ସେହିପରି ପକେଟ୍‌ରୁ ରୁମାଲ କାଢ଼ି ଖୁବ୍ ଜୋର୍‌ରେ ଆପଣା ମୁହଁ ପାଖେ ହଲେଇ ଲଗିଲା ଠିକ୍ ବୋହୂ ସାମନାରେ ।

ବୋହୂ ହସୁଛି ।

ଦୂରରେ ବସିଛି ଉଦାସ ଭାବେ ହାଇ ମାରି ମାରି ଦେହ ଛାଡ଼େଇ ଦେଇ ଯୁବତୀଟି ଶୋଇ ରହିଛି । ଚାହିଁଲେହିଁ ଆଗ ଲାଗେ,—ଯୁବତୀର ଦେହ । ପୁଣି

ଲଗେ,—ଜନ୍ତୁର ଦେହ । କଣ୍ଟାସ ପରି ଆଖି, ଅଦ୍ୟାପି ଜଳୁଛି । ସେହି ଆଡ଼କୁ ତାର ନିଘା, ଯେଉଁଠି ଯୁବକଟି ସିନ୍ଦୂରଲଗୀ ବୋହୂ ମୁହଁ ପାଖେ ନଇଁପଡ଼ିଛି । ଫୁସ୍ ଫୁସ୍ ହୋଇ ଚାଲିଛି ମନ୍ତ୍ରଣା । ସେମାନେ ପୁଣ୍ଡରୀକ ଆଡ଼କୁ ଅନାଇଁ ହସା-ହସି ହେଉଛନ୍ତି । ବେଶୀ ହସ ବୋହୂର ।

କାହିଁକି ? ସେତ ତାର ନିଶ୍ଚିତ ଗୃହିଣୀ ପାଖେ ଧରା ଦେଇନାହିଁ । ଶିକ୍ଷା ଦେବାକୁ ଲୋକ ନାହିଁ ତାର ହାବ ଭାବରେ ତ !

ଠିକ୍ ସେଇଥିପାଇଁ ବୋଧହୁଏ ନାରୀ ଆପାଫଳକୁ ବୁଝେ ଅପମାନ ବୋଲି । ଅପମାନର ପ୍ରତିଶୋଧ ନେବାକୁ ଭୁଲେ ନାହିଁ ।

ସ୍ତ୍ରୀ ନିଘୋଡ଼ ନିଦରେ ଶୋଇଲାଣି । ମୁଣ୍ଡ ପଟେ ଅଚିହ୍ନା ବୋହୂ, କଟକଟୀ ବୁଢ଼ୀ । ସରଳ ପ୍ରାଣରେ ସମ୍ପ୍ରତିଙ୍କୁ ସେ ଆପଣାର କରିନିଏ । ପୁଣ୍ଡରୀକ ଦୃଷ୍ଟି ନିଦ୍ରିତା ସ୍ତ୍ରୀର ଓଠ ଉପରେ ଭରା ଦେଲା । ଭାବିଲା, ଏ—ଆଉ ଏମାନେ ! ଶୁଭୁଛି ପାନ ଛେଚିବାର ଠକ୍ ଠକ୍ । ଚଟ୍ ବୁଲିଗଲା ଗୃହିଣୀ । ତା ବୋଉ ପାନ ଛେଚୁଛି ।

"ଆଣ ବୋଉ, ମୁଁ ଛେଚିଦେବି ?"

"ନାଇଁରେ ପୁଅ, ତୋ ହାତ ଦୋଳିହବ ।"

"ଆଣ ଦେ ।"

ଛଡ଼େଇ ନେଇ ପୁଣ୍ଡରୀକ ବୋଉ ଲାଗି ପାନ ଛେଚିଦେଲା । ଏଥର ସେପଟୁ ହସର ରୋଳ ଉଠିଲା ।

ପୁଣି ଫୁସ୍ ଫୁସ୍ ।

ପୁଣ୍ଡରୀକ ଆଡ଼କୁ ଚାହିଁ ଯୁବକଟି ଧୀରେ ଧୀରେ କହିଲା, "ସେ ମୂଲେଇଛି । ପାଉ ଏଥର ।"

ଉଠିଆସି ତାର ସାମ୍ନାରେ ତା ବୋଉ ପାଖ ସ୍ଥାନରେ ବସିପଡ଼ିଲା ବୋହୂଟି । ପଛକୁ ଆଉଜି ପଡ଼ିଲା । ପଛ ଆଡ଼କୁ ଫଡ଼କ ଆସିଲା ତାର ଶାଢ଼ୀର ଧଡ଼ି ।

ପୁଣି ଏ କଣ ବିକାର ? ପୁଣ୍ଡରୀକ ଆଶ୍ଚର୍ଯ୍ୟ ହେଲା ।

ଗାଡ଼ିର ତଳାରେ ଶୋଇ ପଡ଼ିଥିବା ସମାଜ, ଗତ ଗୋଟାଏ । ଭଦ୍ର-ଲୋକଟି ଠିଆ ହୋଇ କଣ ଭାବୁଛି ।

ଏଥରକ ବୋହୂ ଆଡ଼କୁ ଅନେଇଲା, ଉଭୟେଁ ହସାହସି ହେଲେ ।

ତାପରେ ସେ ଭଦ୍ରଲୋକ ଯାଇ ବସି ପଡ଼ିଲା ବୋହୂ ଉଠି ଆସିଥିବା ସ୍ଥାନରେ ପୁଣ୍ଡରୀକର ସ୍ତ୍ରୀର ମୁଣ୍ଡପାଖରେ । ଧୀରେ ଘୁଞ୍ଚିଗଲା ଆଙ୍ଗୁଠି, ଜଙ୍ଘ ଫଡ଼କେଇ ବସି ଜୋରରେ ଦ ଆଣ୍ଠୁ ବାଡ଼େଇ ଲାଗିଲା । ଚାହିଁ ରହିଲା ପୁଣ୍ଡରୀକର ସ୍ତ୍ରୀର ମୁହଁକୁ ।

ସେ ପାଖରୁ ବୋହୂ ଖଲ ଖଲ ହୋଇ ହସିଉଠିଲା । ହଠାତ୍ ଯେପରି ପୁଣ୍ଡରୀକର ପ୍ରଶାନ୍ତ ମନ କୂଅାରରେ ସମୁଦ୍ର ପରି ଉଚ୍ଛ୍ୱଳ ହୋଇ ଉଠିଲା, ସ୍ୱଳ୍ପ ସ୍ୱଳ୍ପ ମନସ୍ତତ୍ତ୍ୱ ପଢ଼ିବାର ଜନିତ ଆନନ୍ଦ ଗଲା ଛୁଟି । ତାର ସ୍ୱଳଶ ଇଞ୍ଚ ଗ୍ରାଡ ବିସ୍ତାର କରି କାନ୍ଧର ମାଂସପେଶୀ ଟାଣିକେଇ ଦେଇ ଭଦ୍ରଲୋକ ପାଖକୁ ଦ କ୍ଷେପାରେ ଚହଟି ଯାଇ ସେ ତାର କାନ୍ଧ ଉପରେ ହାତ ଥୋଇଲା, ପାଟିବାଟେ ବାହାରିଗଲା ଗୋଟାଏ ଅଷ୍ଟୁଟ ହୁଙ୍କାର । ଷଣ୍ଢ ଆସିରେ ଚପିଲା ପରି ଏକାମୁଠାରେ ଭଦ୍ରଲୋକର କାନ୍ଧର ଏପାଖ ସେ ପାଖ ଚପି ଧରି ସେ ତାକୁ ଉଠେଇ ଠିଆକଲା ।

"ଆରେ, ମହାଶୟ ! ଏ କଣ କ...ଛନ୍ତି ! ଏ କଣ କରୁଛନ୍ତି !"

ହାତକୁ ଲାଗୁଛି ଗୋଟାଏ କଣ୍ଟିଆ ମାଛ, ହାଡ଼ୁଆ, ଚପି ଧରିଲେ ସେ ଠକ୍ ଠକ୍ ଥରୁଛି, କଁ କଁ କରୁଛି ।

"ଆରେ, ମହାଶୟ, ମହାଶୟ, ଦେହରେ ହାତ ଥୋଉଛନ୍ତି ! କି ରକମ ଭଦ୍ରଲୋକ ଆପଣ—"

କଟମଟ କରି ପୁଣ୍ଡରୀକ ତା ମୁହଁକୁ ଗ୍ୱହିଁଲା । ଆପଣାର ଡାହାଣ ପାଖୁ ଠେଲି ଆସୁଥିବା ଲୋପଦକୁ ତଳକୁ ମାଡ଼ି ଦେଇ ପୁଣ୍ଡରୀକ କହିଲା, "ଶୁଣ ବନ୍ଧୁ, ତମର ସ୍ଥାନ ହେଉଛି ସେଠି—" ପାଇଖାନା ଘର କବାଟ ପାଖେ ଛଳପଡ଼ି ଆଉଜି-ଥିବା ଯୁବତୀ ଆଡ଼କୁ ହାତ ଦେଖାଇଲା, "ପରର ସ୍ତ୍ରୀର ମୁଣ୍ଡପାଖେ ବସିବାକୁ ତୁମେ ଆଗେଇ ଆସୁଛ, ଲଜ୍ଜା ହୁଏ ତ ତୁମର ନାହିଁ, ତା ବୋଲି କଣ ଭୟ ପାଶୋରିଛ ?"

"ଆରେ ମହାଶୟ !—"

"ଚୁପ୍ ରହ—"

"ଆହାହା—"ଭଦ୍ରଲୋକ ଭୟରେ ଗ୍ୱହିଁଲା ।

"ରାଗୁଛନ୍ତି କାହିଁକି ମହାଶୟ, ପଦେ କହିଥିଲେ ତ ହୋଇଥାନ୍ତା । ଆପଣଙ୍କ ସ୍ତ୍ରୀର ଅସୁବିଧା ହେଉଛି ! ଆଜ୍ଞା, ମୁଁ ତେଣେ ବସୁଛି ।"

"ପଦେ କହିଥିଲେ ହୋଇଥାନ୍ତା ! କିଏ କହନ୍ତା ? ନିଜର ମନ କିଛି କହିଲା ନାହିଁ ? ଭଦ୍ରତା କହିଲା ନାହିଁ ? ନା କହନ୍ତା ଲୁଗାମାଡ଼ ? ହେଃ ହେଃ ହେଃ—"

"ଆରେ ବାପରେ । ନା, ମୋର ଭୁଲ ହୋଇଯାଇଛି ମହାଶୟ, ମତେ କ୍ଷମା କରନ୍ତୁ ।"

ଭଦ୍ରଲୋକ ଗଲେ ସେହି ଯୁବତୀ ବସିଥିବା ସ୍ଥାନକୁ । କିନ୍ତୁ ଯୁବତୀ ଉଠିଆସିଲା । ବସିଲା ପୁଣ୍ଡରୀକର ଠିକ୍ ସାମ୍ନାରେ । ବୋହୂ ତାର ନିଜ ସ୍ଥାନକୁ ଘୁଞ୍ଚି ଗ୍ୱଲିଗଲା ।

ଏଥର ଦମ୍ପତ୍ତି ଚୂପ୍‌ଷ୍ଟପ୍ । ନୀରବରେ ଗୋଟାଏ ନାଟକୀୟ ଦୃଶ୍ୟ ଉପରେ ପର୍ଦ୍ଦା ପଡ଼ୁଛି । ପ୍ରାଣ ବିକଳରେ ପୁରୁଷ ତାର ଅଭିମାନ ଭୁଲି ବନବାସୀ ହୋଇଛି । ଅପମାନିତ ଦୁର୍ବଳ ପୁରୁଷକୁ ତ୍ୟାଗ କରି ନାରୀ ବିଜେତାର ପ୍ରଣୟପ୍ରାର୍ଥିନୀ ହୋଇଛି, ପ୍ରତିଦ୍ୱଂଦ୍ୱା ସାଧିବାରେ ହାରିଯାଇ ଆଉ ଏକ ନାରୀ ପୁଣି ଲେଉଟି ଯାଇଛି ତାର ସ୍ଥାନକୁ ।

ହୁଏତ ଏମାନଙ୍କ ମନରେ ଆଗ୍ନେୟଗିରି ମାତୁଛି । ଦାର୍ଶନିକ ହୋଇ ଅବସ୍ଥାର ହେରୁ ବୃଟ୍‌ ବୃଟ୍‌ ବାରମ୍ବାର ସ୍ୱର ଚହଟୁଛି ତାର ମନରେ ।

ବୋଉ ପାଟିରେ ପାନ ଯାକି ଦେଇ ଶୋଇ ପଡ଼ିଲେଣି, ସ୍ଥିର ନିଦ ଲାଗୁନାହିଁ । ଯାହା ହେଉ, ଆଉ ତାଙ୍କର ନିଦରେ ବ୍ୟାଘାତ ଘଟିବ ନାହିଁ ।

ଅଳ୍ପ କିଛି ସମୟ ଚୂପ୍‌ଷ୍ଟପ୍ । ବୋହୂ ଝରକାବାଟେ ପଦାକୁ ମୁହଁ କରି ବସିଲାଣି । ଭଦ୍ରଲୋକ ଗୋଟିଏ କଣ ମାସିକ ପତ୍ର ପଢ଼ିବା ବାହାନାରେ ଲମ୍ବା ବହି ଆଢ଼ୁଆଳରେ ମୁହଁ ଲୁଚେଇ ଛନ୍ତି ।

ଏଥର ଯୁବତୀ । ସାମ୍ନା ବାର୍ଥରେ ପଛ ଅଡ଼କୁ ଟଳପଡ଼ି ଗୋଡ଼ ଦୋଟି ଅଗକୁ ବଢ଼େଇ ଦେଇ ସେହ୍ଲ ଏକା ଠାଣିରେ ସେ ଶୋଇ ରହିଛି । ଫାର୍ଫିକ୍ ଗଢରେ ତାର ଚାହାଣୀ ଓହ୍ଲେଇ ଆସୁଛି ପୁଣ୍ୟଶ୍ଳୋକ ଆଡ଼କୁ । ବଳିଷ୍ଠ ପୁରୁଷ, ସୁନ୍ଦର ଯୁବା । ସେ ତାର ପୌରୁଷର ପରିଚୟ ଦେଇସାରିଛି । ସୁବେଶ । ହୁଏତ ସମାଜରେ ତାର ଆସନ ସୁପ୍ରତିଷ୍ଠିତ । ମାଧବୀ ଲତା ଲଟେଇବା ପାଇଁ ଉପଯୁକ୍ତ ଆମ୍ର ଶାଳଗଛ । ମୁହୂର୍ତ୍ତିର ଉପାସିକା ଫାର୍ଫିକ୍ ଦୃଷ୍ଟିରେ ବାରମ୍ବାର ଚାହିଁ ରହିଛି ତାକୁ ।

ହଠାତ୍ ଦେଖିଲେ ଅଳଅଳୀ ଝିଅଟିଏ କାହାର—ଗେହ୍ଲାରେ ବଢ଼ୁଛି ।

ଢଳଢଳ ପରି ତାର ଦେହ ପଡ଼ି ରହିଛି । ଅଳସ ଛନ୍ଦ । ତାର ପଦକ୍ଷେପରେ କେବଳ ନାରୀ ଦେହ ଉପରେ Accent ଓ Emphasisର ଚିହ୍ନ ।

ପୁଣ୍ୟଶ୍ଳୋକ ସତେ ଅବା ତପସ୍ୟାରେ ବସିଛି । ଗ୍ରନ୍ଥ ଉପରେ ବାହା ଲୁକଦେଇଛି । ଧୀରଗମ୍ଭୀର । ଚିନ୍ତାଶୀଳ ।

ହଠାତ୍ ସେ ଅନୁଭବ କଲା ଆପଣା ଗୋଡ଼ ଉପରେ ନରମ ସ୍ପର୍ଶ । ଶୁଁଉକନା ଲାଗିଲା । ଯୁବତୀର ଗୋଡ଼ ଲମ୍ବି ଆସୁଛି । ଆଖି ବୁଜି ଢଳି ପଡ଼ୁଛି ସେ । ସତେ ଅବା ଖସି ଖସି ଆସୁଛି ଗାଡ଼ିର ଦୋହଲରେ ।

ଅସ୍ୱସ୍ତି ଅନୁଭବ କରି ପୁଣ୍ୟଶ୍ଳୋକ ଠିଆହୋଇପଡ଼ିଲା । ଯୁବତୀର ଆଖି ଖୋଲିଗଲା । ନୀରବ ଚାହାଣୀରେ ଅଭିବାଦନ ଜଣାଇଁ ସେକରକୁ ଘୁଞ୍ଚିଗଲା, ପାଖେ ଜାଗା ଛାଡ଼ିଦେଲା ।

ଚାରିଆଡ଼୍ ଘୁଙ୍ଗୁଡ଼ି ଶୁଭୁଛି । କରପଟିଆ ହୋଇ ଚାହିଁ ରହିଛି ଯୁବତୀ । ତାର ପାଖରେ କେତେ ଖୋଲା ଜାଗା ।

ସୁଣ୍ଡଗାଡ଼ି ଠିଆ ହୋଇ ପଡ଼ି ରହିଲା । ସେ ପାଖୁ ଭଦ୍ରଲୋକ ଡାକ ପକେଇଲେ,—‘ମହାଶୟ, ସିଗାରେଟ୍ ନେଇନ୍ତୁ ।”

“ନା, ଧନ୍ୟବାଦ ।”

ମୁହୂର୍ତ୍ତି ଚାଲିଯାଇଛୁ । ଯୁବକଟି ତାର ନିଜ ସ୍ଥାନକୁ ଚାଲିଯାଇ ଲମ୍ବା ହୋଇ ମାଡ଼ିବାର ଅଭିନୟ କରି ଭଦ୍ରଲୋକଙ୍କୁ କହିଲା “ମତେ ନିଦ ମାଡ଼ିଲାଣି, ମୁଁ ଏଠି ଶୁଏଁ । ତୁମେ ସେଠିକି ଯାଅ ।” ଭଦ୍ରଲୋକ ଉଠି ଆସି କହିଲେ—“ମହାଶୟ, ସିବେ କେତେ ଦୂର ?” ତାଙ୍କ ମୁହଁରେ ଥିଲା ଦୁର୍ବଳ ଆଶ୍ଚର୍ଯ୍ୟର ହସ ।



# ଜୟ କୀଚକ

କାଲିପରି ଲାଗୁଛି । ସଡ଼କ ପକାଉଥିଲେ ଯେତେବେଳେ ଏ ଦେଶର ଲୋକ । ଝାଳ ନାଳ ହୋଇ ଲାଗିପଡ଼ିଥିଲେ ଯେ, ଖରାରେ ତାଙ୍କ ଦେହ ଦିଶୁଥିଲା ଚକଚକ । ଲୋକେ ଯେତେବେଳେ କୁହାକୋହି ହେଉଥିଲେ ଏଇ ବାଟ ଲମ୍ବି-ଯିବ ସରଗପୁରକୁ, କୀଚକ ସେତେବେଳେ ଝରକା ଉହାଡ଼ରେ ଥାଇ ମୁହଁ ଲୁଚାଇ ହସୁଥିଲା । ସୁରାପାନ କରି ପ୍ରଚଣ୍ଡ ଏକ ହାକୁଟି ମାରି ଧର୍ଷିତା ପରନାରୀର କଟୀ ବେଷ୍ଟନ କରି ଗୋଲ ଗୋଲ ନାଲି ନାଲି ବଡ଼ ବଡ଼ ଆଖି ତୋଳାକୁ ଶଗଡ଼ ଚକ ପରି ବୁଲାଇ ବୁଲାଇ କୀଚକ କହିଲା—"ମେନକା, ମୋଡ଼ି ଦେ ମୋ ଶରୀର ଅଗ ।"

ମେନକା ପୋଷାମାନି ଯାଇଥାଏ ! ପାପ ଛୁଇଁଲେ କୁଳ ନାରୀର ଅଧରରେ ମନୋଲୋଭା ସୂର୍ଯ୍ୟାସ୍ତ ପରି ଯେଉଁ ରକ୍ତିମାଭା ଝଲଝଲ କରେ, କୀଚକ ମୁହୂର୍ତ୍ତେ ସେହି ଦୃଶ୍ୟକୁ ମୁଗ୍‌ଧ ହୋଇ ଚାହିଁ ଦେଖିଲା । ହେଉ, ସେଠି ପାପର ତୀକ୍ଷ୍ଣ ଆନନ୍ଦ, ପ୍ରତାରଣାର ଉନ୍ମତ୍ତ ନିଶା, ତା'ର ସମଗ୍ର ଦେହଟା ଯେପରି କି ଏକ ବିଚିତ୍ର ଢେଉ ପରି ଅଜାଡ଼ି ହେବାକୁ ଆସୁଛି କୀଚକ ଉପରେ । ଆଜି ଏ ଅଛି, ଆଜି ଏ ସୁଲଭ । କୀଚକ ଭାବିଲା, ଆଉ ଦିନାକେତେ ଗଲେ ଏ ଘଷରା ହୋଇଯିବ । ତା'ପରେ ମେନକା ହେବ ତା'ର ଅନ୍ଧାରି ଦୁର୍ଗରେ ସାଇତା ଗ୍ରସ୍ତା-ମାନବୀମାନଙ୍କ ମଧ୍ୟରୁ ଗୋଟିଏ । ଭୁଲି ହୋଇଯିବ ।

ହସି ହସି ମୋହିଁ ଆସୁଛି ତା'ର ଚମ୍ପାକଢ଼ ପରି ଆଙ୍ଗୁଠି କୀଚକର ଶରୀର ଅଗକୁ । ତା'ର ବାଘ ମୁହଁ ପରି ପ୍ରକାଣ୍ଡ ଗୋଲ ମୁହଁର କରଡ଼ା ଗୋଞ୍ଜିଆ ଶରୀର ଆଗକୁ ଗେଲରେ ଗେଲରେ ଧରି ପକାଇ ମେନକା ମୋଡ଼ିବାକୁ ଆରମ୍ଭ କଲା । ଫୁଲ କଢ଼ ଫୁଟିଲା ପରି ତା'ର ମୁହଁଟି ହସରେ ଫାଟି ଫାଟି ପଡ଼ିଲା ।

କୀଚକ ଧ୍ୟାନ କଲା ସେ ମୁହୂର୍ତ୍ତକୁ । ନାରୀ ତା'ର ଅଚିହ୍ନା ନୁହେଁ । କିନ୍ତୁ ଏଇ ଘଡ଼ିକ ମେନକାଠିଁ ବିଶେଷତ୍ୱ ଅଛି, ପରାଗ ନିଃଶେଷ ହେବା ଆଗର ଫୁଲ, ତାତି ନିଭିଯିବା ଆଗର ନିଆଁ, ଆଲୁଅ ସରିଯିବା ଆଗର ସନ୍ଧ୍ୟା, ଏମିତି ଉତ୍ତାଟକର ହୁଏ ବୋଧହୁଏ । କୀଚକ ଭାବିଲା, ଏ ବୟସରେ ମଧ୍ୟ ତା'ର ଚିହ୍ନା ଅନୁଭୂତି ଭିତରେ ତାଲିକା ସେ ମନେ ମନେ ଅଣ୍ଡାଳି ଲାଗିଲା, ଯାହା ମନେପଡ଼ିଲା ତା । ସେଥିପାଇଁ ତା'ର କୁଣ୍ଠା ନାହିଁ, ସେ ବିଶ୍ୱାସ କରେ ବୀରଭୋଗ୍ୟା ବସୁନ୍ଧରା ଓ ସେ ବୀର ।

ମେନକାଠୁଁ ପ୍ରୀତି ପାଇ ଶରଧାରେ ତା'ର ଗାଲ ଆଉଁଷି କୀଚକ କହିଲା,—"ଦେଖୁଛ ସେ ଲୋକମୂଢ଼ାଙ୍କୁ ମେନକା, ସେମାନେ ଏକ ସଡ଼କ ପକାଉଛନ୍ତି । ଏ ସଡ଼କ ସେମାନେ କାହିଁକି ଗଢ଼ୁଛନ୍ତି ଜାଣିଚ ।"

ମେନକାର ପୁଷ୍ପ ଧୁଣା ଘଟାଇ ସ୍ଫୂର୍ତ୍ତି ମନେପଡ଼ିଲା । ସେ ଦେଖିଛି ଗାଁଯାକ କେତେ ଉତ୍କଣ୍ଠ ଆଗ୍ରହରେ ଲାଗିପଡ଼ିଛନ୍ତି । ଶିଶୁ, ବୃଦ୍ଧ, ସ୍ତ୍ରୀ, ପୁରୁଷ ସମସ୍ତେ ବାହାରି ପଡ଼ିଛନ୍ତି ହେଇ ସଡ଼କଟା ଲମ୍ବେଇବାରେ ସାହାଯ୍ୟ କରିବାକୁ । ସେ ଆଗ୍ରହ, ଆଉ ଏ ଆଗ୍ରହ ! କୀଚକର ପ୍ରଶ୍ନରେ ଯେପରି କି ତା'ର ଅଜ୍ଞାତ ଅଙ୍ଗକୁ ଗେଞ୍ଜିଲା ପରି ଏକ କେଞ୍ଚା ଲାଗିଥିଲା । ମୁହୂର୍ତ୍ତିକେ ବିବର୍ଣ୍ଣ ପଡ଼ିଯାଇ ମେନକା କହିଲା—

"ଏଇଟା ପରା ସ୍ୱର୍ଗକୁ ଯିବାକୁ ବାଟ ହେଉଛି !"

"ହାଃ ହାଃ ହାଃ ହାଃ..." ମେନକାକୁ ଯାପ୍‌ଟି ଧରି ଅଟ୍ଟହାସ୍ୟ କରି ଘରଯାକ ମଦ ଗନ୍ଧ, ବିଲାତି ଚୁରୁଟ୍‌ର ଗନ୍ଧ, ଫରାସୀ ଅତରର ବାସ୍ନା ସବୁ ମିଶାମିଶି ଗନ୍ଧ ପବନରେ ଢେଉ ଖେଳେଇ ଦେଇ କୀଚକ ଅଗ ହସିଲା ବହେ ।

ତା'ପରେ କହିଲା, "ସ୍ୱର୍ଗ ପୁରକୁ ସଡ଼କ ପଡ଼ୁଚି ସତ, ଠିକ ମେନକା ଟି ମୋର, କିନ୍ତୁ ତୁମେ ଦେଖିବ, ଏଇ ସଡ଼କରେ ମୁଁ ଘୋଡ଼ାଚଢ଼ି ସ୍କୁଟରରେ ଅଟେଇ ଏ ଲୋକଙ୍କୁ ନରକ ପୁରକୁ ନେଇ ଯିବ । ଏ ସଡ଼କ ଯିବ ମୋର ପ୍ରିୟ ନରକ ପୁରକୁ, ଯେଉଁଠି ଅନନ୍ତ ପାପ, ବ୍ୟଭିଚାର, ହତ୍ୟା, ଧର୍ଷଣର ଜାତୀ ଆନନ୍ଦ, ଅଉ ଚୋରଦାସଦ୍ଧର, ଶୋଷଣର, ପେଷଣର, ସେହି ମୋର ପ୍ରିୟ ନରକପୁରକୁ । ଯେଉଁଠି ଆଖିବୁଜି ହାତ ଛୁଟିଦେଲେ ହାତ ପଡ଼ିଯାଏ କୌଣସି ଏକ ସ୍ତ୍ରୀଲୋକ ଉପରେ । ଯେଉଁପାରି ସେହି ଝରଣାରେ ପାଣି ପିଇବାକୁ ଅଞ୍ଜୁଳି ବୁଡ଼ାଇ ଦେଲେ ଗୁଳିଆସେ ପାଣି ନୁହେଁ, ସୁବାସିତ ସୁରା । ଏ ଦେଶ ଧନ୍ୟ ହେବ । ସେହି ନରକପୁରକୁ ନେଇଯିବ ଏ ସଡ଼କ ।"

କୁଳ ସ୍ତ୍ରୀ ମେନକାର ଆଖିରେ ଲୁହ ଟଳ ଟଳ କଲା, ମୁଣ୍ଡ ଝାଇଁଅଡ଼େ ସତେ ଯେପରି ଝଙ୍କିମାରିଲା ତା'ର ସ୍ୱାମୀର ରୂପ, ତା'ର ଠିକ ପୁଅଟି, ଠିକ ଝିଅଟିର ରୂପ । ତା'ର ମାଂସପେଶୀ ସବୁ ଘୃଣାରେ ଆକୁଞ୍ଚିତ ହେବାକୁ ଲାଗିଲା । କୀଚକ ଅନୁଭବ କଲା ମାଂସ ନୁହେଁ, ସଲସଲ ସାପମାନଙ୍କ ସ୍ପର୍ଶ ।

ଆଉଁଷି ସାଉଁଳେଇ ପ୍ରବୋଧ ଦେଇ କୀଚକ କହିଲା, "ମୁଁ ନରକ ଗଲେ ବି ତୁମେ ମୋ ସଙ୍ଗେ ଯିବ ମେନକା, ତୁମେ ମୋର ଜୀବନ ପ୍ରାଣ, ତୁମକୁ କାହିଁ ମୁଁ ଛାଡ଼ି ରହିପାରିବ ! ତୁମେ ଜଗତର ଶ୍ରେଷ୍ଠା ସୁନ୍ଦରୀ । କୀଚକ ତୁମର ଉପାସକ ।"

ସ୍ତୋକବାକ୍ୟ ଶୁଣି ମେନକା ନାରୀ ପୁଣି ପ୍ରସନ୍ନା ହେଲା । ତାକୁ ସହଜ ହେବାକୁ ସାହାଯ୍ୟ କରି କୀଚକ କହିଲା, "ଭୁଲିଯାଅ ପଛକଥା ଭଦ୍ରେ ! ଯାଉଛୁ ଯା' ତା' ଯାଇଛୁ । ଆମେ ଯେଉଁ ମୃତ୍ୟୁ ଦେବତାଙ୍କୁ ପୂଜା କରୁ, ତାଙ୍କୁ ପୂଜା

କହୁଁ ସେହି ମନ୍ତ୍ରରେ । ଯାଉଛୁ ଯା ପାଉଛୁ । ତା ପ୍ରତି ଆମର ଦାୟିତ୍ୱ ନାହିଁ, କର୍ତ୍ତବ୍ୟ ନାହିଁ, ଶଙ୍କ ନାହିଁ କି ଶୋକ ନାହିଁ । ମୁଖ୍ୟ ଦେବତାଙ୍କ ପ୍ରଧାନ ଆଶୀର୍ବାଦ, ସେ ମାତ୍ର ଦଅନ୍ତୁ, ହସେଇ ଦଅନ୍ତୁ, ଭୁଲେଇ ଦଅନ୍ତୁ । ଥିଲା ମୁହୂର୍ତ୍ତକୁ ଉପଭୋଗ କର, କର୍ତ୍ତବ୍ୟଜ୍ଞାନ ହୁଅ, ଉଚ୍ଛୃଙ୍ଖଳ ହୁଅ, ଏଇ ମୁହୂର୍ତ୍ତରେ ଦେଖ, ତୁମେ ଅଛ ମୁଁ ଅଛୁ । କହ, ମୁଁ ସୁନ୍ଦର ନୁହେଁ ?"

ମେନକା ହସିଲା । ଏଇ ସେ କୀଚକ, ଆକାରରେ କେତେ ବଡ଼, ବଡ଼ ମୁହଁ, ବଡ଼ ନଣ, ବଡ଼ ପେଟ, ଦେହରେ ବଡ଼ପଣରେ ସେ ଓଜନ ହୋଇ ମାଡ଼ି ପଡ଼େ । ଅପରିମିତ ମାଂସ ଖାଦ୍ୟ, ମାଂସ ହଜମ କରିବାକୁ ଔଷଧ, ମଦ୍ୟ, ଫଳ, ଦୁଗ୍ଧ, ଦେହର ପୁଷ୍ଟି ପାଇଁ ଯେତେପ୍ରକାର ଖାଦ୍ୟ କିଣିହେବ କି ବଳ ଖଟେଇ ଯଉଠୁ ଛଡ଼େଇ ଆଣି ହେବ ସବୁ ସେ ଆଣି ପାର କରେ । ମେନକା ଦେଖିଲା ତା'ର ସେହି ଦେହଟାକୁ । ସ୍ତ୍ରୀ' ପାଖରେ ତା'ର ସ୍ୱାମୀର ଦେହ ଯେପରିକି ଘୋଡ଼ା ପାଖରେ ଛେଳି । କି ଦୁର୍ଦ୍ଦାନ୍ତ ! କି ହିଂସ୍ରକ ! ନିର୍ଦ୍ଦୟ ପରାକ୍ରମହିଁ ତ ପୁରୁଷର ଅଷ୍ଟର୍ଯ୍ୟ ମୋହିନୀ ଗୁଣ । ମେନକା ତା'ର ସରଳ ଦର୍ଶନଶାସ୍ତ୍ରରେ ଚଞ୍ଚଳ ତଉଲି ନେଲା କୀଚକକୁ । ସେ ଓଜନ, ପ୍ରକାଣ୍ଡ, ନିଷ୍ଠୁର ଦୁର୍ଦ୍ଧର୍ଷ । କେବଳ ବଳ ନୁହେଁ, ବଳକୁ ଠେଲିବାକୁ ତା'ଠି ପ୍ରବଳ ପଶୁ ବୁଦ୍ଧି ଅଛି, କୂଟକପଟ, କୌଶଳ, ଧୂର୍ତ୍ତପଣ, ଶଠତା, ପାଷଣ୍ଡ, ସବୁ ମିଶି ତା'ର ବ୍ୟକ୍ତିତ୍ୱ ।

ମେନକା ଭାବିଲା, ବାସ୍ତବିକ ! କି ପୁରୁଷ ସେ ।

କୀଚକ କୁତୂହଳରେ ମୁହଁକୁ ଚାହିଁ ତା'ର ମନର ଭାବନାକୁ ପଢ଼ୁ ଲାଗିଥିଲା । ହାତଦେଖା, ପରର ମୁହଁକୁ ଚାହିଁ ତା ମନର ଭାବନାକୁ ପଢ଼ିବା, ସ୍ତମ୍ଭନ, ମୋହନ, ବଶୀକରଣ, ଉଚ୍ଚାଟନ, ଏ ସବୁ ବିଦ୍ୟା ସେ ଖେଳାଉଥାଏ ତା'ର ଅବସର ବିନୋଦନ ପାଇଁ । ମେନକାର ଭାବରାଜିକୁ ସେ ବହି ପଢ଼ିଲା ପରି ପଢ଼ିଗଲା । କହିଲା, "ଦେଖିଲ ମେନକା ? କ'ଣ ଦେଖିଲ ?"

ମେନକା ଲାଜରେ ନଇଁପଡ଼ି କୀଚକର ଗ୍ରୀବାରେ ମୁହଁ ଲୁଚେଇଲା ।

କୀଚକ ତାକୁ ଟେକିଧରି କହିଲା, "କୀଚକ କାହାରିକି ଡରେ ନାହିଁ । ପଡ଼ିଗଲେ ଟମେ ନାହିଁ । କୀଚକର କୌଣସି ବନ୍ଧନ କି କୌଣସି ଗରଜ ନାହିଁ, ନା ସତ୍ୟର ନା ଅହିଂସାର ମାର୍କାମରା ବିଶେଷଣ ଶବ୍ଦରେ କୀଚକ ଚମକେ ନାହିଁ । ଯେତେବେଳଯାକେ ତା'ର ସ୍ୱେଚ୍ଛାର ଖିଆଲରେ କ୍ଷମତା ଚଳେଇବାର ବାଧା ନ ପଡ଼ୁଛି, ସେପର୍ଯ୍ୟନ୍ତ କିଏ ତାକୁ କ'ଣ କହିଲା ସେ ଖାତିର କରେ ନାହିଁ । ସତ କହିବୁ ବୋଲି ସେ ପଣ କରିନାହିଁ । ଅଳୁଆ ଚାଉଳ କଞ୍ଚାକଦଳୀ ତା'ର ଖାଦ୍ୟ ନୁହେଁ । ଏ ଯେଉଁ ଦେହକୁ ଦେଖି ତୁମେ ଲୋଭେଇ ଗଲ, ଦୁନିଆଁ ଯାକ ଲୋକ ବି ସେଇ ଦେହକୁ ଲୋଭେଇବେ । ତେଣୁ ତୁମେ ଦେଖିବ, ଏ ସଢ଼କ ଶେଷରେ ଯାଇ ଲାଗିବ କୀଚକର ପ୍ରିୟ ନରକରେ, ଲୋକ ଯେଉଁ ସ୍ୱର୍ଗକୁ ସ୍ତ୍ରୀ'କୁ ନେବେ ଭାବୁଛନ୍ତି ସେ ମିଛ, ସେ ଅସମ୍ଭବ !"

ପିଲାପଣ କ୍ରୀଡ଼ାମାଗ ମେନକା କହିଲା, "ଏଇଠି ତୁମେ ହାରିବ, ତୁମେ ମେତେ ସାର ହୁଅ । ତୁମ ସଙ୍ଗେ ବାଜି ପକାଇବାକୁ ମନ ହଉଚି । ତୁମେ ତ ଏ ସଡ଼କ ଗଢ଼ୁ ନାହଁ, ଗଢ଼ାଳୀମାନେ ଗଢ଼ୁଛନ୍ତି । ସେମାନେ ତାକୁ ପକାଉଛନ୍ତି ସ୍ୱର୍ଗ ଆଡ଼କୁ । ଆଉ ତୁମେ ତାକୁ ମୋଡ଼ି ନେବ ନରକପୁରକୁ ?"

"ମୁଁ ମୋଡ଼ିବ ନାହିଁ, ସେମାନେ ମୋଡ଼ିବେ ।"

"ଅସମ୍ଭବ", ମେନକା କହିଲା ।

କୀଚକ ତାଚ୍ଛଲ୍ୟରେ ହସିଥିଲା, କହିଲା, "ସେମାନେ ମୋଡ଼ିଦେବେ ସଡ଼କକୁ ଶେଷମୁଣ୍ଡରେ ନରକପୁରକୁ, ମୁଁ କହିବ, ସେମାନେ ମୋ କଥା ଶୁଣିବେ ।"

"ତୁମକଥା ସେମାନେ ଶୁଣିବେ ! ସେମାନେ ତ ତୁମର ଶତ୍ରୁ ।" କହିଦେଇ ମେନକା ଜିଭକାମୁଡ଼ି ପକାଇଲା । କୀଚକ ହସିଲା, ଏଥର ତା'ର ଆଉପ୍ରକାରେ ହସ, ବିକଟାଳ, ଭୟାନକ । ତା'ର ସ୍ୱଭାବସୁଲଭ ନିର୍ଦ୍ଦୟ ପଣରେ ସେ କହିଲା,

"କୀଚକ ଓଟାଳ ଆଣେ, ଟେକିବାକୁ କେହି ନାହିଁ । ଆପଣା କଥା ଭାବ । ତୁମର ସେ ସ୍ୱାମୀ; ସେ ଛୁଆ ନୁହେଁ । ବନ୍ଧୁବାନ୍ଧବ । କେଡ଼େ ବିକଳ ହୋଇ କାନ୍ଦୁଥିଲେ ସେମାନେ । କପରି ପାଗଳ ପରି ହେଉଥିଲ ତୁମେ ! ସତେ ଯେପରି ସେଇ ଭଙ୍ଗା ଘୁଲକୁଡ଼ିଆରେ କିଛି ଗୋଟାଏ ଏମିତି ଅଛି ଯାହା ଆଉ କେଉଁଠି ନାହିଁ । ...କଅ ପିଅ ଛୋକେ, ସେମିତି ହୁଅନା । ବାଲମୁକୁଳା କରି ପେଡଣୀ ପରି ଗୋଡ଼ହାତ ଗୁଡ଼ିକ ସେହି କାଳିଆ ମଳିଆ ମଢ଼ିଆ ଶୁକୁଟା ସ୍ୱାମୀ ଆଡ଼କୁ କେଡ଼େ ବେଗରେ ଉତ୍କଣ୍ଠ ହେଉଥିଲ ତୁମେ, ଆଉ ଚିତ୍କାର କରି ଗଗନ ବିଦାରୁଥିଲ ସତେ ଯେପରି ସେଇଠି ଟୋ'କନା ତମ ପ୍ରାଣଟା ଗୁଡ଼ିପିବ । କିନ୍ତୁ ଅଇଛା ଦେଖ, ତୁମର ମତ ବଦଳିଛି । ତୁମେ ଅଜ କୀଚକର ଦାସୀ । ତୁମର ସେ ସନ୍ତାନ ନୁହେଁ ଯାହାଙ୍କୁ ତୁମେ ଆପଣାକୁ ବିଶ୍ରଗକରି ଜନ୍ମ ଦେଇଥିଲ, କେଡ଼େ ଚଞ୍ଚଳ ତାଙ୍କୁ ତୁମେ ଭୁଲିପାରିଲ । ତା'ର ନା ମୃତ୍ୟୁ ଦେବତାଙ୍କ କମିଆ । ସେଇଥିପାଇଁ ସେ ଏତେବଡ଼ । ସେମିତି ଏ ଲୋକେ ବି ଭୁଲିବେ । ଠିକ୍ ଓଲଟି ପଡ଼ିବେ । ସବୁକାଳେ ପଶୁବଳର, କୌଶଳର, ମିଥ୍ୟାର, କପଟବୁଦ୍ଧି ଜୟ ହେବ, ଜୟ ହେବ ଅଜ୍ଞାନର ଆଉ ଅନ୍ଧାରର । ଏହି ଦେଖ କେଡ଼େ ଉଜ୍ଜ୍ୱଳ ଖରା ଥିଲା ଦେଖୁ ଦେଖୁ ମେଘ ଢାଙ୍କି ଦେଲା । ନିତ ଦେଖୁଚ କେଡ଼େ ପ୍ରଚଣ୍ଡ ସୂର୍ଯ୍ୟକୁ ଅନ୍ଧାର ଗିଳି-ଦେଉଛି । ସକାଳକୁ ଜନ୍ମ କରୁଛି, ସଞ୍ଜକୁ ଗିଳି ପକାଉଛି, ତୁମେ ଭୁଲିଛ, ଦୁନିଆ ଭୁଲିବ ।

କୀଚକ ଅପରାଜେୟ । ତୁମର ସେ ମଢ଼ିଆ ସ୍ୱାମୀ, ହୁଏତ ତା ଅଣ୍ଟାପିଠିରୁ ଦରଜ କମିବଣି, ହୋଇଥାଉ ପଛେ ଧନଦ୍ଧନ, ସେ ଭାବିବଣି ଆଉ ଗୋଟିକୁ ଘରକୁ ଆଣି ସଂସାର କାର୍ଯ୍ୟ ଚଳେଇବାକୁ । ଏଁ ! ଚମକି ଉଠୁଚ ଯେ, କଣ ମାରିବ କି ? ହାଃ, ହାଃ, ହୋଃ, ହୋଃ !"

ମେନକା କୀଚକର ବାହୁବନ୍ଧନରୁ ଫିଟିଯାଇଛି । ଏଥର ସବୁ ମନେ-ପଡ଼ୁଛି ଗୋଟି ଗୋଟି ହୋଇ । ଦେହ ଲାଗୁଛି ବଣିପିଁ ଗଲାପରି । ଏ କ'ଣ ହେଲା ! ରାଗ, ଅପମାନ, ପ୍ରତିହିଂସା, ସବୁ ଏକାସଙ୍ଗେ କୁହୁଳି ଉଠୁଛି ଭିତରେ । ଯାଉଛି ଝରି ଆଖି । ଚକ୍ଷୁରୁ ଝରୁଛି ଆଉ ବୁଲୁଛି ଏକାକୁ ସେ କରଣ ।

କୀଚକ ହସିଲା, କହିଲା, "ମଂସାସୁର ମରିଥିଲା, କାରଣ ସେ ମୋହରେ ପଡ଼ିଗଲା, ଠିକ୍ ସମୟରେ ଷ୍ଟାଣ ହୋଇପାରିଲା ନାହିଁ, ଯୁଦ୍ଧକ୍ଷେତ୍ରରେ ସେ ହେଲା କବି, ସୌନ୍ଦର୍ଯ୍ୟ ଦେଖିବାରେ ରହିଗଲା । କୀଚକର ସେ ଦୁର୍ବଳତା ନାହିଁ, ତେଣୁ ତୁମେ ତାକୁ ଭଣ୍ଡି ପାରିବ ନାହିଁ । କଣ ଅଛି ଏ ଦେହରେ ସୌନ୍ଦର୍ଯ୍ୟ ? କେତେ ମୁଁ ଖାଇଛି, ଖାଇ ଖାଇ ଶ୍ଳେଷ୍ମ ମରନାହିଁ ବଢ଼ିଛି । ତୁମଠିଁ ଏ ସୌନ୍ଦର୍ଯ୍ୟ ବି ଆରୋପ କରୁଛି ମୁଁ, ସେହି ଗୋଟିଏ ପ୍ରକାର ଆଖିରେ ଦେଖିଲେ ସେ ସୌନ୍ଦର୍ଯ୍ୟ, ଆଉ ପ୍ରକାରେ ଦେଖିଲେ ସେ ଦେହ କୁତ୍ସିତ । ତୁମେ କଣ ଭାବୁଛ ବାଘ ଯେବେ ତମକୁ ଦେଖିବ ସେ ତୁମ ସୌନ୍ଦର୍ଯ୍ୟକୁ ଚାହିଁରହିବ ନା ଝାମ୍ପ ମାରି ଏ ଦେହକୁ ଖଣ୍ଡ ଖଣ୍ଡ କରିବ ? ତୁମେ ସୁନ୍ଦର କି ଅସୁନ୍ଦର ତା ବି ନିର୍ଣ୍ଣୟ କରୁଛି ମୋ ମନ । ହେଉ ଦେଖ, କୀଚକ କେମିତି ଏ ସମସ୍ୟାକୁ ସମାଧାନ କରୁଛି—"

ଏତିକିକହି କୀଚକ ଠିଆହୋଇପଡ଼ିଲା, ସତେ ଯେପରି ଘର ଭର୍ତ୍ତି ହେଲା । ମେନକା ଆଡ଼କୁ ପାହୁଣ୍ଡେ ଆଗେଇ ଯାଇ ପ୍ରକାଣ୍ଡ ହାତ ପାପୁଲିକୁ ଅଳ୍ପ ଉପରକୁ ଟେକି ଠାଇ କରି ଲଗାଇ ଦେଲା ତା ବାଁ ଗାଲରେ ଏକ ଚଟକଣା, ସତେ ଯେପରିକି ତାଲଫୋଟକା ଫୁଟିଗଲା ପରି ଶବ୍ଦ ହେଲା । ମେନକା କମ୍ପିତ ହୋଇ ପଡ଼ିଲା, ମୁହଁ ମାଡ଼ି ହାମୁଡ଼େଇ ପଡ଼ି ଗିଁ ଗିଁ ହୋଇ କାନ୍ଦିଲା । ପାଟିରୁ ଆସ୍ତେ ନିଗିଡ଼ି ନିଗିଡ଼ି ତଳେ ଜମାହେଲା ଲାଲ ଓ ରକ୍ତ ।

କୀଚକ ଗୋଡ଼ ଟେକିଲା, କହିଲା, "ଏଥର ତୁମର ବେଁଶିରା ହାଡ଼ଟା ଏଇ ପାଦର ଚାପ ପାଇ କେତେ ଶବ୍ଦ କରି ଫୁଟିବ ତୁମେ ତା ଜାଣି ପାରିବନାହିଁ । ମଟ୍ ମଟ୍ ହାଡ଼ଗୁଡ଼ାକ ଗୁଣ୍ଡା ହୋଇଯିବ, ମାଉଁସ କାଦୁଅ ହୋଇଯିବ । ମୃତ୍ୟୁ-ଦେବତା ତମକୁ ମୁକ୍ତିଦେବ, ମତେ କେବଳ ନୂଆଭୋଜନ, ହେଇ ନିଅ, ଗଲା ଗୋଡ଼ ।

ଯେପରିକି ଲୁହା ତିଆରି ଗଛର କାଣ୍ଡ ଉଦ୍ୟତ ହୋଇ ତଳକୁ ଯାଉଛି ପେଷି ଦେବାପାଇଁ, କିନ୍ତୁ ସେତେଦୂର ଗଲାନାହିଁ, ମେନକା ସେହି ଗୋଡ଼କୁ କୁଣ୍ଢେଇ ଧରି ପାଦକୁ ଛାତିରେ ଯାକି ଧରିଲା, ପାଦଟା ମୁକ୍ତ କରିବ ବୋଲି ଗୋଟାଏ ଯୋକ ଝାଡ଼ଫୋପାଡ଼ ଦେଲାପରି ଆସ୍ତେ ପାଦଟାକୁ ଛାଟି ଛାଟି କୀଚକ କହିଲା ।

"କୀଚକକୁ ମନେପକାଇବ ଯେତେବେଳେ, ପଛେ, ଯେତେବେଳେ ଦେଖିବ ଏଇବାଟେ ସମସ୍ତେ ନରକକୁ ଯିବେ ।"

ମେନକା ଛାଟି ହୋଇ କାନ୍ଥରେ ମୁଣ୍ଡ ପିଟି ହୋଇ ନଥ୍‌କନା ଘର କଣରେ ପଡ଼ି ବିହ୍ୱଳ ହୋଇ ଅନାଉଁଲାବେଳକୁ କୀଚକ ନଥିଲା। ଚାଲି ଯାଇଥିଲା।

ପଟୁଆରରେ ନରକ ପୁରଆଡ଼େ ଗତି କଲାବେଳେ କୀଚକ ସେହି ନଗ୍ରଣ୍ଟିଆ କୋଠାର ଦୋମାହାଲ ଆଡ଼କୁ ଥରେ ଅନାଇଁଦେଇ ଖୁବଖୁବ ଗଲା—କେଉଁଠି ଥିବ ସେ ମେନକା ? ସେ କଣ ଦେଖୁଥିବ ? ମନେ ପକାଉଥିବ ସେଦିନର ବାଜି କଥା ?

ଆଜି ତା କଢରେ ସେ ମେନକା ନାହିଁ, କିନ୍ତୁ ଆହୁରି ଅଛନ୍ତି ଅନେକେ। ନାନା ଛଇ ଛଟକରେ ସବୁବେଳେ ସେମାନେ ତାର ମନ ଘେନିବାକୁ ଯତ୍ନ କରୁଛନ୍ତି। କିଏ ତାଙ୍କୁ କହୁପାରେ ନିର୍ଲଜ୍ଜ, କିଏ କହୁପାରେ ଅସଭ୍ୟ, କିନ୍ତୁ କିଏ କଣ କହୁଛି ସେଥିକି କୀଚକର ଭ୍ରୂକ୍ଷେପ ନାହିଁ କି ଯେଉଁମାନେ କୀଚକକୁ ପୂଜା କରି ପଟୁଆରରେ ନେଇଯାଉଛନ୍ତି ତାଙ୍କର ବି ତହିଁକି ଛଳ ନାହିଁ, ଖିଆଲ ଖାଲି ଅଳ୍ପ-ଯୋଡ଼ିଏ କଥାକୁ, ଆପଣାର ଉଦ୍ଦେଶ୍ୟ ସିଦ୍ଧି ଓ କୀଚକର କୃପା। ନାନା ବେଶରେ ଚାଲିଛନ୍ତି ପଟୁଆର କରି, କିଏ ମୁଣ୍ଡରେ ଶିଙ୍ଘଯୋଡ଼ାଏ ବାନ୍ଧିଛି, କିଏ ଗଳେଇଛି ଏକ ଲମ୍ବା ଗୋଜିଆ ଟୋପି ନାନା ବର୍ଣ୍ଣର, କିଏ ଆପଣା ପଛଆଡ଼େ ଖଞ୍ଜି ଏକ ସୁନ୍ଦର ଲାଞ୍ଜ ଝୁଲେଇଛି, ସେଥିରେ ପରସ୍ତ ପରସ୍ତ ହୋଇ ନାଲି ଫୁଲ ଅଛି। ସମସ୍ତିଙ୍କ ପିଠିରେ ଗୋଟିଏ ଲେଖା ଧଳା କନା ବନ୍ଧା ହୋଇଛି, ତହିଁରେ କଳାରଙ୍ଗରେ କୀଚକର ଛବି, କେବଳ ସିଧା ଠିଆ କୀଚକର ନୁହେଁ, କେଉଁଠା ତାର କେଉଁ କୃତିତ୍ୱର। କୀଚକ ଗୋଟିଏ ଉପରେ ବସିଛି, ପଛେ ପଛେ ପାଞ୍ଚ-ଶହ ଗଧ ଚାଲିଛନ୍ତି, ଗଧଙ୍କ ଉପରେ ଗଧ-ସଓ୍ୱାର, ସେମାନଙ୍କୁ ଘେରି ଓ ପଛେ ପଛେ ଚାଲିଛି ସେହି ବିଜୟ ପଟୁଆର, ସେଥିରେ ସ୍ତ୍ରୀପୁରୁଷ ହୋଇ ପ୍ରାୟ ଚାଳିଶି ହଜାର ମଣିଷ, ଢୋଲ, ଟମକ, ବିଜଘୋଷ, ଦାଉଣ୍ଡୀ, ଖାରତ୍ୱର କାହାଳି, ମହୁରି, ଶଙ୍ଖ କାନଅତରା ପକାଇ ସବୁ ଏକା ସଙ୍ଗେ ବାଜୁଛି। ଜଙ୍ଗଲ ପରି ଝଣ୍ଡା ମାଳ ମାଳ। ଶବ୍ଦ ହେଉଛି "ଜୟ କୀଚକ ! ଜୟ କୀଚକ !"



# କୋଇଲା

କୋଇଲା ଜେଲ୍‌ଖାନାରେ ଓ୍ୱାର୍ଡର୍ ।

କୋଇଲାର ବାଘକୁ ପୁରୁଷ ଓ୍ୱାର୍ଡର୍ ମାନଙ୍କର ଖୁବ ଭୟ ।

କୋଇଲା ଏ ସଂସାରର ଜୁଇ ଭିତରେ ଖାଅନ୍ତା ସ୍ଥୂଳ ସ୍ଥୂଳ ତିରିଶ ବର୍ଷ ଟପି ଏକଚାଳିଶିରେ ପହଞ୍ଚିଛି । ଯେଉଁ ଅତି କଅଁଳ ଅତି ଛୁଆଁ ତା ଶବ୍ଦ କେନ୍ଦ୍ର ଫୁସୁ ଫୁସୁ କରି କହନ୍ତି, ଯଥା ପ୍ରେମ କି ପ୍ରୀତି କି ଅଭିସାର କି ସେମିତି ଆଉ କିଛି, ଆଉ କହିଲାବେଳେ ଲାଜ ଲାଜ ଲାଗେ, ଆଖି ମିଟ୍ଟି ମିଟ୍ଟି ହୋଇ ନଇଁପଡ଼େ, କୋଇଲା ଅନ୍ୟ କାହାର ଅନୁଭୂତି ବର୍ଣ୍ଣନା କଲାବେଳେ ସାହି କମେଇ ବଡ଼ପାଟିରେ ତାକୁ କହିପାରେ । ତାକୁ ମୋଟେ ଲାଜ ମାଡ଼େନାହିଁ । ସତେ ଯେପରି ସେହି ଶବ୍ଦଗୁଡ଼ାକ ତାର ଛାଲ ଭିତରକୁ ବି ଭେଦେନାହିଁ ।

କଲ୍ୟାଣ ଯୁବକ ପଶୁ ଡାକ୍ତର ସୁଶୋଭନ ଯେତେବେଳେ ସାନ ବସାଟିଏ ଭଡ଼ାନେଇ ଆପଣାକୁ ଭାଗ୍ୟବାନ ମଣିଲା ଓ ବସନ୍ତ ଅପରାହ୍ଣରେ ବୁଲି ବୁଲି ଘରଟିକୁ ଦେଖିଥିଲା, ସେତେବେଳେ କୋଇଲାର ଏ ପରିଚୟ ସେ ଜାଣି ନଥିଲା । ଲାଗି ଲାଗି ଦୋଟି ଘର । କହିବାକୁ ଗଲେ ଗୋଟିଏ ଘର ମଝିରେ କାନ୍ଥଟିଏ ପଡ଼ି ଦୁଇ ଭାଗକୁ ଅଲଗା ରଖିଛି । ପ୍ରତି ଭାଗରେ କାଠ ଜାଲିଦିଆ ପାଞ୍ଚହାତ ପିଣ୍ଡା । ବଖରାଏ ଘର । ଚାରିହାତ ଓସାର ଦୁଆର । ଗୋଟିଏ ଛୋଟ ଭଣ୍ଡାର ଘର । ଦୁଆର ସେ କରେ ରୋଷେଇ ଘର ପାଇଁ ସାନ ଚାଳଟିଏ । କବାଟ ଖୋଲିଲେ ସରୁ ଲମ୍ବା ହୋଇ ବାରି । ଷାଠିଏ ହାତ ଅରମା ପାରି ହୋଇଗଲେ ଇଟାର ଅଧାକାନ୍ଥି ଘେରା ହୋଇ ପାଇଖାନା ବସିବା ସ୍ଥାନ, ତା ସେପାଖରେ ବାଡ଼ ଓ ବାଡ଼ ସେପାଖେ କିଆବଣ । ଦୁଇ ଅଗଣା ମଝିରେ କୂଅଟି । ତା ଉପରେ ବି କାନ୍ଥ । ତେଣୁ କୂଅ ଏପାଖେ ଫାଳେ ସେପାଖେ ଫାଳେ । ବସ୍ତିର ଶେଷ ମୁଣ୍ଡରେ ସେ ଘରଟି, ତା ପରେ ସଡ଼କ ଲମ୍ବି ଯାଇଛି, ବସ୍ତି ନାହିଁ । ମଝିର କାନ୍ଥ ଆଙ୍ଗୁଳେ ଆଁ କରିଛି ।

ସମୁଦ୍ର ପବନ ହୁ-ହୁ ହୋଇ ଘରେ ପଶୁଛି । ଶୀତଳତା ଭିତରେ ସୁଶୋଭନ ଅନୁଭବ କରୁଛି ଉତ୍ତେଜନା । ସମୁଦ୍ର ଗର୍ଜନ କାନରେ ବାଜୁଛି । ନାଲିଆ ଆଲୁଅରେ ଚାରିପଟେ ଦିଶୁଛି ଉଞ୍ଚ ଉଞ୍ଚ ଗଛର ଡାଳ ପତ୍ରର ଛାଇଜାଲ । ଝାଉଁବଣ ଆଉ କିଆବଣ ଆଉ ଅସଂଖ୍ୟ ଚଢ଼େଇ ଉଡ଼ି ଆସୁଛନ୍ତି, ଚହଲ ପକାଇଛନ୍ତି । ପଶୁଡାକ୍ତର ସୁଶୋଭନକୁ ଲାଗିଲା ସେ ଭୁଲ ହୋଇଯାଉଛି ।

ବୃତ୍ତିକ୍ଷେତ୍ରର ସୁଶୋଭନ ପ୍ୟାଣ୍ଟ୍ କୋଟ୍ ପିନ୍ଧି ସେହି ଜାଲି କବାଟ ବାଟେ ଗଲା ବାହାରି । ପରିବାରର ଖୁଣ୍ଟ ହୋଇ ରହିଥିଲା ଯେଉଁ ସୁଶୋଭନ, ଗୃହେଶ୍ଚି ସନ୍ତାନର ମା ତଥାପି ଅଳିଅଳି ନହକୀ ସ୍ତ୍ରୀର ସ୍ୱାମୀ, ଶ୍ରେଷ୍ଠ ଭଉଣୀ—ସେହି ଯାହାର ଡବ ଡବ ଆଖି ସ୍ମୃତି ରହି କେତେ ଅଳି କଲାଏ, ତାର ଭାଇ, ଯୋସୁଛୁ ଥିବା ବୁଢ଼ା ବୁଢ଼ୀ ଯୋଡ଼କଙ୍କର ଅସ୍ତ୍ର ପୋଷଣାହାର ପୁଅ, ସେହି ସୁଶୋଭନ କନ୍ଧ ଦୁଆର ଟିପି ଉପରକୁ କୁଆଡ଼େ ଉଡ଼ି ପଳାଇଲା । ଆଉ ରହିଗଲା ଜଣେ । ମାଂସଖିଆ ମାଂସଳ ଦେହ ତାର । ଓସାର କାନ୍ଧରେ ଲମ୍ବ ବୁମ । ତା'ର ଓସାର ଓଜନ ଜଙ୍ଘ ଆଉ ଗୋଡ଼ପେଣ୍ଡୁ, ଆଉ ତାକୁ ଲାଗିଲା ସତେକି ଏଇ ନୂଆ ହୋଇ ଏ ସଂସାରକୁ ସେ ଏହି ରୂପରେ ଆସି ପହଞ୍ଚିଛି, ତାର ବନ୍ଧନ ନାହିଁ କିନ୍ତୁ ବାନ୍ଧ ହେବାକୁ ଇଚ୍ଛା । ତାର ସାଙ୍ଗୀ ନାହିଁ କିନ୍ତୁ ସଙ୍ଗୀ ଦରକାର । ଆପଣା ଭିତରେ ଓ ବାହାରେ ଅତି ତୀବ୍ର ଅତି ନଗ୍ନଚିଆ ପଣ । ତାର କାନ ପାତଳ ହୋଇଗଲା । ଦୃଷ୍ଟି ଶାଣିତ ହୋଇଗଲା, ଚମ ହେଲା ଅତି ସ୍ପର୍ଶକ୍ଷମ ।

ସୁଶୋଭନ ଦାଣ୍ଡ କବାଟ ବନ୍ଦକଲା । ଦେହରୁ କାମିଜ୍ ଓ ପ୍ୟାଣ୍ଟ୍ ଖୋଲି ପକାଇଲା । ଖୋଲା ଦେହରେ ଅଣ୍ଡରୱେୟାର ପିନ୍ଧି ସେ ସେହି ଦୁଆରେ ଠିଆହେଲା ଦୁଆର ମଝି କାଚର ଫାଟ ଅଡ଼େ ମୁହଁ କରି । ସେପାଖେ ସେ ଘର ଖଟକାର ଶବ୍ଦ ଶୁଣୁଥିଲା, ତା ସହିତ ନାସି କଣ୍ଠରେ କ'ଣ ଗୁଣୁ ଗୁଣୁ ଗୀତ । ସେହି ଫାଟବାଟେ ତାର ତୀକ୍ଷ୍ଣ ଆଖି ବାଟିଲା ସେହି ଗୁଣୁ ଗୁଣୁ ଗୀତର ଖୋଲା ଦେହର ଛୁଲିକାଏ, ପୁଷ୍ଟ, ମାଂସଳ, କଳା ଜକ ଜକ । ସୁଶୋଭନର ମୁହଁ ଆଖିରେ ନୂଆ ଲାଳସା ଫୁଟିଲା, ସେ ନିଶ୍ୱାସ ରୋଧିବାକୁ ଚେଷ୍ଟାକଲା । ତା ପରେ ସେ ଲକ୍ଷ୍ୟକଲା ଫାଟ ସେପାଖେ ମଇଁଷି ଆଖି ପରି ବଡ଼ ହୋଇ ଗୋଟିଏ ସ୍ଥିର ଉଦାସ ଚହଁର ନିର୍ବିକାର ଆଖି । ବାରମ୍ବାର ଏପାଖର ଆଖି ସେପାଖର ଆଖିକୁ ନୀରବରେ ତାର ଅକୁହା କଥା କହି ଲାଗିଲା । ସେ ବସନ୍ତର ମାତିଲା ସମ୍ବର, ନୂଆ ହୋଇ ଏ ବନକୁ ଏଇକ୍ଷଣି ଆସି ପହଞ୍ଚିଛି । ତାର ସାଙ୍ଗସାଥୀ ନାହିଁ, ଚିହ୍ନାଜଣା ନାହିଁ, ସେ ନିରାଶ୍ରୟ । କିନ୍ତୁ ସମ୍ବରର ଆଖିର କଥା ଯେମିତି ମଇଁଷିର ଆଖିରେ ବାଜି ଲେଉଟି ଆସିଲା । ଭେଦିଲା ନାହିଁ । ମଇଁଷିର ଆଖି କହିଲା ସେ ପ୍ରକାଣ୍ଡ କିନ୍ତୁ ଉଦାସ, ବଳିଷ୍ଠ କିନ୍ତୁ ଶୀତଳ । ସୁଶୋଭନର ଆଗ୍ରହ କମିଲା ନାହିଁ । ସେ ଆଉ ପାହୁଣ୍ଡେ ଆଗକୁ ଘୁଞ୍ଚିଗଲା । ଆପଣା ତତଲା ନିଶ୍ୱାସ ତାର ଉପର ଓଠକୁ ଝାଞ୍ଜି ମାରିଲା, ତା ପରେ ହଠାତ୍ ସେପାଖର ଆଖି ଅପସରି ଗଲା ।

ସୁଶୋଭନ ସେଠୁ ଘୁଞ୍ଚିଆସି ପିଞ୍ଜରାରେ ଜନ୍ତୁପରି ଦୁଆରଯାକ ଏପାଖୁ ସେପାଖ ବୁଲିଲା । ହଠାତ୍ ତାର ଇଚ୍ଛା ହେଲା ସେ ପୁଣି ତାର ପ୍ୟାଣ୍ଟ୍ ଓ କାମିଜ୍ ପିନ୍ଧାନ୍ତା । ପିନ୍ଧିଲାମାତ୍ରେ ପୁଣି ତା ମନରେ ପରିବର୍ତ୍ତନ ହେଲା । ଦାଣ୍ଡ କବାଟ ବନ୍ଦ ହୋଇଥିବା ନଗ୍ନଚିଆ ଅଗଣା ଭିତରେ ଲାଗିଲା ଗୋଟାଏ କୁମ୍ଭୀରେ, ଖାଇ ଗୋଡ଼ାଇଲା । ସେ ଚଞ୍ଚଳ ଆସି ଦାଣ୍ଡ କବାଟ ଖୋଲିଦେଲା, ଦାଣ୍ଡ

ସିଣ୍ଡାରେ ଠିଆହୋଇ ପଦାକୁ ଅନାଇଲା । ଲୁହାଇ ଲୁହାଇ ଦୀର୍ଘଶ୍ୱାସ ପକାଇଲା ଆଉ ତାର ଆପଣା ଅଣାୟତ୍ତରେ ସେ ତୀକ୍ଷ୍ଣ ଦୃଷ୍ଟିରେ ପଦାକୁ ଅନାଇ ଲାଗିଲା ଗୋଟିଏ ଖୋଜିଲା ଖୋଜିଲା ଭଙ୍ଗୀରେ ।

ସନ୍ଧ୍ୟା ପଡ଼ି ପଡ଼ି ଆସୁଛି, ପଦାରେ ସେହି ବଦଳ ଆଲୁଅ । ବସା ଆଗରେ ଏମୁଣ୍ଡ ସେମୁଣ୍ଡ ଗୋଟାଏ ସରୁ ରାସ୍ତା ଚାଲିଯାଇଛି । ତା ସେପାଖେ ଗହଳ ଘାସ ଡୋଟା ସେପଟର ବସ୍ତି ଓ ପୋଖରୀକୁ ଆଢ଼୍‌ଆ ରଖିଛି । କେତେ କେତେବେଳେ ଗୋଟିଏ ଦୋଟିଏ ଲୋକ ଚାଲିଯାଉଛନ୍ତି, ସାଇକଲଟିଏ ଯାଉଛି, ସୁଶୋଭନକୁ ସବୁ ଲାଗୁଛି ଅଜଣା । କିନ୍ତୁ ଏହି ଅଜଣା ଲୋକ ଭିତରେ ସେ ଯାହା ଖୋଜୁଛି ତା ନାହିଁ । ଅଜାଣତରେ କେତେବେଳେ ଯେଉଁ କାମନା କେବେ ହୋଇଥିଲା ତାର କ୍ଷିଣ ସ୍ୱପ୍ନ । ବାସ୍ତବ ହୋଇନାହିଁ, ଏକୁଟିଆ ସୁଶୋଭନ ଯେପରିକି ପୁଣି ସେହି ସ୍ୱପ୍ନକୁ ରୂପରେ ଖୋଜୁଛି । ପାଉନାହିଁ ।

ପିଲାଦିନେ ଗାଁରେ ପଡ଼ିଶାଘର ଝିଅ କୋକୀ ତାର ଖେଳସାଥୀ ଥିଲା । ଆଠ ବର୍ଷର କୋକୀ ବାର ବର୍ଷର ସୁଶୋଭନ, ସେତେବେଳେ ଧଣ୍ଡା—ଏମାନଙ୍କ ଭିତରେ ଯେଉଁ ଯୋଗ-ସମ୍ପର୍କ ଥିଲା ସେଥିରେ କୋକୀ ହୋଇଥିଲା ସୁଶୋଭନ ହାତରେ କଞ୍ଚା ମାଟି ପିଣ୍ଡୁଳା, ତାକୁ ଯେତେପ୍ରକାର କରି ବାଗେଇ ହେବ, ଚକଟି ହେବ, ଫୋପାଡ଼ି ହେବ, ଗୋଟେଇ ହେବ, କୋକୀର ଆପତ୍ତି ତ ନଥିଲା, ବରଂ ସବୁଥିକି ଆଗ୍ରହ । ବସ୍ତୁତଃ କୋକୀର ଜୀବନ ସେତେବେଳେ ହୋଇଥିଲା ଘରେ ଖାଇବା ପିଇବା ଭିତରେ ଶୋଇବା ଆଉ ଅନ୍ୟବେଳେ ଖାଲି ଧଣ୍ଡାର କଡରେ କଡରେ ଗୁରୁଇପଶି ବୁଲିବା, ତା ମୁହଁକୁ ଚାହିଁ ବସିବା, ତାର ସବୁ ହୁକୁମ୍ ମାନିବା ଓ ତାର ସବୁ ଅତ୍ୟାଚାର ସହିବା । ତା ପରେ କୋକୀ କେଉଁଠି ଚାଲିଗଲା, ଲୁଚିଲା, ଚାହୁଁ ଚାହୁଁ ଦିନେ ପରଗୋତ୍ରୀ ହେଲା । ମଣିଷ କାଲୁବାଲୁ ଦୁନିଆଁ ଭିତରେ କେଉଁଠି ସେ ମୁହଁ ଲୁଚାଇ କେମିତି ସଂସାର କରୁଛି ସୁଶୋଭନ କେବେ ଜାଣିବାକୁ ମନ ବି କରିନାହିଁ ।

କିନ୍ତୁ କୋକୀ ଯେତେବେଳେ ଆଠ ନ' ବର୍ଷର ହୋଇଥିଲା, ସେତେବେଳେ ଏମିତି ସନ୍ଧ୍ୟାବେଳେ କେତେଥର ସେ ଦିହେଁ ଦାଣ୍ଡରୁ ଅଦୃଶ୍ୟ ହୋଇ ଯାଇଛନ୍ତି । କାହିଁ ନଈକୂଳ, ଦଣ୍ଡା, ମଶାଣିପାଖ ପୁରୁଣା ଭଙ୍ଗା ଦେଉଳ, ଗାଁ ସେମୁଣ୍ଡ ମହାଦେବ ମନ୍ଦିର ଏ ସଂସାର ଭିତରେ କୋଣଗୁଡ଼ିକରେ ଆପଣାର ଅଲଗା ସଂସାର, ସେଥିରେ ବାପା ବୋଉ ବି ଭାଗୀ ନୁହନ୍ତି ।

ଧଣ୍ଡା ହେଲା ସୁଶୋଭନ । ବନ୍ଧା ଗତରେ ଗଡ଼ିଚାଲିଲା ତା ଜୀବନ, ସେଥିରେ କର୍ତ୍ତବ୍ୟ, ବୃତ୍ତି, ଏମିତି କେତେକଣ ଟାଣୁଆ ଟାଣୁଆ ଟାଆଁସିଆ ଦେହଦସା ଧାରଣା । ବିବାହ ବି ହୋଇଗଲା, ପରିବାର ବଢ଼ିବାକୁ ଲାଗିଲା । କିନ୍ତୁ ବେଳେବେଳେ ସେହି ବନ୍ଧା ନଘଣ୍ଟ ଫାଙ୍କବାଟେ ପଦାକୁ ଦୃଷ୍ଟି ଚହଲିଯାଏ ଆଉ ହାଉଁପାଉଁ ଲାଗେ, ଇଚ୍ଛା ହୁଏ କାହାସଙ୍ଗେ ପଳେଇଯାଇ ସଂସାରର ସବୁ

ଜର୍ଜରିତ ଉଳଙ୍ଗି ଅଲକ୍ଷ୍ୟରେ ମନଇଚ୍ଛା ଗୋଟିଏ କ'ଣ ନାହିଁ କ'ଣ ଜୀବନ ବଞ୍ଚିବାକୁ, ତାର ସଙ୍କ ନାହିଁ, ସେହି କାମନା ଭିତରେ ତଥ୍ୟା ଅନୁଭୂତିକୁ ଅତଥ୍ୟା ରୂପ ପିନ୍ଧାଇ କଳ୍ପନାରେ ସେ ଆବେଦନ କରେ । କେତେବେଳେ ସେ କାମନା ହୋଇଯାଏ ଆକାଶୀ ସଂସାରର ମାଟି ଗୋଡ଼ାଠୁଁ କେତେ ଉଚ୍ଚରେ ଥାଇ ଅପହଞ୍ଚ, କେତେବେଳେ ସେ କାମନାର ଆଧାର ହୁଏ କଳ୍ପିତ ପଶୁ । କେବଳ ରକ୍ତମାଂସର ଦେହ ।

ସୁଶୋଭନ ସେ ଚୋଟା ଗହଳକୁ ଅନାଇଁ ଅନାଇଁ ଗୋଟାଏ ଦେହ ଖୋଜୁଥିଲା, କାହାର ଦେହ ସେ ଜାଣେ ନାହିଁ, ତାର କାମନା ସେ ଦେହକୁ ରୂପ ଦେଉଥିଲା, ଆଉ ତା ସହିତ ଗୋଟାଏ ଘଟନାର ହାରକୁ, ଯେଉଁ ଘଟନା କେବେ ଘଟିବ ନାହିଁ । ସେହି ଦେହପଟରେ ତାର ମତ ଅମତ ରୁଚି ଅରୁଚି ପ୍ରତି କେବଳ ଗୋଟାଏ 'ହଁ' ତାକୁ ଯେଉଁ ଆଡ଼କୁ ଟାଣିଲେ ସେ ଟାଙ୍କି ଝାଙ୍କି ହେବ, ତାକୁ ଘେନ ଧାଇଁଯାଇ ହେବ ଭୂଇଁ ଉପରର କେଉଁ ଜଙ୍ଗଲ ଭିତର୍କୁ, ଆକାଶରେ ଉଡ଼ିହେବ ଆଉ ଏଇ ମୁହୂର୍ତ୍ତିରେ ଯେତେବେଳେ ବାଡ଼ ଆସୁଛି ଚଢ଼େଇ କୋବାଲ ଶବଦ ଧୀରେ ଧୀରେ ଧୀମେଇଁ ଆସୁଛି, ସେତେବେଳେ ସେହି ଦେହଟା ଆପେ ଆପେ ଓଟାଣ ହୋଇ ଆସିବ ଏହି ଘରଭିତରକୁ, କବାଟ ପଡ଼ିବ ।

ସୁଶୋଭନ ସେହି ଗୋଳଆଗୋଳ କାମନାର ମନ୍ତ୍ରସାଧନା ଜୁରକଣ ହଠାତ୍ ଶୁଭିଲା ପାଖ ପିଣ୍ଡାରୁ କର୍କଶିଆ ଡାକ, "ବାବୁ, ମା ହେଉନା କେବେ ଆସିବେ ?"

ସୁଶୋଭନ ଚମକି ପଡ଼ିଲା । ତା'ପରେ ଆରପାଖ ପିଣ୍ଡା ଆଗରେ ଆସି ଠିଆହେଲା କୋକିଳା, କହିଲା, "ଏ ବସା ଭଡ଼ା ନେଲ ପରା, ମା'ଙ୍କୁ ଆଣୁଛ କେବେ ? ପିଲାଏ କେବେ ଆସିବେ ?"

କୋକିଳାର ସ୍ୱରରେ ଆନ୍ତରିକତା ଥିଲା, କିନ୍ତୁ ସେ ଚେହେରା ସୁଶୋଭନକୁ ଲାଗିଲା ଅତି ଅପ୍ରତ୍ୟାଶିତ । ଉଚ୍ଚରେ ତାଠୁଁ ହାତେ ବେଶି, ମୋଟରେ ତା'ର ଦୁଇଗୁଣ ନହେଲେବି ଦେଢ଼ାରୁ ଟିକିଏ ବେଶି, ଖୋଲା ମୁଣ୍ଡ ଗୋଲ ମୁହଁ, ମଇଁଷି ଦେହକୁ କିଏ ଯେପରି ଆହୁରି ଟିକିଏ ଚଢ଼େଇ କଳାପଥରରେ କରିଛି । କୋକିଳା ଆସି ତାଠୁଁ ଅଳ୍ପଛଡ଼ାରେ ବସାଘରର ପିଣ୍ଡା ଉପରେ ବସିପଡ଼ିଲା, ତା ଉତ୍ତରକୁ ଅପେକ୍ଷା ନକରି କହିଗଲା—

"ମୁଁ ତମ ପଡ଼ିଶା । ଜେଲ୍‌ଖାନାରେ ଓଭାରସିୟର୍ ହୋଇଥିଲି, କାମ ଲାଗିଲା, ଛୁଟି ନେଇଚି । ମୁଁ ଶୁଣିଥିଲି କିଏ ଜଣେ ଏ ଘରକୁ ଭଡ଼ା ନେଇଚି । ତା'ପରେ ଆଜ ତମକୁ ଦେଖିଲି । ଭଲ ବସା ଯେ । ମା ଆସିଲେ, ପିଲାଏ ଆସିଲେ ତା'ପରେ ଯିନା ଘରଟା ଘରପରି ଲାଗିବ, ନହେଲେ ଏକୁଟିଆ ମଣିଷ ଘରକୁ କି ଶୋଭା ? ପିଲାଏ କେବେ ଆସିବେ ? କି କାମ କର ?"

ସୁଶୋଭନ ତାର ଉତ୍ତର ଦେଲା । ପିଲାଏ କେବେ ଆସିବେ ସେ ଠିକଣା କରିନଥିଲା କିନ୍ତୁ କୋକିଳାର ସାନ୍ନିଧ ତାକୁ ସେ ନିଷ୍ପତ୍ତି କରିବାକୁ ସତେ ଯେପରି ସାହାଯ୍ୟ କଲା । ହଁ ପିଲାଏ ଆସିବେ, ପରହିଦନଠୁଁ ଦ'ଦିନ ଛୁଟି ଅଛି,

ସେତିକିବେଳେ ସେ ଆଣିବାକୁ ଯିବ। ତା'ପରେ ତା ନିଜକଥା ଦ'ପଦ ସେ କହିଲା।

“ଏତିକିବେଳେ ଗୁଣ୍ଡା ଲଫଙ୍ଗା ଆଉ ଖରାପ ମାଇକିନିଆମାନେ ଏପଟେ ବୁଲନ୍ତି।” କୋକିଲା ଆଗ୍ରହରେ କହିଗଲା, “ସହରର ଶେଷମୁଣ୍ଡ କରି ନିଛାଟିଆ ଜାଗା, ନୋଂଟାମାଳ। ସତେକି ତାଙ୍କରି ପାଇଁ ଏ ଜାଗା ତିଆରି ହୋଇଚି। ଯେ, ଜମର ଭୟ ନାହିଁ। କାନମୋଡ଼ି ଗୁପୁଡ଼ାମାର ମୁଁ ସମସ୍ତିଙ୍କି ଥଣ୍ଡା କରିଚି। କୋକିଲା ନାଁ ଶୁଣିଲେ ସେମାନେ ଥରହର।” ଅନ୍ଧାରରେ କାହାକୁ ଦେଖି କୋକିଲା ଚିଡ଼ଗୁଡ଼ିଲା, “ହେଇ, କିଏସେ ସେଠି ଯାଉଚି ?” ତୋଟା ଗହଳିତଳୁ ଡର ଡର ଗୋଟିଏ ସ୍ତ୍ରୀ ଲୋକ ଜବାବ୍ ଦେଲା।

“ମୁଁ ଯାଉଛି ଗୋ କୋକିଲା ଅପା, ମୁଁ ମଲ୍ଲୀ।”

“ଯାଉଛୁ ନା ଛକୁଚୁ ମ, ହଇଲୋ ହେ ?”

“ଛକିବ କାହାକୁ ମ, ମୁଁ କ'ଣ ବାଘ ନା ବଲେଇ ? ବଡ଼ ଘରପଇସାର କିଣିବାକୁ ଯାଉଚି।”

“ସେଥିପାଇଁ ସଡ଼କରେ ନଯାଇ ତୋଟାତଳେ କ'ଣ କରୁଛୁ ? ଯାଃକ୍ ଯାଃକ୍, ତତେ ସବୁ ମନାକରିଥିଲି ଏ ସାହିକି ତୁ ସନ୍ଧ୍ୟାପହରରେ ଆସିବୁ ନାହିଁ, ଫେର୍ ଆସିଲୁ ? ଯାଉଛୁ ନା ?”

ମଲ୍ଲୀ ତା'ର ସମ୍ବିଧାନଗତ ମୌଳିକ ଅଧିକାର ବିଷୟରେ ପଦେହେଲେ ପାଟି ଫିଟାଇଲା ନାହିଁ, ଚୁପଚାପ ହୋଇ ଅନ୍ଧାରେ ଅନ୍ଧାରେ ଚାଲିଗଲା, ଦୂରରୁ ନିଉଛୁଳି ହେଲାପରି ତା ସ୍ୱର ଶୁଭିଲା, “କୋପ କରନାହିଁ କୋକିଲା ଅପା, ମୁଁ ଯାଉଚି।”

ସୁଶୋଭନ କାବାହୋଇ କୋକିଲାର କଥା ଶୁଣୁଥିଲା, ତା ବିଷୟରେ ଭାବୁଥିଲା। ଟିକିଏ ପରେ ଦ'ଘର ଥର ଗ୍ରାଣ୍ଡ କାହା ଘରୁ ଶୁଭିଲା ଜଣେ କିଏ ତା ପିଲାକୁ ଗାଳି ଦେଇ ଦେଇ ମାଡ଼ ଦେଉଛି ସେ ପିଲାଟି କାନ୍ଦୁଛି। ତମେ ଥା' ବାବୁ ମୁଁ ଦେଖିଆସେଁ ସେ ଧନୁ ବଢ଼େଇ ! ପିଲାଲୋକ ତାର କଣ ଏତେ ବୁଦ୍ଧି ହେଲାଣି, କହିଲ ବାବୁ, ପିଲାଟା ଟିକିଏ କାଇଲ୍ କାମ କଲେ ଚଢ଼େଇଲା ନିର୍ଘାତିଆ ମାଡ଼। ଆଜି ସକାଳେ କହି ଆସିଥିଲି, ପୁଣି ଚୋଉକଥାକୁ ସେଇକଥା। ଏ ପିଲାର କାନ୍ଦ ଶୁଣିଲେ ଭାତ କେମିତି ପାଟିକି ଯିବ କହିଲ ?”

ହେ—ହେ—ରେ—ରେ ଶବ୍ଦ କରି କୋକିଲା ଧାଇଁ ପଳାଇଲା। ସୁଶୋଭନକୁ ଲାଗିଲା ସେ କୋକିଲାକୁ ଡରୁଛି।

ବଦଳିହୋଇ ଆସି ଯେଉଁ ବନ୍ଧୁଘରେ ସେ ଆଶ୍ରୟ ନେଇଥିଲା ସୁଶୋଭନ ଆଉ ଡେରି ନକରି ସେଠିକି ଚାଲିଗଲା।

ଚାରିଦିନ ପରେ ପରିବାର ଓ ଜିନିଷପତ୍ର ସେଦିନ ଦିନ ଆଠଟା ବେଳେ ଯେତେବେଳେ ସେ ବସାରେ ଆସି ପହଞ୍ଚିଲା ସେତେବେଳେ କୋକିଲା ତାର

ଦାଣ୍ଡଦୁଆର ମୁହଁରେ ଗୋଟିଏ ପିଲାକୁ ତେଲ ଲଗାଇ ଦେଉଥାଏ, 'ପୁଅ ଝିଅ ହୋଇ ନାନା ଆର୍ଥିକ ଅବସ୍ଥାରେ ପରିଚୟ ଦେଖାଉଥିବା ନାନାପ୍ରକାର ଲୁଗା ପୋଷାକ ପିନ୍ଧି ଆଉ ଛ' ସାତଟି ପିଲା ତାକୁ ବେଢ଼ି ବସିଯାଇଥାନ୍ତି । "ହୋଃ—ଆସିଗଲେ ।" କୋକିଳା ଖୁସିରେ ପାଟିଟା କଲା, କିନ୍ତୁ ଉଠି ଆସିଲା ନାହିଁ । ସେତେବେଳେ ସୁଶୋଭନ ଦିନ ଅଳ୍ପଥରେ କୋକିଳାର ମୂର୍ତ୍ତିକୁ ଅନାଇଁ ଆଖି ବୁଲାଇ ଦେଇ ଘର ଭିତରେ ପଶିଥିଲା । ଆକାରରେ ବଡ଼, ନିଦା, ବଳୁଆ ପୁରିଲା ପୁରିଲା ଦେହରେ ପରିପୂର୍ଣ୍ଣ ଯୌବନ ଓ ସ୍ୱାସ୍ଥ୍ୟ, ତ୍ରିପଣ୍ଡ କଳା, ମୁଣ୍ଡରେ ସିନ୍ଦୁର । ସିଧାସଳଖ ନିର୍ବିକାର ଦୃଷ୍ଟି । ସାଦାସିଧା ଚହ୍ଲାଜଣା ସାହୁ ମଣିଷ ! ତାକୁ ଆଖିରେ ଦେଖିଲା ପରେ ମନରେ ଦେଖିବାକୁ ଇଚ୍ଛା ହୁଏ ନାହିଁ । କୋକିଳା ତାର କଳ୍ପନାର ନାୟିକା ନୁହେଁ । ତା ସମ୍ପର୍କରେ କୌଣସି ମନୋବିକାର ଆସୁନାହିଁ । କୌତୂହଳ ବି ଆସୁନାହିଁ ।

କିନ୍ତୁ ଅଫିସ୍ ବାହୁଡ଼ା ବେଳେ ଘରକୁ ଆସି ସେ ଅନେକ ଥର କୋକିଳାର ନାଁ ଶୁଣିଲା । ଦିନ ଭିତରେ ଅନେକଥର କୋକିଳା ଆସିଥିଲା । କୋକିଳା ଚୁଲ୍ଲୀ ପାରି ଦେଇଛି, ଠିକା କାମ କରିବା ସ୍ତ୍ରୀଲୋକ, ନାଗୁଆ ଦୁଧ ବନ୍ଦୋବସ୍ତ କରି ଦେଇଛି, କୋକିଳା ତା ଘରୁ ଗୁଣ୍ଡୁଣୀ, ଶିଳ, ପନିକି ଯୋଗାଇ ଦେଇଛି । ସୁଶୋଭନର ସ୍ତ୍ରୀ ସୁଲୋଚନା ଓ ତାର ଦୁଇ ପୁଅ ଦୁଇ ଝିଅଙ୍କୁ ଖୁବ୍ ସର୍ଦ୍ଧି, କୋକିଳା କୁଆଡ଼ୁ ବାସଙ୍ଗ ଛେଳି ଓ ଏଳୁରୁଡ଼ି ଫୁଲ ଆଣି ଦେଇଛି, କହୁଛି, ଛେଳି ସିଏଁଇ ପାଣି ପିଇବ, ଫୁଲକୁ ଖଜ ଖାଇବ, ସର୍ଦ୍ଧି ଛୁଟିଯିବ । ସୁଲୋଚନାର ଏଇ ଯେଉଁ ମୁଣ୍ଡ ବନ୍ଧା ହୋଇଛି ସେ କୋକିଳାର ହସ୍ତଶିଳ୍ପ । ସାତ ବର୍ଷର ପୁଅ ଟୁରୁ ସେଇଟି ବଡ଼, କୋକିଳା ଭଣ୍ଡାରି ଡକେଇ ତା ବାଳ କଟେଇ ଦେଇଛି, ତା ତଳେ ପୁଅ ମୁନୁ, କୋକିଳା ତାକୁ ନିଜେ ଗାଧୋଇ ଦେଉଛି, ତା ତଳେ ଯାଆଁଳା ଝିଅ ଯୋଡ଼ିଏ ମୁଷୀ ଓ ଟିକି, କୋକିଳା ତାଙ୍କୁ ଦି ପହରଯାକ ପାଖେ ପାଖେ ରଖିଥିଲା, ସବୁ ପିଲା ତାର ଭକ୍ତ ହୋଇପଡ଼ିଛନ୍ତି, ସେ ବିସ୍କୁଟ ଲେମ୍ଞ୍ଚୁସ୍ ମଲ୍ଲୀଫୁଲ, କେତେ କିନିଷ ଆଣି ପିଲାଙ୍କୁ ଦେଉଛି । ନିଜ ପିଲା ପରି ମୁଷୀକୁ କୋକିଳା ନିଜ ହାତରେ ଛଞ୍ଚେଇ ଦେଇଥିଲା । ଇତ୍ୟାଦି ।

ଆଉ ଅଳ୍ପଦିନେ ସେ କୋକିଳା ବିଷୟରେ ଅନ୍ତର ଜାଣିଲା । ଏ ସାହିଯାକ ସମସ୍ତିଙ୍କ ପିଲାଙ୍କୁ ଆପଣାର କରିଛି । କାହା ମା' କାମକୁ ଗଲାବେଳେ ପିଲାକୁ ଛାଡ଼ିଯାଏ କୋକିଳା ପାଖରେ । କେଉଁ ପିଲାର ଦେହ କଣ ହୋଇଛି ସବୁ ଚିନ୍ତା କୋକିଳାର, ସେଥିପାଇଁ ସେ ଠାକୁରାଣୀଙ୍କ ପାଖେ ମାନସିକ କରେ, ମହାଦେବଙ୍କ ପାଖେ ପାଣିଲାଗି କରାଏ, ସବୁ ପିଲାଙ୍କ ଶୁଭ ମନାସି ସେ ଏକାଦଶୀରେ ଉପାସ କରେ, ସୋମବାର ଦିନ ଆଇଁଷ ଖାଏ ନାହିଁ, କାର୍ତ୍ତିକ ମାସରେ ହବିଷ କରେ, କାହାଠୁଁ କିଛି ମାଗେ ନାହିଁ । ସକାଳେ ସଞ୍ଜରେ ଦାଣ୍ଡରେ ପିଲାଙ୍କୁ ସଜ କଲା ପରି ଏକାଠି ଭେଳାଇ ସେ ପିଲାଙ୍କ କଳି ଝଙ୍ଗି ଦିଏ, କାହାକୁ ଥିକଟେ

କାହାକୁ ଗେଲ କରେ । ତାକୁ ଚଢ଼େଇବାକୁ କେତେ ଲୋକ ଆସନ୍ତି, ତେବେ ତାର ଧୈର୍ଯ୍ୟ ତୁଟିଯାଏ, ସେ ବଡ଼ ପାଟି କରି ଗାଳିଦିଏ, ସେମାନେ ପଳାନ୍ତି । ଆଉ କୋକଲା ଥାଏ ଏକୁଟିଆ, ତାର ଛୁଆପିଲା ନାହିଁ, ସେ ବାଞ୍ଝ ହୋଇଥିଲା, ଗଞ୍ଜେଡ଼ ସ୍ୱାମୀ, କୋକଲା ତାଠୁ ଅଲଗା ହୋଇଛି, ସେ କୁଆଡ଼େ ବେଳେ ବେଳେ ବୁଲିଆସେ, ପୁଣି ଚାଲିଯାଏ ।

ସୁଶୋଭନ ଦେଖିଲା ତା ଘରେ ପ୍ରତିଦିନ କୋକଲାର ନାଁ ଶୁଣାଯାଉଛି, ସତେକି କୋକଲା ସେ ଘରେ ନାହିଁ, ଏ ଘରେ ଅଛି ।

କିନ୍ତୁ ସେ ଥିଲାବେଳେ କୋକଲା ତା ଘରକୁ କେବେ ଆସେ ନାହିଁ । ସୁଶୋଭନ ଦାଣ୍ଡପିଣ୍ଡାରେ ବସି ଦେଖେ, ସଡ଼କରେ ଆପଣା ଧନ୍ଦାରେ କୋକଲା ଯା'ଆସ କରୁଛି, ତାର ଅମ୍ଳାନ ମୁହଁ, ସତେ ଯେପରି ତାର ସବୁଯାକ ଚିନ୍ତା ଏକାଠି ଆପଣାଠି ଠୁଳ ହୋଇଛି, ଆଉ କାହାଠି ତାର କିଛି ପ୍ରୟୋଜନ ନାହିଁ । ଖାଲି ଯେତେବେଳେ କୌଣସି ପିଲା ତା ଆଖି ଆଗରେ ପଡ଼ିଯାଏ ତାର ହସ ବାହାରେ, ମୁହଁ ଅଳୁଅ ହୋଇଯାଏ । ସେତେବେଳେ ସେ ଧୂଳିରେ ଗଡ଼ୁଥିବା ପିଲାକୁ ଝାଡ଼ିଝୁଡ଼ି ଦିଏ, ସିଙ୍ଘାଣି ପୋଛିଦିଏ, କାଖେଇ ନେଇ ଚାଲିଯାଏ ।

ବଜାରରେ, ବାଟରେ, ଘର ଆଗରେ କେତେବେଳେ ସୁଶୋଭନ କୋକଲାକୁ ହାବୁଡ଼ିଲେ ଦେଖେ ତା ଆଖିରେ ଚହ୍ଲାଚହ୍ଲିର ସଙ୍କେତ ବି ନାହିଁ, ଯେପରିକି ସେ ଆଗରୁ କେବେ ତାକୁ ଦେଖିନାହିଁ ।

ସୁଶୋଭନ ଥରେ ଚେତି ଉଠି ଜାଣିଲା ପଶୁଡାକ୍ତରଖାନାରେ ତା ନିଜ ବଖରାରେ ବସି ସେ କାଗଜ ଉପରେ ବକ୍ରିତ କରି ଗୋଟିଏ ନାରୀ ଛବି ଗାରେଇଛି ଓ ତା ପାଖରେ ଗୋଟିଏ ଠିଆ ହୋଇଥିବା ସାନ ପିଲାର ଛବି ବି ଗାରେଇବାକୁ ଚେଷ୍ଟା କରିଛି । ନାରୀ ଛବିର ମୁଣ୍ଡକୁ ସେ କରିଛି ଗୋଟିଏ ମନ୍ଦିର ମୁଣ୍ଡପରି, ତା ତଳେ ଅଳଙ୍କୃତ ଗୁଡ଼ିଏ ସେ ଯୋଗିଛି ଓଡ଼ିଶାର ମାଳଭୂମି ଓ ତା ଉପରେ ଯୋଡ଼ିଏ ପର୍ବତଶୃଙ୍ଗ ଓ ଯୋଡ଼ିଏ ପର୍ବତ ଶ୍ରେଣୀର ଛବି, ଅତିକାୟ ନାରୀମୂର୍ତ୍ତି କଡ଼ରେ ଅତିକାୟ ଶିଶୁ । ସେ କୋକଲାକୁ ମନେପକାଇଲା । ସେ ଆପଣାଠି ଗୋଟାଏ ଅଜଣା ଉଲ୍ଲାସ ଅନୁଭବ କଲା ଓ ସଙ୍ଗେ ସଙ୍ଗେ ସେ କୋକଲା କଥା ମନେ-ପକାଇଲା । ତାପରେ ତାର ହେଉଛି ହେଲା ସେହି ଘରେ ଏକୁଟିଆ ଥିଲାବେଳେ କେତେଥର ସେ ମନେ ମନେ କୋକଲା କଥା ଭାବିଥିଲା ପୁଣି ଭୁଲିଯାଇଥିଲା । କିଏ ସେ କୋକଲା ? କ'ଣ ତାର ଇତିହାସ ? କିପରି ସେ ଚଳେ ? କାହିଁକି ସେ ଏକୁଟିଆ ରହିଛି ?

ସେ ଭାବିଲା କୋକଲାର ପୁଅଟିଏ ଥିଲେ କେଉଁ ହୋଇଥାନ୍ତା ତା ଆକାର ? ତାର ଉଲ୍ଲାସ ଉଡ଼ିଯାଇ ପୁଣି ଦୀର୍ଘଶ୍ୱାସ ଆସିଲା । ମନେ ମନେ ସେ ସୁଲୋଚନା ଓ କୋକଲାକୁ ଏକାଠି ଥୋଇ ତୁଳନା କରି ଦେଖିଲା ।

ସୁଲୋଚନା ଆକାରରେ ସାନ, ଓସାର, ଆକୃତରେ ଗୋଟିଏ ମୃଦଙ୍ଗ କଖାରୁ ପରି । କିନ୍ତୁ କୋକିଳା, ତା ଆକାର ଅପୂର୍ବ । ସାକ୍ଷାତ୍ ପନ୍ଥଲମାନ ।

ସାହୁଘରର ପିଲାଙ୍କ ପ୍ରତି କୋକିଳାର ସ୍ନେହ, କୋକିଳାର ସେବା, ତ୍ୟାଗ କି କୋକିଳାର ଆଦର୍ଶ କିଛି ତା ମନେପଡ଼ିଲା ନାହିଁ । ପୁଣି ତାର ମନେପଡ଼ିଲା ସେହି ଲୋକମାନେ ଯେଉଁମାନେ ବେଳେବେଳେ କୋକିଳା କଥାରେ ଗହଳ କରିଥାନ୍ତି, ଗପନ୍ତି, ହସନ୍ତି, ଗାଳି ଖାଆନ୍ତି । ସେ କାଗଜ ଖଣ୍ଡିକ ଚିରି ଫୋପାଡ଼ିଦେଲା ।

ଆପଣା ଭିତରର କୋକିଳା ଚେତନା ଥରେ ତା ଅଖିରେ ଝଲସିଦେଲା ଉତ୍ତରୁ ଆଉ ସେ କୋକିଳା କଥା ଭାବିନାହିଁ । ଶୁଣି ଶୁଣି ନାଁ ଘଷରି ହୋଇଯାଇଛି । ତାପରେ ଦିନେ କାମରୁ ଫେରି ସେ ଶୁଣିଲା କୋକିଳା କାନ୍ଦୁଛି । କୋକିଳା ଘର ଦୁଆରମୁହଁରେ ସାହୁଘରର ଭିଡ଼ । କୋକିଳାର କାନ୍ଦଣା ଗର୍ଜନ ତାର ବିଶାଳ ଶରୀରର ଅନୁପାତରେ ହିଁ ଚାଲିଛି । ସୁଶୋଭନ ବିରକ୍ତ ହୋଇ କହିଲା, "ଭଲ ପାଟି ହୋ ହୋ—"

ସୁଲୋଚନା ମୁହଁ ପୋଛୁ ପୋଛୁ ପଦାରୁ ଘରକୁ ଆସିଲା, ପଛେ ପଛେ ପିଲାଏ କାନ୍ଦୁଛନ୍ତି । ସୁଲୋଚନା କହିଲା, "କୋକିଳାର ସ୍ୱାମୀ ମରିଗଲା ।"

"କୋକିଳାର ସ୍ୱାମୀ ?"

"ହଁ, ସେ ଥିଲା ଗାଁରେ । ନିଶାଖୋର୍ । ସବୁ ଉଜାଡ଼ିଲା । ମାସକୁ ମାସ ଆସି କୋକିଳାଠୁଁ ଟଙ୍କା ନେଇଯାଏ । ଗଲାଥର ଆସିଥିଲା କୋକିଳା କିଛି ଦେଇପାରି ନାହିଁ, ଦରମା ତ ପାଇନାହିଁ, କୁଆଡୁ ଆଣିବ ? ଆଜି ଖବର ପାଇଲା ହଠାତ୍ ସେ ମରିଗଲା । ଦି'ଦିନ ଜର ହୋଇଥିଲା, ସେତିକି ।"

"ଯା' ହେଉ କଣ୍ଟା ଗଲା !

ନାଲି ନାଲି ଆଖି କରି ସୁଲୋଚନା କହିଲା, "କ'ଣ କହିଲ ? ବିଚାରୀ ବିଧବା ହେଲା କହୁଚ କଣ୍ଟା ଗଲା ?" ସୁଲୋଚନାର ଗୃହିଣୀ ଆଉ ସ୍ୱର ଉଦୁଆଳରେ ସୁଶୋଭନ ସତେକି ଦେଖିଲା କୋକିଳାକୁ । ସେ ଆଖି ନୁଆଁଇଲା ।

ତହିଁ ଆରଦିନ କାମରୁ ଫେରିଲା ବେଳକୁ କୋକିଳା ସେ ଘର ଛାଡ଼ିଦେଇ ଚାଲିଯାଇଛି ।

"ଆଃ ଆଜି କେଡ଼େ ଉପକାରିଆ ଲୋକଟାଏ ଏ ସହରରୁ ଚାଲିଗଲା ।" —ସୁଲୋଚନା କହିଲା, "ବିଚାରୀ ତା ଜିନିଷପତ୍ର ନେଇ କାନ୍ଦି କାନ୍ଦି ଶାଶୁଘର ଗାଁକୁ ଚାଲିଗଲା । ବର ଥିଲାବେଳେ ତ ବୋହୂପଣ କରି ନାହିଁ । ଅଇଞ୍ଚ ମଲା ଉତ୍ତାରୁ ବୋହୂପଣ କରିବ । ବୁଢ଼ୀ ଶାଶୁ ଅଛି, ଅନ୍ଧୁଣୀ ।"



# ଶିକାର

ପାହାଡ ତଳ ଅନ୍ଧାର ଖୋଲରୁ ଗୋଟିକ ପଛେ ଗୋଟିଏ ହୋଇ ଉଠି ଠିଆହେଉଛନ୍ତି ସେମାନେ । ମୁଣ୍ଡରେ ନୁଖୁରବାଳ, ଅଣ୍ଟାରେ କୌପୁନି, ଦଳ ଦଳ ହୋଇ କେତେ ଲୋକ, ପଛଆଡ଼େ ପାହାଡ଼ ପାଖରେ ଝାପ୍‌ସା ଝାପ୍‌ସା ହୋଇ ଦିଶିଯାଉଛି ତାଙ୍କ ଗାଁ, ହେଇ ତ ଦୂରକୁ ଦିଶୁଛି ଗାଁର ବୋହୂ ଝିଅ ଆସୁଛନ୍ତି ପାଣିକୁ । ଆଉ ଗୋଠୁ ଗୋଠ ଛେଳି ଗୋଠ ଫେଡୁଛନ୍ତି, ମଇଁଷି ପିଠିରେ ଲମ୍ବ ହୋଇ ଶୋଇ ତଳକୁ ଗୋଡ଼ ହାତ ଝୁଲେଇ ଦେଇ ବୁହାହୋଇ ଚାଲିଛନ୍ତି ଗାଁର ଗାଈ ଜଗୁଆଳ ପିଲା ।

ରାସ୍ତା ଦ'ପାଖେ ସୂର୍ଯ୍ୟାସ୍ତର ନାଲିରଙ୍ଗ ଆଲୁଅରେ ଚେଙ୍କି ଉଠୁଛି ଏଇ ଯେଉଁ ଧୂଆଁ ପଡ଼ ଷେତ, ସୋରିଷ ଷେତ ଆଉ ଏଡ଼େ ଯେତେ ଜଡ଼ା କାଙ୍ଗୁ କାନ୍ଦୁଲ ଫସଲ, ଏଇ ଯେତେ ପରିବା ବଗିଚା ଯାହା ଘରକରେ ଉଞ୍ଚ ଉଞ୍ଚ ଝାଟି ଉପରେ ବହଳ ହୋଇ ଶିମ୍ବ ଲଟେଇଛି, ଲାଉ ଲଟେଇଛି, ଗଛା ହୋଇଛି କୁଞ୍ଜ, ସବୁ ତ ତାଙ୍କରି ହାତର କରଣି । ଗୋଟିକିଆ ଗଛର ଦକେନଥା ତାହା ଉପରେ ଚଢ଼େଇ-ବସା ପରି ଏଡ଼େ ଯେଉଁ ଟିକି ଟିକି କୁଡ଼ିଆ, ଚଢ଼ିବାକୁ ତଳୁ ଉପରକୁ ଗୋଟାଏ ଲେଖାଁ ହାତ ଖଣ୍ଡିଆ ବାଉଁଶ, ତାଙ୍କରି ଷେତଜଗା କୁଡ଼ିଆ ତ ସେ, ରାତିପାକ ମଞ୍ଚା ଉପରେ ଥାଇ ଶିଂଘା ଫୁଙ୍କା, ବଇଁଶୀ ଫୁଙ୍କା, ଆଉ ବରଗଛ ତଳେ ଠାଆ-ଠାଆକେ ଏଡ଼େ ଯେଉଁ ନଭଲି ଚୂଲି, ଏଇ ଯେଉଁ ପାଉଁଶ, ଚୂଲି କଳାହେଲା ପଥର, ସେଠି ରାତିରେ ସେହିମାନେ ହିଁ ତ ରୋଷେଇ କରି ଖାଉଥିଲେ, ନିଶ୍ଚୟ ଏଇ ଗଲା ରାତିରେ । ଆଉ ଏ ଜମିର ମନଭୁଲୁଆ ପାଚ ନିଶ୍ଚୟ ସେମାନେ ଉପୁଜେଇ ଥିଲେ । ସେମାନେ କାଟି ନେଇଥିଲେ । ପୁଣି ନେବେ ଏଥର ।

ନିଶ୍ଚୟ ନୁହନ୍ତି ଏମାନେ ଏ ଜମିରେ ଖମାରି; ପରପାଖେ ମୁଣ୍ଡିବନ୍ଧା, ମାସକୁ ଆସ୍ଥ ଛ'ଟଙ୍କା ଦରମା, ନିଶ୍ଚୟ ନୁହନ୍ତି ଏମାନେ ସତ୍ତ୍ୱାଭୋଗୀ, ପାରୁ ନପାରୁ ସୁନାଖଗଡ଼ ଲାମ୍ବୋଦର ନେବ ଏ ଜମିରୁ ଏକ 'ଗଉଣା'' ସେ ଜମିରୁ ଉରଣ ପ୍ରତି ବର୍ଷଯାକ ଚଷି ଫସଲ ପାଇଲା ବେଳକୁ ଚୁକ୍ତି-ପତ୍ର କାଗଜ ଧରି ସେ ବସିଥିବ । "ଦେ ମାପିଦେ ମୋ ଭାଗ, ଲେଖା ପ୍ରକାରେ ଏକ ଗଉଣା ପୁଣି ମିଶା ଯାହା କରଜ ନେଇଥିଲୁ ତହିଁରେ ଟଙ୍କାକେ ଦ' ମାଣ ହିସାବରେ ସୁଧ—"ମନେ ନାହିଁ ଖାଇବାକୁ ନେଇଥିଲୁ, ତୋର ଖୋରାକ, ବଳଦର ଖାଦ, ବିହନ, ଲଗୁଡ଼, କଟାବୁହାମଲା, ଟଙ୍କାକେ ଦ'ମାଣ ହିସାବରେ ସୁଧ, ଦେ ଲେଖାକରି ସବୁହେଲା

କେତେ ? ଗଉଣାଏ ପନ୍ଦର ପୁଟିତ ? ପଚେଇଲୁ କେତେ ? ମଳ, ମଳ, ମୋଟେ ଗଉଣାଏ ? ସବୁ ନେଇ ବି ତୋ ଉପରେ ରହିଲା ପନ୍ଦର ପୁଟି, ଆର ବର୍ଷକୁ ଶୁଝିବୁ । ସେମିତି ଅନେଉଚୁ କ'ଣ ? ପାଲ ଝାଡ଼ି ଘରକୁ ନେ, ମାଗଣା ଗୁଣ୍ଡ ଦେଲି । ଭଲ କରି ଝାଡ଼ିଲେ ପାଲରୁ ପାଇବୁ ପାଞ୍ଚପୁଟି ଧାନ । ମୁଁ କ'ଣ କରିବି କହ ? ଚକ୍ରି ଲେଖା ପ୍ରକାରେ ମୋ ସରଗଟା ମରିବ କାହିଁକି ?''

ନିଷ୍ଟସ୍ତ ନୁହନ୍ତି ସନ୍ତାଳପୁଷୀ, ସ୍ବର୍ଗପୁଷୀ, ଝମାଚ, ନହେଲେ ପାହାଡ଼ତଡ଼ା ପୋଡ଼ୁପୁଷୀ, କଂକର ପଥର ଉପରେ ଭଳ ବର୍ଷକୁ ଖୋସିକରି ବସିଦ, ତେଣିକି ନାହିଁ, ଆଉ ଯାବତ ଭସ୍ମ ବାଘକୁ, ବଣ ଗାଉଡ଼କୁ, କଟରିକୁ, କେଳ କେଉ-ମାନାଙ୍କୁ, ତଥାପି ସବୁ ଭସ୍ମକୁ ଦେହ କାଠ କରି ପଥର ଉପରେ ପାହାର ଉପ୍ରରୁ ପାହାର ଟଛ ଉପରେ ଟାଙ୍ଗିଅ ବେଳ୍ଟ ନଅଁ ହୁଲା, ଆଉ ଦ' ଗୋଡ଼ରେ ଡାଳୁଅ ଟେଙ୍ଗକୁ ଗୁପି ଧରି ଛୁଆ ଅଣ୍ଡା ବସ୍ତ୍ର ସମେତ ପବଂତ ସଙ୍ଗେ କସରତ, ଖସିଏ ଖସିଏ, ବରଷାଏ ବରଷାଏ—

ନୁହନ୍ତି ନିଷ୍ଟସ୍ତ ତା' ଏମାନେ, ଏ ଜମି ତାଙ୍କର ପିତୃପୁରୁଷଙ୍କର, ଆଜି ପୁଣି ତାଙ୍କର; ଏ ସୋରିଷ, ଏ କାନ୍ଦୁଲ, ଏ ଧୂଆଁ ପତ୍ର ତାଙ୍କର, ଅଉ ଏ ଯେତେ ସୁଆଁ, ମାଣ୍ଡିଆ, ଧାନ ପାହାଡ଼ କଡରେ ତୋଟାଡ଼ା ଗୁଡ଼ିକରେ ଝାଟି ବୁଜା ହୋଇ ତାଙ୍କର ଘରକରଣାର ସ୍ଥଳୀ ଏ କନ୍ଧ ଗାଁ, ବାହୁଙ୍ଗା ବନ୍ଧେଇ ଡେଙ୍ଗା ହୋଇ ଠିଆ ହୋଇଛି ଶଳପ ଗଛ ଯେଉଁଠି । ତାହାର ତଳେ ଥିବ ମୁହାଁମୁହିଁ ହୋଇ ଦି ସାଉଡ଼ି ଘର, ଏମୁଣ୍ଡ ସେମୁଣ୍ଡ ଏକ ସେଣି, ଏ ପାଖ ସେ ପାଖ ଏକ ନୀତ, ସମସ୍ତେ ସମାନ, ଗାଁ ଗୋଟାକ ସମସ୍ତିଙ୍କର, ସମସ୍ତେ ଗାଁର, ମଝିଦାଣ୍ଡେ କୁଦ ଉପରେ 'ଝାକର' ଦେବତା ମା ଧରଣୀ, ସମସ୍ତେ ତାରି ପୁଅ ଝିଅ, ଉପରେ ଧର୍ମ, ତଳେ ବସୁମତୀ, ସଂସାରରେ ସତ ହିଁ ଅଟଳ, ଆଉ କିଛି ନାହିଁ—ଆଉ ସବୁ ମଣିଷ ସ୍ବଇ ସ୍ବଇ—

କେଉଁ ଛପିଲା ଲୁଟେଲ ଖାଲରୁ ଫାଟରୁ ଧରି ଧାର ହୋଇ ଗଡ଼ିଅଯି ଖାଲ ସେପାଖ ମାଟିକୁଦ ଉପରେ ଠିଆହୋଇ ଦେଖୁଛନ୍ତି ପରି ସେମାନେ, ହେଇ ସେଇ ଶାଳ ବଣ ତଳେ, ମହୁଲ ବଣ ତଳେ, ବାରି ହେଉ ନାହିଁ ମଣିଷ କି ଗଛ । ଅନେଇ ଦେଖୁଥିବେ ପଡ଼ା ଦୁନିଆଁରୁ କଳଗାଡ଼ି ଚଢ଼ି ଆସିଛନ୍ତି କିଏ ଯୋଉଁଧାଉଁକା ମଣିଷ, କେତେ କୁତୁହଳରେ ନିରେଖି ଦେଖୁଥିବେ, ଆଉ ଭାବୁଥିବେ—କିଏ ସେ ଏମାନେ ? ଶତ୍ରୁ କି ମିତ୍ର ? କ'ଣ ସ୍ୱାଙ୍ଗର ନୀତ ?

ଗାଡ଼ି ଅଟକିଛି । ଆଠ ଦଶ ବର୍ଷର ଛୁଆଟାଏ ଡାଳି ଧରିଛନ୍ତି ବଧୁଲି ଫୁଲ ନେବେ । ସେଇ ନାଲି ସୂର୍ଯ୍ୟାସ୍ତରେ ନାଲି କଅଁଳ ପରି ଲମ୍ବାଏ ଲମ୍ବାଏ ଖୁନ୍ଦି ହୋଇଛି ନାଲି ବଧୁଲି ଫୁଲ, କାନ୍ଧକ କାନ୍ଧ ଭଙ୍ଗା ଝୁଲୁଛି । ଭାବୁଥିବେ ସେମାନେ, ଏମାନେ ବି ସେଇ ପିଲା, କାନ୍ଧ ପର ପିଲା ପରି ଫୁଲକୁ ସଉକ,

ଏମାନେ ବି ସେହି ମଣିଷ, ସେହି ବାପ, ଯେଉଁ କାମଧାଡ଼ି ପିଲାଙ୍କ ଅନ୍ନ ମେଣ୍ଟାଇବାକୁ ହାତ ବନ୍ଦ କରିବେ । କେବଳ ଉଲ୍ଲଙ୍ଗ କେଇ ଗୋଷ୍ଠୀ ହୋଇ ଅନେଇ-ଥିବେ ସେମାନେ, ବିଶ୍ୱାସ ହେବନି, ଏମାନେ ବି ସେହି ମଣିଷ । କଳାକଳା ରଙ୍ଗ ଛୁଡ଼ି ଆନନ୍ଦରେ କୁହାଟ ମାରି ଡେଇଁ ଡେଇଁ ଆସି ନିମନ୍ତ୍ରଣ କରିବେ, ଅଳି କରିବେ, ଲଟ ହଲେଇ ହାତ ହଲେଇ ଅବୋଧ ଭାଷାର ଝରଣା ବୁହାଇ ଦେଇ ନେହୁର ହେବେ—"ଆସ ଆଜି ଆମ ଗାଁରେ ରହ, ତୁମେ ବି ମଣିଷ ଆମେ ବି ମଣିଷ । ଆସ ନ ହେଲେ ତୁମ ଆୟା (ମା) ମାନେ ଦୁଃଖ କରିବେ, ଝିଅମାନେ କାନ୍ଦିବେ, ସଙ୍ଗାତୁଣୀମାନେ ରୁଷିବେ । ଆସ, ଆମେ ଆଜି ଭୋଜି କରିବା, ନାଟ କରିବା, ମଳପ ମଦ ଅଛି ପିଇବାକୁ ଦେବୁ, ବୁଢ଼ୀ ଗୋରୁ ମାରି ଖାଇବାକୁ ଦେବୁ । ଆଉ କୁକୁଡ଼ା କୁକୁଡ଼ା ଡ଼ିମ୍ବ, କଦଳୀ, ଯାହା ଅଛି ସବୁ ଦେବୁ । କିଆଁ ଆନ୍ଧା ଜାଳି ଜଗି ରହିଥିବୁଁ ରାତିଯାକ, ସକାଳ ହେଲେ ଆଉ ଗାଁ'ଯାକେ ପାଛୋଟି ସିବୁ । ଏ ତୁମର ଘର, ଏମାନେ ତୁମର ପିଲାଛୁଆ, ଏ ତୁମର ଗାଁ, କାରଣ ତୁମେ ବି—ମଣିଷ ।"

ଧାଇଁ ଆସିବେ ସବୁ ଏଥର ।

ଯାଃ, ସୂର୍ଯ୍ୟ ବୁଡ଼ି ଗଲାଣି କେତେବେଳୁ, ପଛରେ ରହିଥିବା ପଶ୍ଚିମ ପଟର ଚୂଲି ଝିଙ୍କା ପରି ଦ' ପାଖର ଗୋଳିଆ ପାହାଡ଼ ମଝିରେ ଯେଉଁ ନାଲ ଧାସ ସେ ଧୀରେ ନଇଁ ଆସିଲାଣି, ଘର ପାଖରୁ ଗ୍ରୁଇ ମାଡ଼ି ଆସୁଛି, ଗାଁ ଗଣ୍ଡା ନାହିଁ, ମଣିଷ ନାହାନ୍ତି, ଗୋରୁ ଗୋଠ ନାହାନ୍ତି, ଖାଲି ରୁକ୍ଷ ଜଙ୍ଗଲ, ପୂର୍ବଘାଟ ପର୍ବତମାଳା, ଯୋଡ଼ିହୁଣା ଲଣ୍ଡା ପାହାଡ଼ ବି ଅନ୍ଧାର ଘୋଡ଼ି ହୋଇ ବସୁଛି ଅଗନାଗ୍ନି ବନସ୍ତ ପରି, କେଉଁ ଅନ୍ତରାଳରେ କାହା ମୁଣ୍ଡ ବନ୍ଧା କୋଚଟ ଫିତା ପରି ପୂର୍ବ ଆଡ଼କୁ ଖଣ୍ଡେ ଦୂର ଲମ୍ବି ରହିଛି ରାସ୍ତା, ତା'ପରେ ଅନ୍ଧାରରେ ହଜିଛି, ଆଉ ପାହାଡ଼-ତଳ ଖୋଲ ଆଡ଼କୁ ହାତ ଦେଖାଇ ବୁଢ଼ା ଲକ୍ଷ୍ମୀନାରାୟଣ କାହ୍ନାଣୀ କହି ଲାଗିଛି—

"ଏଇଠି ଆଜ୍ଞା, ସ୍ୱାଗ ନାଁ ଝୁମ୍ପାବାଈ ନାଳ, ସେପାଖକୁ ଖଣ୍ଡେ ବାଟରେ ପାହାଡ଼ ସନ୍ଧିରେ ଝୁମ୍ପାବାଈ ଗାଁ ଅଛି । ଅତି ପାତାଳ ଫୁଟା ସେ ନାଳ, ପଥରକୁ କାଟି କାଟି ତରତର ହୋଇ ଧାଇଁ ଧାଇଁ ଯାଇଁ ନାଗାବଳୀ ନଈରେ ମିଶିଛି, ଯେମିତିକି ବାଳୁଙ୍ଗା ଧାଇଁଛି ମା' ପାଖକୁ । ଏ ପାଖରୁ ଝୁମ୍ପାବାଈ ଗାଁକୁ ଯିବାକୁ ହେଲେ ଗୋଟାଏ ବୁଲା ବାଟ ଅଛି, ପଛକୁ ଆସିବାକୁ ପଡ଼ିବ ଡାକେ ବାଟ, ସେଠି ଅସ୍ତେ ଅସ୍ତେ ସେ ଗହ୍ୱର ପାତାଳକୁ ଓହ୍ଲେଇବାକୁ ପଡ଼ିବ । ସେଇଠୁ ନାଳେ ନାଳେ ଆଗକୁ ଥୋଡ଼ାଏ ବାଟ ଗଲେ ଉଠିବାକୁ ଅଡ଼ଡ଼ା, ତା'ପରେ ଆରପାଟି । ବନ୍ଧୁକା ଫଉଜ ଏଇ ପାଖରେ ତାଙ୍କୁ ହାବୁଡ଼ି ଗଲେ । ଦ' ଦିନ ଅଗରୁ ଘର ଛଅ ଜାଗାରେ ମାଡ଼ ଖାଇ ଖାଇ ଦଶଖଣ୍ଡ ଗାଁ ଲୋକ ଏପାଖେ ଆସି ରୁଣ୍ଡି ଥିଲେ । କିଏ ନ ଥିଲା ସେଠି ? କାଲିପାଇ ଗାଁ ଲୋକ, ବାଲିପାଇ

ଲୋକ, କନାପାଛ଼, ରେଙ୍ଗା ହାଣ୍ଡି, ଦାମନଗଣ୍ଡା, ଦଣ୍ଡାବାଡ଼, ଫଟାଟିକର ସବୁ ଯେତେ ଟାଣୁଆ ଟାଣୁଆ ଲୋକ ଅଙ୍ଗ, ଏମିତ ସଜ୍ଞ ପଡ଼ ଆସୁଥିଲା, ନାଳ ଏ ପାଖରେ ପଥର ଢିପ ତଳେ ଖୁବ ବଡ଼ ଆମ୍ବ ତୋଟା ଅଛୁ, ସେଇଠି ସେମାନେ ଘରରେ ଖାଦ ଖାଇବେ ବୋଲି ବସି ପଡୁଥିଲେ, କଏ ଲାଉ ତୁମ୍ବାରୁ ପଚ ଦନାରେ ଅଜାଡ଼ ଅଜାଡ଼ି ଜାଉ ପିଉଥିଲା, କଏ ପିଇବ ବୋଲି ସଜ ହେଉଥିଲା, କଏ ପିଇସାର ଧୂଆଁ ପଚ ବଳୁଥିଲା ପିକା ଲଗେଇବ ବୋଲି, ସେତେବେଳକୁ ଘର ଗୁଡ଼ା କାହିଁ ମାସେ ପନ୍ଦର ଦିନ ହେଲାଣି। ବୁଲି ବୁଲି ଗୋଡ଼ରୁ ପାଣି ମଲାଣି। କିଛୁ ତ କୁଆଡ଼େ ହେଲାନାହିଁ, ଫଉଜ ଅସି ଗଲେଣି, ନାଳ ପାରି ତାଙ୍କ ଗାଁ ଘରୁ ଫେରୁଥିଲେ, ଆଉ ଏଣୁ ନୂ ପ୍ରତେ ଖବର ପହଞ୍ଚିଗଲା। ଫଉଜ ଚଢ଼ିଗଲେ ଏପାଖ ଢିପ ଉପରେ ତା'ପରେ ଗୁଲିକି ଗୁଲି ଫଏର, ଡୁ ଡା ଡୁ ଡା—"

"ଏଁ! ଗୁଲିଫାୟାର୍!" ଶ୍ରୀଚରଣ ଚମକି ପଡ଼ିଲା। ଏହି ଶାନ୍ତ ବନାନ୍ତ କୋଳରେ ଆଦିମ ଋଷୀ ଜୀବନର ସ୍ୱପ୍ନ ସହିତ ସେ ଗୁଲି ଫାୟାରକୁ ଯୋଡ଼ି ପାରିଲା ନାହିଁ। ହେଉଛି ସେମାନେ ଆସି ସତକୁ ସତ ଜୀଅନ୍ତା ଲୋକ ପରି ତା'ର ଚେତନା ଭିତରେ ଠିଆ ହୋଇ ତାକୁ ନିମନ୍ତ୍ରଣ କରୁଥିଲେ, ଏ ଧ୍ୟାନ ପାଇଁ ପରିଶ୍ରମ ପଡ଼େ ନାହିଁ, ଦରକାର ପଡ଼ୁନାହିଁ ଆସନରେ ବସି ନାକପୁଡ଼ା ଚପି ନିଃଶ୍ୱାସ ଅଟକାଇ କରି ପ୍ରାଣାୟାମ କରିବା, ଦରକାର ପଡ଼ୁନାହିଁ ପରି ହାତଲେଖା ଉପନ୍ୟାସ ପଢ଼ି ଏମାନଙ୍କୁ କଳ୍ପନାରେ ଦେଖିବା କିମ୍ବା ସହରକୁ ଯାଇ ଲୋକ ଗହଳି ଅନ୍ଧାର ଘରେ ବନ୍ଦୀ ହୋଇ ଧଳା ପର୍ଦା ଉପରେ ସିନେମା ଛବିରେ ମଣିଷ ଜୀବନ ଦେଖି ଉଚ୍ଛିମାର ଜୀବନକୁ ଉପଭୋଗ କରିବା। ଅତି ସହଜରେ ମନରେ ଉଠୁଥିଲା ଏ ଚିତ୍ର, ଯେପରିକି ଏହି ପରିବେଷ୍ଟନୀ ଉପରେ ପବନର ଅଦେଖା ଆବରଣ ପରି ସେ ମୂଳରୁ ରହିଛି, ଆପେ ଅପେ ଅନୁଭବ କରିହୁଏ, ବସ୍ତୁର ସ୍ଥୂଳ ରୂପକୁ ଯେମ ରହିଛି ଭାବରୂପ, ରେଡ଼ିଓ ଯନ୍ତ୍ରରେ ଦୂରରେ ସଙ୍ଗୀତ ଧରିଲା ପରି ମଣିଷର ଭାବନା ଯନ୍ତ୍ରରେ ବସ୍ତୁର ଭାବରୂପ ସ୍ଥଳର ଭାବରୂପ ଆପେ ଧରା ଦେଇ ମନରେ ଆଙ୍କିଛି ଚିତ୍ର, ବଣ ପର୍ବତ, ପାହାଡ଼ ତାଷୀ, କ୍ଷେତ ଖଲା କରି କୁଡ଼ିଆ ଗାଈ ଗୋରୁ ଏସବୁ ମିଶି ଏ ସ୍ଥଳରେ ସମଷ୍ଟି ଆଉ ତାର ଭାବରୂପ ଏ ଋଷୀ ମୂଲିଆ ସାଧାରଣ ମଣିଷଙ୍କ ସରଳ ଜୀବନ, ଏକା ଡୋରରେ ଛନ୍ଦାଛନ୍ଦି ଦୂନଆସାର।

ରକ୍ତପାତ ନୁହେଁ, ଗୁଲି ଫାୟାର ନୁହେଁ।

ଲକ୍ଷ୍ମୀନାରାୟଣ ଉତ୍ସାହରେ କହି ଲାଗିଲା, ଯେପରିକି ପ୍ରତ୍ୟକ୍ଷଦର୍ଶୀ ଐତିହାସିକ ଘଟନା ବର୍ଣ୍ଣନା କରୁଛି, ଯେପରିକି ସେହି ବର୍ବରତାର ବଳି ତା ନିଜଠି ଚହଟିଛି ଆଉ ବୁଢ଼ା ହାଡ଼ ଚେଇଁ ଉଠିଛି ଏକ ରକ୍ତଲୋଲୁପ ଅରଣ୍ୟ ପ୍ରେରଣାରେ, ନିଜେ ନିଜର କୃତତ୍ୱ ବଖାଣିଲା ପରି ଆପଣା ଭିତରର 'ମୁଁ ପଣ' ମଣିଷର ବୁଢ଼ା ଦେହକୁ ବଢ଼ି ପାଣିରେ ବୁଡ଼େଇ ଦେଇ ବୋହିଯାଉଛି ଲୋକଦେଖାଣିଆ ସୁଅ ପରି କହି ଲାଗିଛି—

''ଛୁଟା ଛୁଟା ଗୁଳି ଫଏର ଚାଲିଲା, ଠାଇ ଠାଇ ଠାଇ ଠାଇ,— ଚଢ଼େଇମରା ନଳ ନୁହେଁ ତ, ଏକଦମ୍ ବଲାତ ରାଇଫଲ୍, ତାର ଗୋଟାଏ ଗୋଟାଏ ମାଡ଼ରେ ହାତୀ ଟଳି ପଡ଼େ, ପଥର ଫାଟିଯାଏ, ସେଇଥିରେ ଫଉଜ ଚଳେଇ ଦେଲେ ଠାଇ ଠାଇ ଠାଇ, ତା' ଉପରେ ତା ଉପରେ, ଆଖି ପିଛୁଡ଼ାକେ ଟଳି ପଡ଼ିଲେ ଗଦା ଗଦା । ସେଇଠୁ କ'ଣ ହେଲା ନା ଯେତେ ମନ୍ଦା ମନ୍ଦା ଥିଲେ ସବୁ ପ୍ରାଣ ବିକଳରେ ଧାଇଁଲେ, ହେଲେ କ'ଣ ହେବ ? ଜୀବନ ବଞ୍ଚେଇବାକୁ ଦଉଡ଼ି ପଳେଇଲେ ଠିକ୍ ମରଣ ମୁହଁକୁ, ପଛ ଆଡ଼େ ଏଇ ଝୁଂପାବାଇ ନାଳ ଯେମିତିକି ପାଟି ଆଁ, କରି ଅପେକ୍ଷା କରିଥିଲା ପାଇଲେ ଗିଳିଦେବ, ଅଣନିଶ୍ୱାସରେ ଦଉଡ଼ି ପଡ଼ିଲେ ଗୋଟିକା ଗୋଟି ତାରି ଭିତରେ, ଗୋଟି ଗୋଟି କ'ଣ ? ମନ୍ଦା ମନ୍ଦା, ଟୋଠ ଗୋଠ, ପଡ଼ିଲେ ଆଉ ଚୁନା ହେଲେ, ଖାଲି ତ ସେଇ ଆଡ଼କୁ ଯେମିତିକି ବାର୍‌ହା ପଲ ଗାତରେ ଗଡ଼ି ପଡ଼ନ୍ତି ସେମିତି । ଆଗରେ ଗାତ ଖୋଲା ହୋଇଥିବ ପଛକୁ ବାର୍‌ହା ପଲକୁ ହୁଡ଼ୁଡ଼େଇ ଦବ, ଧାଇଁ ଧାଇଁକା ଗୋଟାଏ ସେ ଗାତରେ ପଡ଼ୁ ପଡ଼ୁ ପଛକୁ ଫେର୍ ଆଉ ଗୋଟାଏ, ଫେର୍ ଆଉ ଗୋଟାଏ ବାଟ ବନ୍ଦେଇ ଅନ୍ୟ ବାଟେ ବୁଲିସିବାକୁ ତାଙ୍କର ବୁଦ୍ଧି ପାଏ ନାହିଁ । ସେମିତି କୋଡ଼ି କୋଡ଼ି ପଚାଶ ପଚାଶ ଶହ ଶହ କନ୍ଧ ସେହି ନାଳ ଭିତରକୁ ଡେଇଁ ପଡ଼ିଲେ ଗଦା ଗଦା । ଅସଲ ଗୁଳି ମାଡ଼ରେ ଯଦି ମରିଥିବେ କୋଡ଼ିଏ ପଚିଶ ତା'ର ଦଶଗୁଣ ମଲେ ସେ ଗାଡ଼ ଭିତରେ, ସେଇଠୁ—''

ଲକ୍ଷ୍ମୀନାରାୟଣ ମୁହଁ ପୋଛିଲା, ତା'ପରେ କହି ଲାଗିଲା, ''ସେଇଠୁ ଫଉଜ ଛୁଟେଇ ପକେଇଲେ ଗୁଳିଖାଇ ମରିଥିବା ଆଉ ଛଟପଟ ହେଉଥିବା ଲୋକଗୁଡ଼ାଙ୍କୁ, ଅଧ ଘୋଷାରି ଘୋଷାରି ଗଡ଼େଇ ଦେଲେ ଝୁଂପାବାଇ ନାଳ ଭିତରକୁ, ଯାଃ, ସମସ୍ତେ ଗଦା ହୋଇଥାନ୍ତି ଏକାଠି, ଉପରେ ଚୋଟା ଗଲେ ଆଉ ଚିହ୍ନ ବର୍ତ୍ତି ନାହିଁ । ସେଇଥର ମେ ଅସଲ ଗାଁ ଗୁଡ଼ାକର ଅଣ୍ଟା ଭାଙ୍ଗିଗଲା । ଓଃ କମି ଅବାଝ ହୋଇଥିଲେ ସେମାନେ ? ଏକା ଜିଦ୍ ଧରିଥିଲେ ଆମେ ବଡ଼ ବଡ଼ ରାଜାଙ୍କୁ ଖଜଣା ଦବୁ ନାହିଁ, ସାନ ରଜା ଆମ ରଜା ଆମେ ତାକୁ ଖଜଣା ଦବୁ, ଯାଅ ତମର ଯାହା କରିବାର ଅଛି କର, ଅମେ ସାନ ରଜାଙ୍କୁ ଖଜଣା ଦବୁ । ଯେମିତି ସରକାର ବଳ ଚଳେଇଲେ ପାଇକ ପଠେଇଲେ ମୁଖିଆ ମୁଖିଆ ଲୋକଙ୍କୁ ବାନ୍ଧି ପକେଇଲେ ସେମିତି ଗାଁ' ଗାଁ'କେ ବୁଲିଥିଲା ମେଳି, ମାଇକିନିଆମାନେ ବି ମାତି ଉଠିଥିଲେ, ସୋପ୍ରେଣ୍ଟ ସାହେବ ଉପରେ ତତଲା ପେଜ ଢାଳି ଦେଇଥିଲେ, ତାଙ୍କର ଯେଉଁ ତେଜ, ଯେଉଁ କଥା ସେତେବେଳକା କଥା ମହାବିଷମ, କୌଣସି ଗାଁକୁ ନିରପଦରେ ପଶିବାକୁ କାହାରି ସାହସ ପାଉ ନ ଥିଲା, ବାଘକୁ ଯିନା ଡର, ସେ ମଣିଷକୁ ସମସ୍ତେ ଡରୁଥିଲେ ବାଘଠୁ ବେଶୀ । ଆଉ ଏମିତି ଠା ଠାକେ ଗୁଳି ଫଏର ପରେ ସତେକି ଦେବତା ଓହ୍ଲେଇଗଲା, କାଳସୀ ଗୁଡ଼ିଗଲା, ସବୁ ତେଜ

କୁଆଡ଼େ ପାଣି ଫାଟିଗଲା, ଫେର୍ ସେ ଲୋକ ବଡ଼ ରଜାକୁ ଖଜଣା ଦେଲେ, ପାଇକ ଦେଖିଲେ ଗୋଡ଼ତଳେ ପଇଲେ, ରୁଣ୍ଡ ମୁଣ୍ଡ ନ ଫିଟେଇ ମୋଉ କାମ କରଗିଲେ ସେ କାମ କଲେ, ପୃଥ୍ୱୀ ଶୀତଳ ହେଲା । କିନ୍ତୁ ସେତିକି କରିବା ଆଗରୁ ଏ ସଡ଼କ କର ଖୋଲ ଭିତରେ ମଡ଼ ପଡ଼ିଗଲା ଗଦା ଗଦା, ଏଠି ବେଶୀ ହୋଇଗଲା, ଆଉ ପାଞ୍ଚ ସାତ ଜାଗାରେ ଊଣା ଊଣା । ସେ କାଳର ଦିନ—ଆଃ —ଗୁଡ଼ ।"

ପିଲେ ଦମ୍ଭେ ରୁନ୍ଧ ହୋଇ ଶୁଣୁଥିଲେ, ଏ ଯେପରିକି ଇତିହାସ ବହିରୁ ଏକ ସୁନ୍ଦର କାହାଣୀ । ପିଲାଳିଆ ଅନୁଭୂତିରେ ହାଣକାଟ, ଯୁଦ୍ଧ, ମୁଣ୍ଡ ଭଙ୍ଗା ଏସବୁଡ଼ାକ ପଶେ ନାହିଁ, ଖାଲି କାହାଣୀ, ଶୁଣିବାକୁ ମଜା, ଦେଖିବାକୁ ମନ, ଗପିବାକୁ ଭାବିବାକୁ ଖୁବ୍ ଉତ୍ସାହ ।

କୁନା ପଚାରିଲା, "ଏ କ'ଣ ଯୁଦ୍ଧ ? ଆମ ବହିରେ ଅଛି ମହମ୍ମଦ ଘୋରି ଭାରତ ଆକ୍ରମଣ କଲାବେଳେ ଏମିତି କେତେ ଲୋକ ମରିଥିଲେ ।" ତାର ବୟସ ନଅ, ଷଷ୍ଠ ଶ୍ରେଣୀରେ ପଢ଼େ, ମଣିଷ ମରିବା ଦେଖି ନାହିଁ, ପଚାରିଲା "ସତେ, କହ, ସେ କ'ଣ ଯୁଦ୍ଧ ?"

ଲକ୍ଷ୍ମୀନାରାୟଣ କହିଲା "ନାହିଁ ତାକୁ କହନ୍ତି ଫିତୁରି ।"

ମିନି କହିଲା "ହଃ ଫିତୁରି ନା କଚୁରି ? ଯୁଦ୍ଧ ତ' । ଏମିତି କେତେ ଯୁଦ୍ଧ କଥା ବହିରେ ଲେଖା ଅଛି ।" ତାର ବୟସ ଦଶ, ସପ୍ତମ ଶ୍ରେଣୀରେ ପଢ଼େ । କହିଲା, "ସେ ବି ଯୁଦ୍ଧ, ଆହୁରି କେତେ ବଡ଼ ବଡ଼ ଯୁଦ୍ଧ କଥା ଆମେ ପଢ଼ିଚୁ—ମହାଭାରତ ଯୁଦ୍ଧ, ପାନିପଥ ଯୁଦ୍ଧ, ପଲାସୀ ଯୁଦ୍ଧ, ପୃଥିବୀ ମହାଯୁଦ୍ଧ—"

କୁନା କହିଲା "ସେ ତ ଯୁଦ୍ଧ, ସେଥିରେ ବେଶୀ ଲୋକ ମରିଥିଲେ, ସେ ତ ଖାଲି ଫିତୁରି ।" ଲକ୍ଷ୍ମୀନାରାୟଣ ଇତିହାସ ପଢ଼ିନାହିଁ, ପିଲାଙ୍କ ଅବଜ୍ଞାରେ ଚେତିଉଠି ସେ କହିଲା "ଏଥିରେ ବେଶୀ ଲୋକ ମରିଥିଲେ । କେତେ ମଲେ କିଏ ଲେଖା କରିଚି, ଓଃ ସେ ଯୋଉ ମାଡ଼ କ'ଣ କହିବି ସେ କଥା, ଆମେ ଥାଉଁ ଫଉଜ ସାଙ୍ଗେ ସାଙ୍ଗେ ବାଟ ବତେଇ ଦେବାକୁ, ନ ହେଲେ ଏ ବଣ ପାହାଡ଼ ଭିତରକୁ ବାଟ ପାଆନ୍ତେ ସେମାନେ କେମିତି ? ସେମାନେ ଗୋଡ଼େଇ ଗୋଡ଼େଇ ମାରୁଥାନ୍ତି, ଘରେ ଥିଲେ ଗାଁ ଘେରେଉ କଲେ, ପାହାଡ଼ରେ ଚଢ଼ିଲେ ପାହାଡ଼ ଘେରେଇ କଲେ, ପଳେଇବେ କୋଉବାଟେ ?"

କୁନା କହିଲା "ସେମାନେ ଯେ ମଲେ ସେଇଠୁଁ କ'ଣ ହେଲେ ?"

ଲକ୍ଷ୍ମୀନାରାୟଣ କହିଲା, "ହେବେ ଆଉ କ'ଣ ? ଭୂତ ହୋଇଥିବେ ।"

ମିନି କହିଲା, "ଭୂତ !" ସେ ତା ବାପା ପାଖକୁ ଘଞ୍ଚି ହୋଇ ବସିଲା ।

କୁନା କହିଲା, "ମିଛ କଥା, ବାପା ତ କହନ୍ତି ଭୂତ ନାହିଁ, ମୁଁ ସେ କଥା ପଚାରୁନାହିଁ । ସେ ଯେଉଁମାନେ ମଲେ, ନାଳରେ ପଡ଼ି ରହିଲେ, ତାଙ୍କ ମୁର୍ଦ୍ଦାର କ'ଣ ହେଲା ?"

ଲକ୍ଷ୍ମୀନାରାୟଣ କହିଲା, "କ'ଣ ଆଉ ହବ ? ନାଳ ଭିତରଯାକ କାଉ, ଶାମୁଣା, ବଳୁଆ ସମସ୍ତେ ଆସି ଗଦା ହେଲେ, ଯେତେ ଆସିଲେ ଏତେ ମଡ଼କୁ କେମିତି ସଫା କରିବେ ? ସବୁ ପଚିଗଲା, ଗନ୍ଧ ଯେ ଏ ବାଟେ କେହି ଚାଲିପିବାକୁ ଉପାୟ ନାହିଁ, ଦିନ କୋଶ ଯାକେ ଖାଲି ସଢ଼ା ଗନ୍ଧ, ସବୁ ସଢ଼ି ପଚି ମାଟି ହୋଇଗଲା । ହାଡ଼ଗୁଡ଼ାକ ଏଠି ସେଠି ପଡ଼ି ରହିଥାଏ । କେତେବର୍ଷ ଯାଏଁ ସେ ବି ମାଟି ପଥର ହୋଇଯିବ । ଆଉ ତା କଥା କିଏ ପଚାରେ ? କନ୍ଧ ମେଳି ତ ଭାଙ୍ଗିଗଲା—"

କୁନି କହିଲା, "ଯେଉଁମାନେ ମଲେ ତାଙ୍କ ଘରେ କାନ୍ଦିଲେ ନାହିଁ ?"

ଲକ୍ଷ୍ମୀନାରାୟଣ କହିଲା "କାନ୍ଦିବେ ନାହିଁ ? ଗାଁ' ଗାଁ।' ମାଇକିନିଆମାନେ ଚୁ ଣ୍ଡି ହୋଇ ବାହୁନି ବାହୁନି, ଆସନ୍ତି ଦୌଡ଼ି ନାଳ ପାଖକୁ । ବସି ବସି କାନ୍ଦନ୍ତି, ଭୂଇଁରେ ଗଡ଼ନ୍ତି, ଆପଣା ବାଳକୁ ଓଟାରି ଓଟାରି ଛିଣ୍ଡାନ୍ତି, ନଖରେ ଆମ୍ପୁଡ଼ି ଆମ୍ପୁଡ଼ି ମୁହଁ ଗାଲ ଚିରି ଚିରି ନହୁଲୁହାଣ ହ'ନ୍ତି, ସଞ୍ଜହେଲେ ପୁଣି ଗ୍ରାମ୍ଭ ଯାଆନ୍ତି । ଶୁଣାହେଲା କୋଉ କୋଉ ମାଇକିନିଆ କାନ୍ଦି କାନ୍ଦି ବାୟାଣୀପରି ହୋଇ ନାଳକୁ ଡେଇଁପଡ଼ି ଆତ୍ମହତ୍ୟା କଲେ, କାନ୍ଦିଲେ କି ମରିଲେ, ଆଉ କ'ଣ ଗଲା ଲୋକ ଫେରି ଆସିବ ? ଯେ ମଲା, ସେ ମଲା । ତାପରେ କେଉଁଠା ବର୍ଷେ କାଳ ବନ୍ଦ ରହିଲା, ପୁଣି ଖୋଲିଲା । ସେତିକିବେଳେ କେତେ ବାହାର ଲୋକେ ପଶି ଆସି ଶସ୍ତାରେ ସବୁ ଜମି କିଣିନେଲେ, ଲୋକେ ତ ଡରିଗଲେ, ଯେ ଯାହା ମନ କଲା ତା ପାଇଗଲା । ଆସିଲେ ଜମି କିଣା ସାହୁକାର, ଋଣ ଦେବା ସାହୁକାର, ଜମି ସବୁ ସେମାନେ ନେଲେ, ଲୋକଙ୍କୁ ମୂଲ ଦେଇ ଖଟେଇଲେ, ରଜାକୁ ଖଜଣା ବାନ୍ଧିଲେ, ସବୁ ସୁବିଧା ହୋଇଗଲା । ଆମେ ଯୋଉ ଗାଁକୁ ଗଲେ ନିଶ୍ଚୟ ଚାରି ପାଞ୍ଚଜଣ ଭଦ୍ରଲୋକ ଥିବେ, ଶୁଣ୍ଢି କି ବ୍ରାହ୍ମଣ କି କୁମୁଟି ଭଲ ଅସାର ବୁଝିବେ, ଚର୍ଚ୍ଚା କରିବେ, ପିଣ୍ଡାରେ ବସା ଦେବେ, ଆଉ ଏ କନ୍ଧ ତ ତାଙ୍କ ତଳିଆ ଲୋକ; କିଏ ଋଣ ଧାରିଚି, କିଏ ଝମ୍ପାର, କିଏ ଗୋତି । ଭଦ୍ରଲୋକ ଆସି ଗୋରୁ ଚରେଇଲା ପରି ମଣିଷ ଚରେଇଲେ, ସିଏହିଁ ଗୃହିଁ ବଡ଼ଲୋକ ହେଲେ, ଏଇ ପାଖରେ ତ କେତେ କୋଠା କରିଚି ଚକୁଳି ପାତ୍ରୀ—"

ଚକୁଳି ନାଁଟା ଶୁଣି ଦୁଇ ପିଲ୍ କରକର ହୋଇ ହସିଲେ, କହିଲେ "ଚକୁଳି ଫେର୍ ମଣିଷର ନାଁ ହୁଏ ?"

"ଏଣେ ସେମିତି ହୁଏ" ଲକ୍ଷ୍ମୀନାରାୟଣ କହିଲା, "ଚକୁଳି ପାତ୍ରୀ ଖୁ ।ବଡ଼ଲୋକ, ଖାଲି ମଉଜ ଲୋକ, ବର୍ଷ ହେଲାକୁ ଛାଡ଼ି ତାର ପଇଶଟା ଖରଚ, ଅମାରର ଲେଖା ନାହିଁ, ସେ ପୁଣି ମେମ୍ବର ହେଇଚି, ଲୋକଙ୍କ ଭିତରେ ବାଘ, ଏମିତି କୌଶଳ ଜାଣେ ଯାହାକୁ ଇଚ୍ଛା ତାକୁ ସାଧି କରିଦେବ । ତାର ଗଣ୍ଡା ଗଣ୍ଡା ମକଦ୍ଦମା—"

ଲକ୍ଷ୍ମୀନାରାୟଣ ଏ ଦେଶର ବୁଢ଼ା ଚପରାସି । ମେଲ ଖୋଜିବା ପାଇଁ ଗୁଳ ଫାଷ୍ଟାର୍‌କୁ ସେ ସମ୍ଭ୍ରମ କରେ । ଚନ୍ଦୂଲ ମାଢ଼ୀ ସମ୍ମାନ କରେ, ତାର ଆଦର୍ଶ ବାପ. ପର ମଣିଷ । ତେଣୁ ସେ ଠିଆ ଠିଆ ଦାଣ ରହିଛୁ, ତନା ଫସକୁରେ ଖୋଲ ମୁଣ୍ଡ ଦେଖାଏ ନାହିଁ । ତା ପୋଷାକର ନଡ଼ ନଏ, ହୃଦାର ପିତ୍ତଳ ଫାଲକୁ ତେଲୁଳ ପାଗରେ ଗେଡ଼ି ଜକ ଜକ କରେ । ତା ଛଡ଼ା ସେ ପ୍ରସିଦ୍ଧ ଶିକାରୀ । ବାଘମାରୁ, ହରଣମାରୁ, ମୟୂରମାରୁ, ହରଡ଼ଚଢ଼େଇ ମାରୁ । ସେ ଶିକାର କରି ମାଂସ ବଢ଼େ, ଖାଏ ବ । ଶ୍ରୀଚରଣ ତାର ନୂଆ ଉପଦେଷ୍ଟ କର୍ମଗୁରୁ, ଦ' ମାସ ହୋଇନାହିଁ ବଦଳି ହୋଇ ଆସିଛୁ । ଲକ୍ଷ୍ମୀନାରାୟଣ ଖୋଜୁଛି ତାକୁ ଆପଣା ଅଭିଜ୍ଞତା, ସାଧାରଣଜ୍ଞାନ, ଦମ୍ଭକୁଶଳତା ଓ ବଚକ୍ଷଣତା ଦେଖାଇ ବଶ କରନେବ । ସେହି ମାଇଥିଲେ ରାଯ୍ଯଗଡ଼ରୁ କଲ୍ୟାଣସିଂପୁର । ଶ୍ରୀଚରଣେର ନୂଆ ସେହି ଯାଇଥିଲେ ନୂଆ ରାଜ୍ୟ ଦେଖି, ତା'ପରେ ଫେରୁଥିଲେ ।

ଗୁଳ ଫୁଟା ବର୍ଣ୍ଣନା ମାଡ଼ରେ ଶ୍ରୀଚରଣର ସ୍ୱପ୍ନ ଭଣିଭଣା ହୋଇ ଛିଣ୍ଡି- ଯାଇଥିଲା, ତା'ପରେ ସେ ଦେଖିଥିଲା ଦଶାଣିକା, ତା'ପରେ ସେ ଆଉ ଲକ୍ଷ୍ମୀନାରାୟଣ କଥାକୁ କାନ ଦେଉନାହିଁ, କିନ୍ତୁ ସେହି ବର୍ଣ୍ଣନା ସହିତ ସମାନ୍ତରାଳ ରେଖା ଟାଣିଲା ପରି ତାର ମନେ ମନେ ଚିନ୍ତା, ଦୁଃଖ, ଶୋକ, ରାଗର ତୋଫାନ ଗ୍ରକୁଥିଲା । ତାର ଘର ନୁହେଁ ଏ ଦେଶରେ, ସେ ପୁରୀ ଜିଲ୍ଲା ମଫସଲର ଲୋକ । ରେଲରେ ଆସିଲେ ଖୋର୍ଦ୍ଧା, ବ୍ରହ୍ମପୁର, ବିଜୟନଗର, ପାର୍ବତୀପୁର, ତାପରେ ରାଯ୍ଯଗଡ଼ା, କଟକରୁ ......... ମାଇଲ୍, ସ୍ଥଳର ଦୂରତାଠୁ ଅନ୍ତର ଅଧିକ ଦୃଶ୍ୟର ପାର୍ଥକ୍ୟ । ପ୍ରକାଣ୍ଡ ପ୍ରକାଣ୍ଡ ଲମ୍ବା ପର୍ବତ, ପୁଣି ଜଙ୍ଗଲ, ଖାଲ ଢିପ, ସବୁଠୁ ବେଶୀ ଅଲଗା ଏ କନ୍ଧ ଲୋକେ, ତାଙ୍କର ବୋଲି, ବେଶ୍ ରାଡ଼ମାଡ଼ । କିନ୍ତୁ ସେ ଅନୁଭବ କରିଥିଲା, ଏମାନେ ବ ସେହି ମଣିଷ । ଯାହା ହେଉ ତାଙ୍କ ବୋଲି, କି ଭେକ, କି ଦେଶ ।

ଏମାନେ ବ ସେହି ମଣିଷ, ଯେ ଭଲ ପାଏ, ରାଗେ, ଖୁସିରେ ହସେ, ଦୁଃଖରେ ଦୀର୍ଘଶ୍ୱାସ ପକାଏ, କାହା ସଙ୍ଗେ ନ ଲଗି ଆପଣା ଧନ୍ଦାରେ ଲାଗିରହି ତନା ଗଣ୍ଡଗୋଲରେ ଜୀବନ ବଞ୍ଚିବାକୁ ଗ୍ରହେଁ । ଗୋରୁ ପରି ମଣିଷ, ଖୋଜେ କିଛି ପୁଷ୍ଟି, କିଛି ଶାନ୍ତି, ଆଉ ଗୋଠର ସଙ୍ଗସୁଖ । ଗଛ ପରି ମଣିଷ, ପତ୍ର ଝାଡ଼ି ଝାଡ଼ି ଦନ ବିତାଏ, ଖରା ବରଷା ସହେ । ତୁଣ୍ଡରେ ବଡ଼ ବଡ଼ କଥା କହିଲେ ବ ପ୍ରକୃତରେ ସେ ହାଣକଟାକୁ ଭୟକରେ, ମରିବାକୁ ଡରେ, ମାରିବାକୁ ଘୃଣା କରେ, ଚମକେ, ମୋକ୍ଷ ଓ ନିର୍ବାଣର ଯଶ ଗାଇ ଗାଇ ସେ ସଂସାର ଜଞ୍ଜାଳକୁ ହିଁ ଭଲପାଏ ।

ତଥାପି ତା ଉପରେ ପଡ଼େ ହତିଆରର ମୂନ ଆଉ ଧାର ।

ଲୋଭ ଓ ସ୍ୱାର୍ଥର ଅରଣା ବାହୁନୀ ଖଣ୍ଡା ଉଞ୍ଚେଇ ଗୁଳ ଫୁଟେଇ ଘୋଡ଼ା

ଛୁଟେଇ ଧାଇଁ ଆସିଛନ୍ତି କେତେ ନଈ ନାଳ ସମୁଦ୍ର ପାହାଡ଼ ପାରି ହୋଇ ଜଗତ୍‌ଯାକର ଏହି ସାଧାରଣ ମଣିଷକୁ ଶିକାର କରିବାକୁ, କେତେଥର ! କେତେଥର !

ପଛେ ପଛେ ଆସିଛି ସେହି ବର୍ବର ଅଭିଯାନର ଫଳଭୋଗୀ ଔପନିବେଶିକ ନୀତି, ବିଜେତା ହେବ ଭୂମିର ମାଲିକ, ବିଜିତ ସେ ଜମିରେ ମଜୁରିଆ । ବିଜିତ ଶସ୍ୟ ଉପୁଜେଇବ, ବିଜେତା ତାକୁ ବୋହି ନେବ । ଶସ୍ତାରେ ନହେଲେ, ସୁଧ ମଜୁରିରେ, ଭାଗ ମଜୁରିରେ । ବିଜିତର ଶ୍ରମକୁ ଏକାଠି କରି ବିଜେତା ଗଢ଼ିବ ଫ୍ୟାକ୍‌ଟେରି, ଇଣ୍ଡଷ୍ଟ୍ରି, ପ୍ରକାଣ୍ଡ ପ୍ରକାଣ୍ଡ କଳକାରଖାନା, କ୍ରମେ ବିଜିତ ଭୁଲିଯିବ । ସେ ବିଜିତ, ଭାବିବ ଏ ଭଗବାନଙ୍କ ନିୟମ, ଏ ପରିସ୍ଥିତିରେ ଈଶ୍ୱରସୃଷ୍ଟ ପରିବେଷ୍ଟନୀ ଭିତରେ ସେ ଜଣେ ଝଟିଖିଆ କାରିଗର, ତାର ଭାଗ ଏତିକି, ଆଉ ଅଧିକ ନୁହେଁ ।

ମଣିଷ ମଣିଷମାଂସ ଖାଏନାହିଁ, ଖାଏ ସେହି ମାଂସର ଅସ୍ତିତ୍ୱର ଉପକରଣ, ଶ୍ରମ, କ୍ଷେତ । କେତେଥର ଆସିଛନ୍ତି, ଏ ଧରଣା ବାହିନୀ ! ଅନାର୍ଯ୍ୟ ପରେ ଦ୍ରାବିଡ଼, ଦ୍ରାବିଡ଼ ପରେ ଆର୍ଯ୍ୟ କଳାଲୋକଙ୍କ ପଛେ ଧଳାଲୋକ, ଆଉ କୋ କଥା—ଦକ୍ଷିଣ ଆଫ୍ରିକା କି ମାଲୟ, କି ସିଂଗାପୁର, କି କଲ୍ୟାଣସିଂପୁର ।

ଆଉ ସେହି ହତିଆର ମାଡ଼ର ବିଜୟ ପଛେ ପଛେ କମିଅଁ ପାଣି ଛିଞ୍ଚି ବିଜିତର ମନକୁ ଆଶ୍ୱସ୍ତ କରିବା ପାଇଁ ଆସିଛନ୍ତି ଧଳା ଭେକ ପିନ୍ଧି ଧର୍ମଯାଜକ ପୁରୋହିତ ଦଳ, ବେଦ ଗାଉଛନ୍ତି । ଶାନ୍ତ ସଂଯତ ଭାଷାରେ ବୁଝାଇଦେଉଛନ୍ତି—ଜୀବନ କ୍ଷଣଭଙ୍ଗୁର, ପରକାଳ ସ୍ୱର୍ଗ ଓ ଭଗବାନଙ୍କଠିଁ ବିଶ୍ୱାସ କରି ଶାନ୍ତିରେ ରହ, ଯାହା ହେଲା ହେଲା, ସେ ଯାହା ମାଡ଼ିବସିଲା ମାଡ଼ିବସିଲା, ତୁମେ ଆଉ ଖୁଣ୍ କର ନାହିଁ, ଭଜନ କର ।

ସଞ୍ଜ ସରି ରାତି ଆସିଛି । ଗାଡ଼ି ଚାଲିଛି ରାସ୍ତାଗଡ଼ା ଅଭିମୁଖରେ । ସେମାନେ ଆଉ ନାହାନ୍ତି, ନୁଖୁରା ବାଳ ଉଡ଼େଇ କୌପୁନୀ ପିନ୍ଧି ଛପ ସେପାଖେ ଦଳ ଦଳ ହୋଇ ଜମା ହୋଇଥିଲେ ଯେଉଁମାନେ ଶ୍ରୀଚରଣର ଚେତନା ଭିତରେ, ନିମନ୍ତ୍ରଣ କରୁଥିଲେ ପରା—"ଆସ, ଆମ ଗାଁରେ ରହିଯା, ଏ ତୁମ ଘର, ଏମାନେ ତୁମ ପିଲାଛୁଆ, ଏ ତୁମ ଗାଁ, କାରଣ ତୁମେ ବି ମଣିଷ ।" ସେମାନେ କଳ୍ପନା ଗଢ଼ା ମଣିଷ, ସେମାନେ ଆଉ ନାହାନ୍ତି ଧୂଳିମାଟିରେ ଟଳି ପଡ଼ିଛନ୍ତି । ଏ ମାଟିରେ ମିଶିଛି ତାଙ୍କ ହାଡ଼ ମାଂସ । ସେହି ଝଟରି ହାଡ଼ ଉପରେ ନାଳି ରାସ୍ତା ଲମ୍ବି ରହିଛି ସାପ ପରି, ଆଉ କଳ ଗାଡ଼ି ଚାଲୁଛି, ଅଟକୁନାହିଁ, ମାଡ଼ି ଦଳି ଚାଲିଛି । ସେଥିରେ ବସି ରହିଛି ସେ ନିଜେ—ଶ୍ରୀଚରଣ ।

ଅନ୍ଧାରରେ ଖାଲି ସାମ୍ନା ରାସ୍ତାରୁ ଦିଶୁଛି କିଛି ଦୂର, ମଟରର ଆଲୁଅ ପଡ଼ିଛି, ଆଗରେ ମଟର ଚାଳକ ଓ ଲକ୍ଷ୍ମୀନାରାୟଣ, ପଛରେ ଶ୍ରୀଚରଣ ଓ ତାର ପିଲା ଦିହେଁ । ଲକ୍ଷ୍ମୀନାରାୟଣ ବନ୍ଧୁକରେ ଗୁଳି ପୁରେଇ ଠିକଣା ହୋଇ ଅପେକ୍ଷା କରିଛି, ସେ କହି ଦେଇଛି ମଟରର ଆଲୁଅରେ ଜନ୍ତୁର ଆଖି ଜୁଳୁଜୁଳୁ ଦିଶିବ, ଦୂରରୁ

ବାର ହେବ, ତେଣୁ ପିଲ ବଢ଼େଁ ଗୁନହୋଇ ଅନେଇଁ ବସିଛନ୍ତି, ସମସ୍ତେ ମିଶି-ଯାଇଛନ୍ତି ଗୋଟାଏ ଅଜ୍ଞାତ ଉତ୍କ୍ରେକ୍ଷାରେ ।

ଆଗରେ ବାରମ୍ବାର୍ ଦଶୁଛି ଗୋଟାଏ ଲେଖା ସାନ ସାନ ନାଲି ଅଖି । ଯେପରିକ ରସ୍ତାରେ କିଏ ନଆଁ ଟିକିଏ ଥୋଇ ଦେଇ ଯାଇଛି । ସେ ଗୋଟିଏ ଚଢ଼େଇର ଅଖି, ମଟର ଆଲୁଅରେ ପୋଡକ ବେଡ଼ନ୍ତି ବୋଲି, ଲଣକଆ ହୋଇ କସି ପୋଡକ ଖାଏ, ପାଖକୁ ଅସିଲେ ଫଡ଼ ଫଡ଼ ହୋଇ ଉଡ଼ିଯାଏ । ଦୂରକୁ ଦଶିଲ ଏଥର ଯୋଡ଼ ଅଖିର ସାବ୍‌ଜା ଆଲୁଅ, ଡ୍ରାଇଭର ଆସ୍ତେ କହିଲ, "ବାଘ", ଅଉ ବେଗ ବଢ଼େଇଲ । ଲକ୍ଷ୍ମୀନାରାୟଣ ବନ୍ଧୁକ ଟେକିଲ । ରସ୍ତାର ବାଁରୁ ତାହାଙ୍କୁ ପ୍ରାଣ ବିକଳରେ ଧାଇଁଗଲ ଗୋଟିଏ ବିଲୁଆ । ସ୍ଥାନେ ସ୍ଥାନେ ଅନ୍ଧୁର ଜୁକୁଜୁକୁ ଅଖି, ଆଖୁଣ ବିଲୁଆ । ଆଲୁଅରେ ଜଳକା ହୋଇ ରହିଗଲ ଠେକୁଅଟିଏ, ମଟର ପାଖକୁ ଆସନ୍ତେ ଜୀବନ ଲେଉରେ ଆଗେ ଆଗେ ଧାଇଁ ଚ୍ଚଲଲ, ପାରୁ ନାହିଁ, ମଟର ତା ପାଖକୁ ପାଖକୁ ମାଡ଼ି ଅସୁଛି । କି ଛଟପଟ ! ବଡ଼ ବଡ଼ କାନ ଦୋଟି ଟେକି ଦେଇଛି, ଟିକି ଲଞ୍ଜଟି ଉପରକୁ ଟେକି ଦେଇଛି ତା ତଳ ପାଖର ଧଳା ଗାର । ପିଲ ବଢ଼େଁ ଉଲ୍ଲାସରେ ପାଟି କଲେ, ଏଥର ସେ ଗାଡ଼ି ତଳେ ମରିବ । କିନ୍ତୁ ଶ୍ରୀଚରଣ କହିଲ, "ଡ୍ରାଇଭର, ଗାଡ଼ି ସ୍ଲୋ କର, ସେ ଯାଉ ।" ଗଲ ସେ; ରସ୍ତାର ଗୋଟାଏ କରରେ ବୁଦା ଭିତରେ ଶରଣ ନେଲ । ଲକ୍ଷ୍ମୀନାରାୟଣ କହିଲ, "ଖର ନରମ ମାଂସ ଅଜ୍ଞା, ଖର ସୁଆଦ ।" ଶ୍ରୀଚରଣ କହିଲ, "ଥାଉ, ଆମେ ଖାଉ ନାହିଁ ।" ଅନ୍ଧାରରେ ହଠାତ୍ ବାହାର ପଡ଼ନ୍ତି ଠେକୁଅ । ଖଣ୍ଡେ ଦୂର ଦଉଡ଼ନ୍ତି, ପୁଣି ଲୁଚିଯାଆନ୍ତି । ବେଳେ ବେଳେ ମଟର ସାମ୍ନାରେ ହାରୁଡ଼ନ୍ତି ଗୋଟିଏ ଲେଖା ବିଲୁଆ, ସେମାନେ ବି ଜୀବନ ବିକଳରେ ଦଉଡ଼ନ୍ତି, ମରଣ ହାତରୁ ଆତ୍ମରକ୍ଷା କରିବାକୁ ପ୍ରାଣୀ ଅସମ୍ଭବକୁ ବି ସମ୍ଭବ କରେ, ଘଣ୍ଟାକେ ୩୦ ମାଇଲ । ଜୁକୁଜୁକୁ ଅଖି ରସ୍ତାଏ ରସ୍ତାଏ, ଠେକୁଅର, ବିଲୁଅର । ଆଗରେ ଫେର୍ ଦି'ଟା ବଡ଼ ବଡ଼ ସାବ୍‌ଜା ଅଖି । ଭୂଇଁ ପଦ୍ଧନ୍ତୁ ଦି'ହାତ ଉଞ୍ଚରେ ଦଶୁଛି । ଏଥର ଲକ୍ଷ୍ମୀନାରାୟଣ କହିଲ, "ବାଘ", ଶ୍ରୀଚରଣ ଉତ୍ସୁକ ହୋଇ ଚାହିଁଲ । ମାଡ଼ି ଚ୍ଚଲଲ ଗାଡ଼ି ଉଲ୍‌କା ପରି, ଆଗରେ ମଟର ଆଲୁଅକୁ ଅନାଇଁ ଠିଆହୋଇଛି ଜନ୍ତୁ, ଦେହଯାକ ପଟା ପଟା । ଡ୍ରାଇଭର କହିଲ, "ପଟାଳିଆ ବାଘ, ମହାବଳ ।" ଲକ୍ଷ୍ମୀ ନାରାୟଣ ବନ୍ଧୁକ ଟେକିଲ । କିନ୍ତୁ ଜନ୍ତୁଟା ଥରେ ଏକରକୁ ଥରେ ସେକରକୁ ଡିଅଁ ମାରି ସିଧା ଦଉଡ଼ିଲ । ବାଘ ନୁହେଁ ଗୋଟିଏ ଗଧିଆ । ବାଘ ପରି ଦେହର ବର୍ଣ୍ଣ, କୁକୁର ପରି ମୁହଁ, ଦି'ଟା ଗୋଡ଼ ଖ୍ଲେଟ, ଦି'ଟା ଗୋଡ଼ ଉଞ୍ଚ, ତେଣେଁ ତେଣେଁ ଗଲବେଳେ ଏମିତ ବିକୃତ ଭଙ୍ଗୀରେ ଯାଏ ଦେଖିଲେ ହସମାଡ଼େ । ଗଧିଆ ହଟହଟା ହୋଇ ଧାଇଁଛି, ପିଲ ବଢ଼େ ହସୁଛନ୍ତି । ଶ୍ରୀଚରଣ କହିଲ "ଥାଉ ଲକ୍ଷ୍ମୀ ନାରାୟଣ, ଯାଉ ସେଇଟା ।" ଗଧିଆ ବି ଗଲ । ଆଗରେ ମେଞ୍ଚାଏ ଅନ୍ଧାର ମଟର ଅଗରେ ଏକର ସେକର

ହେଉଛି । ପାଖକୁ ଗଲବେଳକୁ ଗୋଟାଏ ବଡ଼ ଭାଲୁ । ମୁହଁକୁ ତଳକୁ ପୋତିଛି । ପଛଗୋଡ଼ ଦି'ଟାରେ ଭୂଇଁରେ କୁଦୁଛି, ଭୁଲିଯାଉଛି ଏକର ସେକର । ପିଲାଏ ପାଟି କଲେ "ମାର୍ ମାର ।" ବାପା କହିଲେ, "ନା ।" ଭାଲୁ ବି ରକ୍ଷା ପାଇଲା । ତା'ପରେ ଶ୍ମଶାନ ରାସ୍ତା ।

ପିଲାଏ ହତୋତ୍ସାହ ହେଲେ, "ଯାଃ ବାପା, ମାରିଲ ନାହିଁ !"

କହିବେ ତ ପିଲାଏ, ଶ୍ରୀଚରଣ ଭାବିଲା, କେବଳ ବୟସରେ ପିଲା ନୁହନ୍ତି, ମନରେ ପିଲା, ଯେତେ ଯେତେ ଦାୟିତ୍ୱହୀନ ଅପରିଣାମଦର୍ଶୀ ସ୍ୱାର୍ଥବାଦୀ ଗୋଷ୍ଠୀର ମଣିଷ, ସମସ୍ତେ ଚିତ୍କାର କରିବେ ମାର ମାର, ମାର । ସମସ୍ତେ ଯେଉଁମାନେ ବାଇସ୍କୋପ୍ ଘରେ ବସି ପର୍ଦ୍ଦାରେ ଦେଖନ୍ତି ହାଣକାଟ, କଳ୍ପନାରେ ଦେଖନ୍ତି, ଉପନ୍ୟାସରେ ଦେଖନ୍ତି, ହିଂସ୍ରିକା ଅନୁଭବ ନକରି ଉପଭୋଗ କରନ୍ତି ବଳର ଉତ୍କର୍ଷ, ସେହି ମରଣ ଉଲ୍ଲାସରେ ତାଙ୍କର ଅହମିକା ଉଚ୍ଚ ଉଠିବା ଚରିତାର୍ଥ କରିବେ ହିଁ ସେମାନେ, ସେହିମାନଙ୍କୁ ଏକାଠି କରି ପଛଆଡ଼େ ଥାଇ ସ୍ୱାର୍ଥର କୂଟ-ନୀତି ସଫଳ କରିବାକୁ ଚକ୍ର କରୁଥିବେ ଯେତେ ସ୍ଥିରବୁଦ୍ଧି ଚକ୍ରୀ, ସେମାନଙ୍କ ଉତ୍ସାହକୁ ଖୋରାକ ଯୋଗାଉଥିବେ । ପରେ ଯୁଦ୍ଧ ଭୂଇଁରେ ଶୁଳ୍କ ମୁହଁରେ ମାରି ଭୂତ ହେବାକୁ ଓହ୍ଲେଇ ପଡ଼ିବେ ଏହି ଅପରିପକ୍ୱ ବୟସ ଓ ଚରିତ୍ରର ପଟୁଆଳି, ଆମେରିକାର ସ୍କୁଲଗୁଡ଼ା ବନ୍ଧୁକ ଧରି ଓହ୍ଲେଇ ପଡ଼ିବ ଏସିଆର ରଣଭୂମିରେ । ଶ୍ରୀଚରଣ ଭାବିଲା, ଅନ୍ଧାରରେ ଆଲୁଅ ଦେଖି ଧାଇଁ ଆସିଥିଲା ବଣର ବାସିନ୍ଦା ସାନ ଠେକୁଆ, ଆଲୁଅ ପଡ଼ୁ ପଡ଼ୁ ସେ ବି ଯାଇଥାନ୍ତା ଉଡ଼ି, ଯାଃ; ମରିନାହିଁ, ବଞ୍ଚିଛି । କିନ୍ତୁ କେତେ ଜଣ ରହିବେ ? କେତେଦିନ ବଞ୍ଚିବ ? ତାପରେ ଏଇ ରାସ୍ତା ଥିବ, ଏଇ ମଟର ଚାଲିବ, ଠେକୁଆ ନଥିବ ମରିବାକୁ ।

ଭାବନାକୁ ଅଟକେଇ ଦେଇ ଦୂରରେ ପୁଣି ପାଖକୁ ପାଖ ଦୁଇଟା ସାବ୍‌ଜା ଟର୍ଚ୍ଚ'ଲାଇଟ୍ ବଡ଼ ବଡ଼ ଆଲୁଅ, ଦୁଇ ଆଲୁଅ ମଝିରେ ଫାଙ୍କ ଅଛି, ତଳୁ ଥାଉଥାଇ ହାତ ଉଚ୍ଚରେ । ଆସ୍ତେ ଏକର ସେକର ହେଉଛି, ଧାଇଁ ପଳେଇ ନାହିଁ । ଧୀରେ ଚାଲିଗଲା ରାସ୍ତାର ବାଁ ପାଖକୁ, ମୁଣ୍ଡ ନୁଆଇଁ ଅପେକ୍ଷା କଲା । ଗାଡ଼ି ଅଠ ଚଷଲ ପନ୍ଦର ଗଲଣି ତ ପାଖକୁ । ଡ୍ରାଇଭର ଆସ୍ତେ କହିଲା 'ବାଘ', ଗାଡ଼ିକୁ ରାସ୍ତାର ଏପାଖ ସେପାଖ ବୁଲେଇ-ଦେଇ ମଟର ଆଲୁଅ ପକେଇ ରଖିଲା ବାଁ ପାଖକୁ । ସମସ୍ତେ ଚୁପ୍‌ଚାପ୍ । ପ୍ରକୃତରେ, ଗୋଟାଏ ବଡ଼ ଚିତା ବାଘ । କାନ ପାରି ଦେଇଛି, ପାଟି ଅଳ୍ପ ମେଲା, ଆଖି ଦାଉ ଦାଉ ଜଳୁଛି, ବାଁ ପାଖରେ ଖାଲ ଭିତରେ ଗଛ ଏପାଖେ ଠିଆହୋଇ ରହି ଆଲୁଅକୁ ଚାହିଁଛି । ଫୁଲୁକା ମୁହଁ ଉପରେ ନିଶ ଯୋଡ଼ିକ ଏକର ସେକର ହଲୁଛି, ଯେପରିକି ସେ ପବନରୁ ବିପଦକୁ ବାରିବାକୁ ଚେଷ୍ଟା କରୁଛି । ଅନ୍ଧାରରେ ବନ୍ଧୁକ ସଳଖି ନେଇଛି ଲକ୍ଷ୍ମୀ-ନାରାୟଣ, ଡ୍ରାଇଭର ଗାଡ଼ି ଅଟକେଇ ବାଘ ମୁହଁକୁ ଟର୍ଚ୍ଚ'ଲାଇଟ୍ ପକେଇଛି ।

ହେବ ଚଉଦ ହାତ ଦୂରରେ ମୋଟେ । ତାପରେ ବନ୍ଧୁକର ଢାଇ, ବାଘଟା ତଳେ କଚ୍ଛିଡ଼ ହୋଇ ପଡ଼ିଲା, ପୁଣି ବେକଟେକ ଘୂରି ହୋଇ ଘୁଞ୍ଚିଗଲା ପଥର ସେପାଖକୁ । ଲକ୍ଷ୍ମୀନାରାୟଣ ରସ୍ତାକୁ ଓହ୍ଲେଇ ପଡ଼ିଲଣି । ବନ୍ଧୁକ ଉଞ୍ଚେଇ ପୁଣି ଦ'ଥର ଢୋ ଢା । ବାଘଟା ଗୋଡ଼ ହାତ ଗ୍ରୁଟି ପାଖ ଅଗ୍ରକ ଆମ୍ପୁଡ଼ ପକାଇଲା, ତାପରେ ଛେଚା ହୋଇ ପଡ଼ିରହିଲା ।

ପିଲାଏ ପାଟି କଲେ, "ଢିବା, ଢିବା—"

ଲକ୍ଷ୍ମୀନାରାୟଣ ସମସ୍ତିଙ୍କୁ ଅଟକିବାକୁ ନିର୍ଦ୍ଦେଶ ଦେଇ ବନ୍ଧୁକରେ ଗୁଳି ପୁରେଇ ଦଣ୍ଡେହାତ ଆଗକୁ ଗଲା, ସିଧା ବାଘର ମୁଣ୍ଡକୁ ଲକ୍ଷ୍ୟ କରି ପୁଣି ଏକ ଗୁଳି ଛୁଡ଼ିଲା, ବାଘର ଛଟପଟ ବି ନାହିଁ । ଏଥର ସେ ଅନ୍ତୁରି ଆଗକୁ ଗଲା, ବାଘ ଉପରକୁ ଖଣ୍ଡେ ପଥର ଫୋପାଡ଼ିଲା, ତଥାପି ତାର ଉଁ ଚୁଁ ନାହିଁ । ଅଗକୁ ଦାଇ ପାଟିକଲା "ମଲଣି, ଅସନ୍ତୁ ସମସ୍ତେ ।"

ଏଥର ଉଲ୍ଲାସର ସୀମା ନାହିଁ । ଆଗେ ଆଗେ ଧାଇଁଯିବା ପାଇଁ ଶ୍ରୀଚରଣ ପିଲାଙ୍କ ସଙ୍ଗେ ପ୍ରତିଦ୍ୱନ୍ଦ୍ୱିତା କଲା, ସମସ୍ତିଙ୍କର ଉଚ୍ଚାଟ କୁହାଟ, ଲକ୍ଷ୍ମୀନାରାୟଣ ବାଘର ଲାଙ୍ଗୁଡ଼ ଧରି ଘୋଷାରି ଘୋଷାରି ମଡ଼ଟାକୁ ଆଣୁଛି ମଟର ପାଖକୁ, ଏ ଯେପରିକି ତାର ସାଧାରଣ କାମ, ଗୀରତ୍ୱ ସେ ପ୍ରକାଶ କରୁନାହିଁ । କହିଲା "ବୃଥାଟାରେ ଗୁଳିଟା ଗୁଳି ଖର୍ଚ୍ଚ ହେଲା । ସେଇ ପ୍ରଥମ ଗୁଳିଟାରେ ହିଁ ଚଳିଥାନ୍ତା ଯେ, ଖାଲି ଟିକିଏ ଡେରି ହୋଇଥାନ୍ତା, ଭଲ କରି ମରିଚ କି ନାହିଁ ଜାଣିବାକୁ ଲାଗନ୍ତା ଘଣ୍ଟାଟିଏ, ନଇଲେ ବାଘ ଘାଉଡ଼ା ହୋଇ ଗାଲି ପାରି ଶୁଏ, ପାଖକୁ ଗଲେ ମାଡ଼ି ବସେ ।"

"ଭଲ ଲକ୍ଷ ଅଛି ତମର ଲକ୍ଷ୍ମୀନାରାୟଣ, ଅନ୍ଧାରେ ଅନ୍ଧାରେ ଲକ୍ଷ କରିନେଲ, ମୁଁ ଏମିତିକା ଖୁବ୍ କମ୍ ଦେଖିଛି ।" ଶ୍ରୀଚରଣ ଅଭିନନ୍ଦନ ଜଣାଇଲା, କିନ୍ତୁ ଲକ୍ଷ୍ମୀନାରାୟଣ ତା'ର ସବୁ ବଳ ପ୍ରୟୋଗ କରି ସେହି ବାଘକୁ ଘୋଷାରି ଲାଗିଛି, ହାତ ଲଗେଇଲାଣି ଡ୍ରାଇଭର, କହିଲା, "ଖୁବ୍ ବଡ଼ ଚିତାବାଘଟାଏ ଏଇଟା । ଲକ୍ଷ୍ମୀନାରାୟଣ ପୁରସ୍କାର କେତେ ଟଙ୍କା ପାଇବ ?"

ଲକ୍ଷ୍ମୀନାରାୟଣ କହିଲା, "ଯେତେ ବଡ଼ ହେଲେ କ'ଣ ହେବ ? ଚିତା-ବାଘ ତ, କୋଉ ମହାବଳ ହୋଇଚି ? ମହାବଳ ହେଲେ ସିନା ପୁରସ୍କାର ଶହେ ଟଙ୍କା, ଏଇଟା ପାଇଁ ମିଳିବ ମୋଟେ ପଇଁତିରିଶ ଟଙ୍କା, କି ଆହୁରି କମ୍, କେତେ ଦେବେ କେଜାଣି ?

"ନା ନା, ତୁମେ ପଇଁତିରିଶରୁ କେବେ ଉଣା ପାଇବ ନାହିଁ" ଶ୍ରୀଚରଣ କହିଲା, "ଛାଲଟା ମୁଁ ନେବି ଟ୍ୟାନିଂ କରିବାକୁ ପଠେଇବି ।"

"ଛାଲ ତ ଆପଣଙ୍କର, ଆଉ କଏ ନେବ ?"

ପିଲାଏ ନାନା ପ୍ରଶ୍ନ କଲେ, ଏ ମଣିଷ ଖାଇଛି ନା ନାହିଁ, ଏହାଠୁ ଆଉ ବଡ଼ ବାଘ ଅଛି କି ନାହିଁ, ଇତ୍ୟାଦି । ଆଉ ତାର ନଖ, କାନ, ଲାଞ୍ଜ, ମୁଣ୍ଡ ସବୁ

ଅଇଁପିବାକୁ ଲଗିଲେ । ଦୁଇ ପିଲ ଏପରପର ନାଚୁଥାନ୍ତି, ସେମାନେ ବ ଏ ଶିକାରରେ ଭାଗୀ । ଲୁନା କହିଲ, "ନା, ମୁଁ ଆଗ ବାଘକୁ ଦେଖିଲି ।" ମିନ କହିଲ, "ନା, ମୁଁ ଆଗ ଦେଖିଲି ।" ଦୁହିଁଙ୍କ ଭିତରେ ମାଡ଼ଗୋଳର ସୂତ୍ରପାତ ହେଲ । ଶ୍ରୀଚରଣ ଦୁହିଁଙ୍କୁ ଗାଳି ଦେଇ କହିଲ, "ଘୁଞ୍ଚି ଯାଅଁକୁ ।"

କେବଳ ସେହି ବାଘ କଥା, ପ୍ରତ୍ୟେକେ ଅନୁଭବ କଲେ ଯେପରିକି ସେ ନିଜେ ଏ ବାଘକୁ ମାରିଛନ୍ତି । ମହାସମାରୋହରେ ଟେକାଗଲ ସେ ବାଘ ମଟରର ଛାତ୍ ଉପରକୁ, କାଠିକର ପାଠ, ଦନ୍ତୁରି ଡାଲ ଟେକି ଥୋଇ ମୁଣ୍ଡେଇ ବାଘେଇ ଉନଜଣ ଲୋକ ଝାଳନାଳ । ଅବଶେଷରେ ସେ ଛାତ୍ ଉପରେ ହିଁ ଅନ୍ତିମଶଯ୍ୟାରେ ଶୋଇରହିଲ, ଅବିକଳ ମାଡ଼ିବସିବା ଭଙ୍ଗୀରେ, ମୁଣ୍ଡ ରହିଲ ମଟରର କାଚ ଆଡ଼କୁ ।

ମଟର ଷ୍ଟାର୍ଟ୍ ହେଲ, ଶୁଭିଲ ସତେକି ପଛକୁ କ'ଣ ମ୍ୟାଓଁ ମ୍ୟାଓଁ ବୋବାଳି । ମଟରର ଘଡ଼ଘଡ଼ିରେ ସେ ବୁଡ଼ିଗଲ ।

ଲୁନା କହିଲ, "କ'ଣ ଏମିତି ବୋବେଇଲ ବାପା, ଯେମିତି ବିଲେଇ ବୋବାଏ—"

ଶ୍ରୀଚରଣ କହିଲ, "ଧେତ୍ ଫାଙ୍ଗୁଲା ଟୋକା, ବାଘ ତ ମରିଚ ଆଉ ବୋବେଇବ କିଏ ?"

ମଟର ଚାଲିଲ, କାଚ ବାଟେ ଲୁନ ଟର୍ଚ୍ଚ ଆଲୁଅ ପକେଇଲ; ପାଟିକଲ "ହେଇ ଦେଖ ପଛରେ ସେମିତି ଫେର୍ ଦି'ଟା ଆଖି ଦିଶୁଛି ।"

ଲକ୍ଷ୍ମୀନାରାୟଣ ଆଖି ପିଛୁଳାକେ ପଛକୁ ଅନେଇ ଦେଲ, ମଟର ଚାଲୁଛି; ଦୂରେଇ ଯାଉଛି । କିଛି ନ ଦେଖିଲ ପରି ମୁହଁ ବୁଲେଇ ନେଲ ।

ଲୁନା କହିଲ, "କାହିଁ କୋଉଠି କାହା ଆଖି ଦିଶୁଛି ?"

ମିନ କହିଲ, "ମୁଁ ନିଜେ ଦେଖିଲି, ଟର୍ଚ୍ଚ ଆଲୁଅରେ ଜଳ ଜଳ ଦିଶିଲ ।"

ଶ୍ରୀଚରଣ କହିଲ, "ଏଥର ତୁ କାନ୍ଧରେ ବାଡ଼ରେ ଖାଲି ବାଘ ଆଖି ଦେଖିବୁ ଯେ..." ।

ଲକ୍ଷ୍ମୀନାରାୟଣ ଅନ୍ଧକାରରେ ହସିଦେଲ । ଏମାନେ ଜାଣନ୍ତି ନାହିଁ, ସେ ଜାଣେ ।

ଗାଡ଼ି ବୁଲେଇବାକୁ କହି ଉତ୍କ୍ଷିପ୍ତା ବାଘୁଣୀର ମୁହାଁମୁହିଁ ହେବାକୁ ତାର ଇଚ୍ଛା ନାହିଁ । ଭାବିଲ, ଆଜି ଏ ଗୋଟାକହିଁ ଯଥେଷ୍ଟ, ଫେର୍ ଆଉ ଦିନେ ।

ଶ୍ରୀଚରଣ ଜାଣିପାରିଲ ନାହିଁ । ଚାଲି ଯାଉଥିବା ମଟର ପିଠି ଆଡ଼ ଆଲୁଅକୁ ଅନାଇଁ ରାସ୍ତା ଉପରେ ବହୁତ ବେଳ ଠିଆ ହୋଇ ରହିଲ ଗୋଟିଏ ବାଘୁଣୀ; କୂଦ ବୁଲୁଥିଲେ ତା'ର ଛୁଆ ଯୋଡ଼ିକ, ତା'ପରେ ସେ ବାଘ ଘୋଷରା ହୋଇଥିବା ବାଟ ଶୁଙ୍ଘି ଶୁଙ୍ଘି ବାଘ ଗୁଳି ଖାଇଥିବା ସ୍ଥାନକୁ ଗଲ, ଟୋପା

ଚୋପା ରକ୍ତରେ ଭିଜି ଲଗାଇଲା ।  ମୁହଁ ଟେକି ଗର୍ଜନ ଗୁଡ଼ ଧାଡ଼ିଗଲା ।  ପୁଣି ରାସ୍ତା ଉପରକୁ, ସେଠୁ ପୁଣି ସେଇ ମୂଳମାଡ଼ ଜାଗାକୁ, ପୁଣି ରାସ୍ତା ଉପରକୁ, ଦୁଃଖରେ ରାଗରେ ଗର୍ଜନ କରି କରି ସେଇ ଅସ୍ୱାଭାବିକ ଖେଳ ଚାଲିଲା, ଯେତେବେଳେ ମଟର ନାହିଁ, ମଣିଷ ନାହାନ୍ତି, ଠେକୁଆ କାହିଁ କେଉଁ ବୁଦା କନ୍ଦରେ ଲୁଚିଲେଣି ।  ରହି ରହିକା ବଡ଼ ବଡ଼ ପିଲା ଦୁହିଁଙ୍କ ସଙ୍ଗରେ ଧରି ସେ ଏଥର ଜଙ୍ଗଲଆଡ଼େ ଚାଲିଗଲା ।

ମଟର ଚାଲିଛି, ଝୁଡ଼ ଉପରେ ନଡ଼ ନଡ଼ ହେଉଛି ବାଘର ଶବ ।

"ଓଃ ! ବାଘଟା ମଲା ତାହେଲେ !" ଶ୍ରୀଚରଣ ଭାବିଲା ।  ବାରମ୍ବାର ସେଇ ଶବ ଆଡ଼କୁ ଚାହିଁ ନିଜକୁ କହି ଲାଗିଲା, "ଏ ମରିଚି, ଏ ମରିଚି ।" ଏତେ ତା'ର ବଳ, ଏଡ଼େ ଭୟାନକ ସେ, ସେ ମରିଚି ।

କେତେ ଜନ୍ତୁ ଖାଇଥିବ, ହୁଏତ ମଣିଷ ଖାଇଥିବ, ଆଉ ସେ ଖାଇବ ନାହିଁ ।  ଏମିତି ମରିବେ ଯେତେ ହିଂସ୍ରକ ପ୍ରାଣୀ ସମସ୍ତେ; ତେବେ ପୃଥିବୀ ନିରାପଦ ହେବ ।'

ସାମ୍ନାରେ ସେଇ ଶବଟା ମୁଣ୍ଡ ହଲଉଚି ।

ଶ୍ରୀଚରଣ ମନେ ମନେ ତା ବିରୁଦ୍ଧରେ ଗଢ଼ିଲାଗିଲା ଅଭିଯୋଗ ତାଲିକା— ଏ ବାଘ, କାଲ୍ପନିକ ମଣିଷଖାଏ, ସ୍ୱାଳୁ ମାରିବାକୁ କାରଣ ରହିଛି ।  ସମାଜର ଶତ୍ରୁ, ମଣିଷର ଶତ୍ରୁ, ତାକୁ ମାରି ପକାଇବାହିଁ ଉଚିତ ।

ମନ ଭିତରୁ ସା' ଦେଲା ବହି-ଘୋଷା ଦର୍ଶନ ଶାସ୍ତ୍ର—ମଣିଷ ଆବଶ୍ୟକ ଥିବାରୁ ମାରେ, ଭଗବାନ ନିଜେ ତ ଅର୍ଜୁନଙ୍କୁ ବୁଝାଇଛନ୍ତି—ସେଥିରେ ମାୟା ନାହିଁ, ମମତା ନାହିଁ, ପ୍ରୟୋଜନ ପଡ଼ିଲେ ମାରିବାହିଁ କର୍ତ୍ତବ୍ୟ ମନ ଘକଘକ ନାହିଁ । ଉପରୋଧ ନାହିଁ ।  ଶତ୍ରୁକୁ ମାରିବା ହିଁ କର୍ତ୍ତବ୍ୟ ।

ହିଂସା, ହିଂସା—ଭୂଇଁ ନାଲି ହୋଇଯାଇଛି ରକ୍ତରେ, ଆକାଶ ଭଣିଭଣା ହୋଇଯାଇଛି ଆର୍ତ୍ତଚିତ୍କାରରେ, ତଥାପି ହିଂସା ହରିନାହିଁ, ଯୁଦ୍ଧ ସରିନାହିଁ, ଯୁଗ ପରେ ଯୁଗ ବୋହିଯାଉଛି ।  ଯେମାନେ ପଡ଼ିଛନ୍ତି ଝୁଂପାବାଇ ନାଲି ଭିତରେ, ସେଇମାନେ ଯେ ମାରି ପାରିନାହାନ୍ତି ମରିଛନ୍ତି ।

ଶ୍ରୀଚରଣ ଦାନ୍ତ ଚିପି ଚିପି ଗମ୍ଭୀର ହୋଇ ବସିଲା, ଶୋଷଣ ପୋଷଣ ଯୁଦ୍ଧ ଆକ୍ରମଣର ଐତିହାସିକ ତାଣ୍ଡବ ଲୀଳା ଯେପରିକି ତାର ଆଖି ଆଗେ ଚାଲି ଲାଗିଲା ବାଇସ୍କୋପ ପରି ।

ଆଉ ସାମ୍ନାରେ ସେ ଦେଖୁଥିଲା ସେଇ ମଲା ବାଘଟାକୁ ।  ଜଗତଯାକର ଅନ୍ୟାୟ, ଅସମତା, ଅବିଗ୍ଭର ଓ ଅତ୍ୟାଗ୍ଭର କଥା ଯେତେଥର ସେ ମନେପକାଉଛି, ଯେତେଥର ତାତି ଉଠୁଛି ଖଦ ଖଦ, ସେତେଥର ଯେପରିକି ନୂଆ ହୋଇ ପୁଣି

ଥରେ ବାଘଟା ମରୁଛି, ଆଉ ତା ମନରେ ଉଲ୍ଲାସ ଆସୁଛି—ସେ ବିଜୟୀ । ହିଂସାର ପ୍ରତୀକ—ସେ ମରିଛି । କି ଉପାୟରେ ମଲା ସେ ଏତେ ଭାବୁନାହିଁ, ମରିଛି, ଉଦ୍ଦେଶ୍ୟ ପୂରଣ ହୋଇଛି, ଏହି ଯଥେଷ୍ଟ ।

ଚରମ ଶାନ୍ତି ପ୍ରତିଷ୍ଠା ପାଇଁ ଯୁଦ୍ଧ କରିବାକୁ ହିଁ ହେବ ବାରମ୍ବାର, ଶ୍ରୀଚରଣ ଭାବିଗଲା, ତାପରେ ଆଉ ଯୁଦ୍ଧ ହେବନାହିଁ । ଯେପରିକି ସେହି ଶେଷ ଯୁଦ୍ଧରୁ ସେ ଫେରୁଛି, ଏଥର ପୃଥିବୀ ନିରାପଦ, ଆଉ ସାମ୍ନାରେ ସେ ବାଘର ଶବ ।

ଅହିଂସା କଥା ଭାବୁ ଭାବୁ କେତେବେଳୁ ସେ ହିଂସାର ଉପାସକ ହୋଇ-ସାରିଲଣି, ଶାନ୍ତି ପ୍ରତିଷ୍ଠା କଥା ଭାବୁ ଭାବୁ ମନ ଭିତରେ ଛୁଟିଲଣି ବିକ୍ଷୋଭ, ମନ ନୁଆଁଇ ଦାସ ପରି ହୋଇ ଅରଷ ମଲମୁଣ୍ଡିଆଙ୍କ ପାଇଁ ସହାନୁଭୂତିରେ ତରଳିବାକୁ ଆରମ୍ଭ କରି ସେ ହୋଇସାରିଲଣି ଗର୍ବିତ, ମଦାନ୍ଧ; ସେହି ପତନରେ ତାର 'ମୁଁ' ପଣ ଦମ୍ଭ ମାଟି ପାଇ ସଳଖ ହୋଇ ଠିଆହେଲଣି—ଆତ୍ମତୃପ୍ତି ପାଇଁ ସେ ମନେ ମନେ ହେଲଣି ଦୁର୍ବଳର ରକ୍ଷାକର୍ତ୍ତା । ଅଭିନୟରେ ଟିଣଖଣ୍ଡା ଧରି ଲଢ଼ୁଆ ବୀର, ଗୋଡ଼ହାତ ଗୁଟି ଟଙ୍କାର କରି ରଙ୍ଗମଞ୍ଚ କମ୍ପାଇ ଦେଉଛି ।

ଗାଡ଼ି ଚାଲିଛି । ପିଲାଏ ନାନା ପ୍ରକାର ମନ୍ତବ୍ୟ ଦେଉଛନ୍ତି, ଲକ୍ଷ୍ମୀ-ନାରାୟଣ ତାଙ୍କ କୁତୂହଳ ମେଣ୍ଟାଉଛି ନ ହେଲେ ଚୁପ ହୋଇ ବସି ରହୁଛି । ଶ୍ରୀଚରଣ ଦେଖୁଛି ଅନ୍ଧାର ଭିତରେ ସାମ୍ନାରେ ଗୋଟିଏ ବୋଲ ରାସ୍ତା, ଆଉ ହୁଡ଼ ଉପରେ ମଲା ବାଘ, ସେ ଆଉ ମଣିଷ ଖାଇବ ନାହିଁ ।

ବଣ ସରିଲା, ଖାଲ ଢିପ ପାହାଡ଼ିଆ ବାଟ ସରି ସରି ଆସିଲା, ଏଥର ସମତଳ ଉପରେ ସ୍ଥାନେ ସ୍ଥାନେ ଲୋକାଳୟ, ଦୂରରୁ ଚେଇଁଉଠେ ତାର ମିଞ୍ଜି ମିଞ୍ଜି ଆଲୁଅ, ପାଖ ହୁଏ, ଦିଶେ ଘର ବାରି ଆଉ ଏଠି ସେଠି ଦଳ ଦଳ ଲୋକ । ଶ୍ରୀଚରଣ ଖିଆଲ ପଡ଼ିଲା—ବିଜୟ ଖାଲି ହାସଲ କଲେ ଯଥେଷ୍ଟ ନୁହେଁ, ତାକୁ ପ୍ରଚାର କରିବାକୁ ପଡ଼ିବ । ଲୋକେ ଦୂରରୁ ଦେଖିବେ ମଟର ଗାଡ଼ିର ଆଲୁଅ, ବାଘକୁ ଦେଖି ପାରିବେ ନାହିଁ । ତେଣୁ ସେ ମଲା ବାଘ ଉପରକୁ ଟର୍ଚ୍ଚ ଆଲୁଅ ଟିପି ଫୋପାଡ଼ିଲା । ପଛରୁ ପିଲା ଦୁହେଁ ଆନନ୍ଦରେ ତାଳି ମାରିଲେ, ଡ୍ରାଇଭର ତାର ଉଦ୍ଦେଶ୍ୟ ବୁଝି ଲୋକ ଦେଖି ଗାଡ଼ିର ବେଗ ଧିମେଇ ଦେଲା । ଲୋକେ ଦେଖିଲେ, ଆଁ କରି ଦେଖିଲେ, ଚମକପଡ଼ି ଦେଖିଲେ, ଠେଲାପେଲା ହୋଇ ପାଖକୁ ଆସି ବେକ ଉଞ୍ଚେଇ ଦେଖିଲେ, ଜୀଅନ୍ତା ପରି ଦିଶୁଛି, ମରି ଶୋଇଛି ବାଘ । ଆଶ୍ଚର୍ଯ୍ୟ, ଭୟ, ଆପଦ କଟିବାର ସ୍ୱସ୍ତି-ନିଶ୍ୱାସ, ଆଲୋଚନା, ଶ୍ରୀଚରଣ ଅନ୍ଧାରରେ ମୁରୁକେଇ ହସିଲା, ସତେକି ନୀରବରେ ଅଭିନନ୍ଦନ ଗ୍ରହଣ କରୁଛି ।

ଏଥର ସହର, ତାର ବସା, ରାତି ଦଶ । ଗାଡ଼ି ଅଟକିବା ପୂର୍ବରୁ ପିଲା ଦୁହେଁ ପାଟିକରି ଉଠିଲେ । ଗାଡ଼ି ରହିଲା, ପିଲା ଦୁହେଁ ଦଉଡ଼ି ପଳେଇଲେ

ଅନ୍ୟମାନଙ୍କୁ ଡାକିବାକୁ । ଲକ୍ଷ୍ମୀନାରାୟଣ ଓହ୍ଲେଇ ପଡ଼ି କନକ ଓହ୍ଲେଇବାରେ ଲଗିଲା । ଶ୍ରୀଚରଣ ଧୀରେ ଓହ୍ଲେଇଗଲା ।

ମୁହୂର୍ତ୍ତିକେ ଲାଗିଗଲା କଳରବ । ଘରର ସମସ୍ତେ ବ୍ୟସ୍ତ ହେଲେ, ଆସିଲେ ପାଖ ପଡ଼ଶା । ବଣରୁ ମରି ବାଘ ଆସିଛି । ସମସ୍ତିଙ୍କ ଚେତନାରେ ବ୍ୟାପିଛି ସେ ।

"ଏଇ ତା ନଖ ।"

"ଏଇ ତା ଲାଞ୍ଜ ।"

"କେଡ଼େ ବଡ଼ ବଡ଼ ତା ଦାନ୍ତ, ବାପରେ ଏଇଥିରେ ମଣିଷ ଖାଏ ।"

"ଦେହ କେଡ଼େ ପାଳସ, ରକ୍ତ ପିଇ ମାଂସ ଖାଇ କେଡ଼େ ଡଉଲ ଡାଉଲ ହେଇଚି !"

"ସ୍ନା ଗୁଲଟା ଟ୍ୟାନ୍‌ କରିବାକୁ ପଠେଇବା"

"ମୁଣ୍ଡଟା ବି ପଠେଇବା, ଅବିକଳ ଜୀଅନ୍ତା ବାଘ ପରି ଦିଶିବ ।" ନାନା ପ୍ରକାର ମନ୍ତବ୍ୟ । କୁତୂହଳ ସମସ୍ତିଙ୍କର ।

ସବା ସାନ ପିଲାଟି ଶୋଇପଡ଼ିଛି, ଦେଢ଼ ବର୍ଷର ଛୁଆ । ଶ୍ରୀଚରଣର ସ୍ତ୍ରୀ ଆପେ ବାଘ ଦେଖିସାରି ସାନ ପୁଅକୁ ଉଠେଇ ନେଲେ, ଗୋଳମାଳରେ ବେଶୀ କଷ୍ଟ ପଡ଼ିଲା ନାହିଁ ତାର ନିଦ ଭାଙ୍ଗିବାକୁ ।

"ହେଇ ଦେଖ୍‌ରେ ବାବୁ ବାଘ, ମରି ଯାଇଚି, ଡର୍ ନାହିଁ ।" ସାନ ପିଲା ମା' କାଖରୁ ଓହ୍ଲେଇବାକୁ ଡରୁଛି, ମୁହଁ ବୁଲେଇ ଦେଇ ଥରେ ଥରେ ଦେଖି ନେଉଛି ବାଘକୁ । "ନାଇଁରେ ବାବୁ, ଡର୍ ନାହିଁ, ମରି ଯାଇଛି ।" ତାର ଭାଇଭଉଣୀମାନେ ବାଘ ପାଖେ ବସିଛନ୍ତି, କିଏ ନଖ ଓଟାରୁଛି, କିଏ ଲାଞ୍ଜଟାକୁ ଟେକି ଆପଣା ବେକରେ ଲଦୁଛି । ଘରୁଆଳେ କେତେ ଲୋକ । ଶ୍ରେଷ୍ଠ ପୁଅର ସାହସ ହେଲା । ବାଘ ପାଖେ ସେ ବି ବସିଲା । ଆସ୍ତେ ଆଖି ବୁଲେଇ ଆଣିଲା ତାର ଦେହ ଉପରେ, ଭରସି ଭରସି ହାତ ବଢ଼େଇଲା, ଆଉଁସିଲା ।

ତା ପରେ ଶ୍ରେଷ୍ଠ ପିଲା ତାର ଠିକ ମନ୍ତବ୍ୟ ଦେଲା—

"ମରିଗଲା ! ଆହା,—ଚୂ—ଚୂ—ଚୂ—"

ମୁଣ୍ଡକୁ ଝାଙ୍କି ଝାଙ୍କି ମଲା ବାଘ ପାଇଁ ବିଳାପ କଲା ନିଷ୍ପାପ ଶିଶୁ—

"ମରିଗଲା ! ଆହା ! ଆହା ! ଚୂ—ଚୂ—ଚୂ—"

ସମସ୍ତେ ହସି ଉଠିଲେ—

ଶ୍ରୀଚରଣ ପାଖରେ ଠିଆହୋଇଥିଲା, ଚମକି ଆସି ଥକ୍‌କା ହୋଇ ଅନାଇ ରହିଲା। ହିଂସା ଉପରେ ହିଂସାର ବିଜୟ ଭୂଷୁଡ଼ି ପଡ଼ିଲା ଟିକି ଛୁଆର ମନ୍ତବ୍ୟରେ। ବାଘ ଶିକାର ବେଳଠୁଁ ସେ ଝୁଂପାବାଇ ନାଳର କାହାଣୀ ଭୁଲିଯାଇଥିଲା, ଏଥର ମନେପଡ଼ିଲେ ସେମାନେ, ସେହି ଲହୁଲୁହାଣ କନ୍ଧ ଲୋକ, ସେହି ବିକଳାଙ୍ଗ ଶବ କୁଢ଼ କୁଢ଼, ସେଠୁ ପୁଣି ନୂଆ ହୋଇ ରକ୍ତଧାର ଛୁଟିଲା, ଧରଣୀ ତତିଲା, ମନ ଭିତରେ ହାହାକାର ପୂରିଗଲା, ମୃତ୍ୟୁର ପ୍ରତିକାର ନୁହେଁ ମୃତ୍ୟୁ, ଅତ୍ୟାଚାରର ବଦଳ ନୁହେଁ ଅତ୍ୟାଚାର, ମାରଣ ନୁହେଁ ମାରଣ ନିରୋଧର ବାଟ।

ଏଥର ସେ ବିଜୟୀ ନୁହେଁ, ହତ୍ୟାକାରୀ।

ବାଘ ଶିକାରର ନିଶା ଛାଡ଼ିଗଲା, ଶ୍ରୀଚରଣ ମୁଣ୍ଡପୋତି ଘର ଭିତରକୁ ଚାଲିଗଲା।



# ଦୁଇ ବୀର

ଦୁହେଁ ଦୁହିଁଙ୍କୁ ଭାବୁଥିଲେ ବୀର ବୋଲି । ଜନ୍ମ ପରିଡ଼ା ଆଉ ଝୁମା ସ୍ୱାମୀ । ପରସ୍ପରକୁ ବହୁତ ପ୍ରଶଂସା ସେମାନେ କରୁଥିଲେ । ଏକାଠି ମନଖୁସିରେ ସିଗାରେଟ୍ ଶୋଷି ଶୋଷି ନାନା କଥା ପକାଇ ସେମାନେ ଅଫିସ୍‌ରୁ ଫେରୁଥିଲେ ଝୁମା ସ୍ୱାମୀର ବସାଆଡ଼କୁ ।

ଜଣକର ଘର କୁଜଙ୍ଗ ଷଣ୍ଢକୁଦ ପାଖେ । ସେ କହୁଥିଲା, କେମିତି ମୁଣ୍ଡ ଝୁଲେଇ ଝୁଲେଇ ଦ'କୋଶ ବାଟ ଚାଲି ଚାଲି ଯାଇ ସେ ପିଲାଦିନେ ତାର ପ୍ରାଥମିକ ଶିକ୍ଷା ଶେଷ କରିଥିଲା । ତା'ପରେ କୁଜଙ୍ଗରେ ମ୍ୟାନେଜରବାବୁଙ୍କ ଘରେ ଫେରିଫେରି କରି ହାଇସ୍କୁଲ ପାଠ ଶେଷ କଲା । ତା'ପରେ କଟକରେ ଟିଉସନ କରି ବି. ଏ. ଶେଷ ଯାକେ ପାଖେ ଜିଦ୍, ପାଖେ ପରିସ୍ଥିତି, ଏହିପରି ମହାଯୁଦ୍ଧ କରି ସେ ମଣିଷ ହୋଇ ଠିଆହେଲା । ଅଳ୍ପ ଖାଇ ଛିଣ୍ଡା ପିନ୍ଧି କେବେ ଉପାସ କେବେ ଭୋକେ ଏହିପରି ହୋଇ ସେ ତା'ର ଟଳମଟଳ ନାହାଟି ବାହି ଚାଲିଛି । ଏହାରି ଭିତରେ ସେ ତା ସାନଭାଇଙ୍କ ପାଠ ପଢ଼ାଇଛି, ଯୋଡ଼ିଏ ଭଉଣୀ ବିଭା କରିଛି । ବାପା ବେମାର ପଡ଼ିଲେ ସେ ତାଙ୍କ ଚିକିତ୍ସାରେ ସାତଶ ସତର ଟଙ୍କା ଖର୍ଚ୍ଚ କଲା, ଯଦିଚ ଶେଷରେ ତାଙ୍କୁ ଅଟକାଇ ପାରିଲା ନାହିଁ, ସେ ଗଲେ । ଆଉ ଏଣେ ତା'ର ସଂସାର, ତିନୋଟି ଝିଅ, ଗୋଟିଏ ପୁଅ, ସେ ଓ ତା'ର ସ୍ତ୍ରୀ । ସମ୍ପତ୍ତି ନାହିଁ, କରଜ କିଛି ହୋଇଯାଇଛି, ତା ସେ ଶୁଝିଦେବ । ଘର ନ ଥିଲେ ବି ବସାଟିଏ ତ ଅଛି ନିଶ୍ଚୟ । ଜମି ନାହିଁ, କିନ୍ତୁ ଚାକିରି ଅଛି । ଆଉ ଅଛି, ଅଟଳ ଈଶ୍ୱର ବିଶ୍ୱାସ । ସେଇ ତ ସମସ୍ତଙ୍କୁ ସମ୍ଭାଳିଛନ୍ତି, ନହେଲେ ଆଉ କିଏ ?

ତା କଥା ଅମୃତ ପରି ଶୁଭୁଥିଲା ଝୁମା ସ୍ୱାମୀ କାନକୁ । ସରୁ ହୋଇ ବାଙ୍ଗର ହୋଇ ଲୋକଟିଏ ସେ ମିଷ୍ଟର ପରିଡ଼ା, ଉପରେ ତାର କାନ ଖାଇବ, ଆଖି ତଳେ ବି ଗାଲର ହାଡ଼ କେମିତି ଟିକିଏ ଉଞ୍ଚା ଉଞ୍ଚା, ଯେମିତି କୋଡ଼ ଫାଳ ପରି ଦାଢ଼ୁଆ, ସେମିତି ଚଢ଼ଖଣ୍ଡ ନାକ, ଅଗ ମୁନିଆ ହୋଇ ଚକଚକ ଦିଶୁଛି, ଚାହିଁଲେ ଲାଗେ ଯେମିତିକି ଭାବପ୍ରବଣ ଅବସ୍ଥାରେ ଏ ନାକଟିବି ଥରି ଥରି ଉଠୁଥିବ, ସେମିତି ଭାବପ୍ରବଣ ହୋଇ ଥରିବାକୁ, ଅନଥନ ହେବାକୁ ତ ଏ ଆଖି, ଏ ନାକ, ଏ ମୁହଁର ଠାଣି । ସଫା ଖୋଲା ମୁହଁଟିଏ, ଅକପଟ ଏଇ ଅଳ୍ପ ମୋଟା ଓଠର ଠାଣି, ଯେପରିକି ସେ ସ୍ପଷ୍ଟ କଥା କହିବାକୁ ହିଁ ଅଭ୍ୟସ୍ତ । ଖଇରଥ:

ଚମ, କିନ୍ତୁ ତା ଉପରେ କର୍ଣ୍ଣି ଲ୍ୟପରେ ସ୍ୱାସ୍ଥ୍ୟ ଆଉ ଅଛି । ଯାହା କଥା ମନେ କୋଉଦିନ ଏ ମୁହଁ ଆଉ ମଝିରେ ମଝିରେ ଏଇ କାନ୍ଧର ଝାଙ୍କ, କଥା କହୁ କହୁ ମଝିରେ ମଝିରେ ଯେମିତି ତା'ର କାନ୍ଧ ଦି'ଟା ନାଚଉଠେ, ଆଖିରେ ମିଲମିଞ୍ଚ ହୁଏ, କାହା କଥା ?

ହଁ, ଅପୁଦୋରାଇ ମନେ ପଡ଼େ ନ, ଆଉ କିଏ ? କଲେଜ ଜୀବନରେ ସେହି ଥିଲା ତାର ଅତି ଅନ୍ତରଙ୍ଗ ବନ୍ଧୁ, ଅପୁଦୋରାଇ ଆଦ୍ଦୁର୍ । ପାସ୍ କରିସାରି ସେ ଚାଲିଗଲା ମାଲୟ, ସିଙ୍ଗାପୁର, ଆଉ ତା ସଙ୍ଗେ ଦେଖା ନାହିଁ । ତା'ର ବାହାଘର ହେଲା, ଅପୁଦୋରାଇ ତା ସ୍ତ୍ରୀକୁ ଦେଖିପାରିଲା ନାହିଁ । ଅବିବାହିତ ଅବସ୍ଥାରେ ସେମାନେ ଯେତେବେଳେ ପରସ୍ପରଙ୍କ ଭାବୀ ପତ୍ନୀମାନଙ୍କ ବିଷୟରେ କଳ୍ପନା କରି ହସାହସି ହେଉଥିଲେ ସେତେବେଳେ ଅପୁଦୋରାଇ ତା ସ୍ତ୍ରୀର ଗୋଟାଏ ବର୍ଣ୍ଣନା ଦେଇଥିଲା । ଆଶ୍ଚର୍ଯ୍ୟ ପ୍ରକାରେ ପଛେ ତା ମିଳିଗଲା । କେମିତି ଜାଣିପାରିଥିଲା ସେ ? କେତେଥର ତା'ର ଇଚ୍ଛା ହୋଇଛି, ଅପୁଦୋରାଇକୁ ଆଣି ସେ ତା ସ୍ତ୍ରୀକୁ ଦେଖାନ୍ତା, କହନ୍ତା, ନେ ତୋ ଭାଉଜକୁ ଅପୁ, ଯାହାକୁ କଳ୍ପନା କରୁଥିଲେ, ପଡ଼ ତା ଗୋଡ଼ତଳେ । ତା ଆଉ ହୋଇପାରିଲା ନାହିଁ ।

ଆପୁ ତାଠୁଁ ବୟସରେ ଚାରିବର୍ଷ ସାନ, ସେହି କଥା ବି ତ ସେ କହିଥିଲା ପରିଚୟ ଆଗରେ । ବହୁତ ଡେରିରେ ସେ ପାଠ ପଢ଼ିଥିଲା । ଦୂର ତ୍ରିଚୁର ଜିଲାରେ ତା ଘର । ସାତବର୍ଷ ବେଳେ ବାପା ମରିଗଲେ । ମା ତାଙ୍କୁହିଁ ଶାଖା କରି ଗୋଟିଏ କଫି ଦୋକାନ ଖୋଲିଦେଲା । ତା ତଳେ ପାଞ୍ଚବର୍ଷର ଭାଇଟିଏ, ତିନବର୍ଷର ଭାଇଟିଏ, ନଅ ମାସର ସାନ ଭଉଣୀଟିଏ । ରାତିରୁ ଉଠି ବର୍ଷୀପାଇଁ ପିଠାପଣା କରିବାରେ ମା'କୁ ସାହାଯ୍ୟ କରିବାକୁ ପଡ଼େ । ଦିନରେ ତ ସହଜେ ସେ କାମରେ ଲୋଟେ । ଖାଲିପଣ ସିଙ୍ଗି ଶିଖିଗଲା, ପିଠା ବି କେଇଟା ଶିଖିଗଲା । ଆଉ ଶିଖିଥିଲା ଗୀତ ବୋଲା । ଜଣେ ଅନ୍ଧ ଭିକାରୀ ବୁଲି ବୁଲି ଆସି ତାଙ୍କର ପିଣ୍ଡାରେ ଆଶ୍ରୟ ନିଏ । ସିଦ୍ଧକବି ସଙ୍ଗୀତକାର ମହାପୁରୁଷ ତ୍ୟାଗରାଜଙ୍କର ଅନେକ କୃତି ସେ ମନେ ରଖିଥିଲା, ଠିକ୍ ରାଗରାଗିଣୀ ଦେଇ ବୋଲି ପାରୁଥିଲା । କେବଳ ଭିକାରୀର ଗଳାଟା ଥିଲା ଦାଗଡ଼ା, ଅଉ ଫଟା, ସବୁବେଳେ କଫ ଘଡ଼ଘଡ଼ ହେଉଥା, ନହେଲେ କାଶ ଉଠେ । କିନ୍ତୁ ଲୁଆର ସ୍ୱରଟି ଭାରି ସୁନ୍ଦର ଥିଲା । ସେ ତ୍ୟାଗରାଜ ବୋଲିଲେ ଲୋକ ଭାରି ପ୍ରଶଂସା କରୁଥିଲେ । କେତେ ଗରାଖି ତ ତାଠୁଁ ଗୀତ ଶୁଣିବାକୁ ଆସି ପେଟେ ପେଟେ ଜଳଖିଆ ଖାଇ ଯାଉଥିଲେ । ସନ୍ଧ୍ୟାବେଳେ ସେ ମନ ଖୋଲି ଗୀତ ବୋଲେ । ସେତିକବେଳେ ଦୋକାନରେ ଭିଡ଼ ହୁଏ ।

ତା'ପରେ ସେହି ଗରାଖିଙ୍କ ଭିତରୁ ଜଣେ ତାକୁ ପାଠ ପଢ଼ାଇଲେ । ଜଣେ ମାଲୟାଳୀ ଭଦ୍ରଲୋକ, ନାଁଟି ବି ସେହିପରି—ଭଦ୍ରାପ୍ପା, ନୂଆ ଡାକବାବୁ ।

ତାଙ୍କର ଯତ୍ନ, ଉତ୍ସାହ ଓ ସାହାଯ୍ୟ ପାଇ ସେଠି ଥିବାଯାକେ ଚାରି ବର୍ଷରେ ଚାରୋଟି ଶ୍ରେଣୀ ବି ଟପିଗଲା । ଆପେ ମାଷ୍ଟର ହେଲା । ଏଣେ କଫି ହୋଟେଲ ଖବର ବି ବୁଝେ, ଘରର କାମଦାମରେ ହାତ ନିଏ । ରାତି ଏଗାରଟାରୁ ଦୁଇଟା-ଯାଏ କଲେଜ ପାଠର ବହି ଘୋଷେ । ତାହାର ଭିତରେ ପୁଣି ଅବସ୍ଥା ସହିତ ନାନା ଯୁଦ୍ଧ—ଶୀତଦିନେ ଶୀତ ଲୁଗା ନାହିଁ, ରାତିରେ ଦେହ କୋଳ ମାରି-ଯାଉଥିବ, ଆଖି ମାଡ଼ି ମାଡ଼ି ଆସୁଥିବ, ଘରମାଲିକ ବୁଢ଼ା ଦେହକୁ ହାତରେ ଘଷି, ବେଶି ବଳାଇଲେ ଦଣ୍ଡ ବୈଠକ କରି ଦେହକୁ ଉଷୁମେଇ ଚାଲିଥିବ ପୁଣି ପଢ଼ା କାମ । ମୋଟେ ଗୋଟିଏ ଉମ୍‌ହେଇଁ ସେ ସେ ରହୁଥିବ ଆଉ ଓଟନାଟିଙ୍କ ଶୋଇଲା କଢରେ । ଖରାଦିନେ ଝୋଲ ମାରି ଯାଉଥିବ, ତାହାର ଉପରେ ପଢ଼ୁଥିବ ଦେହ ପରିଶ୍ରମ । ଆଉ ଭୋକ ଉପାସ ତ ସହଜେ । ବି. ଏ. ପାସ କଲା । ଚାକିରି ଖଣ୍ଡେ ମିଳିଗଲା । ଚଳିଗଲା କୌଣସିମତେ, କିନ୍ତୁ ଅଭାବ ଘୁଞ୍ଚିଲା ନାହିଁ । ମା ମରିବା ସଙ୍ଗେ ସଙ୍ଗେ କଫି ହୋଟେଲଟି ବି ଉଠିଯାଇଥିଲା । ତେବେ ସେ ତାର ଯୋଡ଼ିକଯାକ ଭାଇଙ୍କି ପାଠ ପଢ଼ାଇଛି । ସେମାନେ ସ୍ୱାବଲମ୍ବୀ ହେଲେଣି । ଗୋଟିକ ବାହା ବି କରାଇଦେଇଛି । ଘରେ ସେ, ତାର ସ୍ତ୍ରୀ, ତାର ସାନ ଭଉଣୀ, ତାର ନିଜର ପାଞ୍ଚଟି ପୁଅ । ସଞ୍ଚୟ ନାହିଁ, ଘର ନାହିଁ କି ଜମିବାଡ଼ି ନାହିଁ । ଉପାସ ଭୋକରେ ଚଳିଯାଆନ୍ତି, କିନ୍ତୁ କରଜ ବି ନାହିଁ ।

ଜଗୁ ପରିଡ଼ା ବି ସ୍ନେହରେ ଅନାଇଁଥିଲା ତାକୁ । ଗୋଟାଏ ଲମ୍ବା ଚଉଡ଼ା ମଣିଷ, ଶ୍ୟାମଳ ବର୍ଣ୍ଣ, ବଳିଲା ବଳିଲା ଦେହ ହାତ, ବଡ଼ ମାଉଁସିଆ ମୁହଁ, ମୁଣ୍ଡବାଳ ସିଧା ଦୁ'ଭାଗ ହୋଇ ଫିରେଇ ହୋଇଛି ଯେ ଦୁ' ପାଖେ କୁଞ୍ଚକୁଞ୍ଚିଆ କଳା ବାଳ ମୋଡ଼ି ମୋଡ଼ି ହୋଇଛି । କପାଳରେ ସିନ୍ଦୂର ଟୋପାଟିଏ । ମୁହଁରେ ସବୁବେଳେ ହସ । ପ୍ରଶାନ୍ତ ମୁହଁରେ ଅଧା ବୁଜି ହେଲା ପରି ଆଖିଯୋଡ଼ିକ ବେଳେବେଳେ ଯେତେବେଳେ ଅଳ୍ପ ତାଙ୍ଗି ହୋଇ ପଡ଼େ ସେତେବେଳେ ସେହି ଧନୁପରି ଭ୍ରୂଲତା ତଳେ ଯେଉଁ ଚାହାଣି ସେ ମୁହଁରେ ଫୁଟିଉଠେ ସେ ଗୋଟିଏ ଅତି ଉଦାର ସହାନୁଭୂତିର, ସେ ମୁହଁର ଶାନ୍ତ ସଂଯମ ତାକୁ ଆକୃଷ୍ଟ କରିଥିଲା । ମନ ଲୋଡ଼ିଥିଲା, ସବୁ କଥା ଖୋଲି ଏହାର ଆଗରେ କହିଦେଲେ ହାଲୁକା ଲାଗନ୍ତା । ସବୁ ଶୁଣି ଶୁଣି ଆଖିରୁ ଢଳଢଳ କରି ସେ ଯେପରି କାନ୍ଧ ଉପରେ ବାଁକୁ ତାହାଙ୍କୁ ମୁଣ୍ଡଟି ଝାଙ୍କେ, ସେତିକିରେ ଯେପରିକି ଅଭୁଲପଣ ହସିଉଠେ ତାର ହୃଦରେ ।

କିଏ କେଉଁଆଡ଼ର ସେମାନେ, ଚିହ୍ନା ମୋଟେ ପନ୍ଦର ଦିନର । ଅଫିସ ଭୁବନେଶ୍ୱରକୁ ଉଠି ଆସିଛି, ନୂଆ ସ୍ୱାମୀ ଏଠିକି ବଦଳିହୋଇ ଆସିଛି । ଜଗୁ ତ ମୂଳ ଅଫିସରେହିଁ ଥିଲା, ଅଫିସ ସହିତ ଏକାଠି ଆସିଛି । ସାତ ଶହ ସହକର୍ମୀଙ୍କର ଗୋଟିଏ ଅଫିସ୍‌, ସେଠି କେଉଁ ଗାଁର କେଉଁ ସହରର ଲୋକ ଆସି ଏକାଠି କାମ

କରନ୍ତି । ପାଞ୍ଚଟା ବାଜିଲେ ଏକାଠି ଗୋଷ୍ଠୀ ହୋଇ ବାହାରି କଏ କେଉଁଆଡ଼େ ଚାଲିଯାଆନ୍ତି, ନାନା ଦିଗକୁ ମୁହେଁଇ ସାଇକେଲ୍ ଆଉ କଥା କୁହାକୋହି ହେଉଥିବା ମଣିଷଙ୍କ ସାନ ସାନ ଦଳ । ଝିଅ ପିଲାଏ ବି ସେ ଦଳଭିତରେ ବାହାରି ଚାଲିଯାଆନ୍ତି ।

ସାତ ଶହ ଲୋକଙ୍କର ଦ୍ରେଟିଆ ପୃଥିବୀ ଭିତରେ ଜମ୍ବୁ ପରିଡ଼ା ଆଉ ଗେଦେଲି ସ୍ୱାମୀ ପରସ୍ପରକୁ ବାଛି ନେଇଥିଲେ । ଗୋଟାଏ ଲମ୍ବ ଘରର ଦୁଇ ମୁଣ୍ଡରେ ସେମାନଙ୍କର ବସିବା ଜାଗା, ମଝିରେ ଧାଡ଼ି ଧାଡ଼ି ହୋଇ ଟେବୁଲ୍, ଚୌକି, ଆଲମାରି, ଫାଇଲ୍ ଗଦା; ଦୁଇ କଡ଼ରେ ପାରାଖୋପ ପରି ସାନ ସାନ ବଖୁରି, ପୁଣି ଆଲମାରି ଘେର ଭିତରେ ଅନ୍ତୁରି କେତେ । ମଝିରେ କେତେ ମୁହଁ, କେତେ ମୂର୍ତ୍ତିମନ୍ତ ଇତିହାସ । ତଥାପି ଏପାଖୁ ଏ ଯାଏ, ସେପାଖୁ ସେ ଆସେ । ଲାଗେ, ସତେକି ଗ୍ରହଚନ୍ଦ୍ର କଳି ଭଳି ଅନ୍ଧସନ୍ଧ ଭିତରେ ବସ୍ତୁବଛି କରି ସେମାନେ ପରସ୍ପରକୁ ଖୋଜି ବାହାର କରିଛନ୍ତି ।

ଅଥଚ ମୂଳର କଥା ଭାବିବସିଲେ ସେମିତି କିଛି ନୁହେଁ । ପଶ୍ଚିମ ଦୁଆରପାଖେ ପରେସ୍ତା କରିବା ବଖୁରି । ଖୋପ ଖୋପ ହୋଇ ପାଞ୍ଚ ଜଣଙ୍କ ପାଇଁ ଜାଗା ଥିଲେ ବି ସାଧାରଣତଃ ଯେ ପଶେ ସେ କବାଟ ଦିଏ । ସେହି ଦୁଆରମୁହଁ-ଆଡ଼କୁ ତରତର ହୋଇ ଜମ୍ବୁ ପରିଡ଼ା ଚାଲିଥିଲା; ସିମେଣ୍ଟ ଗଳିରାସ୍ତା ଉପରେ ଠକ୍‌ଠାକ୍ ଶୁଭୁଥିଲା ତାର ଜୋତା ଶବ୍ଦ । ଅନ୍ୟମନସ୍କପଣ ଭାଙ୍ଗିଗଲା, ଆଗରେ ଅଛି ଆଉ ଜଣେ, ସେ ଆଗ ପଶିବ । କିନ୍ତୁ ସେ ଆଗ ଜଣକ ବୁଲିପଡ଼ି ଅନାଇଁଲା, ଦୁଆରମୁହଁକୁ ଚାଲି ନ ଯାଇ ଘୁଞ୍ଚିଯାଇ ଆଡ଼େଇ ଠିଆ ହେଲା । ସେତେବେଳେ ଧ ଜମ୍ବୁ ପରିଡ଼ା ତା ମୁହଁ ଆଡ଼କୁ ଭଲକରି ଚାହିଁ ନାହିଁ । ସେ ଭିତରେ ପଶି କଠେଇ କଠେଇ କବାଟ ବନ୍ଦ କଲା । ପଦାକୁ ବାହାରିଲା, ଦେଖିଲା, ସେହି ଆର ଜଣକ ସେମିତି ଅପେକ୍ଷା କରି ଠିଆ ହୋଇଛି; ମୁହଁକୁ ଚାହିଁଲା, ଆର ଜଣକ ଅଳପ ହସିଦେଲା; ଭିତରକୁ ଗଲା । ଏଇ ସାମାନ୍ୟ ଘଟଣାରେ ଯେପରିକି ଗୋଟାଏ ବଡ଼ ମଣିଷପଣିଆର ଦେଣାନେଣ ଘଟିଯାଇଥିଲା । ଜମ୍ବୁ ପରିଡ଼ା ଚାଲିଗଲା ନାହିଁ । ଅପେକ୍ଷା କରି ଠିଆ ହେଲା । ଭିତରେ ଫିନାଇଲ୍ ଆଉ ଗନ୍ଧକର୍ପୂର ଗୁଳି ପଡ଼ିଛି । ସବୁ ମିଶି ଗୋଟାଏ ଉତ୍କଟ କଡ଼ା ଗନ୍ଧ ନାକରେ ବାଜୁଛି । ଠିଆ ହେବା ଜାଗା ସେ ନୁହଁ । ଜମ୍ବୁ ପରିଡ଼ା ଟହଲିଲା । ସେପାଖେ ବଡ଼ ମେଲା ଦୁଆରମୁହଁ ବାଟେ ଖୋଲା ଆକାଶଟା ଦିଶୁଛି । କୋଠାବାଡ଼, ଗୋଟିଗୋଟି-କିଆ ଗଛ, ଡାଳୁଆ ଟାଙ୍ଗି ତଳକୁ ତଳ ଖସିଛି; କେତେ ଦୂରରେ ଗୋଟାଏ ଗାଁର ଗଛଗହଳି ଟାଣ ହୋଇ ଧାଡ଼ି ବାନ୍ଧିଛି । ହୁଙ୍ଗା ସ୍ୱର କରେ ବୁଦାଭିତରେ ଛେଳିପଲ ଚରୁଛନ୍ତି । ଧଳା ଧଳା ହୋଇ ଇଲେକ୍‌ଟ୍ରିକ୍ ଲାଇନର ଖୁଣ୍ଟ ଠିଆ ହୋଇଛି । ଖରା ପଡ଼ୁଛି । ଚଢ଼େଇ ଉଡ଼ୁଛନ୍ତି । ପଦାକୁ ମୁହଁ କରି ସେହିଆଡ଼େ

ଦୃଷ୍ଟି ଥାପିଲାତକ ଜଗୁ ପଣ୍ଡାର ମନ ଭିତରେ ଉଙ୍କି ମାରୁଥିଲା ସେଇ ଅଜଣା ଲୋକର ମୁହଁଟି, ସେଇ ଯେ ତାର କିଛି ନୁହେଁ, ଯାହା ସଙ୍ଗେ ତାର କିଛି ସମ୍ବନ୍ଧ ନାହିଁ। ମନ ହେଉଥିଲା, ଆଗ ସେ ଭିତରକୁ ନ ପଶି ଆଗରେ ଥିବା ସେଇ ଜଣକୁ ବାଟ ଛୁଡ଼ିଦେଇଥିଲେ ଭଲ ହୋଇଥାନ୍ତା ପରା !

କବାଟ ଖୋଲିଲା, ଆରକ ବାହାରିଲା। ପୁଣି ତାକୁ ଦେଖିପକାଇଲା ମାତ୍ରେ ଧଳା ଦାନ୍ତ ଉପରୁ ଅଳ୍ପକେ ଓଠ ଉଠିଗଲା।

ତା'ପରେ ଆଳାପ ଆରମ୍ଭ ହୋଇଗଲା, ଅତି ଧୀରେ ଧୀରେ। ଶବ୍ଦ ବେଶି ନୁହେଁ; ଭାବ ବେଶି। ତାର ମାଧ୍ୟମ ଓଡ଼ିଆ ନୁହେଁ, ତେଲୁଗୁ ନୁହେଁ, ଇଂରେଜୀ। ଉଚ୍ଚାରଣ ଶୁଣି ଚନ୍ଦ୍ରବି କେହି ହୋଇଥିଲେ ବାରିପାରିଥାନ୍ତେ ପରା, ଜଗୁ ପଣ୍ଡାର ଇଂରେଜୀରେ ଓଡ଼ିଆ ଉଚ୍ଚାରଣ, ଗୁମ୍ମା ସ୍ୱାମୀର କହିବା ଭଙ୍ଗୀରେ ବିଶୁଦ୍ଧ ତେଲୁଗୁ ଉଚ୍ଚାରଣ। ସେମାନେ ଆଦୌ ପରିଶ୍ରମ କରିନାହାନ୍ତି ସାହେବ ପରି ଇଂରେଜୀ କୁହାକୋହି ହେବାକୁ। ପରସ୍ପରର କଥା ବୁଝିଥିଲେ ସେମାନେ, ଆଉ କିଛି ଲୋଡ଼ା ନ ଥିଲେ। ଗପୁ ଗପୁ ଦୁହେଁ ପଦାକୁ ବାହାରିଗଲେ। ଖଣ୍ଡେଦୂରରେ ହତା ଫାଟକପାଖେ ରାସ୍ତା କରରେ ଗୋଟିଏ ପାନ ଦୋକାନ। ଗୁମ୍ମା ସ୍ୱମୀ ସିଗାରେଟ୍ କିଣି ଜଗୁ ପଣ୍ଡାକୁ ଦେଇଥିଲା, ଜଗୁ ପଣ୍ଡା ତାକୁ ଦେଇଥିଲା ପାନ। ଗୋଟାଏ ନୂଆ ସମ୍ବନ୍ଧ ଆରମ୍ଭ ହୋଇଥିଲା।

ତା'ପରେ ପ୍ରତିଦିନ ଦେଖାଚାହିଁ, କଥାଭାଷା, ଦୁଃଖସୁଖ। ବଡ଼ ଚଞ୍ଚଳ ଘନିଷ୍ଠତା ବଢ଼ିଉଠିଥିଲା। ପରସ୍ପରର ଜୀବନସଂଗ୍ରାମ ଆଉ ଦୁଃଖଜଞ୍ଜାଳ କଥା କୁହାକୋହି ହୋଇ ସେମାନେ ସତେକି ଗ୍ଳାନି ହାଲୁକା କରିବା ସଙ୍ଗେ ସଙ୍ଗେ କେତେକ କେତେକ ଆନନ୍ଦ ଆସୁଥିଲେ। ସେମାନେ ବୁଝିଥିଲେ, ସେମାନେ ଏକାଶ୍ରେଣୀର, ସେଇ ଜଗତଯାକର ଖଟିଖିଆ ମଣିଷ, ଖଟି ଖଟି ଅତି କଷ୍ଟରେ ଟାଣି ଟାଣି ସଂସାର ଚଳାଇବୁଏ, ନାହା ବୁଡ଼ୁ ବୁଡ଼ୁ ହେଉଥାଏ, ବୁଡ଼େ ନାହିଁ। ସଞ୍ଚୟ ନାହିଁ, ଜମିବାଡ଼ି କି ଆପଣାର ମୋହର ମରି ଘର ନାହିଁ। ଅଭାବ ଖାଇଗୋଡ଼ାଏ, ଦାରିଦ୍ର୍ୟ ଆଖି ତରାଟେ, ବେଳେ ବେଳେ ରୋଗ ଆସି ଘରକରଣାର ସାଧାରଣ ଗତିକୁ ଦିଏ ଓଲଟାଇ, ଭୋକ ଆଉ ଶୀତ କାଟେ, ପରିଶ୍ରମ ବାଧେ, କେବେ କରଜ ପାଇଁ ତହଲବିକଳ ହୋଇ ବୁଲିବାକୁ ପଡ଼େ। ତଥାପି ତାହାର ଭିତରେ ଘରକରଣା ଚୁଲେ, ଚୁଲି ଜଳେ, ପିଲାଙ୍କୁ ମଣିଷ କରିବାକୁ ହୁଏ, ବାହା ନମିତ୍ତ ପୁଅଣି ପର୍ବ କରିବାକୁ ପଡ଼େ। ବେଳେ ବେଳେ କେଉଁଠା ଅଟକିଗଲା ପରି ଲାଗେ, କିଛି ଅଟକେ ନାହିଁ।

ତାହାର ଭିତରେ ସାଇତି ରଖିବାକୁ ହୁଏ ସାମାଜିକ ଶିଷ୍ଟାଚାର ଆଉ ଭଦ୍ରତା ଓ ତାଆର ଭେକ। ଆଉ ସମ୍ଭାଳିବାକୁ ହୁଏ ଆଶା, ସ୍ୱପ୍ନ, ସ୍ନେହ ଓ ବିଶ୍ୱାସ ସହିତ ସମୁଦାୟ ମଣିଷପଣିଆ।

ଆପଣା ଘରେ ବି ସେମାନେ ପରସ୍ପର କଥା ପକାଉଥିଲେ, କେଉଁ ବିଷୟରେ କିଏ କଣ କହୁଥିଲା ବର୍ଣ୍ଣନା କରିବାକୁ ଯାଇ ପରସ୍ପରକୁ ରୂପ ଦେଉଥିଲେ ।

ଦିନେ ସାଢ଼େ ପାଞ୍ଚଟାବେଳେ ଅଫିସ୍‌ଫେରନ୍ତା ଗୁମ୍ପାସ୍ୱାମୀ ଜମ୍ବୁର ହାତ ଧରିପକାଇ କହିଥିଲା, ଚାଲ, ଆଜି ଆମ ବସାକୁ ଯିବ । ବହୁତଦିନୁ ଯିବ ଯିବ କହୁଛ, ଆସୁନାହଁ କେବେ, ଆଜି ଛାଡ଼ିବି ନାହିଁ । ଜମ୍ବୁ ହସି ହସି ମଙ୍ଗିଥିଲା ।

ଧାଡ଼ି ଧାଡ଼ି ହୋଇ ସାନ ସାନ କୋଠାଘରଟିମାନ, ସବୁ ଘର ଏକା ପରି, ସବୁ ଘର ସାମନାରେ ଏକା ପରିସରର ସାନ ସାନ ବାରି, ଲୁହାତାରର ବାଡ଼, କାଠ ଫାଟକ । ସେହି ବାରି ଯେନ ଘରମାନଙ୍କ ବୈଶିଷ୍ଟ୍ୟ, କେଉଁଟା ଘାସ ଅରମା ହୋଇ ଫୁଙ୍ଗା ପଡ଼ିଛି, କେଉଁଠି ଗହଳି ବଗିଚା, କେଉଁଠାରେ ଛନ୍ଦ କାଟିଲା ପରି ନାନା ବର୍ଣ୍ଣର ଫୁଲଗଛ ସଜା ହୋଇଛି, କେଉଁଟା ପରିବା ବଗିଚା, କେଉଁଠି ପନିପରିବା ଓ ଫୁଲଗଛ ମିଶାମିଶି । ଗୁମ୍ପାସ୍ୱାମୀର ବାରିର ଡାହାଣ କଡ଼ରେ କଦଳୀଗଛ ଧାଡ଼ି ଧାଡ଼ି ହୋଇ ଠିଆ ହୋଇଛି, କେତେଟାରେ କାନ୍ଦି ଓହଳିଛି, ବାଁ କଡ଼ରେ ଦୁଇ ଧାଡ଼ି ଅମୃତଭଣ୍ଡା ଗଛ, ଦୁଇଟା ଗଛରେ ଫଳ ଲଦିହୋଇଛି, ଅଳ୍ପଏ ବଳଦ ବାଇଗଣ, ଅଳ୍ପଏ ବାଇଗଣ, ଛୋଟ ଛୋଟ ଖୁଣ୍ଟରେ ବହଳ ହୋଇ ଲାଉ କଖାରୁ ଲଟେଇଛି, ଛୋଟ ଛୋଟ ପଟାଳିରେ ଛନଛନିଆ ହୋଇ ଶାଗ ବଢ଼ିଛି । ଘର ସାମନାରେ ଗୋଲ ହୋଇ ଅଳ୍ପଏ ଜାଗା ଯେ, ସେଠି ସେହି ସନ୍ଧ୍ୟା ପୂର୍ବରୁ ସତେ ଅବା ଚନ୍ଦ୍ରକିରଣ ଲେଟିଛି, କେବଳ ହଳଦି ଗର ଗର ସେବତୀ ଫୁଲ । ସେତିକି ତା ବାରିର ବିଶେଷତ୍ୱ, ଜମ୍ବୁ ପରିଡ଼ା ମନେ ମନେ ହେଜା କଲା, ନ ହେଲେ କଦଳୀ ଅମୃତଭଣ୍ଡା ଲାଉ କଖାରୁ ପ୍ରାୟ ସବୁଠି । ବାରବର୍ଷର ପିଲାଟିଏ କୋଡ଼ି ଧରି ମାଟି ହାଣୁଛି । ଦି ଦି ବର୍ଷ ଏପାଖ ସେପାଖ ଯୋଡ଼ିଏ ଟୋକା ଗୋଟିଏ ଗୋଟିଏ ବାଲ୍‌ଟି ଧରି ବାରିର ଦୁଇପଟେ ଗଛରେ ପାଣି ଦେଉଛନ୍ତି । ଏକାପରି ଗଢ଼ଣ ତିନିଜଣଯାକ, ଦେହ ଖୋଲା ଅଛି, କେବଳ ଝଣ୍ଡେ ଲେଖା ହାଫ୍ ପ୍ୟାଣ୍ଟ ।

"ଏଇ ମୋ ଘର", ଗୁମ୍ପାସ୍ୱାମୀ କହିଲା, "ବିଜେ କରନ୍ତୁ ।" ସେ ଫାଟକ ଖୋଲିଲା । ପିଲା ତିନୋଟି ଆପଣା ଆପଣା କାମ ଉପରୁ ନ ଆସି ଠିଆ ହୋଇ ହସିଲେ । ଗୁମ୍ପାସ୍ୱାମୀ ସେମାନଙ୍କୁ ହସି ହସି ଉତ୍ସାହିତ କଲା । ତା'ପରେ କହିଲା, "ଆରେ, ମଉସା ଆସିଛନ୍ତି, ଦଣ୍ଡବତ କର ।" ପିଲା ତିନିହେଁ ପାଖକୁ ଆସି ତାକୁ ଦଣ୍ଡବତ କଲେ । ଜମ୍ବୁ ପରିଡ଼ା ଠିଆ ଠିଆ ସେମାନଙ୍କ ସଙ୍ଗେ ଦୁଃଖସୁଖ ହେବାକୁ ଆରମ୍ଭ କରିଦେଲା । କାହା ନାଁ କଣ, କିଏ କେଉଁ କ୍ଲାସ୍‌ରେ ପଢ଼େ, ବାଇଗଣ କେମିତି ଫଳୁଛି, ବଗିଚାରେ ପାଣି ମଡ଼ାଇବାପାଇଁ କଳରୁ ଯଥେଷ୍ଟ ପାଣି ମିଳୁଛି କି ନାହିଁ, ଏହିପରି ନାନା କଥା ।

ସୁମୀସ୍ୱାମୀ ପଶୁରଲା, ଆମୀ କୁଆଡ଼େ ଯାଇଛୁ ? ଆମୀ ତାର ସାନ ଭଉଣୀ । ଆମୀ ପଢ଼ଣା ଘରକୁ ଚାଲିଯାଇଛୁ । ହଠାତ୍ ଭରଭର ହୋଇ ସୁମୀସ୍ୱାମୀ ତା ଘରଭିତରକୁ ପଶିଗଲା, ଯେପରି ସେ ତାର କୁଣିଆ ଚର୍ଚ୍ଚା କଥା ଭୁଲିଯାଇଥିଲା, ହଠାତ୍ ମନେପଡ଼ିଗଲା, ସେହିପରି । ଦାଣ୍ଡଘର ଦୁଆରମୁହଁରୁ ବହୁତ ଆଦର ଦେଖାଇ ତାକୁ ଘରଭିତରକୁ ଡାକନେଲା । ଘରେ ବସାଇଦେଇ ପୁଣି ଭିତରକୁ ଚାଲିଗଲା । ତା'ପରେ ଆସିଲେ ସେ, ତା ସ୍ତ୍ରୀ ଓ ତାର ସୁର ବର୍ଷର, ଛ ବର୍ଷର ପୁଅ ଯୋଡ଼ିଏ । ସୁମୀସ୍ୱାମୀ ଚହ୍ଲା କରାଇଦେଲା । ଜଗୁ ଠିଆ ହୋଇପଡ଼ି ତା ସ୍ତ୍ରୀକୁ ଦଣ୍ଡବତ ହେଲା । ସମସ୍ତେ ବସିପଡ଼ିଲେ । ଆଳାପ ଆରମ୍ଭ ହେଲା ।

ଜଗୁ ଭୁଲିଯାଉଥାଏ, ଏ ଘରେ ଏହି ତାର ପ୍ରଥମ ପ୍ରବେଶ । ଖାଲି ଏମାନଙ୍କ କଥାବାର୍ତ୍ତା କି ବାହାର ବ୍ୟବହାରରୁ ନୁହେଁ, କେମିତି କଣ ହୋଇ ସବୁ ତାକୁ ଲାଗୁଥାଏ ଆପଣାର ଆପଣାର ପରି, ଯେପରି ବହୁଦିନରୁ ସେମାନଙ୍କ ସଙ୍ଗେ ତାର ଘନିଷ୍ଠତା । ତାଙ୍କର ଆଡ଼ମ୍ବର ନାହିଁ, ତା ପ୍ରତି ବିଶିଷ୍ଟ କୁତୁହଳ ନାହିଁ, ଯେପରି ସେ ଏଠି ଥିଲା, ଏଠି ଅଛି, ସହଜ ହୋଇ ସେମାନେ ତାକୁ ଗ୍ରହଣ କରିନେଇଛନ୍ତି । ଅନ୍ତର ଭିତରର ଆଲୁଅ ମୁହଁ ଉପରେ ପଡ଼ୁଛି, ତା' ପ୍ରତି ଏମାନଙ୍କର ସ୍ନେହ ଆପେ ଫୁଟିଉଠୁଛି ।

ସୁମୀସ୍ୱାମୀର ସ୍ତ୍ରୀ,—ଜଗୁ ଅନାଇ ଦେଖିଲା, ସତେକି ସେ ତାକୁ ଚହ୍ନିଛି । ହାଡ଼ୁଆ ଧାର ମୁହଁଟି, ଟିକିଏ ଲମ୍ବା, ନାନା ଚନ୍ତା ଦିକ ଆଶା ଉଚ୍ଛ୍ୱାସରେ ସେ ପାକଲ ହୋଇଛି । ପାଞ୍ଚଟି ପିଲାଙ୍କ ଜଞ୍ଜାଳ, ସତର୍କ କି ପରିଶ୍ରମ, ଏତେ ସମସ୍ୟା ଭିତରେ ନିଜକୁ ଚୋରି ଚୋରି ଦେଇ ଦେଇ ଗୋଟିଏ ପରିବାରକୁ ବଞ୍ଚାଇ ରଖି ଚଲାଇବାକୁ ପ୍ରାଣପଣେ ଚେଷ୍ଟା, କେତେ ଅଲେଖା ଦିନ ଦିନକର ନାନା ଦୁଃଖ କଷ୍ଟର ଅନବା ଛାପ, ସବୁ ଏକାଠି ହୋଇଛି ତାର ସେ ବ୍ୟକ୍ତିତ୍ୱର ଛବିରେ । ଅନୁମାନ କରିହେଉଛି, ଏଇ ସବୁ ଅଣ୍ଟାରେ ଲୁଗାକାନି ଗୁରେଇଦେଇ ସେ ଛୁଞ୍ଚୁଣୀ ଧରି ନଇଁପଡ଼ି ଘରଯାକ ଅଳିଆ ସଫା କରୁଥିବ, ମାଜୁଥିବ, କାଚୁଥିବ, ରାନ୍ଧୁଥିବ, ପରଷୁଥିବ । କେତେବେଳେ କାହାକୁ ଧରିଛି ଝାଡ଼ା ରୋଗ, କେତେବେଳେ କାହାକୁ ଜର, କାଶ, ଦିନରାତି ଆଖି ଜସରା ପଡ଼ୁନାହିଁ, ଜଗି ବସିଥିବ ସେ, କଲ ପରି ସେବାକାର୍ଯ୍ୟ କରିଯାଉଥିବ । ଆପେ ରୋଗରେ ପଡ଼ିରହୁଥିବ କେତେ ଥର । ଆପତ୍ତି ନାହିଁ କି ଫରମାସି ନାହିଁ, ଖାଲି ସହୁଥିବ, ଅପେକ୍ଷା କରିଥିବ, ସେମିତି ସେ ବେମାରରେ ଘୂମ୍ପୁରି ଘୂମ୍ପୁରି ଉଠିଯାଇ ଚୂଲି ଲଗାଉଥିବ, ପିଲାଙ୍କ ଖାଇବା ଖବର ବୁଝିଥିବ । କେତେବେଳେ ସବୁ ଦୁଃଖଶୋକ ମନେ ପକାଇ ସଂସାରର ଗରଲରେ ଜରଜର ହୋଇ ଫଁ ଫଁ କରି ତତଲା ଦୀର୍ଘଶ୍ୱାସ ପକାଉଥିବ, ଠାକୁରଙ୍କୁ ଡାକଥିବ ଯେଉଁ ନାଁରେ ତାଙ୍କୁ ସେ ଚହ୍ନେ ସେହି ନାଁରେ, କେତେବେଳେ ରାବିଥିବ, ଆଉ ସହିହେଉନାହିଁ । ସେତେବେଳେ

ସେ ଝର ଝର ହୋଇ କାନ୍ଦି କାନ୍ଦି ମନର ବୋଝ ହାଲୁକା କରିଥିବ, ଦେହର ସ୍ନାୟୁକୁ ସୁଷମ ଓ ସହଜ କରିଥିବ । ଆଉ, ହସିଥିବ ବି କେତେ କେତେବେଳେ ସେ, ମନ ଖୁସିରେ ଜିକି ଜିକି ଆଖିରେ ବିଛୁଦେଉଥିବ ଆଶା ଓ ଆନନ୍ଦର ହସ ।

ଗୋରା ପାତଳ ଡେଙ୍ଗା ଦୋହରିଟିଏ, ପାଦଯୋଡ଼ିକ ବଡ଼ ବଡ଼, ନାକଟି ଚେପ୍ଟା, ଦେହ ଅନୁପାତରେ ଦେଖିଲେ ଢିଲିଲି ପରି ବାହାଯୋଡ଼ିକ, ହାତପାପୁଲି ଫରଚା, ମୋଟା ମୋଟା ଗଣ୍ଠି ଗଣ୍ଠିଆ ଆଙ୍ଗୁଠି, ଅଗ ଚେପ୍ଟା । ପାଟି ଟିକିଏ ବଡ଼, ଅଳ୍ପ ମୋଟା ମୋଟା ଓଠ, ଢଳ ଢଳ ଆଖିରେ ଗମ୍ଭୀର ଗୁହାଣୀ, ଡମା ଡମା ଭ୍ରୂରୁ, ବହଳ କଳା ଭ୍ରୂଲତା ।

ସେ ଦେହର ସୌନ୍ଦର୍ଯ୍ୟ ସୁଠାମ ରୂପର ନୁହେଁ, ଯେପରି ଦେଖେ ବିଜ୍ଞାପନର ଛବିରେ । ସେ ନୁହେଁ ପ୍ରତିମାର ସୌନ୍ଦର୍ଯ୍ୟ, ସୁଠାମ, ନିଟୋଳ, ପୂରିଲ ପୂରିଲ ଦେହର ସୌନ୍ଦର୍ଯ୍ୟ ସେ ନୁହେଁ, ତଥାପି ସେ ଅତି ଆପଣାର ଅତି ବିଶ୍ୱାସୀ ହୋଇ ସୁନ୍ଦର, ଦେଖିଲେ ଆଖି ଶାନ୍ତ ହୁଏ, ସ୍ନାୟୁ ଶାନ୍ତ ହୁଏ, ବୁଦ୍ଧି ସ୍ଥିର ହୁଏ, ଆତ୍ମା ଶୀତଳ ହୁଏ । ସୁଖ ଦୁଃଖର ଆଶା ନିରାଶାର ନାନା ଅନୁଭୂତିରେ ପାଗ ହୋଇ ହୋଇ ସେ ରୂପର ପ୍ରତି ଅଂଶ ସେହି ଜୀବନ ଅନୁଭୂତିର ଦ୍ୟୋତନା କରେ, ଅପେ ଝଙ୍ଗେ ନିଭେଇଥିବା ଜୀବନ, ସେଥିରେ ଦିନ ଦିନକର କେତେ ଜୟ ପରାଜୟର ରହସ୍ୟମୟ ଛପିଲା କାହାଣୀ, ଜଗୁ ପରିଡ଼ା ତାଙ୍କୁ ଦେଖି ସେହି କଥା ହେରୁ କଲି । ସାଧାରଣ ଶିଷ୍ଟାଚାର ପ୍ରକାରେ ତାଙ୍କୁ ଦଣ୍ଡବତ କରିସାରିଲି ପରେ ସେ ତାଙ୍କୁ ବାରମ୍ବାର ନମସ୍କାର କଲି ତାର ଆଖିର ଗୁହାଣୀରେ, ଯେପରିକି ସେ ଗୁହାଣୀ କହିଲା, ମୁଁ ଚିହ୍ନିଛି ଆପଣଙ୍କୁ, ମାସକୁ ଶହେ ଟଙ୍କା ଆୟରେ ଦୁଇଶ ଟଙ୍କାର ଆବଶ୍ୟକତା କେଉଁ କମିଆ ବଳରେ ତୁଲାଇହୁଏ, ସଂସାରର ସବୁ ଶକ୍ତି ସବୁଆଡୁ ଓଟାରି ଓଟାରି ପରିବାରଟିକୁ ମାଟିରେ ମିଶାଇବାକୁ ଚେଷ୍ଟା କରୁଥିଲାବେଳେ କେଉଁ ଆହୁରି ବଡ଼ ଶକ୍ତି ବଳରେ ଧ୍ୱଂସକୁ ନିରୋଧ କରି ଜୀବନକୁ ବିକାଶ କରିହୁଏ, ତାହାରି ଆପଣ ପ୍ରତୀକ । ଏ ଦେହ ମାଟିର ମୂର୍ତ୍ତି ନୁହେଁ, ଏ ଜୀବନ୍ତ ଇତିହାସ ।

ସେ ଭଙ୍ଗା ଭଙ୍ଗା ଇଂରେଜୀରେ ହିଁ କଥା କହିଲେ, ସେଥିରେ ଥିଲା ଦକ୍ଷିଣୀ ବୋଲିର ଉଚ୍ଚାରଣ । ଜଗୁ ବି ଇଂରେଜୀରେ କଥା କହୁଥାଏ, ସେ ବି ଓଡ଼ିଆ ରୁଣ୍ଡର ଇଂରେଜି । ତାଙ୍କର ଲମ୍ବା ନେଳିଆ ଶାଢ଼ୀ, ଦକ୍ଷିଣୀ ପିନ୍ଧା, ଖୋଲା ମୁଣ୍ଡରେ ଦକ୍ଷିଣୀ ଖୋସା, ସେଥିରେ ସେବତୀଫୁଲ ଗୁଞ୍ଜା ହୋଇଥିଲା । ନାକରେ କାନରେ ହାତରେ ବେକରେ ହୋଇ ସାମାନ୍ୟ ଅଳଙ୍କାର, ସେଥିରେ ବି ଦକ୍ଷିଣର ହିଁ ଶୈଳୀ । କିନ୍ତୁ ତାଙ୍କ ବେଶ କି ଭାଷାର ବିଭିନ୍ନତା ଜଗୁର ମନକୁ ଆଦୌ ସ୍ପର୍ଶ କଲା ନାହିଁ । ମନେ ମନେ ସେହି ଗୋଟିଏ ଧାରଣା ଯେ ସେ ଆପଣାର, ତା ନିଜ ସମାଜରେ ଯେପରି ସେ ଦେଖିଆସିଛି ସେମାନଙ୍କୁ, ମା ଖୁଡ଼େଇ ଭଉଣୀ ଭାଉଜମାନେ, ଯେପରି ତାର ନିଜର ଘରଣୀ, ସେହି ଶ୍ରେଣୀର, ସେହି ରୂପର, ଦାୟିତ୍ୱ ଓ କର୍ତ୍ତବ୍ୟ ଉପରେ ପ୍ରତିଷ୍ଠିତା ନାରୀମୂର୍ତ୍ତି, ଗଢ଼ିବା ଓ ପାଳିବା ହିଁ ତାର କାମ ।

ଅଳ୍ପ କଥାବାର୍ତ୍ତା ପରେ ଶୃମ୍ପାସ୍ୱାମୀର ସ୍ତ୍ରୀ ଉଠିପଡ଼ି ଭିତରକୁ ଗଲେ, କଫି ଓ ଜଳଖିଆ ଆଣିବେ ବୋଲି ।

ତା'ପରେ ଜଗୁ ଓ ଶୂମ୍ପା ଦୁହେଁ କଥାବାର୍ତ୍ତା ଆରମ୍ଭ କରିଦେଲେ । ପରସ୍ପରକୁ ସ୍ନେହ ଶ୍ରଦ୍ଧା କରୁଥିବା ଯୋଡ଼ାଏ ମଣିଷ ପରସ୍ପରର ନୂଆ ନୂଆ ଦିଗ ଆବିଷ୍କାର କରିବାକୁ ଇଚ୍ଛୁକ । ପୁରୁଣା କଥାରେ ପ୍ରୟୋଜନ ନାହିଁ, ତା ତ ସେମାନେ ଆଗରୁ ଜାଣିଛନ୍ତି । ବ୍ୟକ୍ତିଗତ ଜୀବନର କାହାଣୀ ଆଲୋଚନା କରିବା କାହାରି ଇଚ୍ଛା ନ ଥିଲା । ପଡ଼ିଲା ତାହାରି କଥା, ମଣିଷର ପିଠିପଟେ ସେଇ ଯେଉଁ ଥାଏ ମାଟି ଆଉ ମଣିଷ, ମଣିଷର ସମାଜ ଆଉ ତାର ଚଳଣିଭଙ୍ଗୀ, ଆଉ ତାର ପରମ୍ପରାଗତ ବିଶ୍ୱାସଧାରା । ଏଇଥିରୁ ନାନା କଥା, କୁଳଙ୍କରୁ ଛିଟିକି ପଡ଼ିଲା । ଆସିଲା ରାଜନୀତି, ସ୍ୱାଧୀନତା ପୂର୍ବର କାହାଣୀ, ପୁଣି ସ୍ୱାଧୀନତା ଉତ୍ତରରୁ, ଜଗୁ ପରିଡ଼ା ଓ ଶୃମ୍ପାସ୍ୱାମୀ ଦେଖିଲେ ଯେ ନାନା ବିଷୟରେ ସେମାନଙ୍କ ମତ ଓ ଅଭିଜ୍ଞତା ଏକାଠି ମିଳିଯାଉଛି । ଯେଉଁଠି ନ ମିଳୁଛି ସେଠି ବି ପରସ୍ପରକୁ ଆମୋଦ ଦେଉଛି ।

ଗପୁ ଗପୁ କଫି ଆସିଲା, ଜଳଖିଆ ଆସିଲା—ଇଡ଼ଲି, ଉପମା, ଦୋସା, ଚଟଣି, ତରକାରି, ପାମ୍ପଡ଼ । ଶୃମ୍ପା ସ୍ୱାମୀର ସ୍ତ୍ରୀ ଟିକିଏ ବସି କଥାବାର୍ତ୍ତାରେ ଯୋଗ ଦେଇ ପୁଣି ଘରକାମ କରିବାକୁ ଚାଲିଗଲେ । ଆଲୁଅ ଲାଗିଲା, ପିଲାଏ ଘରଭିତରକୁ ଆସିଲେ, ଜଳଖିଆ ସାରି ପଢ଼ାଘରକୁ ଗଲେ । ଏଣେ ଆଲୋଚନା ଲାଗିରହିଲା । ଦୁଇଜଣ ସାଧାରଣ ଲୋକ ଯାହାଙ୍କ ନାଁ ଖବରକାଗଜରେ ବାହାରେ ନାହିଁ, କେଉଁ ନାଁ ଡାକ ପଙ୍ଗତରେ ପଡ଼େ ନାହିଁ, ଯାହାଙ୍କ ମତାମତ ପହଞ୍ଚେ ନାହିଁ କ୍ଷମତାର ଅଧିକାରୀମାନଙ୍କ କାନରେ, ପହଞ୍ଚିଲେ ବି କଡ଼ାକର ମୂଲକୁ ଆସନ୍ତା ନାହିଁ, ସେମାନେ ସ୍ପଷ୍ଟ କଥା କହି ଆଲୋଚନା କରିବାକୁ ଲାଗିଲେ ରାଷ୍ଟ୍ରଭାଷା ବିଷୟରେ, ଭାରତର ବୈଦେଶିକ ନୀତି, ଅର୍ଥନୀତି, ପଞ୍ଚବାର୍ଷିକ ଯୋଜନା, ଶାସନ ନୀତି, ଆଶ୍ରୟପ୍ରାର୍ଥୀ ସମସ୍ୟା ଓ ବିଭିନ୍ନ ସମସ୍ୟା ବିଷୟରେ । ଆମେରିକା, ରୁଷ, ଚୀନ, ପାରସ୍ୟ କିଛି ବାକି ରହିଲା ନାହିଁ । କଫି ଉପରୁ ସିଗାରେଟ୍ ଚାଲିଲା, ଆଲୋଚନା ଚାଲିଲା । ମନ ଖୋଲି ଗପ, ଚାକିରି କଟକଣା ଆଇନର ଭୂମି ମୁହଁରେ ନ ଥିଲା । କିଏ ଶୁଣିବ ପୁଣି ଆଉ କାହାକୁ କହିବ କି ଲେଖିବ ବୋଲି ଯେଉଁ ସଙ୍କୋଚ ଥାଏ, ତା ବି ନ ଥିଲା, ଥିଲା, ଘରର ନିହିତ ସ୍ୱାଧୀନତା, ସ୍ୱାଧୀନ ମତାମତ ।

ଦୁହେଁ ଦୁହିଁଙ୍କ କଥାରେ ଉତ୍ସାହିତ ହୋଇ ଗପିଯାଉଥିଲେ । ମୁହଁ ଆହୁରି ଆହୁରି ଖୋଲିଯାଉଥିଲା । ତା'ପରେ କପରି କେଣ ହେଲା କହିହେବ ନାହିଁ, ହଠାତ୍ ଦେଖାଗଲା, ସେମାନଙ୍କ ମୁହଁ ଆଖି ଝଲସି ଉଠୁଛି, ହାବଭାବରେ ଦେଖା ଉଠୁଛି ଅସ୍ଥିରତା । ସ୍ୱର ଚଡ଼ଚଡ଼ିକା ଯାଉଛି । ସେମାନଙ୍କ ଉତ୍ତେଜିତ କଥା-ବାର୍ତ୍ତା ଶୁଣି ପିଲାଏ ପଢ଼ା ବନ୍ଦ କରି କବାଟ ସେପାଖେ ଗହଳି କରି ଠିଆହେଲେ ।

ସୁମା ସ୍ୱାମୀର ସ୍ତ୍ରୀ ରୋଷେଇଘରେ ଚୂଲିମୁଣ୍ଡରୁ ସେକଥା ଶୁଣିପାରି କାମ ବନ୍ଦ କରି ନିଶ୍ୱାସ ରୋକି ରୋକି କାନେଇ ରହିଲେ । ଯୋ ଯୋ ପାଞ୍ଚ ହେଉଥାନ୍ତି ଯେ ନିଜେ ଯାଇ ମଝିରେ ଠିଆହେବେ କି ନାହିଁ । ତାଙ୍କ ମୁହଁରୁ ପ୍ରଫୁଲ୍ଲତା ହଟିଯାଇଥାଏ, ବିବ୍ରତ ଭଙ୍ଗୀ ସହିତ ଫୁଟିଉଠୁଥାଏ ଆଶଙ୍କାର ଛବି । ପ୍ରତି ମୁହୂର୍ତ୍ତରେ ଭାବୁଥାନ୍ତି, "କଣ ହେଲା ? କଣ ହେଉଛି ? କଣ ହେବ ତା ପରେ ?"

ଦୁଇ ବନ୍ଧୁ କଥା କହୁ କହୁ ପାଲଟିଯାଇଥିଲେ ସତେକି ଦୁଇ ବିରୋଧୀ ପକ୍ଷର ଦୁଇ ଯୋଦ୍ଧା, ପୁରୀ, କୋଣାରକ, ଭୁବନେଶ୍ୱର, ସିମାଚଳ, ତିରୁପତି ଦେଉଳମାନଙ୍କରୁ ଓହ୍ଲାଇ ପଡ଼ିଥିଲେ ଇତିହାସକୁ, ପାଖ ପାଖ ହୋଇ ଯୋଡ଼ିଏ ରାଜ୍ୟ, ଓଡ଼ିଶା ଓ ଆନ୍ଧ୍ର, ଅତୀତରେ ତା'ର ବିବାଦମାନ ଇତିହାସର କାହାଣୀ, ସେଇଠି ଥିଲେ ସେମାନେ ।

"ଏ ସମଗ୍ର ଦେଶଟା ଥିଲା ଯୋଦ୍ଧାମାନଙ୍କ ଦେଶ," ଜଗୁ ପରିଡ଼ା କହୁଥାଏ, "ଓଡ଼ିଶାର ରୂପୀସୈନ୍ୟ ଭାରତ ବିଖ୍ୟାତ । 'ଖଣ୍ଡା' ଶବ୍ଦରୁ 'ଖଣ୍ଡାଏତ'ର ଉତ୍ପତ୍ତି । ବିଜେତ ସେ ଖଣ୍ଡାଏତ ଜାତି ।"

"ଅବିକଳ ସେମିତି ଆନ୍ଧ୍ର ଦେଶରେ, ତେଲଗା ବା ନାଇଡ଼ୁ ଜାତି, ଆଉ ରାଜୁଲୁ, ସେମାନେ ବି ପ୍ରସିଦ୍ଧ ଯୋଦ୍ଧା, ଇତିହାସରେ ଆପଣା ରକ୍ତରେ ସତେକି ଅମର ଅକ୍ଷର ଲେଖିଯାଇଛନ୍ତି ।" ସୁମା ସ୍ୱାମୀ କହିଲା ।

"କୃଷ୍ଣା କାବେରୀ ଦୁଇ ନଦୀର ମଧ୍ୟବର୍ତ୍ତୀ ଅଞ୍ଚଳ ବି ଓଡ଼ିଶାର ମାଟି ହୋଇଥିଲା, ଓଡ଼ିଆ ସେଠି ଘରଦ୍ୱାର କରି ରହିଥିଲେ, ସେ ଅଞ୍ଚଳକୁ ଶାସନ କରୁଥିଲେ ।"

"ଅସମ୍ଭବ," ସୁମା ସ୍ୱାମୀ ଜୋର୍‌ରେ ମୁଣ୍ଡ ହଲେଇ କହିଲା, "ଓଡ଼ିଶା, ଆମେ ଜାଣୁ, ଚିଲିକା ଶେଷସୀମାକୁ ହିଁ ଥିଲା, ତା'ପରେ ସେଠୁ ବି ଓଡ଼ିଆ ହଟିଗଲେ, ଋଷିକୁଲ୍ୟା ଉତ୍ତରପଟଟା ଓଡ଼ିଶା, ଦକ୍ଷିଣକୁ ତେଲିଙ୍ଗି ଆନ୍ଧ୍ର ।"

"ଆପଣ ଇତିହାସକୁ ଅସ୍ୱୀକାର କରିବେ ? ପୁରୁଷୋତ୍ତମ ନିଜେ ମଲେ କୃଷ୍ଣା ନଦୀ କୂଳରେ । ପ୍ରତାପରୁଦ୍ରଙ୍କ ସମୟରେ ରାୟ ରାମାନନ୍ଦଙ୍କ ରାଜଧାନୀ ହୋଇଥିଲା ରାଜମହେନ୍ଦ୍ରୀ ।"

ସୁମା ସ୍ୱାମୀ କହିଲା, "ସେସବୁ ସାମୟିକ ଯୁଦ୍ଧ-ବିଜୟ । ଗୋଟାଏ ଜାତି ଯେତେବେଳେ ଦୈବୀ ଯୋଗକୁ ଦୁର୍ବଳ ଅବସ୍ଥାରେ ଥାଏ, ଆଉ ଗୋଟାଏ ଜାତିର ଲୋକେ କିଛି ଦିନ ପାଇଁ ତା ଦେଶକୁ ଅଧିକାର କରି ଖଜଣା ଅସୁଲ କରନ୍ତି ; ତା ବୋଲି ସେ ମାଟିର ମଣିଷ ତ ଆଉ ତାଙ୍କ ଭାଷା ଗ୍ରହନ୍ତି ନାହିଁ ।"

ଜଗୁ ପରିଡ଼ା କହିଲା, "ଯୁଆଡ଼େ ଦେଖିବେ, ଓଡ଼ିଆ ନାଁ, କଳିଙ୍ଗ ନଗର, କଳିଙ୍ଗ ପାଟଣା, ଓଡ଼ବାଡ଼ି, ବିଶାଖା ପାଟଣା, ବିଜୟ ବାହୁଡ଼ା,—ଇଂରେଜ

ଆସିଲା ପରେ ସେ ନାଁକୁ ତେଲୁଗୁ କରାହୋଇଛି, ଯେମିତି ଜେମାଦେଈପୁରକୁ ଜମିଡ଼ିପେଟା, କଙ୍କଡ଼ା ପାହାଡକୁ ଏଣ୍ଡ୍ରକା, 'ଗଡ଼ ଗୁଡ଼ା'କୁ 'ଗେଡ଼୍ଡା'। ଦୁର୍ଗରେ, ଦେଉଳରେ ଅସଂଖ୍ୟ ଓଡ଼ିଆ ଶିଳାଲିପି, ଦାନପତ୍ର ଓଡ଼ିଆରେ ଲେଖା, ତା' ପରେ ତ ଛପାଇତିହାସ, ଖାଲି ତୁଚ୍ଛା ଗୁଣ୍ଡକଥାରେ କିଏ ସତ୍ୟକୁ ଉଡ଼େଇଦେଇ-ପାରିବ ? ଏ ଜାତିର ତଣ୍ଟି ଚପାହୋଇଛି, ଆଜ୍ଞା, ଗଲା ମେଦିନୀପୁର, ସିଂହଭୂମି ଗଲା, ରାୟପୁର, ଫୁଲଝର, ବସ୍ତର କେତେ କଣ ଗଲା, ଗଲା ଇଚ୍ଛାପୁର, ଜଳନ୍ତର, ଭୂଡ଼ାରସିଂହ, ମଞ୍ଜୁଷା, ଟେକାଲି, ଗଙ୍ଗରାଜ, ମାଡୁଗୋଲ, ଦକ୍ଷିଣ ପ୍ରାନ୍ତର ସବୁ ଦେଶ। କାଲିକା କଥା, ସରେଇକଲା ଖରସୁଆଁ ବି ନେଇଗଲେ।" ତା'ର ସ୍ୱରରେ ଆହତ ଅଣ୍ଡି ଅଭିମାନର ଝଙ୍କାର ଫୁଟିଉଠିଲା।

ରାମାସ୍ୱାମୀ କହିଲା, "କୁଆଡ଼େ କଣ ଯାଇଥିବ, ଦକ୍ଷିଣରେ ଓଡ଼ିଶାର କିଛି ଯାଇନାହିଁ, ବରଂ ଆନ୍ଧ୍ରର ସବୁ ଯାଇଛି। ଏଇ ଦେଖନ୍ତୁ ପାରଳାଖେମୁଣ୍ଡିଟା, କେଉଁ ଯୁକ୍ତିରେ ସେଇଟା ଓଡ଼ିଶାରେ ରଖାହୋଇଛି ? କୋରାପୁଟ ଜିଲ୍ଲାର ରାୟଗଡ଼ା, ଗୁଣୁପୁର ତାଲୁକମାନ, କିଏ ସେଠି କହେ ଓଡ଼ିଆ କଥା ? ତଣ୍ଟି ଚପା ହେଲା ଆନ୍ଧ୍ରର, ବିନା କାରଣରେ ଲକ୍ଷ ଲକ୍ଷ ନିରୀହ ଆନ୍ଧ୍ରଙ୍କ ଉପରେ ଓଡ଼ିଶାର ଶାସନ ଲଦିଦିଆହେଲା।"

"କଣ କହୁଛନ୍ତି ଆପଣ ! ପାରଳା-ରାୟଗଡ଼ା-ଗୁଣୁପୁର ! ସେ ଅଞ୍ଚଳରେ କେଉଁଜଣ ବା ତେଲୁଗୁ ? କେବେ ସେମାନେ ଆସିଲେ ସେଠିକି ? ଆପଣ ଦେଖିଛନ୍ତି ସେ ଜାଗା ସବୁ ?"

"ଦେଖିଲେ କଣ ଅଧିକା ହେବ, ଆଜ୍ଞା, କେତେ ଲୋକ ତ ଦେଖିଛନ୍ତି, ଜାଣିଛନ୍ତି, ଲେଖିଛନ୍ତି। ଆପଣ ଏ ଯେତେ ଯେତେ ଜାଗା ନାଁ କହୁଛନ୍ତି, କେତୋଟା ଦେଖିଛନ୍ତି ସେଥିରୁ ?"

"ପ୍ରତି ଗେଜେଟିଅର ଦେଖନ୍ତୁ, କମିଶନ ଉପରୁ କମିଶନ ବସିଲା, ତା'ର ରିପୋର୍ଟ ଦେଖନ୍ତୁ, ଆଉ ଦେଖନ୍ତୁ ଇତିହାସ, ଚୋଡ଼ଗଙ୍ଗ, ନରସିଂହଙ୍କଠାରୁ ଯେ ମୁକୁନ୍ଦଦେବଙ୍କ ଯାଏ—"

"ଦେଖିଛି, ମୁଁ ବି ଇତିହାସର ଛାତ୍ର। ଆପଣ ପ୍ରତାପରୁଦ୍ରଙ୍କ କଥା କହିଲେ ; କୃଷ୍ଣଦେବ ରାୟଙ୍କୁ ଭୁଲିଯାଉନ୍ତୁ ନାହିଁ। ପଣ୍ଡିତ, ସଙ୍ଗୀତଜ୍ଞ, ମହାଯୋଦ୍ଧା, ଉଦାରଚେତା ; ଭାରତରେ କେତେଜଣ ରାଜା ଥିଲେ ତାଙ୍କ ପରି ? ତାଙ୍କ ରାଜସଭା ସାକ୍ଷାତ୍ ବିକ୍ରମାଦିତ୍ୟଙ୍କ ରାଜସଭା ପରି। କୃଷ୍ଣଦେବ ରାଏଲୁ ଆନ୍ଧ୍ରପ୍ରଦେଶର ଗୌରବ, ଐତିହାସିକ ଆନ୍ଧ୍ର ସାତବାହନ ଚକ୍ରବର୍ତ୍ତୀଙ୍କ କୀର୍ତ୍ତିକୁ, ତାଙ୍କ କାର୍ଯ୍ୟକଳାପ ସ୍ମରଣ କରାଇଦେଉଥାଏ। ଅନ୍ୟାୟରେ ଓଡ଼ିଶା ରାଜା ଆନ୍ଧ୍ରଦେଶର ମସ୍ତବଡ଼ ଅଞ୍ଚଳ ଉପରେ ଶାସନ କରିଆସୁଥିଲେ। କୃଷ୍ଣଦେବ ବସ୍ତୁ ସେ ଅନ୍ୟାୟର ପ୍ରତିକାର କଲେ। ଆଗ ମୁକ୍ତ କଲେ ଉଦୟଗିରି ଦୁର୍ଗକୁ,

ପ୍ରତାପରୁଦ୍ରଙ୍କ କଳେଇ ରାମଚନ୍ଦ୍ର ରାଜବଂଶକୁ ବନ୍ଦୀ କଲେ । ତା'ପରେ କୃଷ୍ଣାନଦୀ ମୁହାଣ ପାଖରେ ପ୍ରସିଦ୍ଧ କୋଣ୍ଡାଭିଡ଼ ଦୁର୍ଗ ଅଧିକାର କଲେ । ସେଠି ବନ୍ଦୀ ହେଲେ ପ୍ରତାପରୁଦ୍ରଙ୍କ ପୁଅ ବୀରଭଦ୍ର । ତା'ପରେ ଅନ୍ୟାନ୍ୟ ଦୁର୍ଗ ଦଖଲ କଲେ । ବେଲୁମକୋଣ୍ଡା, ନାଗାର୍ଜୁନକୋଣ୍ଡା ଦୁଇ ଦୁର୍ଗ ଅଧିକାର କଲେ, ତା'ପରେ ନେଲେ ପ୍ରସିଦ୍ଧ କୋଣ୍ଡାପଲ୍ଲି ଦୁର୍ଗ । ପ୍ରତାପରୁଦ୍ରଙ୍କର ଏକ ରାଣୀ, ଦୁଇ ପୁଅ, ସାତ ଅମାତ୍ୟ ବନ୍ଦୀ ହେଲେ । ସେଇଠୁ ଗଲେ ସିମାଚଳମ୍ । ସେଠି ବିଜୟସ୍ତମ୍ଭ ଗଢ଼ିଲେ, ତା'ପରେ ଉତ୍ତରକୁ ଯାଇ ସମୁଦାୟ ସମୁଦ୍ରକୂଳ ଅଞ୍ଚଳ ମୁକ୍ତ କଲେ । ପ୍ରତାପରୁଦ୍ରଙ୍କ ସର୍ତ୍ତରେ ସନ୍ଧି କଲେ ଜାଣିଥିବେ ତ ଆପଣ—" ହସିଦେଇ ରାମାସ୍ୱାମୀ କହିଲା, "ପ୍ରତାପରୁଦ୍ର ତାଙ୍କୁ ଜୋଇଁ କଲେ, ଆଜ୍ଞା, ତାଙ୍କ କନ୍ୟା ତୁକ୍କାଙ୍କୁ ତାଙ୍କୁ ବିଭା ଦେଲେ । ତାପରେ ମୁକୁନ୍ଦଦେବଙ୍କ କଥା କହୁଛନ୍ତି ନା, ମୁକୁନ୍ଦ ତ ନିଜେ ତେଲଙ୍ଗା ଲୋକ, ରାଜୁଙ୍କ ତେଲଙ୍ଗା ସେ ଓଡ଼ିଶା ସିଂହାସନ ଦଖଲ କଲେ । ଏଇ ତ ଇତିହାସ !"

"ନୁହେଁ, ନୁହେଁ, ନୁହେଁ" ଜଗୁ ପଣ୍ଡା ଚିତ୍କାର କଲା, "ଏଥିରେ ଅନେକ ମନଗଢ଼ା କଥା ରହିଗଲା । ମୁକୁନ୍ଦ ବି ତେଲଙ୍ଗା ନ ଥିଲେ, ସେ ଦକ୍ଷିଣ ଅଞ୍ଚଳର ଲୋକ, ତାଙ୍କ ଆଚାର ବ୍ୟବହାର ପାଇଁ ତାଙ୍କୁ ତେଲଙ୍ଗା କୁହାଯାଉଥିଲା—"

କଥାକୁହା ଜାହାଜଟା ତଳେ ଲାଗିଯାଇ ଅଟକିଯାଇଥାଏ, ଖାଲି ଲାଗିଯାଇ ନ ଥାଏ, ତା'ର ତଳି ଫୁଟିଯାଇଥାଏ, ସେଇଟା ଧୀରେ ଧୀରେ ବୁଡୁଥାଏ । ରାମାସ୍ୱାମୀର ନିମନ୍ତ୍ରଣର ଆବେଗ, ଜଗୁ ପଣ୍ଡାର ଉଚ୍ଛୁଳା ସ୍ନେହ, ରାମାସ୍ୱାମୀର ସ୍ତ୍ରୀର ଯତ୍ନ ଓ ପରିଶ୍ରମ, ସଞ୍ଜ ଗୋଟାକର ଘର ଘର ଆପଣା ଆପଣା ଭାବ, ଏସବୁ କୁଆଡ଼େ ଉଭେଇ ଯାଇଥାଏ । ଦୁଇବନ୍ଧୁ ନୁହନ୍ତି, ଯେପରିକି ଅଚେନ୍ଥା ଦେଶୁ ଦୁଇଜଣ ହଠାତ୍ ହାବୁଡ଼ା ହାବୋଡ଼ି ହୋଇ ଚନ୍ଦ୍ରାଚନ୍ଦ୍ରି ହୋଇ ତା ଉତ୍ତରୁ ଯାହା ହେବ ସେଥିପାଇଁ ନିଜକୁ ପ୍ରସ୍ତୁତ କରୁଥାନ୍ତି ।

ଏତିକିବେଳେ କବାଟ ଖୋଲିଗଲା, ପଶିଆସିଲେ ରାମାସ୍ୱାମୀର ସ୍ତ୍ରୀ ଓ ତାଙ୍କ ପଛେ ପଛେ ପିଲାଟିଏ । ରାମା ସ୍ୱାମୀର ସ୍ତ୍ରୀ ଉଭୟର ଭାବ ଉପରେ ହସ ଛାଡ଼ିଦେଇ କହିଲେ :

"ପୁଣି କେଉଁ କଥା ପଡ଼ିଛି ଆଜି ? ରାଜା ମହାରାଜାମାନଙ୍କ କାହାଣୀ ପରା ! ସେ ବୟସରେ ଯୋଗୀ ଗୀତ ବୋଲନ୍ତି ।"

ରାମାସ୍ୱାମୀ ଗମ୍ଭୀର ହୋଇ କହିଲା, "ଏ ଇତିହାସ ।"

ତାର ସ୍ତ୍ରୀ କହିଲେ, "ରଖ ତମର ଇତିହାସ । ମହାଭାରତ ପଢ଼ିଲେ ସେଦିନ ଘରେ କଳି ଲାଗେ ବୋଲି ଲୋକେ କହନ୍ତି । ତୁମର କୃଷ୍ଣଦେବ ରାଏଲୁ ତୁମକୁ ସେ ମନ୍ତ୍ରୀ କରିଥାନ୍ତେ, ଭାବିଚ, ନା ପ୍ରତାପରୁଦ୍ର ପୁରୁଷୋତ୍ତମ ଥିଲେ ଏ

ଭଦ୍ରଲୋକ ହୋଇଥାନ୍ତେ ତାଙ୍କ ଅମାତ୍ୟ ? ଗରିବ ଲୋକେ ସେତେବେଳେ ବି ପେଟ ପାଇଁ କାମ କରୁଥିଲେ, ବୁଲୁଥିଲେ ବାବୁ, ମାଇପେ ଘର ଚଳେଇବାକୁ ଧନ୍ଦି ହେଉଥିଲେ, କେମିତି ହାଣ୍ଡି ଟା ଚୁଲି ଉପରେ ବସିବ, ଭାତ ଫୁଟିଲେ ପିଲାଏ ଖାଇବେ, ବଞ୍ଚିବେ । ତୁମ କୃଷ୍ଣଦେବ ରାୟ ପ୍ରତାପରୁଦ୍ରଙ୍କ ସୁନ୍ଦର ପାହାର ସେଇ ଗରିବଙ୍କ ମୁଣ୍ଡ ଉପରେ, ଘର ଉପରେ, ହାଣ୍ଡି ଉପରେ ବି ପଡ଼ୁଥିବ, ମୁଣ୍ଡ କୁଢ଼ ଉପରେ ତୋଳା ହୋଇଥିବ ବିଜୟସ୍ତମ୍ଭ ।"

ତାଙ୍କର ଉତ୍ତେଜିତ ଲୁହ ଛଳ ଛଳ ମୁହଁକୁ ଦେଖି ଦୁଇ ବନ୍ଧୁ ଚମକିପଡ଼ି ଠିଆ ହୋଇପଡ଼ିଲେ । ସେ କହିଗଲେ, "ଆଜି କୋଉ ଇତିହାସ ତମ ପିଲାଙ୍କ ମୁହଁରେ ଆଧାର ଦେଉଛି ? କାମ କର, ଦାନାକନା ଯୋଗାଡ଼ କର, ନ ହେଲେ ମରିଲ । ଖଟିଲ, ଘର ସମ୍ଭାଳିଲ, ତେଣିକି ଯୋଉ ବୋଲିରେ ଇଚ୍ଛା, ସେ ବୋଲିରେ କଥା କହ । ତାମିଲ କି ତେଲୁଗୁ କି ଓଡ଼ିଆ କି ବଙ୍ଗାଳି କି ପଞ୍ଜାବି, ଯୋଉ ପୋଷାକ ମନ ସେ ପୋଷାକ ପିନ୍ଧ, ଭଗବାନଙ୍କୁ ଆଶ୍ରା କରି, ସତରେ ଚଳିଲ, ତୁମେ ମଣିଷ ହୋଇ ସଂସାରରେ ରହିବ । ଆଃ ତୁମେ ପୁରୁଷଗୁଡ଼ାକ । ମାଇପେ କେତେ କଷ୍ଟ ପଡ଼ି ସାଇତନ୍ତି, ସମ୍ଭାଳନ୍ତି, ସବୁ ଏକାଠି କରି ଗଢ଼ନ୍ତି, ଆଉ ତମକୁ କେଉଁ ଭୂତ ଲାଗେ ଯେ ଦୁନିଆକୁ ଜାଳିପୋଡ଼ି ଭସ୍ମ କରିଦେବାକୁ ତମକୁ ଡର ସନ୍ଦେହ ନାହିଁ !"

"ନାହିଁ—ନାହିଁ, କିଛି ନାହିଁ, କିଛି ନାହିଁ, ଖାଲି ଗପ ହେଉଥିଲା," ଦୁଇ ବନ୍ଧୁ ଏକାଠି କହିହେଉଥିଲେ । ଆଘାତ କାହିଁ କୁଆଡ଼େ ଉଭେଇଯାଇଛି । ପୁଣି ଲେଉଟିଆସିଛି ସହଜ ଆବେଗ ।

ଗୁମ୍ମା ସ୍ୱାମୀ ହସୁଛି, ଜଗୁ ପରିଡ଼ା ହସୁଛି ।

ଜଗୁ ନିମନ୍ତ୍ରଣ କଲା, "କାଲି ସଞ୍ଜରେ ସପରିବାରେ ଆମ ଘରେ— । ମୁଁ ଆସି ନେଇଯିବି ।"

"ନିଶ୍ଚୟ, ନିଶ୍ଚୟ" ଗୁମ୍ମାସ୍ୱାମୀ କହିଲା । ଖାଲି ମୁଣ୍ଡ ହଲାଇ ହଲାଇ ନୁହେଁ, ତା'ର ଦେହ ଗୋଟାକଯାକ ଝାଙ୍କି ହୋଇଯାଉଥାଏ ।

ଆନନ୍ଦରେ ଗଦ୍‌ଗଦ ହୋଇ ଜଗୁ ପରିଡ଼ା ବିଦାହୋଇ ଯିବାକୁ ବାହାରିଲାବେଳେ ତା ହାତ ପାପୁଲିକି ବଜ୍ରମୁଠାରେ ଚିପିଧରି ଗୁମ୍ମାସ୍ୱାମୀ ତା'ର କାନପାଖେ ମୁହଁ ଲଗାଇ କହିଲା, "ଆମେ ଦୁଇ ଭାଇ ।" ଜଗୁ ପରିଡ଼ା ତା'ର ଅଣ୍ଟାରେ ହାତ ଗୁରେଇଦେଇ ତାକୁ କୁଣ୍ଢେଇ ପକାଇ କହିଲା,, "ଖାଲି ଏ ଜନ୍ମର ନୁହେଁ, ଜନ୍ମଜନ୍ମାନ୍ତରର ।"



# ଭିଣେଇ

ମେଘ ଦୁଲୁକୁଛି । ଅନ୍ଧାର ଘୋର । ଝରକାବାଟେ ପଦାରେ ଦିଶୁଚି, ଦପଟେ ତଇକାଠ, ଉପରେ ଗ୍ରୁଟର ଝୋଲେଇଛି ଚେନାଏ ମଝିରେ ଯେଉଁ ପୃଥିବୀ ତାର ଆକାର କମଳାଲେମ୍ବୁ ପରି ନୁହେଁ, ଝରକଲମରେ ସୁଲେଇ ଲେଖିବା ପାଇଁ ଚକ୍‌କଣ କଳାସ୍ୟାହି ବୋତଲର ପେଟ । ସେ, ସେଥିରେ ବୁଡ଼ିଛନ୍ତି ସାଙ୍ଗଟା ବଡ଼ ବଡ଼ ମିଞ୍ଜି ମିଞ୍ଜି କୁଳୁକୁଳିଆ ପୋକ, ନା, ଦୂରର ସଡ଼କ କରର ବିଜୁଳି ଆଲୁଅ, ଯେ ଯେଉଁଠି, ସେ ଏଇଠି ।

ଟେବୁଲ ଉପରେ ଆଲୁଅଟିଏ ଜଳୁଛି, ଏକର ସେକର ହୋଇ ପାଞ୍ଚ ଖଣ୍ଡ ଧଳା କାଗଜ ପଡ଼ିଛି । ଦୁଇ ଘଣ୍ଟା କାଳ ତପସ୍ୟା କରିବା ପରେ କଣ ସେଥିରେ ରୂପ ଦେଲାନି ବୋଲି ଲେଉଟାଇ ଲେଉଟାଇ ଦେଖିଲି, ଧଳା କାଗଜ ଧଳା ହୋଇ ପଡ଼ିରହିଛି, ସମୁଦ୍ର ଲହଡ଼ିରେ ମଡ଼ାଧୂଆ ବାଲିସର, ବର୍ଣ୍ଣ ନାହିଁ, କାହାଣୀ ନାହିଁ, ସବୁ ପରିଷ୍କାର । କେବଳ ଏମୁଣ୍ଡରେ କ ସେ ମୁଣ୍ଡରେ ଦେଖିଲେ ସେହି ଗୋଟିଏ ପଦ ଲେଖା ହୋଇଛି—"ଭିଣେଇ ।" ସେ ଦାନ୍ତ ଦେଖାଇ ଦେଖାଇ ଖତେଇ ହେଲାପରି ହସୁଛି, ଧୂଆଁ ଖିଆ କାଳିଆ ବୋଲା ଦାନ୍ତରେ ଯୋଡ଼ାଏ ସୁନା ଖିଲ, ଟାଙ୍ଗରା ମୁଣ୍ଡରେ ଫୁରୁଫୁରୁ ବାଳ ପୁଳାଏ, ଲମ୍ବା ଅଂଶିଆ ମାଉଁସିଆ ମୁହଁରେ ହସର ଛାଇ ଚହଲୁଛି, ମୁଣ୍ଡର ଦ କଡ଼ରେ ଗ୍ରେଟ ଗ୍ରେଟ ପକ୍ଷୀପରି ଡେଣା କାନ, ବେକ ତଳେ ଜମା ହୋଇ ଠିଆ ହୋଇଛି ପଟି ପଟି କଳା ନାଲି ଟାଇର ଫାଶ, କୋଟ ପିନ୍ଧା ଟାଣୁଆ କାନ୍ଧ ଦିଟା । ପ୍ୟାଣ୍ଟ କୋଟ୍, ଟାଇ, ଜକ୍ ଜକ୍ କଳା ଯୋତା, ଛପୁଟ ଡେଙ୍ଗା ଛାଁଟ୍ ମଣିଷ, ସରୁ ଅଣ୍ଟା । ପାଟିରେ ଜଳନ୍ତା ସିଗାରେଟ୍ ।

ଏଇ ମେଘ ଅନ୍ଧାର ଘୋରରେ ମନେ ପଡ଼ୁଛି ସେଥର ଆମ ଇଞ୍ଜିନିୟରିଂ ଇସ୍କୁଲରେ ବକ୍ତୃତା ଦେଉଥିଲେ ଦକ୍ଷିଣର ଜଣେ ଭୂତ ସାଧକ । ଓଁହେଲି ପଡ଼ିଥିବା ବହଳ ଧଳା ଦାଢ଼ି, ବାଙ୍ଗର ଚୂଡ଼ା, ମୁଣ୍ଡବାଳ ଖୋଟ । କଳାକୋଟ୍ ଉପରେ ଧଳା ଚଦର । ସେ କହୁଥିଲେ ଥରେ ସେ ଦଳଟିଏ ଧରି ଅନେକ ବେଳଯାଏ ଅନିଦ୍ରା ହୋଇ ଅନେକ ହଜିଲା ପ୍ରେତମାନଙ୍କୁ ଧ୍ୟାନ କରୁଥିଲେ, ଡାକୁଥିଲେ, ମଝିରେ ଆଉଜି ଆଖିବୁଜି ରହିଗଲା ଭୂତ-ମଧ୍ୟସ୍ଥ ଯାହା ଉପରେ ପ୍ରେତାତ୍ମା ଆଶ୍ରା କରିବ, ସେ ବକି ବଳେଇବ । କିନ୍ତୁ ଯେତେ ଚେଷ୍ଟା କଲେ ସୁଦ୍ଧା ସବୁବେଳେ ଗୋଟିଏ ଭୂତହିଁ ବାରମ୍ବାର ଚଢ଼ି ବସୁଥିଲା, କହୁଥିଲା ତା ନାଁ ବୃକ୍‌କା, ବେଳେବେଳେ ଆଉ ଆଉ ଭୂତଙ୍କ ନାଁ ମଧ୍ୟପାଟି ବଳିବଳୋଉଥିଲା; କିନ୍ତୁ ସବୁ ନାଁ ଉପରେ ବଡ଼ପାଟି

କରୁଥିଲ ମୁକ୍କା—ଚୁକ୍କା—ଚୁକ୍କା—ମୋ କଥା ଶୁଣ । ଅନ୍ୟ ଭୂତଙ୍କୁ ଘଉଡ଼େଇ ଦେଉଥିଲ ।

ଏ ଯେଉଁ ଭଣୋଇର ମନେ ପଡୁଥିଲେ ସେ ମୋ ନିଜ ଭଣେଇ ନୁହଁନ୍ତି ନିଜ ଭଣେଇ ରଘୁନନ୍ଦନ ମହାପାତ୍ର ଶର୍ମା । ଜମିଦାରୀ ଲୋପ ହୋଇଥିବା ଜମିଦାର ଜୀବନରେ ତିନୋଟି ବିଦ୍ୟା ଶିଖିଥିଲେ, ଗାମୁଛା ପନ୍ଧିଇବା, ଶୀତଳ ଷଷ୍ଠୀକୁ ନାନାଜାତି ଗଛବାଣ ତିଆରି କରିବା, ପଶାଖେଳିବା । ସବୁ ପିଢ଼ା ପରେ ପୁରୁଣା ଅମଳର ଖାତାଗରେ ସଜୁଆଲି ଗୁଣୀ ଚେତକ ଆଙ୍କି ଦେଉଛନ୍ତି, ସେତକରେ ସନ୍ତୋଷର ଅମୃତ ସଜାଡ଼ି ରଖି ସେ ଗୁଆକୁଣ, ନଡ଼ିଆ ବଣ ଜହାଡ଼ରେ ଏଇ ତୃତୀୟ ବିଦ୍ୟା ସାଧି ସାଧି ସମୟ କଟାଇ ଦେଉଛନ୍ତି, ସମସ୍ତ ପାଇଲେ ଏ ବ୍ୟାକରଣହୀନ ଯୁଗରେ ବ୍ୟାକରଣ ଚର୍ଚ୍ଚା କରନ୍ତି, ସେହି ସମବୟସୀ ଆଉମାନଙ୍କ ସଙ୍ଗରେ ଯେଉଁମାନେ ଘରେ ବସି ରୋଜଗାରିଆ ପୁଅମାନେ ପଠାଉଥିବା ମାସିକ ବେତନରେ ଚଳନ୍ତି । ଏ ଭଣୋଇ ଆଉ ଏଇ ଯାହାଙ୍କ ଚେହେରା ମନେପଡୁଛି ସେ ଆମ ସାଙ୍ଗ ପଢ଼ୁଆ ରଜାକ୍‌ର ଭଣେଇ, ନାଁ ମୁସାବେଗ୍, ସେ ଆବାର ସ୍ୱାମୀ । ତଥାପି ଆଜି ରଘୁନନ୍ଦନ ମନେ ପଡୁନାହାନ୍ତି, ମନେ ପଡୁଛି ମୁସା, ନାମୀ ମନେ ପଡୁନାହିଁ, ମନେ ପଡୁଚ ଆବା ।

ଏମିତି ମେଘ ବୁଲୁକୁଥିଲ, କିନ୍ତୁ ସେତେବେଳେ ରାତି ନୁହେଁ ସକାଳ ଦଶଟା । ପାହାଡ଼ ଆକାଶ ସବୁ ଏକାକାର ହୋଇ ପାଉଁଶିଆ ମେଘ ଭିତରେ ଲୁଚି ଯାଇଥାଏ । ଝପ ଚଢ଼ି ଚଢ଼ି ଚାଲିଥାଏ ଯାତ୍ରୀବାହୀ ମଟର, ଉପରକୁ ଉପରକୁ, ଆଗରେ ଅଚ୍ଛିଣ୍ଡା ରାସ୍ତା, ପଟିଚ କରେ କରେ ବଙ୍କେଇ ବଙ୍କେଇ । ଲଗି ରହିଥାଏ ଗୋଟାଏ ଅଚ୍ଛିଣ୍ଡା ଗଁ—ଗଁ—ଗଁ । କସାରୁ ବାହାରି ଆସି ପନ୍ଦର ମାଇଲ୍ କଟିଛି, ଆହୁରି କୋଡ଼ିଏ ମାଇଲ୍ କଟିବ । ଓହ୍ଲେଇପଡ଼ ହାତୀ ମୁଣ୍ଡିଆ ପାହାଡ଼ ପାଖରୁ ଭିତରକୁ ଚାଲି ଚାଲି ଗିବାକୁ ପଡ଼ିବ ପାଞ୍ଚ କୋଶ, ଯେଉଁଠି ମୁଣ୍ଡା ଫାଟିଛି, ଦେଖିବାକୁ ପଡ଼ିବ କାହିଁକି ଫାଟିଲା ।

ମୁଣ୍ଡାମାନେ କଣ ? ପାହାଡ଼ୀ ନଈକୁ ବନ୍ଧ ବାନ୍ଧି ଅଟକାଇ କ୍ଷେତକୁ ପାଣି ନେବା ସକାଶେ ସେ ଗୋଟିଏ ଉପାୟ । କିଏ କରନ୍ତୁ ଛୋଟବଡ଼ ବନ୍ଧ, ଆମେ କରିଥିଲୁ କଇଞ୍ଚାଣୀ ମୁଣ୍ଡା, ଚରଳ ନଈକୁ ବୁମା ପଥର ଆଉ ସିମେଣ୍ଟରେ ବାନ୍ଧି ଗଡ଼ଣା ଗଡ଼ଣା ଗହମ ପଟେଇବାର ବାଟ କରିଥିଲୁଁ । ଯାହାହେଉ, ଆମର ମୁଣ୍ଡା ଫାଟିଛି । ତା ପରେ ଲୋକେ ପଚାରିବେ "କାହିଁକି ଫାଟିଲା, କାହାର ଦୋଷ ?" ସେହି ଯେଉଁମାନେ ସଡ଼କରୁ ତଳକୁ କେବେ ଓହ୍ଲେଇ ନାହାନ୍ତି । "ବାଘ କେମିତି ତା ପିଲାକୁ ମଣିଷ କରେ ?" ଯେଉଁମାନେ ବାଘ ଥରେ କେବେ ଦେଖି ନାହାନ୍ତି ।

ସେହିମାନେ, ଦେଖି ନାହାନ୍ତି ଚରଳ ନଈ କେତେ ବେଗରେ ଆସେ,

ଅନୁଭବ କର ନାହାନ୍ତି ତେଙ୍ଗା ଓଦା ଘାସ ଭିତରେ 'ଗଲବେଲକୁ ହାଫ୍ ପ୍ୟାଣ୍ଟ ପିନ୍ଧା ଦେହରେ ଗୋଡ଼ ଫେଣ୍ଟାରେ ଜୋକ କାମୁଡ଼ା କେମିତି ଲାଗେ, ମୁଣ୍ଡରେ ଝେଙ୍କେ ମାଛି କାମୁଡ଼ିଲେ କେମିତି ଦିବ୍ୟ ଦୃଷ୍ଟି ହୁଏ, ଲାଗେ ସ୍ୱର୍ଗ ପାଖ ହେଲା, ମାଲ ଜରର ଥେଙ୍କ ଆଉ ଝାଙ୍କି ଅନୁଭବ କର ନାହାନ୍ତି, ଦେଖି ନାହାନ୍ତି ଆଗ ପାଖ ଲୋକର ନାକକୁ ପୁଲାଏ କାମୁଡ଼ିବାକୁ ମନହୁଏ,—ସେହିମାନେ କାଗଜ ଦେଖି ଭୁଲ ବାଛିବେ, ଲଗିବ ଧରାଧରି ।

ଆମର ମୁଣ୍ଡା ଫାଟିଛି, ମୁଁ ଶୋକାଛନ୍ନ । ବରଷା ଦେଖି ବୋଉ କହିଲା, "ମୋ ଅଦେଇରେ, ଦେଖିଲୁ କେମିତି ମେଘ ଘୋଟିଛି । ହଇରେ ଉଗ୍ରେସର ହେଇଥିଲୁ କଣ ଏଇ ପାଗରେ କଣ ବୁଲି ବାହାରିବୁ ବୋଲି ?"

ମୁଁ ବୁଝେଇଲି "ବୋଉ, ଯେ ଦଣ୍ଡକାରଣ୍ୟ, ରାମଚନ୍ଦ୍ର ବି ନଜେ ଏମିତି ବୁଲୁଥିଲେ । ସେ ରାଜା, ମୁଁ ଉଗ୍ରେସର, କି ଛାର ?"

ଶୋଭନା ବାଁରେଇ ହେଉଥାଏ, ତାର କଳା କଳା ଚୋଳା ଯୋଡ଼ିକ ଭିତରେ ଯେମିତିକ ସନ୍ତୁର ଆଲୁଅ ଛପି ଛପି ରହୁଥାଏ । ତାର ବାଗ୍ରପରର ମୋଟେ ଧନ ମାସ । କହିଲା, "ବୋଉ କଣ ନଙ୍କର କହୁଛନ୍ତି ? ସବୁଦିନେ ତ ଦୌଡ଼ୁଚ, ଏଥର ଏବର୍ଷ ଯାଉ"—ତା ତୁଣ୍ଡରୁ କଥା ଛଡ଼େଇ ନେଇ ବଜୁଲି କଡ଼ କଡ଼ କଡ଼ ଡାକ ଦେଲା । ବୋଉ ନ ଥିଲେ ସେ ଚମକପଡ଼ି ମୋର ପାଖକୁ ଆସିଥାନ୍ତା । ଘର ଭିତରକୁ ପଶି ଯାଇ କହିଲା, "ଆସ, ଗୋଟାଏ ଜନମ ରହିଗଲା ଦେଇଯିବ ଆସ ।" ତା ପରେ ବୁଝେଇଲି "ଖାଲି ଦେଖି ଦେଇ କାଲି ମଟରରେ ଗ୍ଲିଆସିବ ଯେ, ନଗଲେ କଥାଟା ଭଲ ହେବ ନାହିଁ, ସୁନାଟା ପରା ।"

ମନେ ମନେ ସେହି ଦୃଶ୍ୟହିଁ ଦେଖୁଥିଲି ମଟରରେ ବସି । ଚନ୍ଦ୍ରା ବି ଥିଲା ମୁଣ୍ଡାଟା ବସନ୍ତରେ । ସତେ କଣ ବଜୁ ପଡ଼ି ଫାଟିଲା ନା ସେପାଖ ଗାଁର ଲୋକ—ସେହି ଯେଉଁମାନଙ୍କ କ୍ଷେତକୁ ଟୋପାଏ ବି ପାଣି ଉଠେନାହିଁ, ସେମାନେ କିଛି କରିଦେଲେ ? ଚପରାଶି ଭଗବତ କହୁଛି, ଲେମାଗୁଡ଼ାର ଫେଙ୍ଗ ପରଜା- ମାନେ ଫାଙ୍ଗି ଦେଲେ, ସେଥିପାଇଁ ଫାଟିଗଲା ।

ମୋ ସାମ୍ନାରେ ବି କରରେ ଲଗିଛି ଗୋଟିଏ ଧୂଆଁ ଗୁଡ଼ିବା ପ୍ରତିଦ୍ୱନ୍ଦ୍ୱିତା । ବୁଢ଼ାଆଙ୍ଗୁଠି ମୋଟରେ କଳା କଳା ଦକ୍ଷିଣି ସୁଟା ପାଟିରେ ଗେଞ୍ଜି ଟାଣିଲେଇଛନ୍ତି ଧୂଆଁ ସେମାନେ । ସେହି ନେଳ ଧୂଆଁ ଭିତରେ ମୋର ଚନ୍ଦ୍ରା ଆଉ ମୁଁ ହଜେଇ ଟୁଟେଇ ।

ସେପାଖରୁ ଆରପଟକୁ ଆସୁଥିବା ମଟର ବସ୍ ଅଟକିଲା । ଏପାଖକୁ ହାତ ଦେଖାଇଲା ଅଟକେଇବାକୁ । ଦୁଇ ଆଡ଼ର ବସ୍ ମୁହାଁ ମୁହିଁ ହୋଇ ଟିକେ ଦୂରରେ ରହିଲେ । ସେପାଖ ବସ୍‌ରୁ କଣ୍ଡକ୍ଟର୍ ଧପାଲି ଆସି କହିଲା, "ଓରସେଲ ବାବୁ, ଆପଣଙ୍କ ଭଉଣୀ ଆସିଚନ୍ତି, ଭଉଣୀ, ଭଣେଇ, ଭଣଜା, ଭାଣିଜୀ—"

"ଏ ନାମା ! ଆଉ ଗଲି ! ଆଉ ପିଲାଏ ! କୁଆଡ଼େ ଏତେ ଧନ କେ ମନେପଡ଼ିଲା !" ଓଲ୍ଟେଇପଡ଼ ତରତର ହୋଇ ଗ୍ଲାଲିଗଲା ।

"ହୋ ମହାପାତ୍ରେ ! କହୋ ତେମେ—"

"କବେ ଚଳ୍ତିପାରୁ ନୋଉଁ କବେ ? ଚଷମା ଲଗା ।"

ଡେଙ୍ଗା ଦେକ ଅଗରେ ଲମ୍ବା ମୁହଁ ଖାଁଙ୍ଗି ହେଉଛୁ । ପାଟିରେ ଖଣ୍ଡେ ସିଗାରେଟ, ମୁଣ୍ଡରେ ଫେଲଟ୍ ଟୋପି, ଫିଟ୍‌ଫାଟ ସୁଟ୍ ଟାଇ, ମଚ୍ ମଚ୍ ଓଲ୍ଟେଇ ପଡ଼ିଲା । ମୋ ଉପରେ ଆଣ୍ଟୁର ଫ୍ରେଟ । ଓସାର ଗଣ୍ଠି ଗଣ୍ଠିଆ ହାତୁଆ ପାପୁଲିରେ ମୋ ହାତକୁ ମୁଠେଇ ଚପିଦେଲା, କହିଲା, "ଅମେ ଆସିଲୁଁ ଅଢେଇ । ହେଇ ସେଠି ତୋ ଭଉଣୀ ବଇଚ, ପିଲାଏ ବଇଚନ୍ତି । ତାଙ୍କ ଷ୍ଟାର ତୋ ଉପରେ, ତୋ ଭଉଣୀ କ ଭୁ ସମ୍ଭାଳ, ମୋର ଛୁଟି ।" ଅଲ୍‌ବ ବାବା ହେଲି, କାରଣ ମୁସା-ବେଗ୍ ସଙ୍ଗରେ ମୋର ଅଗଚ୍ଛୁ ମୋଟେ ଥରେ ଦେଖା । ମୁଁ ଜାଣେ ସେ ରଜାକ୍‌ର ଭଣେଇ, ରଜାକ୍ ମୋ ସଙ୍ଗେ ଓଭରସିଅର ପଢ଼ୁଛୁ । ତା ଭଉଣୀର ନାଁ ଆବା ମୁଁ ତାଠୁ ଶୁଣିଛୁ, କେବେ ଦେଖି ନାହିଁ । ଏଥର ଦେଖିଲି । ଆବା ମଟରକୁ ଦଣ୍ଡବତ ହେଲି । ମୂସା ବୁଝେଇଲା । ସେ ବଦଳି ହୋଇଆସିଛୁ ଆବା ଆସନ୍ନପ୍ରସବା, ତାକୁ ଜର ।

"ହଉ ଆସିଲେ ଦେଖା ହେବା । [illegible]ଉଛୁ ତ ।"

ଏମିତ ଉପରେ ପଡ଼ ଏକ ନମିଷେକେ ଯେଉଁ ଲୋକଟି ମୋର ଆପଣାର ହୋଇଗ୍ଲାଲିଗଲା ତା ପ୍ରତ ସମ୍ମାନ ଆସିଲା । ସେ ରଜାକ୍‌ର ଭଣେଇ, ରଜାକ୍ ମୋ ସାଙ୍ଗ, ତେଣୁ ମୋର ବ ଭଣେଇ । ଏମିତ ଯୋଡ଼ା ଯୋଡ଼ିରେ ସଂସାର । କେଡ଼େ ଖୁସିଲଗିଲା ଭାବବାକୁ, ଆବା ମୋ ନଜ ଭଉଣୀ । କପଟ ନାହିଁ । ବଚନିକା ନାହିଁ, ମୁସା ସିଧା ଗୁଡରେ ଗୁଡ ଲଗାଇ ଦେଲା । କେଡ଼େ ଅଖଳା ସେ, କନ୍ତୁ ରଜାକ୍ ତା କଥା କହ ଦୁଃଖ କରେ । କହେ ପାଗଲଟା ସେ, ଆବାଟାର କାନ୍ଧ କାନ୍ଧ ଧନ ସବୁ ନାଇଁ । ଅଉ ମୁଁ ଯେଉଁ ପରସ୍ଥିତରେ ମୁସାକୁ ପ୍ରଥମେ ଦେଖିଥିଲି, ସେ ବ ବଚନ । ସେ ଥିଲା କୁଷ୍ଠରୋଗର ଡାକ୍ତର । ମଫସଲ ବୁଲି ଖାହାନ ଘରମାନଙ୍କ ପିଣ୍ଡା ଉପରକୁ ଚଢ଼ ସେ ଦାବୀ କରେ, "ଘରର ସମସ୍ତଙ୍କ ଦେହକୁ ମୁଣ୍ଡରୁ ମୁଁ ଲୁଗା କଢ଼େଇ ଦେଖି ନେବ ରୋଗ ଅଛୁ କ ନାହିଁ । ମୁଁ ଜାଣେ ତୁମେ ଲୁଚେଇବ, କନ୍ତୁ ବୁଝି ପାରୁନା ଲୁଚେଇଲେ ତୁମେ ନଜର ଶତ୍ରୁ, ଗାଁ । ଗୋଟାକର ଶତ୍ରୁ, ଏ ଦେଶର ଶତ୍ରୁ । ଏ ରୋଗ ଭା[illegible] ସଂକ୍ରାମକ । ଅଥଚ ଥରେ ପଦାରେ ପଡ଼ଗଲେ ସହଜରେ ଭଲ ହୋଇଯାଏ ।"

ଫଳରେ ତା ନାଁରେ ଦରଖାସ୍ତ ପଡ଼ିଲା । କୁଆଡ଼ୁ ଖବର ପାଇ ମତେ ଆଣି ସାକ୍ଷୀ ଠିଆ କରଥିଲା ତାର ସଦୁଦେଶ୍ୟ ଓ ସଚ୍ଚରିତ୍ରତା ବିଷୟରେ କହିବାକୁ । ସେତେବେଳେ ବ ତାର ବଡ଼ ସରଳଯୁକ୍ତ ! ଆପଣ ରଜାକ୍‌ର ସାଙ୍ଗ, ଯେ ଏନ୍‌କ୍ୱାଏରି କରବେ ସେ ଆପଣଙ୍କ ବନ୍ଧୁ ମୁଁ ଜାଣିଚ । ଇନାଏତ୍ ମିଆଁ ଏ ଦରଖାସ୍ତ କରେଇଛନ୍ତି ତାଙ୍କ ଘରେ କୁଷ୍ଠ, ସେ ଲୁଚେଇଛନ୍ତି । ଏଥର ସେ ଥଣ୍ଡା ହେବେ ।

କେମିତ କେମିତ ହୋଇ ଉଧୁଶ ଯାଉଥିଲା ସେ ସେଥର ।

ଯାହାହେଉ ମୁଣ୍ଡା ଷଣ୍ଢିଧାରେ ଆମର ଦୋଷ ନାହିଁ । ଚରଲ ନଈରେ ଉପର ପାଖେ ଗାଁ । କେନ୍ଦୁଙ୍କର ଗୋଟାଏ ପୁରୁଣା ଅଧାବନ୍ଧ ଥିଲା, ତାକୁ ବ ନଈ ଭାଙ୍ଗି ନେଇଛି । ପଥର ଗଡ଼େଇ ଗୋଟା ଗୋଟା ଗଛ ବୁଲେଇ ବୁଲେଇ ଗୋଟାଏ ମସ୍ତ ବଡ଼ ବନ୍ଧ ଅସିଥିଲ, ପୁସ୍ ଛୋଡ଼ ପଡ଼ଲା କଇଞ୍ଜାଣ ମୁଣ୍ଡା ଉପରେ ।

ତହିଁଆର ଦନ ଲେଉଟି ଆସିଲ ।

ମୁସା ଅଉକ ପଡ଼ିଥାଏ ଅଗମ ଚୌକ ଉପରେ । ସିଗାରେଟ୍ ଟାଣୁଥାଏ । କହଲ ଆଉଲୁ ଭଲ କଲୁ । ମୁଁ ଆଜ ଗସ୍ତରେ ବାହାର ଯାଉଛି । ଫେରୁ ଫେରୁ ପନ୍ଦର ଦନ ଯିବ । ତୋ ଭଉଣୀକ ଜର । ବୁଝିବୁ । ବୋଉ ଖାଇ ବସିଥାଏ । ସେ ଘରୁ କଲକାଲଆ ହୋଇ ଦୌଡ଼ି ଆସିଲ । ହସ ହସ ଟିକ ପୁଅଟିଏ, ତା ପିଠିରେ ଲଦି ହୋଇପଡ଼ଲା । ବୋଉ ଖାଲ ହସୁଥାଏ । ଦ ଦ ପଟ ଟିକ ଟିକ କାଚ ନାଇ ସୁର ବର୍ଷର ଝିଅଟିଏ ଅଳ୍ପ ଦୂରରେ ବସି ବୋଉର ପୂଜା କୋଠରୀରୁ ମାଳ କାଢ଼ୁଥାଏ ।

ଶୋଭନା କହଲ "ଦେଖିବ ଗଲ ଡାକ୍ତ, ଅସଜ ମଣିଷ, ସେଥିରେ ଜର । କାଲଠୁ ଆସିଲେଣି, ତାଙ୍କ ବର ତ ନାହିଁ ତାଙ୍କ ଚକସ୍ତାର ନାଁ ଧରୁ ନାହାନ୍ତି ।"

ମୁସାକୁ କହଲ, "ତୁ ପସ୍ ଡାକ୍ତର ?"

ମୋ ଉପରକୁ ଖେଙ୍କି ଉଠି ସେ କହଲ, "ଭଉଣୀ ବୋଲ ସ୍ୱର ଢଲକୁ ତାଲ କରୁଚୁ । କଣଟାଏ ହେଉଚ ? ସାମାନ୍ୟ ଜର । ଛଟା ଗାଲୁଚ ।"

ସତକୁ ସତ ଅଧ ଘଣ୍ଟାକେ ମୁସା ଗସ୍ତରେ ଗ୍ଲଲଗଲା ।

ଲଗିଲ ଅଖାର ଚକସ୍ତା, ଦଓଲ ଡାକ୍ତର, ଥଣ୍ଡା ଜର ଗ୍ରହକ ଧରୁଥିଲ । ପାଞ୍ଚଦନରେ ଜର ଛୁଡ଼ିଗଲା । ତା ପରେ ତାର ସାନ ପୁଅଟିକୁ ଝାଡ଼ା ଗ୍ରେସ ଧଶଲ ।

ଦଶ ଦନ ପରେ ମୁସା ଫେରଲ । ବଡ଼ ପାଟିକର ଡାକ ଗ୍ରୁଡଲ । "ଉଇକ ନଶନ୍ଦକୁ ତ ମୋଟାକଶ ଦେଇଚ, ମୋ ଆଡ଼କୁ ଆଉ ଅନେଉ ନା, ଦେଖିଲ ଗସ୍ତରେ ବୁଲ ବୁଲୁ ନ ଖାଇ ନ ପିଇ ମୋର କ ଅବସ୍ଥା ହେଲଣି ଆଁ । ଦଓଲ ମାଂସ ରାନ୍ଧ । ହଁ, ଗ୍ଲ ପଠେଇ ଦଅ ।"

ବୋଉ ହସି ହସି ମନେ କହଲ, "ବଡ଼ ନଦରଙ୍ଗିଅଟିଏ ସ୍ୱେ ଜୋଇଁ ।" କେମିତ ତା ଘର ସମ୍ଭାଳୁ ଥିବଟି ।"

ବୋଉର ଆଶ୍ଚର୍ଯ୍ୟ ପରବର୍ତ୍ତନ ହୋଇଯାଇଛି । ଏତେ ଛୁଆଁ ଛୁଆ କାରଣ, ଏତେ ନୈଷ୍ଠିକତା, ଏତେ ଚତା ନାମାବଳ, କଣ୍ଠି ମୁସା, ଆଗ ପ୍ରତ ତାର ଏତେ ଟିକଏ ବକାର ନାହିଁ । ସନ୍ଧ୍ୟାର ବରସରେ ସେ ଭାଗବତ ପୋଥି ପଢ଼ୁଛି । ବୁଝୁଛି ଆମଠୁ ବେଶି । ମୁସଲମାନ ନାତନାରୁଣୀ ଦୁହେଁ ତାର ହାତ ବାଣସି ହୋଇଛନ୍ତି ।

ଗଲୁ ଲୋ ମା ପୁଅଙ୍କୁ ଗାଙ୍କ କହିବୁ ଟିକିଏ ସନ୍ତୁଳା ଅଣିଦବ। ହଉ ତୁ ଅଣିଦେଲୁ ? ଭଲ କଲୁ, ଅଣ ଦେ। ଆ ମୋ ସାଙ୍ଗରେ ବସୁ ଖଣ୍ଡିଏ ପଖାଳ ଖାଇବୁ, ବସି ପଡ଼ !

ଅତଏବ ଆମଘରେ ମୁସାର ପରିବାର ରହିବାରେ କିଛି ଜାତି ଧର୍ମଗତ ଅସୁବିଧା ଜଣାପଡ଼ିଲା ନାହିଁ।

ମୁସା ବାହାରେ ବାହାରେ ବୁଲେ, ରାତିରେ ଫେରି କହେ, "ଘର ଭଡ଼ା କାମ ପଡ଼ିଗଲା ଆଜି। ବି ଦିନ ପରେ ତାର ପୁଣି ଗସ୍ତ। ପୁଣି ସାତ ଦିନ ପରେ ଫେରିଲା। ଉନି ଦିନ ରହି ପୁଣି ଛୁ। ମାସେ ଗଲା ଆଉ ହପ୍ତାଏ, ଦିହପ୍ତା।

ଦିନେ କହିଲି, "ବସା କରୁଚୁ କେବେ ମୁସା।"

ସେ ଶୁଣିଲା ନାହିଁ।

ପୁଣି କହିଲି, "କେବେ ନୂଆବସା କରୁଚୁ ?"

ସେ କହିଲା, "ବସା କାହିଁ ? କାଲି ମୁଁ ଗସ୍ତରେ ଯାଉଚି ଅଦେଇ," ଗମ୍ଭୀର ହୋଇ କହିଲା, "ଫେରିଲେ କଥା ହେବା।"

ଅପଣା ଅନୁଦାରତାରେ ଲଜ୍ଜା ପାଇ ମୁଁ ଅନୁତପ୍ତ ହେଲି। କହିଲି, "ମୁଁ ତତେ କହି ନଥାନ୍ତି ଭାଇ, ତେବେ ତୋର ଭଲ ପାଇଁ। ନ ଖୋଜିଲେ ଭଲ ବସା ମିଳିବ ନାହିଁ।" ମୁସା ମତେ କ୍ଷମା କଲାପରି ହସି ଦେଲା। କହିଲା, "ଆଖିର ତୋର ଭଉଣୀ, ତୋର ଭଣଜାଭାଣିଜୀ, ତୋର ଦାୟିତ୍ୱ ମୁଁ କି ଜାଣେ ? କେଇଟା ଦିନ ବା ରହିବ ଏ ବସରେ, ମୁଁ ଛୁଟି ଦରଖାସ୍ତ କରିବି। ଆଉ ଚାରି ପାଞ୍ଚଟା ମାସ ପାଇଁ ଅଲଗା ବସାଟାଏ ମୋର କଣ ହବ। ମୁଁ ବୁଝିପାରୁ ନାହିଁ। ଏଇଠି ତ ଭଲରେ ଅଛୁ।"

"ତତେ ଏଠି ରଖିପାରିଲେ ତ ମୁଁ ଖୁସି ହୁଅନ୍ତି, ତେବେ—"

"ତୁ ଯେତିକି କରୁଚୁ ସେତିକିରେ ଚଳିବ। ହଁ, ବ'ଓଲି ତୁ ମାଂସ ଦେଇପାରୁ ନାହୁଁ। ଆରେ ସେଥିରେ କ'ଣ ଅଛି ? ଯେତେବେଳେ ଯାହା ମିଳିଲା। ଆମର ଘର କଥା, ମୁଁ କ'ଣ କାହା ଆଗରେ କହୁଚି।"

"ନାହିଁ—ମାନେ,—ଏ ବସାଟା ବି ସାନ।"

"ଅରେ ସାନ ! ସ୍ୱାଠୁ ବଡ଼ ବସାଟାଏ କଣ ହବ ? ପିଲା ଦିଟା ଶୋଇ ପଡ଼ିବେ ତାଙ୍କ ଆଈଙ୍କ ପାଖରେ। ଏ ଘରେ ନଣନ୍ଦ ଭାଉଜ। ତୋ ଖଟଟା ପକେଇଦବୁ ଏ ଦାଣ୍ଡ ପିଣ୍ଡାରେ, କେତେ ସୁନ୍ଦର ପବନ ବଉଚି, ଗଲା ଅଧିର ଖାଉଡ଼େ ହେଲେ ଚଳିଯିବେ। କଣ ତୁ କହୁଚୁ ?"

"ଆରେ ପାଗଳା, ବଦଳି ହେଇ ଅଇଲୁ, ତୋ ଜିନିଷ ଖୋଲା ହେଇନାହିଁ ସେମିତି ପଡ଼ିଚି। ତୋର ତୁ ବସା କରିବୁ ତ।"

"ଓହୋ, ମତେ ତଡ଼ିବାକୁ ବସିଚୁ ତୁ। ସେଇଆ କହ।"

ପୁଣି ଲଜ୍ଜିତ ହେଲା । କହିଲା, "ଆମର ଅଭାବ, କଷ୍ଟେମଷ୍ଟେ ଚଳିଯାଏ । ଲୋକଙ୍କ ବନ୍ଦୁଟାଏ । ଯେମିତି ଚଢ଼ । ନିରବା କଥା ବି କିଛି ହେଉନାହିଁ, ମନକୁ ବାଧୁଛି ।"

"ହିଁ ହିଁ, କାନ୍ଦ ମାଡ଼ୁଥିବ ମନକଲେ, "ସେ ହସି ହସି ମୋ ହାତ ପାପୁଲିକ ଝାଡ଼ି ଦେଇ କହିଲା, "ଆରେ ମଫା ସଫା ତ କହିବୁ ଏମିତ ସିଆଣା ପଡ଼ନ୍ କାହିଁକି ? ତାପରେ ଗମ୍ଭୀର ହୋଇ କହିଲା, "ଦେଖ୍ ଅଦେଇ, ଗୋଟିଏ କଥା । ତୁ ନିଜେ ଓଭରସିଅର । କାହାକୁ କହି ମନ ମାଫିକେ ଘରଟାଏ ତୋଳେଇ ଦେଇପାରୁନୁ ? ନୂଆ ଘର ହ'ଲା ଭଡ଼ାରେ ନଅନ୍ତି, ଭଲ ହୁଅନ୍ତା ।"

ହିଁ ଭଲ ହୁଅନ୍ତା ଯେ, "ସେ ସୁଯୋଗ ଘଟିଲେ ସିନା ?"

"ଆରେ ସୁଯୋଗ କଣ ମ, ଛଅଟା ମାସରେ ଘର ଠିଆ ହେବ । ସହରରେ ମୋ ଘର ଦେଖିଚୁ ? ନାହିଁ ଦେଖିନୋଉଁ ପରା ! ସେ ଘରେ ରହି ଏ ଭଡ଼ାଟିଆ ଗ୍ରେଟିଆ ଘରଗୁଡ଼ାକ ଦେଖି ସେଥିରେ ପାଦ ପକେଇବାକୁ ମନ ହଉନାହିଁ । ତୋର ଏ ବସାଟି ଭଲ ।"

ହଠାତ୍ ତହିଁ ଆରଦିନ ସକାଳୁ ସେ ପୁଣି ଗସ୍ତରେ ଚାଲିଗଲା । ବୋଉ କହିଲା, "ଦେଖୁଚ ଏ ଫାଙ୍ଗୁଲା ଜୋଇଁଟା କଥା ? ଆଚ୍ଛା, ତୋର ତ ଏମିତ ଭୁଲ କାମ, ଏ ପିଲାଗୁଡ଼ାଙ୍କ କାନରେ ବାନ୍ଧିଆଣିଲୁ କାହିଁକି ? କାହାର କଥା କିଛି ବୁଝୁ ନାହିଁ ମ ।"

ଶୋଭନା କହିଲା, "ସେ ପ୍ରକାରେ । ଜାଣିଚ, ମତେ ଲାଗୁଚି ଏଇଥିପାଇଁ ଆମ୍ବାଙ୍କ ମନରେ ଖାଲି ଦୁଃଖ । ଗୁପି ଗୁପି ରଖୁଚନ୍ତି ବେଳେ ବେଳେ ବାହାରି ପଡ଼ୁଚି । ଶୁଖି ଶୁଖି ଯାଉଚନ୍ତି ।"

ବୋଉ ଚକିତ ହେଲା । କହିଲା, "ଆଉ କଣ ମ, ମାଇପଙ୍କର ଗୋଟାଏ ଆଣ୍ଠୁ ଥାଏ । ଘଇତା ଯଦି ତାକୁ ନ ବୁଝିବ, ତେବେ ତାଙ୍କ ମନରେ ଶାନ୍ତି ଆସିବ କୁଆଡ଼ୁ । ପିଲାଟୁଆଙ୍କ କଥା କିଛି ବୁଝୁ ନାହିଁ, ସଂସାର କରିବ କେମିତ ? ଆଉ ତାର ଯେ ମାହା ମନ ତା କିଛି ଆମେ ସେଥିରେ ପାଟି ଫିଟେଇବା ନାହିଁ । କିଏ କାଳେ ଛଳ କରିବ ।"

ପୁଣି ମୁସା ପାଇଁ ବସା ଖୋଜା ହେଲା । ଛଅଟା ବସା ଠିକଣା ହେଲା । ସାତ ଦିନ ପରେ ମୁସା ଫେରିଲା । ଗୋଟାଏ ଓଲି ମାରି କରି ତା ସଙ୍ଗରେ ବୁଲି ବୁଲି ତାକୁ ବସା ଦେଖାଇଲି । ଦେଖିସାରି ଘରକୁ ଫେରି ମୁସା କହିଲା, "ମିଛରେ ମୋ ସମସ୍ତ ନଷ୍ଟକଲୁ ଅଦେଇ ! ବସା ନୁହେଁ, ଗୁହାଳ ଛଅଟା । ହଇରେ ତୋର ପସନ୍ଦ ନାହିଁ ?"

ଦୈବଯୋଗକୁ ମିଳିଗଲା ଗୋଟିଏ ବଡ଼ ବସା, ଆମ ବସାଠୁଁ ଦୁଇ ଫର୍ଲଂ ବାଟ ଦୂରରେ, ଭଡ଼ା ଚାଳିଶି ଟଙ୍କା । ଏଥର ମୂସା କହିଲା, "ମୋ ଦରମାର ଦଶଭାଗରୁ ଭାଗେ ହେଲେ ହେବ ବାଇଶି ଟଙ୍କା, ଧର ଆଉ ତିନିଟଙ୍କା ଖୁସିରେ ଦେଲି । ଏତ ହେଲା ପଚିଶି ଟଙ୍କା, ଚାଳିଶି ଟଙ୍କା କୋଉଠୁ ଦେବ ? ତୁ ତୋର ବସା ଦେଖୁଥା ଭାଇ, ମୁଁ ଆଜି ଉପରଓଳି ଗସ୍ତରେ ଯାଉଛି । ଜରୁରୀ କାମ ।"

ବହୁତ କୁହାପୋଛା କରିବାକୁ ସେ ରାଜି ହେଲା, ଅନ୍ତତଃ ଓପରଓଳି କାମରୁ ଫେରି ସେ ବସାଟାକୁ ଥରେ ଯାଇ ଦେଖି ଆସିବ । ତା'ପରେ ସେ ବିଚାର କରିବ ।

କିନ୍ତୁ କାମରୁ ଆଉ ସେ ଫେରିଲା ନାହିଁ, ଲୋକ ପଠାଇ ଖାଲି ତାର ନିଜର ବିଛଣା ଓ ବସ୍ତ୍ର ବୁଲ ମୁଣି ନେଇଗଲା । ସାତ ଦିନ ଦିନ ସଞ୍ଜବୁଡ଼େ ଗସ୍ତରୁ ଫେରି ହସି ହସି ପିଣ୍ଡା ଉପରକୁ ଆସି କହିଲା, "ବୁଝିଲୁ ଅଦେଇ, ସେଦିନ ଯଦି ଯାଇ ନଥାନ୍ତି, ତା ହେଲେ ହଜାରେ ଲୋକଙ୍କ ଜୀବନ ନଷ୍ଟ ହୋଇଥାନ୍ତାରେ । ହଇଜା । କୋଣ୍ଡାପାଲି, କୋଣ୍ଡାକାମ୍ବେରୁ ସବୁଆଡ଼େ ଖାଲି ହଇଜା । ଟେଲିଗ୍ରାମ୍ ପାଇ ଧାଇଁବାକୁ ପଡ଼ିଲା । ଆଜି ଆସିଲି ସିନା, କାଲିକି ପୁଣି ଯିବାକୁ ପଡ଼ିବ ଆଉ ଆଡ଼େ । ଆଗ ମଣିଷର ଜୀବନ ।"

"କୋଣ୍ଡାପାଲି କୋଣ୍ଡାକାମ୍ବେରୁ ଆଡ଼େ ହଇଜା କାହାକୁ ଧରିଲା ମୂସା, କଣ ବଣ ମଇଁଷି, ଗୟଳ, ସମ୍ବର, ହରିଣ ଏଇମାନଙ୍କୁ ଚିକିତ୍ସା କରିବାକୁ ଯାଇଥିଲୁ ?"

ହସିଦେଇ ସେ କହିଲା, "ତୁମେ ସବୁ ଏଇଠି ବସି ସେ ଶହ ଶହ ମାଇଲ ଦୂରର ଅଞ୍ଚଳକୁ ସ୍ୱପ୍ନ ଦେଖୁଥା । ଚାଲି ଚାଲି ପାହାଡ଼ ଗଡ଼ିଗଲେ ଦେଖନ୍ତ, ଖୋଲ ଭିତରେ କେତେ ମଣିଷ କେତେ ଗାଁରେ ଖୁନ୍ଦ ଖାନ୍ଦ ହୋଇ ରହିଛନ୍ତି ।"

ସିଗାରେଟ୍ ଖୋଳ ଖୋଲି ସିଗାରେଟ୍ କାଢ଼ି ପାଟିରେ ଲଗାଇଲା, ମତେ କହିଲା, "ସାହସ ଅଛି ତ ଖା, ହଇଜା ବୀଜାଣୁରେ ସ୍ୟାଚୁରେଟେଡ୍ ।" କହୁ କହୁ ତା ଠାଣି ଦିଶୁଥାଏ । ବିପଦ ସଙ୍ଗେ ଖେଳ ଖେଳିଲା ପରି ଗର୍ବିତ, ଗମ୍ଭୀର, ତା କଥାକୁ ତା ଠାଣି ବିଶ୍ୱାସ ହେଉଥାଏ ।

"ତୁ ଟାଣୁଚୁ କେମିତି ?"

"ଆବେ ମୋ କଥା ଶୁଣ୍, ତୁ ଆଉ ମୁଁ ।" ହସିଦେଇ ମୋ ପେଟରେ ଗେବାଏ ମାରିଲା, ହାତଟାକୁ ଟାଣି କରି ମୋଡ଼ିଦେଲା, ତା ପିଲାପିଲିଙ୍କି ଦେଖିବାକୁ କୌଣସି ପ୍ରକାର ଆଗ୍ରହ ନ ଦେଖାଇ ଆରାମ ଚୌକିରେ ଆଉଜି ପଡ଼ି କହିଲା, "ଚାହା ମଗାରେ, ଠିଆହୋଇ ଦେଖୁଚୁ କଣ ? ଦେହଯାକ ହଇଜା ବୀଜାଣୁ ସଲ ସଲ ହଉଚନ୍ତି, ଆରେ ତୋ କପାଳ ଭଲ ତୋ ଭଣେଇ ବଞ୍ଚିକରି ଫେରୁଛି, ନହେଲେ କୋଣ୍ଡାକାମ୍ବେରୁ ଭିତରେ କେଉଁ ପାହାଡ଼ ତଳେ—" । ବୀର ଯୁଦ୍ଧରୁ ଫେରୁଛି ।

ସେ ଖୋଜୁଚି ଫୁଲମାଳ ।

ହଠାତ୍ ଦିନେ ସେମାନେ କଳେ ନୂଆ ବସା ବାଛି ଠିକଣା କରି ଚାଲିଗଲେ । ବଢ଼ାବଢ଼ି ବେଳର ସନ୍ତସନ୍ତିଆ ମନଭାବ ଆମ ସମସ୍ତିଙ୍କୁ କୋହଲି ଆଉ କାଉଁଦା କରିଥିଲା । ଆଈ ମୋ ବୋଉର ଗୋଡ଼ତଳେ ପଡ଼ିଲା, ମୋ ସ୍ତ୍ରୀକୁ କୁଣ୍ଢେଇଲା । ଏମାନେ ଆଖିରୁ ଲୁହ ପୋଛୁଥିଲେ, ଆଈ ଆଖିରୁ ଝରୁଥିଲା ଦର ଦର । ହିନ୍ଦୁ, ମୁସଲମାନ ଗୋଟିଏ ବଦାମ୍ବ ମୁହୂର୍ତ୍ତର ଲୁହରେ ଘଣ୍ଟାଘଣ୍ଟା ପରେ ଏକାଠି ହୋଇଥିଲେ ମଣିଷ, ଯେ ଜାତିଠୁଁ ବଡ଼, ଧର୍ମଠୁଁ ବଡ଼, ସାଙ୍ଗ ପାଖ ଫେର୍ ଫାର୍ ସବୁ ବିଗ୍ରହ, ସବୁ ଯୋଜନାଠୁଁ ବଡ଼ ।

ତା ପରେ ବେଳ ଗଡ଼ି ଯାଉଛି । ବୋଉ ଆଉ ନାହିଁ । ଭାରତ ବିଭାଗ ହୋଇ ଜନ୍ମ ହୋଇସାରିଛି ପାକିସ୍ଥାନ । ଓଡ଼ିଶାରୁ କେତେ ମୁସା କେତେ ରଜାକ୍ ତେଣେ ଚାଲିଲେ ବଡ଼ ଚାକିରି ଆଶାରେ । ଶୁଣିଲି ରଜାକ୍ ଆଗ ଗଲା ବ୍ରହ୍ମପୁର ଆରପାରିକୁ, ତା ପରେ ପେଶାବାର । ମୁସା ତାର ପରିବାର ଘେନି ବଦଳି ହୋଇ ଚାଲି ଆସିଲା, ଫଉଜ ବିଭାଗର ଡାକ୍ତର, ରହିଲା କ୍ୱେଟାରେ, ଆମର କେବେ ଚିଠି-ପତ୍ର ନାହିଁ, ଦେଖା ଦରଶନ ନାହିଁ, ତେବେ ଏମିତି ଉଦୁଉଦିଆ ଦୁପହରରେ କେବେ ହଠାତ୍ ପବନର ସତେକି ବା ସ୍ୱର ଭାସି ଆସେ ।

ତା ପରେ ସେଦିନ, ସଡ଼କ ଉପରେ ମୋ ସାଇକଲ ଅଟକାଇ ଦୀର୍ଘକାୟ ଆଲାଉଦ୍ଦିନ କହିଲା, "ଶୁଣିଲେଣି, କାଲି ତାର ଆସିଥିଲା, ମୁସା ଡକ୍ଟା ମରିଗଲେ" । ମୁଁ ଜାଣେ ଆଲାଉଦ୍ଦିନ କଣ୍ଟ୍ରାକ୍ଟରି କରେ, ଛ ମାସ ହେଲା ନୂଆ ଆରମ୍ଭ କରିଛି; କିନ୍ତୁ ମୁସା ତାର କକା ଓ ମୁସା ମୋର ଚିହ୍ନା ବୋଲି ସେ ଜାଣେ । ଏକଥା ମୋର ଧାରଣା ନ ଥିଲା । ଖୋଳିତାଡ଼ି ବୁଝିଲି ସେ ସେହି ମୁସା । ଗଲା ଥରେ ମୋତେ ଲେଖିଥିଲେ ଆପଣଙ୍କୁ ଚିହ୍ନା ଦେବାକୁ । ମୁଁ ଆପଣଙ୍କ କଥା ଲେଖିଥିଲି କନା । ଖୁଡ଼ୀ ବି ବହୁତ ପଚାରି ପଚାରି ଚିଠି ଲେଖିଥିଲେ । ଭାବିଥିଲି ଦିନେ ଆପଣଙ୍କ ପାଖକୁ ଯିବି । ତା ପରେ ତ ହଠାତ୍ ଏ ତାର, ହାର୍ଟ ବିଗିଡ଼ି ଗଲା, କରୋନାରୀ ଥମ୍ବୋସିସ୍ । ଖୁଡ଼ୀ ହେଉଛନ୍ତି ସମସ୍ତେ ସେଇ କ୍ୱେଟାରେ । ରଜାକ୍ ତାଙ୍କ ପାଖକୁ ଯାଇଛନ୍ତି—"

ଆଖି ଆଗରେ ତରଳିଗଲା ଏ ରାଜଧାନୀ, ଏ କୋଠାବାଡ଼ି, ଏ ଘର । ଆହୁ ପାଞ୍ଚି ମାପର ସମସ୍ତ । ମୁସା ଠିଆହୋଇ ହସୁଥିଲା । ଆଈ ଠିଆ ହୋଇଥିଲା ମୁହଁକୁ ଚଳକୁ ପୋଡ଼ି ।

ଭାବିଥିଲି ଭୁଲି ପାରିଲି । ତା ପରେ ଏ ମେଘ ଦୁଲୁଦୁଲୁ ଅନ୍ଧାର ରାତିରେ ପୁଣି ସେ ଲେଉଟି ଆସିଲା । ସେହି ଧୂଆଁଳିଆ କାଳଗୁବୋଲା ଦାନ୍ତରେ ଯୋଡ଼ିଏ ସୁନାଖିଲ । ଛ ଫୁଟ ଡେଙ୍ଗା ଗୁଣ୍ଡ୍ ମଣିଷ । ଦୋହଲି ଦୋହଲି ହସୁଛି । "କହିଲି ଅଦେଇ—ମୁଁ ଏଠି ନାହିଁ, ତେଣୁ ମୁଁ ସବୁଠି ସବୁବେଳେ ଅଛି ।"



# ଗୁପ୍ତ ଗଙ୍ଗା

ସେହି ପୁରୁଣା କାହାଣୀ—ସ୍ୱାମୀ ଅନ୍ୟ ଗୋଟିଏ ସ୍ତ୍ରୀ ଲୋକକୁ ଘରକୁ ଆଣିଛି, ତାକୁ ଆଉ ପଚାରୁ ନାହିଁ। ସେ ମୂଲ ଲାଗି ପେଟ ପୋଷେ, ବାପ ଘରେ ରହେ, ବଡ଼ପୁଅକୁ ଛ' ବର୍ଷ, ତା ତଳେ ଝିଅ, ତିନ ବର୍ଷ। ସେ ଆଉ ହୃଦସ୍ଥ ପାଇଁ ଖାଦ୍ୟ ଖୋଜୁ ନାହିଁ, ମାତ୍ର ଗାଳି ହତାଦର ଶେଷରେ ତେଜ୍ୟା, ସବୁ ସଉଛି। ତା'ର, ଆଉ ଏ ଦୁ' ଛୁଆଙ୍କ ପାଇଁ ପେଟକୁ ଖୋରାକ ଦରକାର। ମାସକୁ ଅନ୍ତତଃ ପକ୍ଷେ ପଚିଶ ଟଙ୍କା, ତା ବି ଦେବାକୁ ତା'ର କ୍ଷମତା ଅଛି, ସେତକ ହୁକୁମ୍ ହେଉ।

ଏଇ କଥା ସେ କାଗଜରେ ଲେଖାଅଛି। କନ୍ତୁ ଭନେ ସ୍ୱପାରେ, ଭନେ ବାଷାରେ, ଯେପରି ଆଇନରେ ଖାପିବ। ମଣିଷ ଜୀବନରେ କଷ୍ଟ କାହାଣୀ ଅସି ହେଲାଣି—ଗୋଟିଏ ନମ୍ବର ମକଦ୍ଦମା, ୪୮୮ ଦଫାରେ କାର୍ଯ୍ୟାନୁଷ୍ଠାନ।

ତାକୁ କହିବାକୁ ସ୍ୱେ ନୁହେଁ, ହେଉ ଯେ ସେ କଣରେ ସଙ୍କୁଚିତ ହୋଇ ତଳକୁ ଚାହିଁ ଠିଆ ହୋଇଛି, ଅଣଓସାର ନାଲି ଧଡ଼ିଆ ଶସ୍ତା ଧଳା ଶାଢ଼ୀ ଖଣ୍ଡେ ପିନ୍ଧିଛି। ତାଠି ଝାଉଁଳ ପଡ଼ିଥିବା ସେହି ପରିପୂର୍ଣ୍ଣ ସୌନ୍ଦର୍ଯ୍ୟ, ଯାହା କେବଳ ଦେଖାଯାଏ ସେହି ସ୍ତ୍ରୀମାନଙ୍କଠିଁ, ଯେଉଁମାନଙ୍କୁ ଏହିପରି ହତାଦର ସହିବାକୁ ହୁଏ। ନାକରେ କାନରେ ନିମ୍ବକାଠି। ହାତରେ ଦେଶୀ କାଚଖଣ୍ଡ। ମୁଣ୍ଡରେ ଆଠଣି ଆକାରରେ ସିନ୍ଦୁର ଘୋପାଏ।

ତାର ବକ୍ତବ୍ୟ ଏ। କହିବାକୁ ଠିଆ ହୋଇଛନ୍ତି ଯେ, ସେ କଳା କୋଟ ପିନ୍ଧିଛନ୍ତି।

ଆର ପକ୍ଷରେ କାହାଣୀ ବି ଚଳ୍ତା ଚଳ୍ତା ଲାଗୁଛି—ସ୍ୱେ ବୋହୂ ହୋଇ ଆସିଥିଲି ସିନା! କାହାରିକି ଜମା ମାନେ ନାହିଁ। ସ୍ୱାମୀ ଶଶୁର ଶାଶୁ ସମସ୍ତିଙ୍କି ମୁହେଁ ମୁହେଁ ଅପମାନ ଦେଲା। ଘରକୁ କୁଣିଆ-ମଇତ୍ର ଆସିଲେ ବି ତାଙ୍କୁ ଶୁଣେଇ ଶୁଣେଇ ନାନା ଅପମାନ କଥା କହିଲା, ବାପଘରକୁ ସବୁବେଳେ ପଳାଇ ପଳାଇ ଚାଲିଲା। ଶେଷରେ ଚରିତ୍ର ବି ନଷ୍ଟ କଲା। ଏଇ ଝିଅଟା ମୋର ନୁହେଁ ହଜୁର! ସେଠି ପର ଲୋକ ସଙ୍ଗରେ ତା'ର ଅସତ ସମ୍ବନ୍ଧ। ତଥାପି ମୁଁ ତାକୁ ବାରମ୍ବାର ଡାକିଲି ଘରକୁ ଆ, ଘରକୁ ଆ। ଏବେ ବି ଡାକ ଲଗୁଛି। ସେ ତ ଧରିଛି ଭଲ ପଇଁଟ, ସେ ମଉଜ ମାରୁଥିବ, ପୁଣି ସେଥିପାଇଁ ପଇସା ଦେଉଥିବି ମୁଁ। ପଇସା, ପଇସା ଦେବା ବଳ ବି ମୋଠିଁ ନାହିଁ। ଜମି ଯାହା

ଅଛୁ, ସବୁ ଭାଗବୃଷୀ ମାଡ଼ ବସିଛନ୍ତି । ମକଦ୍ଦମା କିଏ ତାଙ୍କ ସାଙ୍ଗରେ କରିବ, ନା ଜମି ଛଡ଼େଇବ । ଖାଇବାକୁ ବି ମିଳୁ ନାହିଁ ।

ସ୍ନେହ ନେଲି ସେହି ସରୁଆ ଡେଙ୍ଗା ଯୁବକଟିର କୈଫିୟତ । ତାକୁ ବି କହିବାକୁ ଯେ ଠିଆ ହୋଇଛନ୍ତି, ସେ କଳା କୋଟ ପିନ୍ଧିଛନ୍ତି । ସରୁଆ ଡେଙ୍ଗା ଲୋକଟି ବି କମ୍ ସହାନୁଭୂତି ଉପୁଜାଇ ନାହିଁ ! କୁଞ୍ଚୁକୁଞ୍ଚିଆ ବାଳ, ମଝିରେ ସିଙ୍ଗି ଫିଟେଇ କାଟିଛୁ । ଓସାର ଆଖି ଦୋଟି, ମୋଟା ଚଷମା ବାଟେ ପଦାକୁ ଆନ୍ତର ଭାବପ୍ରବଣ ଦିଶୁଛି । ଅସ୍ଥିର ପାତଳ ଓଠ ଦ'ଫାଳ । ଚିବୁକଟି ଗୋଲ, ନାକଟି ବେଶୀ ଉଞ୍ଚ ନୁହେଁ, ବେଶି ଗୋନା ନୁହେଁ । କପାଳଟି ପଛ ଆଡ଼କୁ ଢଳିଛି ।

ନା, ସେ ନିଷ୍ଠୁର ବୋଲି ଜଣାପଡୁ ନାହିଁ । ଦୁର୍ବଳ ?— ହଁ, ହୋଇପାରେ ତା । ତା'ର ଓସାର ଲୁଗା, ଫୁଲୁକା ଢିଲା ଧୋବ ପଞ୍ଜାବୀ, ଗୋଟିଏ ଗୋଡ଼ ଉଚ୍ଚ ରହିକା ଅଛି, ଯେପରିକି ସେହି ଗୋଡର ପାଦରେ ସେ ଉହା ଉପରେ କୁଦୁଛି । ଦେଖିଲେ ଲାଗୁଛି । ମଲ୍ଲୀଫୁଲ ଅତର ଭଲ ପାଉଥିବ, ଯେମିତି କିଛି ଶସ୍ତା ବାସ୍ନା । କ୍ୟାଲେଣ୍ଡର ଛବି କାନ୍ଥରେ ଝୁଲଉଥିବ, ସେହିପରି ଛବି ଯେପରି କି ଜଣେ ବସିଥିବ, ଆଉ ଜଣେ ତା କାନ୍ଧ ଉପରେ ଢଳି ପଡ଼ି ତା ଆଖି ବନ୍ଦ କରି ଧରିଥିବ, ନ ହେଲେ ଗୋଟିକିଆ ଜଣେ କେହି ସ୍ତ୍ରୀ ଲୋକ ଯେ ଏକ ଛାପାଖାନାର ବିଜ୍ଞାପନ ପ୍ରଚ୍ଛଦ କରିବାକୁ ଯାଇ ପ୍ରକୃତରେ ଲିଭର ଏକ୍ସ-ଟ୍ରାକ୍ଟର ବିଜ୍ଞାପନ ପ୍ରଚ୍ଛଦ କଲା ଅବସ୍ଥାରେ ଥିବ । ସଙ୍ଗୀତରେ ସେ ପସନ୍ଦ କରୁଥିବ, ନାକ ସାହାଯ୍ୟରେ ଚିଁ ଚିଁ କରି ଗାଇ ହେଲା ଭଳି ସନ୍ତସନ୍ତିଆ ଗୀତ, ଯାହାର କିଛି ବିଶିଷ୍ଟ ସ୍ୱର ନ ଥିବାରୁ ତାକୁ ଆଧୁନିକ ବୋଲି କୁହାଯାଏ, ଆଉ ଯାହାର ଭାବ ହେଉଛି କେବଳ କୌଣସି ସ୍ତ୍ରୀ ଲୋକ ପାଇଁ ଦୀର୍ଘଶ୍ୱାସ ପକାଇ ଲୁହ ଢାଳି ଢାଳି ଗୁଣି ହେବା ।

ସେ ଦିଶୁ ନାହିଁ ସେହି ଆରକ ପରି, ଠିକ୍ ଏଇ ବୟସରେ ପ୍ରାୟ ଏହିପରି ଚେହେରା । କଲୁ ମୁହଁର ଠାଣି ଭଳି— ଯେ ତାହାର ସ୍ତ୍ରୀର ହାତ ଗୋଡ଼ ଏକାଠି ଗଣ୍ଠି ପକାଇ ତାର ମଶାଣି ବାଡ଼ାରୁ ଓହଳେଇ ଦେଇ ତା'ର ପଛଆଡ଼େ ବେତରେ ପିଟି ପିଟି ନୋଳା ଫଟାଉଥିଲା । ଯାହାର ସ୍ତ୍ରୀ କଚେରୀଘରେ ଲୁଗା ଖୋଲିଦେଇ ଦେଖାଇଥିଲା କିପରି ତା'ର ଶରୀର ଯାକ ଖାଲି ଚିଅଁ ଦାଗ, ତା'ର ସ୍ୱାମୀ ଦେଇଥିବା ମୁନ୍ଦି ଚିହ୍ନ ।

ତଥାପି ସେହିପରି ସେ ବୋଲି କହିବାକୁ ହେବ । ସେହି ଭଦ୍ରଲୋକ, ଯେ ହାତରେ ମାଛି ନ ମାରୁ; ନିର୍ବିକାର ହୋଇ ପ୍ରକାଶ୍ୟ କଚେରୀରେ ଆପଣା ବିବାହିତ ସ୍ତ୍ରୀକୁ କୁଳଟା ବୋଲି ଘୋଷଣା କରିପାରନ୍ତି, ଆପଣା ସନ୍ତାନକୁ ଜାରଜ ବୋଲି କହନ୍ତି ।

ବିଶ୍ୱରଞ୍ଜନ ଏ ପାଖରୁ ସେ ପାଖ—ଏ ମୁହଁରୁ ସେ ମୁହଁ ଅନେଇ ଆସିଲେ । ହୁଏତ ସେ ଆସିଛନ୍ତି ଦୁଃଖ ବୁଝାଇବାକୁ । ଏକ ସାଧାରଣ ମକଦ୍ଦମା । ନିଷ୍ଠା ତାଙ୍କରେ ସବୁ ସରିଯିବ ।

ତା ପରେ ?

ଖିଅଲ ହେଲ ଏଠି ଅଇନ୍ । କାଗଜରେ ଲେଖା ହୋଇଥିବା ସାକ୍ଷୀ ଇଜାହାର; ତହିଁର ଅଧିକ ଏଠି କିଏସ୍ ଭିତରକୁ ଆସେ ନାହିଁ । କିନ୍ତୁ ଭୁଲ ହେଲନାହିଁ—ସାମ୍ନାରେ ମଣିଷ ଜୀବନର ଏକ ଚମତ୍କାର ନାଟକ ହିଁ ଅଭିନୀତ ହେଉଛି, ଅଇନ୍ ତାକୁ ଶୁଣୁ କି ନ ଶୁଣୁ । କଳ୍ପନାରେ ଅତୀତ ଭାସିଗଲା । ବିବାହବେଦୀ ପାଖେ ଏଇ ଦୁହେଁ । ସେମାନେ ମୁକୁଟ ପିନ୍ଧିଥିଲେ, ଅଳତା ନାଇଥିଲେ । କେତେ ଲୋକ କୌତୂହଳରେ ଅନାଇଁ ରହିଥିଲେ ସେମାନଙ୍କୁ । ନୂଆ ଘରକରଣା; ଲାଜକୁଳୀ ନୂଆବୋହୂଟି । ସେତେବେଳେ କେତେ ସ୍ନେହ ଆଦର, କେତେ ଆଶା, କେତେ ସ୍ୱପ୍ନ । ସେଇ ଗୋଟେ ଆଠ ଦଶ ବର୍ଷ ତଳେ । ସେ ଆପଣା ହାତରେ ତା ମୁହଁରେ ମୁଣ୍ଡରେ ମଲ୍ଲୀଫୁଲିଆ ଅତର ବୋଳି ଦେଉଥିବ । କେତେଥର ଅନ୍ଧାର ଘରେ ବସି ଝରକାବାଟେ ଜହ୍ନ ଆଡକୁ ଚାହିଁ ରହିଥିବେ ଦୁହେଁ । କଣେଇ କଣେଇ ସେ ତା'ର ସୁନ୍ଦର ମୁହଁକୁ ଅନାଇଁ ଦେଖିଥିବ, ଆଉ ହସି ପୁରୁଷଙ୍କ ପରି ସେ କହିଥିବ, ବାଃ ! କେଡ଼େ ସୁନ୍ଦର ତା'ର ସ୍ତ୍ରୀ । ତା'ର ଏଇ ରକ୍ତମାଂସର କଞ୍ଚା ମଣିଷ ଦେହକୁ କେତେଥର ସେ ଭାବିଥିବ ଏକ କବିତା ବୋଲି, ଏକ ଉଚ୍ଛ୍ୱାସ ବୋଲି । ଭାବିଥିବ—ସେ ଏକ ବାସ୍ନାଫୁଲର ମାଳା, କେତେବେଳେ ଭାବିଥିବ କେବଳ ଅତି ରୁଚିକର ଖାଦ୍ୟ ବୋଲି ।

ପ୍ରୌଢ଼ ବିଶ୍ୱରଞ୍ଜନ ମୁହଁ ଟେକି ଦୁଇ ମୁହଁର ମଝିରେ ସିଧା ଦୂରକୁ ଚାହିଁ ରହିଲେ, ବାଁକୁ ନୁହେଁ, କି ଡାହାଣକୁ ନୁହେଁ । ମୁହଁ ପଟେ ଦୂରରେ ଦିଶୁଛି ପୁରୁଣା କଚେରି ଘର ଧାଡ଼ିଏ, ସହରର ଏକ ପାର୍ଶ୍ୱ, ଦି'ଟା ପୁରୁଣା ଭେଙ୍ଗା ଜମ୍ବୁଗଛ । ଟିକିଏ କରକୁ କନା ହାଇସ୍କୁଲ ପଡ଼ିଆର ଗୋଲପୋଷ୍ଟ । ଓପାର ପଡ଼ିଆଟା ଦିଶୁଛି । ଏତେ ଖରାରେ ମରି ମରି ତଥାପି ସେଠି ଘାସ ରହିଛି ।

ତିନୋଟି ଗୋରୁ ଘାସ ଖୋଜୁଛନ୍ତି । ପଡ଼ିଆ ଏ କଣରୁ ସେ କଣକୁ ପାଦଚଲା ବାଟ ଫାଟିଛି । ଲୋକେ ଚାଲୁଛନ୍ତି । ଖରା ତାଉ ତାଉ ହୁଲୁକୁଛି ।

ସ୍ୱାଣ ନାଁ ଜୀବନ, ସବୁ ପରିଷ୍କାର, ସବୁ ଠିକ୍‌ଠାକ୍ । ଏହାରି ଭିତରେ ହଠାତ୍ କେତେବେଳେ ଝଡ଼ି ଘୋଡ଼ାଏ, ତୋଫାନ ଆସେ, ଜହ୍ନ ପଡ଼େ, କେତେବେଳେ ସବୁ ଆଉଟି ହୋଇଯାଏ ଆନନ୍ଦ ଓ ଆଲୋକର ଧାରା । ଆଉ କେତେବେଳେ ସବୁ ପୁଣି ଓଲଟ ପାଲଟିଯାଏ, ନିଆଁ ଜଳିଉଠେ । ସଂସାର ହୁଏ ବିଷମ, ବିକ୍ଷୁବ୍ଧ । ବିଶ୍ୱରଞ୍ଜନ ଦାର୍ଶନିକ ଚିନ୍ତାରେ ସରଳ ଘଟଣାର

ଅର୍ଥ ଖୋଜିଥିଲେ । ଅଜାଣତରେ ବିଷୟ ଉପରେ ଆପଣା ଅଜାଣ ଜୀବନ ରଙ୍ଗ ଢାଳିଥିଲି । ଆଜି ସେ ବୃତ୍ତିଙ୍କର ବିଚ୍ଛେଦ ହୋଇ ନାହିଁ, କିନ୍ତୁ କାହିଁ ସେ ଅଗର ସମ୍ବନ୍ଧ ? କାହିଁକ ତ୍ରୁଟି ନାହିଁ । ସେ ଆପଣା କର୍ତ୍ତବ୍ୟ କରିଛନ୍ତି—ପରିବାର ଚଳିବା, ପରିବାର ପୋଷିବା, ଯାହା ଆବଶ୍ୟକ ପଡ଼ୁଛି, ତାକୁ ଯଥାସାଧ୍ୟ କରିବା, ପିଲାଙ୍କ ପାଇଁ ମାଷ୍ଟର ଖୋଜିବା, ଘରକରଣା ପାଇଁ ଗୃହକର ପୂଝାରୀ ଖୋଜିବା, କେହି ରୋଗରେ ପଡ଼ିଲେ ଡାକ୍ତର ଡାକିବା ଔଷଧ କିଣିବା । ଏ ସବୁ କର୍ତ୍ତବ୍ୟ ସେ ଅଜାଣତରେ କରିଛନ୍ତି । ଆର ପକ୍ଷରେ ତାଙ୍କ ସ୍ତ୍ରୀ ବି ଅଜାଣତରେ ଆପଣା କର୍ତ୍ତବ୍ୟ କରିଛନ୍ତି । ପିଲାଙ୍କ ପାଇଁ ରାତି ରାତି ଉଜାଗର, ଘର କାମପାଇଁ ଦିନଯାକ ସତର ଚକ ଘର । ଘର ଚଳେଇବାର ସୁବୁଦ୍ଧିର ସେ ଗ୍ରହଣ କରିଛନ୍ତି । କାମ କରି କରି ଆପଣା ସୁଖ-ସ୍ୱାଚ୍ଛନ୍ଦ୍ୟକୁ କେଉଁକାଳୁ ଜଳାଞ୍ଜଳି ଦେଇ ସାରିଛନ୍ତି । ଠିକ୍ କଥା, କର୍ତ୍ତବ୍ୟ ତ ଉଭୟେ କରିଛନ୍ତି । କିନ୍ତୁ ବୋଧହୁଏ ଦାନ୍ତ ଚପି ମାଡ଼ି ମକଚ କର୍ତ୍ତବ୍ୟ କରିବାଟା ହିଁ ଭୁଲ୍ ହୋଇଛି । କାରଣ ଉଭୟେ ପରସ୍ପର ବିରୁଦ୍ଧରେ କର୍ତ୍ତବ୍ୟର ସେହି ତାଲିକାଟାକୁ ହିଁ ଉଚ୍ଚ କେଇ ଚାଲିଛନ୍ତି ସବୁବେଳେ । ଆଉ ପ୍ରତ୍ୟେକେ ଭାବୁଛନ୍ତି ତାଙ୍କର ଉପରେ ହିଁ ଅପର ପକ୍ଷର ବେଶି ଉତ୍ପୀଡ଼ନ ।

ଆଜି ବୟସ ପଇଁଚାଳିଶ, ଦେହ ମୋଟା ହୋଇଛି, ଭୁଡ଼ି ବାହାରି ହୋଇଛି । ମୁହଁ ହେଲାଣି ଚଟା ଚେକା । ମୁଣ୍ଡ ଚନ୍ଦା ହେଲାଣି । ଦେହର ଗୋରାବର୍ଣ୍ଣଟା ଆହୁରି ତେଜ ଦିଶୁଛି । ସେହି ମୁହଁରେ ମୋଟା ଫ୍ରେମର ଚଉଆଁଶିଆ କେଳ କାଚର ଚଷମା ନାଇ ଉଚ୍ଚ ଆସନ ଉପରେ ବସି ତଳକୁ ଅନାଇଲେ, ଦମ୍ଭରକର ମୁହଁର ଠାଣି ସଫା ବାରି ହୋଇ ପଡ଼ୁଛି । ଗମ୍ଭୀର, ଅଚଳ, ଆଇନର ଦଉଡ଼ି ଉପରେ ଶୂନ୍ୟେ ଶୂନ୍ୟେ ପାଦ ପକାଇ ଚାଲିବାକୁ ଭାବନା ଅଭ୍ୟସ୍ତ ହେଲାଣି । ସଂସ୍କାର ବାରି ହୋଇ ପଡ଼ୁଛି । ଏ ମନରେ ଆଉ ସନ୍ଦେହ ନାହିଁ । ସ୍ଥିର ବିଶ୍ୱାସ ଓ ଦୃଢ଼ ଧାରଣା ଆସିଛି ଭଲମନ୍ଦ ଉଚିତ ଅନୁଚିତ ବିଷୟରେ । ସେହିପରି, ଏ ମନରେ ଆଉ କୁତୂହଳ ନାହିଁ, ଅନୁସନ୍ଧିତ୍ସା ନାହିଁ, ନୂତନ ଅନୁଶୀଳନ ପାଇଁ ପ୍ରବୃତ୍ତି ନାହିଁ । ଗୋଟାଏ ଧାରଣା, ଯାହା ମୁଁ ବୁଝିଛି ତା ଠିକ୍ । ଆଉ ସବୁ ଭୁଲ୍ । ଦୂରରୁ ଦେଖି ବି ଠାଏକୁ ମାରି କେତେଗୁଡ଼ାଏ କଥା ସ୍ୱାମୀଙ୍କ ବିଷୟରେ କହିହେବ, ରୁଚି ଓ ବ୍ୟବହାର ବିଷୟରେ । କହିହେବ, ସେ ଛୁଆଙ୍କ ସଙ୍ଗେ ହୋ ହୋ କରିବେ ନାହିଁ, ସେ କେବେ ଦୌଡ଼ିବେ ନାହିଁ, ସେ ଆପଣା ଭାତ ଥାଳିରୁ ପରକୁ ଢେଲେ ଭାତ ଦେବେ ନାହିଁ । ଲୋକେ ଯେତେ ପଛେ ଦେଖି ଥାଆନ୍ତୁ, ସେ ଠୋ ଠା ଭକାରକ ପଇସାଟିଏ ଦେବାକୁ ମନା କରିଦେବେ । ମୋଟେ ତାଙ୍କୁ ଅଖାଡ଼ୁଆ ଲଗିବ ନାହିଁ । ସେହିପରି ଭଦ୍ର, ସମ୍ଭ୍ରାନ୍ତ, ଗମ୍ଭୀର ।

ଘରେ ଅରପଟଟା ବି ସେହିପରି ଭାବରେ ବିବର୍ତ୍ତିତ, କେବଳ ସେ ପୁରୁଷ ହେଲେ ସେ ସ୍ତ୍ରୀ । ସେ ପଇଁଚାଳିଶ ହେଲେ, ସେ ଚାଳିଶି । ତାଙ୍କ ମୁଣ୍ଡ ଚନ୍ଦା

ନୁହେଁ, କହ୍ନୁ ବାଳ ଅଧେ ଅଧେ ପାଚିଗଲାଣି । ଚେକା ଗୋରା ମୁହଁରେ ମାନିଲା ଭୂପେଲ ଗମ୍ଭୀରତା । ଫୁଲୁକା ଗାଲ ଓହଳି ପଡ଼ିଛି । ଦେହ ମୋଟା ହୋଇ ବେଢଙ୍ଗ କ ପାନ ହୋଇ ଯାଇଛି । ପରିପୁଷ୍ଟ ଅବସ୍ଥାଠୁଁ ଅଧିକ ପରିପୁଷ୍ଟ ସେ ଦେହ । ଏକର ସେକର ଭୁଲିଗଲେ ଲାଗେ ଯେପରିକି ଗୋଟିଏ ଶ୍ରେଷ୍ଠିଆ ରଥ ବାଙ୍କ ବୁଲୁଛି । ପାତିବ୍ରତ୍ୟ, କର୍ତ୍ତବ୍ୟ, ସ୍ୱାମୀ, ସନ୍ତାନ, ସଂସାର ଏ ସବୁର ଗୌରବ ଖଣ୍ଡି ହୋଇ ଟଙ୍କାପରି ସୁନ୍ଦର ନାଇ ଗୋଟିଏ ରଥ ଆଉ ଗୋଟିଏ ରଥକୁ ମୁହାଁମୁହିଁ ଚାହେଁ ।

ବଲ୍ଲଭପତି ସେହି ମୂର୍ତ୍ତିକୁ ମନେ ପକାଉଥିଲେ । ଅନ୍ୟମନସ୍କ ହୋଇ ବେଳେ ବେଳେ ମୁଣ୍ଡ ଟେକୁଥିଲେ । ବେଳେ ବେଳେ ତଣ୍ଟି ଭିତରୁ ଗୋଟାଏ ଲେଖାଁ ସାନ ସାନ ଗର୍ଜନ କାଢୁଥିଲେ, ଯାହାକୁ ଅର୍ଥ କରିବାକୁ ହେବ 'ହୁଁ' ବୋଲି । ବେଳେ ବେଳେ କାଗଜରେ ଗାର ପକାଉଥିଲେ । ମକଦ୍ଦମା ଆରମ୍ଭ ହେବା ପୂର୍ବରୁ ଦୁଇ ପାଖର ଓକିଲ ଆପଣା ଆପଣା କାହାଣୀର ଅଇନଗତ ତାତ୍ପର୍ଯ୍ୟ ବୁଝାଇବାରେ ଲାଗିଛନ୍ତି । ବଲ୍ଲଭପତି ମୁଣ୍ଡ ଟେକି ପଥୁରିଆ ଚାହାଣିରେ ଅନାଇ ରହୁଥିଲେ । ଚହଲ ଚିନ୍ତାରେ ଭାବୁଥିଲେ—ତାଙ୍କ ସ୍ତ୍ରୀଙ୍କର ଯୌବନର ଚେହେରା ଯାହା, ଆଜି ଆଉ ନାହିଁ । ସେହି ହସ, ସେଇ କୁତୁହଳ, ସବା ଉପରେ —ସେହି ଆଗ୍ରହ, ଯାହା ଆଜି ନାହିଁ । ବହୁକାଳୁ ମନର ଶୋଷ ମନରେ ହିଁ ମରିଛି । ପୁରୁଣା ସମସ୍ତ ଲେଉଟାଇ ହୋଇନାହିଁ ।

ସେମାନେ ପରସ୍ପରଠୁ ଅନ୍ତର ହୋଇ ନାହାନ୍ତି, ତା'ର କାରଣ ସେମାନେ ସେକଥା ଭାବି ନାହାନ୍ତି । ସେମାନେ ଧରି ନେଇଛନ୍ତି—ଏମିତି ହୁଏ, ଧରି ନେଇଛନ୍ତି ଜୀବନଟା ଟଙ୍କାପଇସା ଦିଆନିଆ ବେଉସା । ସେଠି କବିତା, ମୋହ, ପ୍ରେମଚାହାଣି, ପ୍ରତୀକ୍ଷା, ପୁଲକ, ଏସବୁ କଥା ପାଇଁ ମୋଟେ ସ୍ଥାନ ହିଁ ନାହିଁ, ଆଉ —ପୁତ୍ରାର୍ଥେ କ୍ରିୟତେ ଭାର୍ଯ୍ୟା । ପୁଅଟି ଏବେ କୃତ୍ରିମ ପ୍ରଜନନ ପ୍ରଣାଳୀରେ ହୋଇ ପାରୁଛି । ସେଥିପାଇଁ ସ୍ତ୍ରୀ ପୁରୁଷ କୋଉଠି ଭେଟାଭେଟି ହେବା ବି ଦରକାର ନାହିଁ । ସମ୍ବନ୍ଧଟା ହେଲାଣି ଅସି ଅତ୍ୟନ୍ତ ବେପାରୀ ସମ୍ବନ୍ଧ । ଜଣେ ଟଙ୍କା ଆଣି ଦେବ, ଆଉ ଜଣେ ତାକୁ ଗଣି ଗଣି ଆପଣା ପାଖେ ରଖିଦେବ । ଜଣେ ବସି ବସି ଗ୍ରନ୍ଥ ଲେଖୁଥିବ, ଆଉ ଜଣେ ଘରକରଣା ବୁଝୁଥିବ, ଗର୍ଜୁଥିବ, ଆକଟକରି ଚାକରବାକରଙ୍କୁ ଶୋଧୁଥିବ ।

ଏପରି ଦୁଇଜଣଙ୍କ ଭିତରେ କଣ ଡୋର ବନ୍ଧା ହୋଇଛି, ତା ତାଙ୍କ ଆଖିରେ ପଡ଼ିଲା ନାହିଁ । ଓଲଟି ଯେ ଭାବିଲେ ବହୁଦିନୁ ତ ସେ ଆଉ ତାଙ୍କ ସ୍ତ୍ରୀ ପ୍ରକୃତରେ ଅଲଗା ଅଲଗା ହୋଇଗଲେଣି, ଆଉ ବେଶି ଦୂର ଯିବାକୁ ମନ ଅନେକଥର ଇଚ୍ଛା କରିଥିବ, ଆଗୁଳିଛି ଖାଲି ସଂସାର । ସେଥିରେ ସମାଜପ୍ରତି ଭୟ ହିଁ ବେଶୀ—କାଳେ କିଏ ଦେଖି ପକେଇବ । କାଳେ କିଏ କଣ କହିବ ।

ଏତକ ନ ହେଲେ କେତେଥର ଅନ୍ୟ ନାରୀର ପାଖ ସୁଖ ଲାଗୁଛି । ଅନ୍ୟର ବ୍ୟବହାର ଅନ୍ୟର ରୂପଗୁଣ ମନକୁ ଆକୃଷ୍ଟ କରୁଛି । କେତେଥର ଇଚ୍ଛା ହୋଇଛି ସିଧା ବାଟରେ ଚାଲି ଚାଲି ଅଟକି ଯାଇ କାହା ସହିତ କ୍ଷଣେ ହେଲେ ଦୁଃଖ ସୁଖ ହେବାକୁ । ଆଉ କେତେବେଳେ ଅନ୍ୟ କେଉଁ ସ୍ତ୍ରୀ ଲୋକର ସ୍ମୃତି ପ୍ରବଳଭାବେ ମନକୁ ଘାରୁଛି ଆଚ୍ଛନ୍ନ କରି ରଖିଛି ସତେ ଦୁଇଦିନ ତିନିଦିନ ଯାଏଁ । ଅଥଚ ପଦାରେ ସେ ସୌମ୍ୟ ଶାନ୍ତ ଗମ୍ଭୀର ଭଦ୍ରବ୍ୟକ୍ତି, ଧୀର ପ୍ରବୀଣ ବିଶ୍ୱରପନ୍ଥ । କାଣି କାଣି ଆପଣାକୁ ଆପେ ପ୍ରବୋଧନ୍ତି—ଏ ଜୀବନ କର୍ମମୟ, କାମର ସୃଷ୍ଟି କେବଳ ବଂଶବୃଦ୍ଧିପାଇଁ । ତା'ପରେ ତା'ର ଆଉ ପ୍ରୟୋଜନ ନାହିଁ, ସେ ଏକ ପାଗଳାମି । ନିଜ ଭିତରକୁ ନିରେଖି ଦେଖି ଅର୍ଥ କରନ୍ତି—ଏହି ଯେଉଁ ଧାରଣା ଅଛି ଯେ, ସ୍କୁଲର ଭଲ ପିଲାଙ୍କର ରୁଣ୍ଡମୁଣ୍ଡ ମାର ଖୁଜ୍‌ବୁଜ୍ ନ ହୋଇ ମଡ଼ା ବାଟରେ ଗଲେ ଶୁଖି ଶୁଖି ଜୀବନ ସରିବା ହିଁ ସାର ହେଉଛି । ବେଳେ ବେଳେ ଏହି ଯେଉଁ ମନଭିତରେ ନିଆଁ ଜଳି ଉଠୁଛି, ଏ ଭଦ୍ରତାର ଖୋଳ ଖୋଲି ଫୋପାଡ଼ି ଦେଇ ରୂପ ଆଉ ଦେହ ଗୋଟେଇ ଭୋଗ କରିବାପାଇଁ । ଏଇ ଯେଉଁ ବ୍ୟର୍ଥତାର ହାହାକାର ମନ ଭିତରେ କୁହୁଳି ଜଳୁଛି, ଯେ ଏ ସଂସାରରେ ଫୁର୍ତ୍ତି ଓ ମଉଜପାଇଁ ଏତେ ସାହା ପଡ଼ିଛି, ଅଥଚ ତାଙ୍କପାଇଁ କିଛି ନାହିଁ, ଏଣେ ଆୟୁଷ ସରୁଛି, ଆପଣା ଅନ୍ତରକୁ କିଏ ସେ ବଞ୍ଚିତ କରିଛନ୍ତି ଏ ସବୁ ଧାରଣା କେବଳ ଦେହରୁ । ଖାଲ ପରି, ଖୋଡ଼ା ପରସ୍ତ ପରି ଏସବୁ ଏ ଦେହରୁ ବାହାରି ଭାବନା ହୋଇ ଉଡ଼ି ବୁଲିଯାଏ । ଏ ସବୁ କେବଳ ବିକାର । ମାର୍ଜିତ ଜୀବନ ଏ ସବୁ ବିକାରରେ ପ୍ରଭାବିତ ହୁଏ ନାହିଁ ।

ଗୋଟିଏ ସାଧାରଣ ୪ । ୮ ଦଫା ମକଦ୍ଦମା ଆଗରେ ଆଉ ଥରେ ଆପଣାର ଏପରି ଭାବନାଗୁଡ଼ାକ ସେ ପରଖି ନେଲେ । ଯାହା ସେ କରି ନ ପାରନ୍ତି, ତା କରିଛି ଏହି ଯୁବକ । ସେ ଭଦ୍ରତା ଜାଣି ନାହିଁ । ଛୁଟ ବଦଳିଲା ମାଫେ ମାର୍ଗ ବଦଳେଇଛି । ପୁରୁଣାକୁ ଉପେକ୍ଷି ନୂଆକୁ ଧରିଛି । ଯାହାକୁ ସେ ଭାବିଛନ୍ତି ଅଭଦ୍ର ମନର ଅସାମାଜିକ ବିକାର ବୋଲି, ତାକୁ ସ୍ୱେ କରିଛି ଆସୁର । ଯେ କୌଣସି ପଶୁପକ୍ଷୀ ତ ତାହା ହିଁ କରନ୍ତି, କିନ୍ତୁ ସେ ଏପରି ନିଷ୍ଠୁର ହୁଅନ୍ତି ନାହିଁ । ତା'ର ସବୁଠୁଁ ବଡ଼ ଦୋଷ, ଯାହା ସେ ନିଜେ କରିପାରିଥାନ୍ତେ ଅଥଚ କଲେ ନାହିଁ । ଯାହା ଏ ସଂସାରର ଅନ୍ୟମାନେ ବି କରନ୍ତି ନାହିଁ, ତା ସେ କରିଛି । ସୁତରାଂ ତା କଥା ଭାବିଲା ବେଳେ ମନରେ ଈର୍ଷା ବି ଅଛି । ଧୀରେ ଧୀରେ ରାଗ କୁହୁଳୁଛି । ସବୁଯାକ ସହାନୁଭୂତି ପଡ଼ୁଛି ଆରପାଖର ଏଇ ସ୍ତ୍ରୀ ଲୋକଟି ଉପରେ । ମନ ହେଉଛି, ତାକୁ ସେ ସହାନୁଭୂତି ଦେଖାଇ କଥା କହନ୍ତେ, ତା'ର କିଛି ଉପକାର କରନ୍ତେ । ପୁଣି ମନ ହେଉଛି, ତାକୁ ସେ ସାନ୍ତ୍ୱନା ଦେଉଥାନ୍ତେ, ନିଷ୍ଠୁର ଅବହେଳାରେ ତାଠି ଯାହା ଶୁଖିଯାଇଛି, ଝାଉଁଳି ପଡ଼ିଛି, ପୁଣି ସେ ସବୁ କଅଁଳି ଉଠନ୍ତା ତାଙ୍କ କରୁଣାର ସ୍ପର୍ଶରେ । ଅଭିଯୁକ୍ତ ଓ

ଅତ୍ୟାଚାରରେ ଆହତ ଏହି ସେ ନାରୀ, ଯୁଗ ଯୁଗର ଜଗତର ନ୍ୟାୟ ଦରବାରର ସବୁଠାରୁ ନ୍ୟାୟ ତା'ର ଦୁଃଖ ଅପମାନର ଖବର ସମ୍ଭାଳିବାକୁ ଜାଣିଛି ଏ ବି ଶକ୍ତି ବି ନାହିଁ ।

ଶୁଣାଣିରେ ନଅଁ ଗୁଟି ମାରି ବସୁରପକ୍ଷ ପ୍ରତିବାଦୀ ଆଡ଼କୁ ଅନାଇଲେ । ଆଉ ମକଦ୍ଦମା ଆରମ୍ଭ ହେଲା ।

ପ୍ରଥମ ଦିନ ତାରାମଣିର ସାକ୍ଷୀ । ସେ କାନ୍ଦିଲା ନାହିଁ—ପାଟି କଲା ନାହିଁ ଧୀରେ ଧୀରେ ତା ଓକିଲଙ୍କ ପ୍ରଶ୍ନର ଜବାବ ଦେଇଗଲା । ତା ସ୍ୱରରେ ଛପିଲା ଛପିଲା ଗମ୍ଭୀର କରୁଣାର ରଙ୍ଗ ବାରି ହୋଇ ପଡ଼ୁଥିଲା । କଚେରୀ ଘରେ ଲୋକାରଣ୍ୟ କିନ୍ତୁ ସମସ୍ତେ ଚୁପ୍‌ଚାପ୍ । ସେ କେବଳ ମକଦ୍ଦମାରେ ସାକ୍ଷୀ ଦେଉ ନ ଥିଲା, ଯେପରି କି ତା'ର ଦୁଃଖ ସଂଯତ ଆବୃତ ହାବଭାବରେ କିଣି ଏପରି କିଛି ସୂକ୍ଷ୍ମ ମୁଦ୍ରା ସେ ସୃଷ୍ଟି କରୁଥିଲା, ଯହିଁରେ ସେ ସୂଚନାରେ ସୂଚନାରେ ତୁଣ୍ଡରେ କହିବାଠୁଁ ଅଧିକ ଭାବ ଫୁଟାଇ ପାରୁଥିଲା । ଯହିଁରେ ଖର୍ଚ୍ଚ ଥାଇ ବି ଦିନ ଲୋପ ହୋଇ ଯାଉଥିଲା ପରି ଲାଗୁଥିଲା । ଘରଯାକ ଖାଲି ଦୀର୍ଘଶ୍ୱାସ । ହେଲେ, ସମସ୍ତଙ୍କ ଆଖି ଆଗରେ ତା'ର ସେ ଧୀର କ୍ଳାନ୍ତ ଗଳାରେ ତା ଘରକରଣାର ଜୀବନ, ପାଖୁଡ଼ା ପରି ଖୋଲି ଯାଉଛି । ତାପରେ ଆସୁଛି ଝାଁଉ ପବନ ପରି ସଉତୁଣୀ । ତା'ର ଛୁଆ ପିଲା ନାହିଁ । ତା'ର ବୟସ ସାଙ୍ଗକୁ ସ୍ୱାସ୍ଥ୍ୟ ଅଛି । ସ୍ୱାମୀ କହେ ସେ କୁଆଡ଼େ ତା ଆଖିକି ଭାରି ସୁନ୍ଦର ଦିଶେ । କଥା କହୁ କହୁ ସ୍ୱର ଥରିଯାଏ । ଛୁତରେ ତଡ଼ିଲା କୁଆ ଗୃହଲକ୍ଷ୍ମୀ ପରି ଅପର ସ୍ତ୍ରୀର ପ୍ରଶଂସା କାହାଣୀ । ଦାନ୍ତରେ ଦାନ୍ତ ଜାକି ପଡ଼ିଯାଏ । ସଁ ସଁ ହୋଇ ଶବ୍ଦ ବାହାରେ । ପାଖୁଡ଼ା ଗୋଟି ଗୋଟି ହୋଇ ମଉଳି ଝଡ଼ି ପଡ଼ୁଛି । ସେଇ ପୁରୁଣା କାହାଣୀ । ଜଣକର ଦିନ ସରିଗଲା, ଆଉ ଜଣକର ଆରମ୍ଭ ହେଲା । ତାପରେ ଫେର ଦାରିଦ୍ର୍ୟର କାହାଣୀ । ଉପାସ ଭୋକ ଅନାଦରର କରୁଣ ଇତିହାସ । ଆହା ଚୁ ଚୁ ଶବ୍ଦରେ ଘରଯାକ ପୂରିଗଲା । ସେ ସମସ୍ତଙ୍କର ହିଁ ଝିଅ ସେ ଏ ଦେଶର ହିଁ ଝିଅ ।

କିନ୍ତୁ ପ୍ରତିବାଦୀ ତରଫର ଓକିଲ ସେକଥା ସ୍ୱୀକାର କରିବାକୁ ଇଚ୍ଛୁକ ନୁହନ୍ତି । ଆରମ୍ଭ ହେଲା ଜେରା । ସ୍ୱାମୀଙ୍କ ସଙ୍ଗେ କାହା କାହାର ବନ୍ଧୁତା ଅଛି ? କିଏ ଯା ଆସ କରନ୍ତି ? ଖବର ବୁଝିବାକୁ ଆସନ୍ତି ନାହିଁ ? ଘରେ କଳି ଲାଗୁଥିଲା କି ନାହିଁ ? କିଏ ଆଗ କଳି ଆରମ୍ଭ କରୁଥିଲା, ତୁମେ ଆରମ୍ଭ କର, ନା ତୁମ ସ୍ୱାମୀ ଆରମ୍ଭ କରନ୍ତି ? ଯଦି ସ୍ୱାମୀ ଆରମ୍ଭ କରନ୍ତି କହୁଛ, କଣ କହି ସେ ଗାଳି ଦିଅନ୍ତି ? ତମର କି କି ଦୋଷ ଅଛି ବୋଲି ସେ ଦୁଆ ଦିଅନ୍ତି ? ତାଙ୍କ କହିବା କଥାକୁ ତୁମେ କି ଉତ୍ତର ଦିଅ ? ତୁମ ଦୁହିଁଙ୍କ କଜିଆ ସକାଶେ କେବେ ପଞ୍ଚାୟତ ଡକା ହୋଇଥିଲା କି ? ଏ କଥାଟା ବୁଝିଦେବା ବୋଲି କେହି ଲୋକ ଆସିଥିଲେ କି ? ଗୁଳିଲ—ଗୁଳିଲ ପ୍ରଶ୍ନର ବର୍ଷା, ଆଉ ତହିଁରେ ଛଟେଇ ଛଟେଇ ହେଉଛି

ସ୍ତ୍ରୀ ନେଇକି । ହଠାତ୍ ଲାଗିଲା ସେ ଏ ପ୍ରଶ୍ନ ଜାଲ ପଛଆଡ଼େ ଦୂରଭିସନ୍ଧି ଦେଖି ପାରୁଛି ତା'ର ଚରିତ୍ର ଉପରେ ଆକ୍ଷେପ କରୁଛି ଏ ଅଦେଖା ମଣିଷଟି—ଯାହାକୁ ଓକିଲ୍ ବୋଲି ତା'ର ସ୍ୱାମୀ ଠିଆ କରିଛି । ସେ ଭୁଲିଗଲା ସେ କଚେରିରେ ଅଛି । ଚାରିକଡ଼ର ଲୋକେ ଠେଲାଠେଲି ହେଲା ପେଲି ହୋଇ ବେକ ଉଚ୍ଚ କେଇ ତାକୁ ହିଁ ଲକ୍ଷ୍ୟ କରୁଛନ୍ତି । ସବୁ ଭୁଲିଗଲା ସେ, ଆଉ ରାଗରେ ପାଚିଯାଇ ତା'ର ସ୍ୱାମୀ ଆଡ଼କୁ ହାତ ବଢ଼େଇ କାନ୍ଦଣା ଭିତରେ ଚିତ୍କାର କରିଉଠିଲା—"ଏଡ଼େ ସାହସ ତମର ? ଏ ସଂସାରରେ କଣ ଧର୍ମ ନାହିଁ ? ତମ ଜିଭ ଛିଣ୍ଡି ପଡ଼ୁନାହିଁ କାହିଁକି ? ଆପଣାକୁ, ଆପଣା କୁଳକୁ, ଆପଣା ଚଉଦ ପୁରୁଷକୁ ଏମିତି ଭଡ଼ାଟିଆ ତୁଣ୍ଡରେ ଯାହା ତୁମେ ମିଛ ଅପମାନ ଦଉଛ ଏ ଧରଣୀ ତମକୁ ସହୁଚ କେମିତି ? ମୋ ମୁହଁକୁ ଅନେଇ କଥା କହ ! କିଏ କହୁଚ ଏଇ ଏ ଓକିଲବାବୁ ଯାହା ମତେ ପଚାରୁଛନ୍ତି, ତା କଣ ସତ ? ମୁଁ କଣ ଦୋଷୀ ଦୁଣୀ ? ଏ ଛୁଆ ଦିହେଁ କଣ ବେଧ ଛୁଆ ? କହୁନ କାହିଁକି ?" ପାଗଳର ଆଖି ପରି ଟଳଟଳ ଆଖି । ଦେହରେ ଏକ ଅସାଧାରଣ ବ୍ୟସ୍ତତା, ଯେପରି କି ତା'ର ଜୀବନୀ-ଶକ୍ତି ଏ ଦେହ ଛାଡ଼ି ଉଡ଼ିଯିବାକୁ ହିଁ ଛଟପଟ ହେଉଛି । ଫଣକା ନାକପୁଡ଼ା, କାନ୍ଦୁରା ମୁହଁ, ମଉଳା ଯୌବନ । ଅପମାନରେ ରାଗରେ ଯେପରି କି ତା'ର ଦେହ ଉପରେ ଧାସ ହେଉଛି । ଅତି ଚଞ୍ଚଳ ତା'ର ମନର କୋହ ବଢ଼ି ବଢ଼ି ଚାଲିଛି । କଚେରି ଘର ବଦଳି ଯାଇଛି । ଯେପରି କି ଏ କାନ୍ଥ ନାହିଁ, ଛାତ ନାହିଁ । ଉପରେ ଘମାଘୋଟ କଳା ଆକାଶ । ସେଥିରୁ ଗଳି ଗଳି ବର୍ଷା ଅଜାଡ଼ି ହେଉଛି । ଚାଲିଛି ବଜ୍ର ଘଡ଼ଘଡ଼ି । ତୋଫାନ । ସୂର୍ଯ୍ୟ ନାହିଁ । ସୃଷ୍ଟିକାରିଣୀ ନାରୀ ଅପମାନ ପାଇ ରାଗରେ ପ୍ରତିଶୋଧ ନେବାକୁ ବସିଛି । ତଳେ ଯୋଡ଼ା ପାପୁଲିରେ ମୁହଁ ଘୋଡ଼ାଇ ମୁଣ୍ଡ ନୁଆଇଁ ବସି ରହି ଶୋକ ଭିତରେ ଜାହି ଜାହି ଡାକ ଛାଡ଼ୁଛି ମଣିଷ । କଚେରିଘର ବଦଳି ଯାଇଛି । ମନୁଷ୍ୟର ଅନୁଷ୍ଠାନ ଲୋପ ପାଇ ଯାଇ ଲେଉଟି ଅଛିଛି ଆଦି ଯୁଗ ।

"ଶୁଣ, ଶୁଣ ମା, ଅଧୀର ହୁଅ ନାହିଁ" ତାର ତରଫ ଓକିଲ୍ ବୋଧୁଛନ୍ତି । ସ୍ଥିର କରିଶ, ସ୍ଥିର ସେ ଯାହା ପଚାରୁଛନ୍ତି ତାର ଉତ୍ତର ଦିଅ । ମନ ବ୍ୟସ୍ତ କର ନାହିଁ ।"

ଆର ତରଫ ଓକିଲ ହାକିମଙ୍କୁ ଜଣାଉଛନ୍ତି "ଦେଖନ୍ତୁ, ହଜୁର ସ୍ଥିର ଯେମିତି ହେଲେଣି ମୁଁ ଆଉ କି ପ୍ରଶ୍ନ ପଚାରିବି ? କଚେରିର ସବୁ ନିୟମ ସ୍ଥିର ଭାଙ୍ଗୁଛନ୍ତି । ସ୍ୱାଙ୍କ ବନ୍ଦୁଳରେ କାର୍ଯ୍ୟାନୁଷ୍ଠାନ କରାଯାଉ ।

କିନ୍ତୁ ସେ ସେତେବେଳେ ମାତିଛି ।

କହୁଛି କାହିଁକି ମୁଁ ଥଇଲି ଏଠିକି ? କଣ ମକଦ୍ଦମା ଜିଣିଲେ ଗଉରବ ପାଇବ ବୋଲି । ସେଡ଼େ ଦଶା ହେବାରୁ ଅଇଲି ପିନା ! ଖାଲି ସ୍ଥିର ପିଲା

ଢ଼'ଟାଙ୍କ ପେଇଁ । ସେମାନେ କେମିତି ବଞ୍ଚିବେ ବୋଲି । ତେଣେ ତେମ ଟୋକ୍ସି ଲାଗିଥା ଘେନ ମଉଜ୍ ମଜଲିସିରେ ମାତିଛି, ତମ ପଇସା ନଷ୍ଟ ହୋଇଯାଉଛି, ଏଣେ ଏ ବୁଢ଼ୀ ଢ଼'ଟା ଉପାସ ଭୋକରେ ଗଡ଼ୁଚନ୍ତି । ତାଙ୍କ ମଲା ଗଲା ପଶୁରୁ-ନାହିଁ । ବାପ ହୋଇଥିଲ ହେ ! ଛି ତମ ମୁହଁକୁ ? କଏ ମେ ବଢ଼ିଛି ଦେଲି—ଏଇଠିକି ଅସିଲେ ମୋ ଦୁଃଖ ମେଣ୍ଟିବ । ତେମେ ବସିଲ ଏ ବେଞ୍ଚ ଉପରେ କୋଚଡ଼ା ମାଡ଼ ।' କଚଣ ଘରେ ସମସ୍ତ ଗା ପଡ଼ିଆ, ଲୋକ ଉତ୍ତେଜିତ ହେଲେଣି । ନାନା ଭଙ୍ଗୀରେ ନାନା ପ୍ରକାର ମନ୍ତବ୍ୟ—'ଓହୋହୋ' ଘୋର କଳିକାଳ ଅରେ ମାଇପି ଜାତି ଲୁହରେ ସ୍ୱର୍ଗଶ୍ରେଣୀର ଧ୍ୱଂସ ହୋଇଗଲା, ଆଉ ଶୁଣ ଏଇଟା'—ଏ ଧେଡ଼ଟା ।' ପୁଣି ପଛଆଡ଼ୁ ଦୁଆରମୁହଁ ସେ ପାଖୁ ଯେଉଁଠି ମଣିଷ କାନ୍ଥପରି ଠିଆ ହୋଇଛନ୍ତି ତା ପଛଆଡ଼ୁ ବଜାମ, ବଜାମ ବଜାକୁ । ଅରେ କେବକୁ ଧରି ପକେଇ ଢ଼'ବଧା ଦେଇଦେଲେ ନାଗରପଣ ବାହାରିବ । ପିଲା ଖାଲି ଫର୍ଚ୍ଚି ଦେଖାଉଚି । ପୁଲିସିର ହେଇ ହେଇ, ଲୋକଙ୍କର ହାଉ ହାଉ । 'କଣ ହେଲା' କଣ ହେଲା ବୋଲି ଆହୁରି ଲୋକ ଧାଇଁ ଅସୁଛନ୍ତି । ବିଗ୍ଚରପତି ମୁଣ୍ଡ ଟେକି ନିର୍ଦ୍ଦେଶ ଦେଲେ "ସମସ୍ତେ ଚୁପ ହୁଅନ୍ତୁ ।"

ଲୋକେ ତାଙ୍କ ମୁହଁକୁ ଗ୍ରହିଁଲେ । ସେଠି ଯେପରି କି ଅସାଧାରଣ ଭାବେ ଗମ୍ଭୀର ସ୍ୱାଭାବିକତା ଲେଖା ହୋଇଥିଲା । କାଠ ପଥରର ମୁହଁ ତ ନୁହଁ, ଏକ ସହାନୁଭୂତିଶୀଳ ଜୀବନ—ଅଭିଜ୍ଞ ମଣିଷର ମୁହଁ । ଗୋଳମାଳ ଚୁପ ପଡ଼ିଗଲା ।

କିନ୍ତୁ ତା ପରେ ଦେଖାଗଲା—ପ୍ରତିବାଦୀ ତରଫର ଓକିଲଙ୍କର ଆଉ ଉତ୍ସାହ ନ ଥିଲା । ଅଳ୍ପ କେଇଟା ଏଣୁ ତେଣୁ ପ୍ରଶ୍ନ ପରେ ସେ ଜେରା ଶେଷ କଲେ । ଗୋଟିଏ ଗୋଟିଏ ହୋଇ ବାଦୀର ଛଅଟି ଯାକ ସାକ୍ଷୀଙ୍କ ସାକ୍ଷ୍ୟ ସରିଲା ।

ତାପରେ ତା'ର ଅରଦନ । ସେ ଦିନଟି ବି ଲୋକାରଣ୍ୟ । ସେ ଦିନ ପ୍ରତିବାଦୀ ତରଫର ସାକ୍ଷୀ । ପ୍ରତିବାଦୀର ଓକିଲ ଜେରା ଆରମ୍ଭ କଲାବେଳଠୁ ତା ପଟଟା କେମିତି ନିର୍ଜୀବ ହୋଇଗଲା । ଏତେ ଲୋକଙ୍କ ଦୃଷ୍ଟି ଆଗରେ ସେ ସଙ୍କୁଚିତ ହୋଇଯାଉଛି । ଯେପରି କି ଆଉ ତା'ର ମୁଣ୍ଡ ଉଠେଇବାକୁ ସାହସ ରହୁ ନାହିଁ ତା'ର ଉଦ୍ଦେଶ୍ୟ ଯେପରି କି—ଯାହା ତାହା କରି ଉତ୍ତର ଦେଇ ସେ ଏଥିରୁ ନିସ୍ତାର ପାଇଲେ ହିଁ ଯଥେଷ୍ଟ । ଆଉ ଅଧିକା ତା'ର ଲୋଡ଼ା ନାହିଁ । ସରିଗଲା ବି ବଡ଼ ଜଲ୍‌ଦି । ଆଠ ଜଣ ସାକ୍ଷୀରୁ ପାଞ୍ଚଜଣଙ୍କୁ ଆଦୌ ସେ ଡେକାହିଁ ନାହିଁ । ଆଉ ତିନିଜଣ ଠିକେ ଠିକେ କହି ବିଦା ହେଲେ ।

ତହିଁ ଆରଦିନ ଦୁଇ ପକ୍ଷ ଓକିଲଙ୍କ ଭିତରେ ସାମାନ୍ୟ ଆଇନ ପେଡ଼ା-ପେଡ଼ି ପରେ ରାୟ ଶୁଣାଇ ଦିଆ ହେଲା । ଲୋକେ ଯାହା ଆଶା କରିଥିଲେ

ଦେବଅ । ଯେ ପ୍ରତିବାଦୀ ପୁରୁଷ ବାଦୀ ସ୍ତ୍ରୀକୁ ସେ ସ୍ତ୍ରୀର ଓ ତା ସନ୍ତାନ ଦୁହିଁଙ୍କର ଖୋରାକ ପୋଷାକ ପାଇଁ ମାସକୁ ୪୦ ଟଙ୍କା ଲେଖାଁ ଦେଉଥିବ ।

ସ୍ତ୍ରୀ ଲୋକଟି ହସିଲା ନାହିଁ, ପାଟି ଫିଟାଇଲା ନାହିଁ । ସେ ଯେଉଁ ମଣିଷ ଗହଳିରୁ ଆସି ପହଞ୍ଚିଥିଲା, ପୁଣି ସେ ଗହଳି ଭିତରେ ମିଶିଗଲା । ଯେପରିକି ସେ ଖାଲି ଏକ ଗୁଣ୍ଡ । ଦୁଃଖ ପାଇ ବି ଦୁଃଖ ଅନୁଭବ ନ କରିବାକୁ ଅଭ୍ୟାସ କରି କରି ସେ ଯେପରି କି ସୁଖ, ଆନନ୍ଦ ଅନୁଭବ କରିବା ଶକ୍ତି ବି ହରାଇଛି । ବିଚାର-ପତି ତାକୁ ମନେ ମନେ କଲି ନେଲେ ମୁହୂର୍ତ୍ତେ । ତାପରେ ପୁଣି ସେ ମୁହଁ ବହିପତ୍ର ଉପରେ ଢଳିପଡ଼ିଲା ।

କଟିଗଲା ଦଶମାସ । ମଝିରେ କେତେ ମକଦ୍ଦମା ଆସିଲା । କେତେ ଫଇସଲା ହେଲା । ହଜାର ହଜାର ଲୋକଙ୍କ ଜମାନବନ୍ଦି ଲେଖା ହୋଇ ପହଞ୍ଚିଲା ବିଚାରପତିଙ୍କ ନଥି ଭଣ୍ଡାରରେ । କେତେ ବଧା ଚାପୁଡ଼ାର ଇତିହାସ । କେତେ ଖାଲି ମୁଠି ଉଞ୍ଚାଉଞ୍ଚିର, କେତେ ଖାଲି ଚଢ଼ାଚଢ଼ି ଗାଳିର, କେତେ ହଣାହଣି ଭୁଷାଭୁଷିର, ମଣିଷ କେମିତି କୋଡ଼ି ଫାଳିଆରେ ଅନ୍ୟ ଲୋକ ଦେହରେ ଚୋଟ ମାରେ । ଫେର ସେ ଦେହ ବା କେମିତି ଯେ, କୋଡ଼ି ଫାଳ ଲାଗି ଫଡ଼ା ଫଡ଼ା, କଟି ନହୁ ଲୁହାଣ ହେଲେ ବି ମଣିଷ ମରେ ନାହିଁ । ପୁଣି ବଡ଼ ବଡ଼ ଚୋରି ଡକାଏତିମାନ, ଜାଲି ଜାଲିଆ ମକଦ୍ଦମା । ଅଧିକ କେତେ—ଖବର କାଗଜରେ ଯେଉଁଥିପାଇଁ ହୁରି ପଡ଼େ । ୪୯୮ ଦଫାର ମକଦ୍ଦମା ବି ବହୁତ ପଡ଼ିଲା, ବହୁତ ଫଏସଲ ହେଲା । କଚେରୀଘର ଭିତରକୁ କେତେ ସ୍ତ୍ରୀ ଲୋକ ଆସି ନ୍ୟାୟ ନେଇ ଚାଲିଗଲେ । ତା'ର କାହାଣୀ ମନ ଭିତରେ କାହିଁ କେତେ ତଳେ ରହିଗଲା, ଭୁଲି ହୋଇଗଲା ।

ତା ପରେ ଦେଖାଗଲା—ଦଶମାସର ଚାଳିଶ ଟଙ୍କା ପାଇଁ ପୁଣି ସେ ଆସିଛି ଡିଗ୍ରୀଜାରି ଦରଖାସ୍ତ ଦେଇ ଦବାକୁ । ବିଚାରପତି ଭାବିଲେ କେତେ ଚଞ୍ଚଳ ଏ ଦୁନିଆଁ ବଦଳୁଛି । କାଲିପରି ଲାଗୁଛି । ଯେ ମକଦ୍ଦମା ଜିତି ଡିଗ୍ରୀ ନେଇଥିଲେ । ଆଉ ହେଲାଣି ଆସି ବର୍ଷେ । ଏଇ ବର୍ଷକ ଭିତରେ କ'ଣ ହୋଇଥିବ ତାର ଇତିହାସ ? କେମିତି ଚଳୁଥିବ ? ପିଲାଙ୍କୁ କଣ ଖୋଇ ବଞ୍ଚାଇ-ଥିବ ? ଆଖିତଳେ କାଳିଆ ବସି ଯାଇଛି । ମୁହଁ ଯେମିତି କି ସେନ୍ତରି ଯାଇଛି । ଦେହ ଶୁଖି ଯାଇଛି । ଠାଣିରେ ଆପଣା ପ୍ରତି ଅବହେଳା, ଚାହାଣିରେ ବିରକ୍ତି, ଚଳନ୍ତିପଣ । ସେ ବହୁତ ବଦଳିଛି, ବୟସ ବର୍ଷେ ବଢ଼ିଲେ ଚେହେରାରେ ବଢ଼ିଛି ପାଞ୍ଚବର୍ଷ । ଡିଗ୍ରୀ ଜାରିର ତାରିଖ ହେଲା । ପୁରୁଷ ଖାଲି ମହଲତ ଦରଖାସ୍ତ ପକାଇ ବେଳକୁ ଟାଳଟାଳ କରିବାକୁ ଚାହେଁ । ହାକିମ ମହଲତ ଦେବାକୁ ମନା କଲେ । ହୁକୁମ ହେଲା, ପନ୍ଦର ଦିନ ଭିତରେ ଟଙ୍କା ଦେଇଦିଅ । ଆଶ୍ଚର୍ଯ୍ୟ ହୋଇ ସେ ସ୍ତ୍ରୀ ଲୋକଟିକୁ ଅନାଇଲେ, କାହିଁ ତା ଆଖିରେ ଆନନ୍ଦର ଚିହ୍ନ ?

ବିଜୟର ଚିହ୍ନ ? ସେମିତି ଆଗ ପରି ସେ, ଘଟନା ଘଟିଲେ ବି ତାଠୁଁ ପ୍ରତ୍ୟୁତ୍ତର ନାହିଁ । ଦୀର୍ଘଶ୍ୱାସ ପକାଇ ଆପଣାର ଅଯାଚିତ ସହାନୁଭୂତିର ପୂର୍ଣ୍ଣଚ୍ଛେଦ ଦେଲେ ।

ପୁଣି ଏକ ତାରିଖ । ସେ ଦିନ ବି ଦୁଇପକ୍ଷ ମୁହାଁମୁହିଁ—ପୁରୁଷ ଯେପରିକି ବେଖାତିର, ବିରକ୍ତ । ପାନ ଚୋବେଇ ଚୋବେଇ କାଳ ବୁଲୁଛି ଉହା ପେଲିଲ-ପର ଗୋଟିଏ ଗୋଡ ଦବୁଛି ଉଠୁଛି । ତା ପକ୍ଷରୁ ଅଛିଣ ଏକ ମହଲତ ଦରଖାସ୍ତ ! ସ୍ତ୍ରୀ ତରଫରୁ ଓକିଲଙ୍କ ଦ୍ୱାରା କରୁଣ ଅବେଦନ ଯେ ହଜୁର ସେ ଟଙ୍କା ଦେବ ବୋଲି ହୁକୁମ ହୋଇ ହେଲଣି ଏକ ବର୍ଷ । ତା ଆଗରୁ ବି ପାହୁଲଟିଏ ଦେଇ ନ ଥିଲେ, ତା ପରେ ବି ନାହିଁ । ଏମିତି ମହଲତ ନେଇ ଠକ ଠକିକା ସେ ଚାଲିଥିବେ, ଯେତେଦିନ ଯାଉ ପଛେ । କରିବେ ନାହିଁ କହୁଛି । ଭୁଲରେ ପ୍ରତିବାଦୀ ସେତେବେଳେ ଟିକିଏ ମୁରୁକି ହସିଥିଲି, ଆଉ ଠିକ୍ ସେତିକିବେଳକୁ ତା ମୁହଁର ମୁରୁକି ହସ ଦେଖିବାକୁ ଥିଲି ବିଚାରପତିଙ୍କୁ । ସେ ସଙ୍ଗେ ସଙ୍ଗେ ହୁକୁମ ଲେଖି ଜଣାଇ ଦେଲେ ପ୍ରତିବାଦୀ ଟ ୪୮° ଖୋରାକ ପୋଷାକ ନ ଦେବାରୁ ତାକୁ ଛଅମାସ ଜେଲ ଦିଆଗଲା ।

ଜେଲ୍ !

ଲୋକଟାର ମୁଣ୍ଡରେ ଗଳୁ ନାହିଁ ପରି ! ଯେମିତି ଥିଲି, ସେମିତି ହୋଇଛି । ଯେପରିକି ଅପେକ୍ଷା କରିଛି, ଆଉ କଣ ଶୁଣିବ ସେ, ଯେପରି କି ତା'ର ବିଚାରଣା ସରି ନାହିଁ । ଆହୁରି ବାକି ଅଛି । ନା, କଥା ଗୁଡ଼ାକ ଧୀରେ ଧୀରେ ତା ମୁଣ୍ଡ ଭିତରେ ଗଳୁଛି । ପାଟିଟା ଆଁ ହୋଇ ଯାଉଛି । ଆଖି ଦୁଇଟା ଫାଡ଼ି ହୋଇ ଯାଉଛି । ସଜା ହୋଇଥିବା ଲମ୍ବା ଲମ୍ବା ମୁଣ୍ଡବାଳ, ମୁଦି ପିନ୍ଧା ଲମ୍ବା ଲମ୍ବା ହାତ ଆଙ୍ଗୁଠି, ଢାଡ଼ୀ ତୋରିଆ କାମିଜ, ବାପି ଧୋବ ଲୁଗା, ସବୁ ଝାଙ୍କି ହୋଇ ଫଡ଼ ଫଡ଼ ହୋଇ ଥର ଉଠୁଛି । କେବଳ ଭେକ ନୁହେଁ, ଏ ତା'ର ଭଦ୍ରତାର ଖୋଳ, ତା'ର ଦେହ-ଘର, ଟଳି ଟଳି ଉଠୁଛି । ଦି' ପାଖରୁ ଦି' ଜଣ ବନ୍ଧୁକଧାରୀ ପହରୀବାଲା ଯେମିତି ତା ପାଖକୁ ଘୁଞ୍ଚିଆସି କହିଲେ—ଚାଲ, ଚାଲ, ସେମିତି ତା'ର ସବୁ ଟାଣ ପାଣି ଫାଟିଯାଇ ଟୋପାଟୋପା ଲୁହ ଝରିପଡ଼ିଲା । ଆଉ ସେ ଭଙ୍ଗା ଭଙ୍ଗା ଗଳାରେ ଚିତ୍କାର କରିଉଠିଲା "ଜେଲ୍ ! ଜେଲ୍, ନାଇଁ ହଜୁର, ମତେ ଜେଲ୍ ଦିଅନ୍ତୁ ନାହିଁ ।"

ବିଚାରପତିଙ୍କ ଏକାଠି ମାଡ ପଡ଼ିଥିବା ସବୁ ଓଠ' ଫାଳ ମଝିରେ ଗାର ଆହୁରି ଟାଣି ହୋଇ ଲମ୍ବେଇ ହୋଇଗଲା । ବହୁଦିନର ଏକ ଅଭ୍ୟସ୍ତ ଭଙ୍ଗୀ, ହସ ଲୁଚେଇ ହସିବା ପାଇଁ, ଡାକ୍ତର ଯେମିତି ପରିଚିତ ରୋଗୀର ଶେଷ ଡଙ୍କି ଘଡ଼ଘଡ଼ ସଙ୍ଗେ ଚାହାଁ, ସେମିତି ଦଣ୍ଡାଦେଶ ଶୁଣାଇ ଦେବା ପରେ ଦଣ୍ଡିତ ବ୍ୟକ୍ତିର

ଏଭଳି ଗୀତ-ଭଙ୍ଗୀ ସହିତ ତାଙ୍କର ପଚାଶ ବର୍ଷର ଚଳ୍ପାଚଣା । ଦୟା ଆସେ ନାହିଁ, ଓଲଟି ଆସେ ଆତ୍ମତୃପ୍ତି—ଯେ ମୁଁ ମୋର କର୍ତ୍ତବ୍ୟ କରିଛି । ସେହି ସେ ମୁହୂର୍ତ୍ତି, ଯେତେବେଳେ ଦଣ୍ଡ ଆଦେଶ ଶୁଣିଥିବା ଲୋକର ବିକଳ ଦେଖିଲି ବେଳେ ତାଙ୍କୁ ଲାଗେ ଯେ ଯେଉଁ ଆଇନ ବଳରେ ସେ ମଣିଷଟାକୁ ଦଣ୍ଡ ଦେଲେ, ସେ ମଣିଷ-ଗଢ଼ିଲା ଆଇନ ନୁହେଁ । ତାକୁ ଈଶ୍ୱର କରିଛନ୍ତି, ଆଉ ସେ ନିଜେ ସେହି ଈଶ୍ୱରଙ୍କର ପ୍ରତିନିଧି, ଧର୍ମ ଅବତାର ।

"ନାଇଁ ନାଇଁ ମୁଁ ଜେଲ୍ ଯିବି ନାହିଁ, ମତେ ଜେଲ୍ ଦିଅନ୍ତୁ ନାହିଁ—ହଜୁର ମୁଁ ଭଦ୍ରଲୋକ, ମୁଁ କିଛି ଦୋଷ କରିନାହିଁ—"

ଏକ ଚେର୍ଛା ସୁହାଣୀରେ ତାକୁ ଭୂଷାଏ ମାରି ବସ୍ତୁରଫେଡ଼ ହାକିଲେ "ନେଇଯା ତାକୁ, ଚଞ୍ଚଳ, କଣ ଦେଖୁଚ ?" ଆଉ ବସ୍ତୁରଫେଡ଼ଙ୍କ ନିର୍ଦ୍ଦେଶରେ ଯଦଗ୍ ଦୁହେଁ ତା ଦେହରେ ହାତ ପକାଇ ତାକୁ ଓଟାରିବାରେ ଲାଗିଲେ । ଆଉ ଠିକ୍ ସେତିକି ବେଳେ ସମ୍ଭାବ୍ୟ ପରିଣତିକୁ ଠେଲି ପକାଇ ଆଇନ ଓ ନ୍ୟାୟ ବସ୍ତୁରର ମାନକୁ କରିକୁ ଅଡ଼େଇ ଦେଇ ଆସିଲା ସେ ନାରୀ, ବର୍ଷେ ହେବ ଯେ ମକଦ୍ଦମା ଲଢ଼ୁଥିଲା । ପାଗଳ ପରି ହଠାତ୍ କରି ମିସିଲ ତଳେ ଠିଆହୋଇ କହିଲା "ହଜୁର, ରକ୍ଷା କରନ୍ତୁ, ମତେ ଯାହା କହିବେ, ମୁଁ ତା ଲେଖିଦେବି । ମୋ ସ୍ୱାମୀଙ୍କୁ ଜେଲ୍‌କୁ ପଠାନ୍ତୁ ନାହିଁ ।"

ଝରଝର ଲୁହ ନିଗିଡ଼ି ତା'ର ପାଟିରେ ପଶୁଛି, କାନ୍ଦ କାନ୍ଦ ଜଣା କରୁଛି "ଜେଲକୁ ପଠାନ୍ତୁ ନାହିଁ, ଜେଲକୁ ପଠାନ୍ତୁ ନାହିଁ । ମୋର କିଛି ଧନ ଦରବ ଲୋଡ଼ା ନାହିଁ । ଖୋରାକି ନ ଦେଲେ ନ ଦେଉ ପଛେ । ଭୋକ ଉପାସରେ ପଡ଼ିଛି ମରିବି, ଏ ଦୁଃଖ ସହି ପାରିବି ନାହିଁ । ମୁଁ ଚଣ୍ଡାଳୁଣୀ ସବୁ ଝଙ୍ଗା ଭୁଞ୍ଜି ଦାଇଲି । ଆପଣା ସ୍ୱାମୀକି ଜେଲ ଦିଆଇଲି, ଆଉ କଣ ନ କରିଲି ।"

ପ୍ରହରୀ ଭୁଲି ଯାଇଛନ୍ତି, ଆଦେଶ ହୋଇଥିଲା ସ୍ୱାକୁ ତୁରନ୍ତ ପଦାକୁ ନେବାକୁ ହେବ ବୋଲି ।

ହାକିମ, ପେସ୍‌କାର, ଓକିଲ, ଦେଖଣାହାରି—ସମସ୍ତେ ଭୁଲିଯାଇଛନ୍ତି ଯେ ମକଦ୍ଦମା ବସ୍ତୁର ସରିଲାଣି ବୋଲି । ବରଂ ଲୋକ ବେଶି ବେଶି ଆସୁଛନ୍ତି । ହଠାତ୍ କଚେରିର ନଗଦା ନଗଦ କାରବାର ଜୀବନ ଭିତରେ ଯେପରି କି ଏକ ଅଭିନୟ ଆରମ୍ଭ ହୋଇଛି ।

ସ୍ତ୍ରୀଲୋକଟି ଝରଝରରେ ଝର ଝର କାନ୍ଦ ଲାଗିଛି । ମୁହୂର୍ତ୍ତିକେ ସେହି ଦେଖା ପରଖା ଚିହ୍ନିତମସ୍ତ ଦୃଶ୍ୟର ସ୍ଥଳୀ ବଦଳିଯାଉଚି, ମିଳେଇ ଯାଉଛି । ସେଠି ଏତେ ଦେହ ଥାଇ ବି ନ ଥିଲାପରି, କେବଳ ସ୍ୱରର ହିଁ ନାଟକ । ସେଠି ଆଉ କିଛି ନାହିଁ । ଖବର କାଗଜରେ କଣ କଣ ଶିରୋନାମା ଥିଲା—ଖବର

କାଗଜ ହକାରିଆ ତାଙ୍କୁ ଭୁଲି ଯାଇଛୁ । ଆଖି ଫାଡ଼ି ଫାଡ଼ି ବେକ ଉଚ୍ଚୁଙ୍କେଇ ଅନାଇଲା । ଅସଲ ତରୁଣୀମାର ଚୂର୍ଣ୍ଣର ଉପକାରିତା ବିଷୟ ବଖାଣୁଥିଲା ଯେଉଁ ଢେଙ୍ଗା ଲୋକଟି, ସେ ବି ଆଁ କରି ଖାଲି ଅନାଇ ରହିଛି । ସେହିପରି ଚଟିବନ୍ଧା ବିକାଳି, ପାଞ୍ଜି-ବିକାଳି, ବଂଶୀ ବିକାଳି, ଚଟିଜୋତା ହାର ପକାଇ ଚଟି ବିକାଳି ଆଉ ଏଇ ଗାଁ ମାମଲତକାର ଜଣକ, ବାଙ୍ଗରା ହୋଇ ମଣିଷଟିଏ, କପୋଳରେ ଚନ୍ଦନ ଚିତା, ହସ ହସ ପ୍ରସନ୍ନ ପାନଖିଆ ମୁହଁଟି, ମୁହଁଯାକ କଦମଫୁଲିଆ ରୁଢ଼, କୋଟରେ ବୋତାମ ନାହିଁ, କାଖ ତଳେ କାଗଜ ବଣ୍ଡଲଟିଏ ଦେଖିଲେ ଲାଗେ—ଗାଁ ପଣ୍ଡିତ ସେ, ଏପରି ଯେଉଁ ମାମଲତକାର ଯେ ଗାଁକୁ ବ'ଗରା କରି ଛତିଶ କଟା ମକଦ୍ଦମା ଭିଆଇଛନ୍ତି, ଆଉ କଚେରିପାଖେ ଚଟିଘର ଭଡ଼ା ନେଇଛନ୍ତି, ସେ ବି ସେତେବେଳେ କାବାହୋଇ ଅନାଇ ରହିଲେ । ଗୃହ୍ଣୁଁ ଗୃହ୍ଣୁଁ ପାଉଣା ବୁଝି ପାଇଲି ବୋଲି ରସିଦ ଲେଖେଇ ଦସ୍ତଖତ କରି ସେ ସ୍ତ୍ରୀଲୋକ ଦାଖଲ କରିଦେଲା । ହାକିମ ପ୍ରତିବାଦୀକୁ ହୁକୁମ ଶୁଣାଇ ଦେଲେ "ତୁମକୁ ଖଲାସ କରି ଦିଆ ହେଲା ।" ପ୍ରହରୀ ତାଙ୍କୁ ଛାଡ଼ିଦେଲେ । ଲୁହ ଛଳ ଛଳ କୃତଜ୍ଞତାପୂର୍ଣ୍ଣ ଦୃଷ୍ଟିରେ ସେ ତା'ର ସ୍ତ୍ରୀକୁ ଚାହିଁଲା, ଯେପରି କି ଏଇଥର ଜୀବନରେ ତାକୁ ନୂଆକରି ଚିହ୍ନିଛି । କିନ୍ତୁ ଝୁଇପରି ମାଇପିଟି କୁଆଡ଼େ ଚାଲିଗଲା । ସେ ତା ସ୍ୱାମୀଠୁଁ ଦି'ପଦ ସୁଆଗିଆ କଥା ବି ଶୁଣିବାକୁ ଅପେକ୍ଷା କଲା ନାହିଁ, ଚାଲିଗଲା ।



# ଶାଳ-ସୁନ୍ଦରୀ

"ସାମ୍‌ସନ୍ ଆଟଗାନଷ୍ଟିସ୍ କୋ: ଲିମିଟେଡ୍ ।"

ପଟୋଉଣୀ ଗର୍ବରେ ସେ ନାମଫଲକକୁ ଅନାଇଁ ବାଟମୁହଁ ଆଗରେ ସଡ଼କରେ ଠିଆହେଲା । ପ୍ରକାଣ୍ଡ ଛ'ମହଲା କୋଠା । କେତେ ବଖୁରା ! କେତେ ବଡ଼ ନାଁ । ମୋ ସ୍ୱାମୀ ଏଇଠି କାମ କରେ । ସ୍ୱାମୀ ! ଭାବିଲା ବେଳକୁ ଆଖି ଛଳଛଳ ହୋଇ ଆସୁଛି ଅଭିମାନରେ । ପାଦ ଆଉ ଆଗକୁ ଉଠୁନାହିଁ । ମନ ହେଉଛି ମୁହଁକୁ ତଳକୁ ପୋତି ଥମଥମ ଭଙ୍ଗୀରେ କରକୁ ଉଲେଇ ଦେବା । ଓଡ଼ିଶୀ ନୃତ୍ୟ ବାଟେ 'ମାନଭଞ୍ଜନ' ମନେ ପଡ଼ଲଣି । ଦିନ ସାଢ଼େ ଦଶ । ଶରତ ଋତୁର ମାଝାଖରା, କେତେ ବଡ଼ ବଡ଼ ଗଛ ଏଠି, ପ୍ରକାଣ୍ଡ ଓସାର କଳା ସଡ଼କ ଦୁ'କରେ କୋଠାମାନଙ୍କ ଆଗରେ, କେତେ ବଗିଚା, ଆଉ ଗୋଲାପ-ଗୋଲାପ-ଗୋଲାପ-ସତେ ଯେମିତି ଘଣ୍ଡବାଣ ଭିତରୁ ଭୁରୁ ଭୁରୁ ହୋଇ ଉଠୁଛି ଏଗୁଡ଼ିକ, ନା, ଏତେ ବଡ଼ ବଡ଼ ଗୋଲାପ ଓ ଏକାସଙ୍ଗେ ଗୋଟିଏ ଗୋଟିଏ ଗଛରେ କୋଉଠି ପଚିଶି ଫୁଲ୍ ଆମର ଦେଶେ ଦେଖାନାହିଁ । ଗଲାବେଳେ ତା'ଲା ପୁଲାଏ କଟେଇ ନେବାକୁ ହିଁ ପଡ଼ିବ । ଆଗ ସେଇ ଜୁଡ଼ୁଆ ଭିତରେ ଲାଗିବ । ପଛେ କୁ ଣ୍ଡ, ଓଃ, ଆଜିକାଲି ଯେଉଁ ଦାମ୍ ! କେତେଦିନ ହେଲାଣି, ଖାଇ ମହାପ୍ରସାଦ ଆଣି ଦେଇଥିଲେ । ଜୟ ଜଗନ୍ନାଥ । କାହିଁ ଏଠି ତା । କିନ୍ତୁ କି ସୁନ୍ଦର ସହର, ଗଛ ପାଇଁ ଆଉ ଫୁଲ ପାଇଁ । ଏଠି ଏମାନଙ୍କର ତାକୁ ବେଶୀ ଶରଧା, କୋଠାଙ୍କୁ ବଳି, କୋଠା ତ କାହିଁ ତୋଟା ଭିତରେ ହିଁ ଛପିଲା ପରି ଦିଶେ ଏଠି । ଅଉ ଲୋକଗୁଡ଼ିକ କି ଶାନ୍ତ ଭଦ୍ର, ବସ୍‌ରେ ଜାଗା ଛାଡ଼ିଦେଇ ଠିଆ ହୋଇ-ପଡ଼ିବେ, ଆଦୌ ସେଠାପରି ଅନେଇଁବେ ନାହିଁ । ମାଲେ କି ଆଖି ! ମନହୁଏ ସେ ଆଖିରେ କଣ୍ଢା ଗେଡ଼ ଦେବାକୁ । ବୃନ୍ତ ଟିକିଏ ବୋଲି, ମାଇକିନିଆ ଝିଅକୁ କେମିତି ଲାଗେ ?

କିଏ ବୁଝେ ? ସବୁ ଅପଣା-ସ୍ୱାର୍ଥିକାମାନେ ।

ଫରସ୍ ସଡ଼କ ସେକରୁ ୟୁକ୍ୟାଲପଟସ ଉହାଡ଼ରୁ ସିଲ୍‌ଭର୍ ଓକ୍ ଉହାଡ଼ରୁ ଗୋଲାପ ବଗିଚା ଭିତରୁ ଆସୁନାହିଁ ହୃଦୟକୁ ଡାକ, ସେଇ ମନମୋହନ ବଂଶୀସ୍ୱନ— ଓଃ, କେବେ ନେଇଥିଲେ ଦେଖେଇ । ସେ କି ଖାଇ ? ମନେ ପଡ଼ୁନାହିଁ କିଏ ମାନଭଞ୍ଜନ ଦେଖେଇ ନେଇଥିଲେ ।

ପଟୋଉଣୀ ପାହାଚରେ ଚଢ଼ି ଇତସ୍ତତଃ ହେଲା ।

ପ୍ରକାଣ୍ଡ ବାଟଘର । ବାଏଁ ଲମ୍ବ ଲମ୍ବ ଦୁ ଧାଡ଼ି ବଖରା ଲମ୍ବି ଯାଇଛି କାହିଁକା କାହିଁ । ମଝିରେ ସରୁ ପିଣ୍ଡା । ତାହାଣେ ଲିଫ୍ଟ ଘର ଘଣ୍ଟା, ସଂଖ୍ୟା ଉପରେ ଆଲୁଅ ଜଳୁଛି । ଚିପାଚିପି କରି କାମ, ଲିଫ୍ଟ ଓହ୍ଲାଉଛି, ଅଟକୁଛି, ଲୋକ ବାହାରୁଛନ୍ତି ପଶୁଛନ୍ତି, କବାଟ ବନ୍ଦ ହେଉଛି । ଲିଫ୍ଟ ଚାଲିଯାଉଛି । କୁଆଡ଼େ ସେ ଯିବ ସେ ? ଘଡ଼ୋଉଣି ଝାଳେଇ ଯାଉଛି, ମୁହଁ ପୋଛୁଛି, ଏକର ସେକର ଟହଲୁଛି, କଛି ଠିକଣା କରିପାରୁ ନାହିଁ । ଯେତେଦୂର ହେଉ, ପଇସା ଦେବା, ଟିକଟ କିଣି ରେଲରେ ବସିବା, ଓହ୍ଲେଇ ପଡ଼ି ଗାଡ଼ି ଭଡ଼ା କରିବା, ଗୋଟାଏ ହୋଟେଲରେ ବଖରାଏ ଭଡ଼ା ନେଇ ବିଛଣା ଓ ସୁଟ୍‌କେଶ ଥୋଇଦେବା, ତାପରେ ଅଫିସ ଖୋଜି ବାହାରିବା, ଏସବୁ ତା ପକ୍ଷରେ ଯେତେ ଦୁଃସାହସିକ କାର୍ଯ୍ୟ ହେଲେ ବି ଅସମ୍ଭବ ଲାଗୁ ନାହିଁ । କିନ୍ତୁ ପୁଣି ତାପରେ ?

ଏଥର ଅସଲ ଅଡ଼ୁଆ ସଙ୍ଗେ ମୁହାଁ ମୁହିଁ । ପରଠୁଁ ପଣ୍ଡ ନେବାକୁ ପଡ଼ିବ । ଆପଣା ଉପସ୍ଥରେ, ପର ମାହା ଖାବୁ ପଛେ ।

ସମ୍ପୂର୍ଣ୍ଣ ଅସମ୍ଭବ ତ ହୁଅନ୍ତା ପରା, ସମ୍ବଳ ଖାଲି ଇଂରେଜି ଭାଷା । ଏ ଦେଶରେ କାହାର ସେ ଭାଷା ନୁହେଁ, ଅଥଚ ସମସ୍ତିଙ୍କ ପାଇଁ ମେଳ ଫରଜୁ ସଡ଼କ । ଆପଣା ଅନୁଭୂତିଝୁ ଶିଖା ନୁହଁ ଖାଲି ବହିରୁ ଘୋଷି ଶୁଖି ବାଟେ, ତେଣୁ ଆପଣା ଗହନ ଅନୁଭୂତି କଥା କହିବାକୁ ଅଭ୍ୟାସ ନାହିଁ, ଆଉ କିଏ ସେଭଳି କହିଲେ ତା ଅର୍ଥ ବୁଝିବାକୁ ଅଭ୍ୟାସ ବି ନାହିଁ, ସେଥିରେ ବି ସୁବିଧା, କାଳେ ଧରି ନ ଦେଇ କଥା କହି ହୁଏ ଓ ଅର୍ଥ ଘେନି ହୁଏ, କେହି ସନ୍ଦେହ କରିବେ ନାହିଁ ।

କିନ୍ତୁ ପଗ୍ଭରିବ କାହାକୁ, କଣ ବା ?

''ଶର୍ମା''

କିନ୍ତୁ 'ଶର୍ମା' କଣ ଗୋଟିଏ ଭାଷା କି ଅଞ୍ଚଳରେ ସୀମିତ ? ସେ ତ ଏ ମହାଦେଶର ସାର୍ବଦେଶିକ ବ୍ରାହ୍ମଣପଦବୀ । ଏଡ଼େ ବଡ଼ କୋଠା । ଏତେ ଲୋକ, କେତେ ଭାଷାଭାଷୀ କେତେ ଶର୍ମା ଯେ ଥିବେ କିଏ କହିବ ।

ଲିଫ୍ଟ ପଟ ନୁହେଁ, ଟହଲ ଟହଲ ବାଁ ଆଡ଼ ସରୁ ଗଳିରେ ସେ ଗ୍ଭଲିଛି, ଠାଏ ଠାଏ କାଚ କାନ୍ଥ ବାଟେ ଦିଶୁଛି ବଡ଼ ବଡ଼ ବଖରା, ସେଠି ସେମାନେ ନଇଁ ପଡ଼ିଛନ୍ତି । ସ୍ୱେ ନୁହେଁ-ସ୍ୱେ ନୁହେଁ-ସ୍ୱେ ନୁହେଁ— ! କେତେ ବୁଜା କବାଟ, କେତେଠି ନାମ-ଫଳକ । ସ୍ୱେ-ନୁହେଁ-ସ୍ୱେ ନୁହେଁ-ସ୍ୱେ ନୁହେଁ— ।

ହଁ, ମୂଳୋଛୁଁ ସେ ସେହିପରି । ବାପେ କି ସୁନ୍ଦର ନାଁଟିଏ ଦେଇଥିଲେ —କାଙ୍ଗାଳି-ଚରଣ । ଡାକୁଥିଲେ 'କେଳୁ' । ପୈତୃକ ପଦବୀ ଥିଲା—'ଦେବତା' । ଗାଁରେ କହନ୍ତେ ବାଉ ଦେବତା ପୁଅ କେଳୁ ଦେବତା । କିନ୍ତୁ ଗୋଟିଏ ଶ୍ଳାଘ୍ୟ ଶ୍ରେଣୀନାମ ଭିତରେ ନିଜର ସ୍ୱତନ୍ତ୍ରତାକୁ ଲୁଚେଇ ଦେଇ ସେ ହେଲେ ମିଷ୍ଟର

ଶର୍ମା । ଖାଲି ଆଦ୍ୟ ଅକ୍ଷର ମୋଡ଼ିଏ, କେ-ଶୀ ଶର୍ମା; କିନ୍ତୁ ଏବର ଦୁନିଆରେ ଲୋକ ତ କାହାର ଆଦ୍ୟ କି ମୂଳଦୁଆ ଜାଣିବାକୁ ବି ଚାହାନ୍ତି ନାହିଁ । ସେମାନେ କଣ ଶୁଣିଥିବେ ?

ଆଉ, ସୁନ୍ଦର—ଲେଖିଥିଲେ ଏଠି ସେ ସୁପର-ଏକ୍ଜିକ୍ୟୁଟିଭ୍, ତାମାନେ ?—ହଁ, ସେ ବି ଗୋଟିଏ ଶ୍ରେଣୀ ହୋଇଥିବ । କେତେଜଣ ସେ ଶ୍ରେଣୀରେ ଏଠି କାମ କରନ୍ତି ? ତେବେ ହଁ—ପଟୋଇଣୀ ଠିଆ ହୋଇପଡ଼ିଲା—ଏଠି ତ ସେ ନାହାନ୍ତି । ପଦଙ୍କ ସୁପର ଏକ୍ଜିକ୍ୟୁଟିଭ ଏ କାର୍ଯ୍ୟାଳୟ ସାମସନ୍ ଆଗୋନିଷ୍ଟିସ୍ ଲେଖିଲେ ଏଠି ମିଳେ । ମିଳେ କି ? ଛ ମାସରେ ତିନି ମାସରେ ଆଗେ ଯେଉଁ ଖଣ୍ଡେ ଖଣ୍ଡେ ଚିଠି ଦେଉଥିଲେ, ଏଣୁ ତେଣୁ ବିପଦ ଲେଖୁଥିଲେ, ଯନ୍ତ୍ର ଚିଠି ପାଇ ଉତ୍ତର ଦେଲା ଭଳି ସେ ନୁହେଁ । ସବୁଥର ଥାଏ, ସେ ଅତି କାର୍ଯ୍ୟବ୍ୟସ୍ତ, ଫୁରୁସତ ଆଦୌ ମିଳୁ ନାହିଁ, ଆଉ—କମ୍ପାନୀ କେମିତି ତାଙ୍କ କାର୍ଯ୍ୟ-ଦକ୍ଷତାର ପରିଚୟ ପାଇଲାଣି, ନିକଟରେ ପଦୋନ୍ନତିର ଆଶା ଅଛି, ସେ କଥା । ଏ ଚାରିମାସ ହେବ ସେଭଳି ଚିଠି ବି ଆସି ନାହିଁ ! ଅଥଚ ସେ ତ ଚିଠି ଲେଖିଛି ପନ୍ଦର ଦିନକୁ ପନ୍ଦର ଦିନ । ପିଣ୍ଟୁର ପେଟରୁ କେତେ ଲମ୍ବା ଗୃକୁଣ୍ଡାଟାଏ ପଡ଼ିଲା, ଟିମିର କେମିତି ବାରମ୍ବାର ଥଣ୍ଡି ଦେଇ ହୋଇ ଜର ହେଉଛି, କୁକୁରଟା କେମିତି ଆଉ ଘରେ ରହୁନାହିଁ, ସ୍ୱାତୀ ଓଳିତଳେ ନାକୋଉଛି, କେମିତି ନୂଆ କଦଳୀ କାନ୍ଦିଟିଏ ପଡ଼ିଥିଲା ଗଛଟା ପବନରେ ଭାଙ୍ଗି ପଡ଼ିଲା ସବୁ କଥା ଲେଖିଛି । ସବୁ । ସବୁ । ଆଉ, ମହରଗ ଦିନ, ଚାଉଳ କେଜିକ ଅଢ଼େଇଟଙ୍କା ହେଲାଣି, ବଡ଼ ଚାକିରି ହେଲା, ବେଶୀ ଦରମା ମିଳୁଥିବ, ଘରକୁ ସେଇ ଶହେଟି ଟଙ୍କା, ସବୁ ମାସର ଆଠ ତାରିଖରେ, ଟଙ୍କାଟିଏ ବେଶୀ ହେବ ନାହିଁ ଏ କେମିତି କଥା ? ସେଦିନ ତ ସେ ନ ଥିଲେ । ଦଶେ ଖବର ନ ବୁଝିଲେ— । ଯେତେ ଯେତେ ସେ ଭାବୁଛି ତେତେ ତେତେ ତା ନିଜ ଭିତରୁ ସେ ପ୍ରେରଣା ଅନୁଭବ କରୁଛି—ନିଜେ ଯାଇ ବୁଝିବାକୁ ପଡ଼ିବ—ନିଜେ ଯାଇ ବୁଝିବାକୁ ପଡ଼ିବ । ହୁଏତ କୌଣସି ବିପଦ,—ଦେହ ମୁଣ୍ଡ କଥା ବିଦେଶ ଜାଗାରେ ଆଉ କିଛି ଆପଦ—ରୋଗହାର ଭଳି, ଅଥବା ଆହୁରି କିଛି, ଯାହାରେ ମନସ୍ତାପ ଏଭଳି ବଳି ପଡ଼ୁଛି ଯେ ବୁଦ୍ଧି ହଜି ଯାଉଛି । କଣ ହୋଇପାରେ ? ଯେତେ ଭାବୁଛି ସେତେ ଗୁହନାଁ ହୋଇଛି । ଠାକୁର ପୂଜା କରୁଛି, ମାନସିକ ଯାଚୁଛି, ଦୁଃସ୍ୱପ୍ନ ଦେଖୁଛି, ବେଶଭୂଷା ପ୍ରତି ଉଦାସୀ ହୋଇଛି । ଆତଙ୍କରେ ଚମକି ପଡ଼ି ମନେ ମନେ କହୁଛି, ଠାକୁରେ, ଭଲ ଅଛନ୍ତି ସେ ? ମନେ ପଡ଼ୁଛି ପୁରାଣର ସାନ୍ତ୍ୱନା—ସତୀର ଧର୍ମବଳ, ଯେ ସତୀ ତା ସ୍ୱାମୀର ବିପଦ ନାହିଁ । ସେ ସତୀ—ନିଜକୁ ଭରସା ଦେଉଛି । ଆଉ କୌଣସି ପୁରୁଷର ତା ଶରୀର ସଙ୍ଗେ ସମ୍ପର୍କ ନ ଥିଲା । କେମିତି ବା ଏତେ ଅସମ୍ଭବ କଥା ସେ କେବେ ଚିନ୍ତା କରି ପାରନ୍ତା ? କିନ୍ତୁ ମନେ ମନେ ? ଭଗବାନ, ଚଞ୍ଚଳ ବାତୁଳ ମନକୁ ମୋ କ୍ଷମା କରିଛ । ଯଦି କେତେବେଳେ ମନ-ଦର୍ପଣରେ ଆଉ କେଉଁ ଛାଇ ପଡ଼ି

ଯାଇଥିବ ସେ ମୋ ଇଚ୍ଛାକୃତ ନୁହେଁ । ତଳେଇ ନଖରେ ଚିର୍ମି ମାଟି ଘୋଡ଼େଇଲା ପରି ସେ ସବୁ ଅବାଞ୍ଛିତ ସ୍ମୃତି ଘୋଡ଼େଇ ପକାଏ, ଘୋଡ଼େଇ ପକାଏ । ଯାହା ଅନୁଚିତର, ତାର ସତ୍ତ୍ୱକୁ ଛାଡ଼ିଦେଲେ ଭ୍ରାନ୍ତ ଗଢ଼ ହେବ ଯେ ସେ ନାହିଁ, କେବେ ନ ଥିଲା । ଅତଏବ, ମୁଁ ସାବଜୀ । ମୁଁ ଥାଉ ଥାଉ ! —ଜଳୁ ଡିବାକୁ ପଡ଼ିବ । ସାବଜୀର କର୍ତ୍ତବ୍ୟ ପରେ ବସି କାନ୍ଦିବା ନୁହେଁ ।

ସବୁ ଠିକ୍ ଯେ—ବର୍ତ୍ତମାନ ଉପାୟ ?

ଏଠି କାହା ପାଖକୁ ଯାଇ ତାକୁ ପଚାରିବ ନିଜ ସ୍ୱାମୀ କୋଉଠି ଥାଏ ? କେଡ଼େ ଲଜ୍ଜା ! "କହିପାରିବେ, ମୋ ମୁଣ୍ଡ କେଉଁଠି ଥାଏ" ? ଏ ତ ସେହିପରି ପ୍ରଶ୍ନ । ଉପାୟ ?

ଥରେ ଆରମ୍ଭ କରି ପାରିଲେ— ।

ଏମୁଣ୍ଡରୁ ସେମୁଣ୍ଡ ବାଥର ବହି ରହିଲା ଯା ଆସ କଲାଣି । ଅଟକିଲା ।

ଦାଢ଼ି ଓଗାଳିଛି ଡେଙ୍ଗୀ ହୋଇ ଝିଅଟିଏ । ମୁଣ୍ଡବାଳ ବବୁରିକଟା । ତେଲ ନାହିଁ । ଆଖିରେ କଳା ଗାର ହୋଇ ଫୋଲା ହୋଇଛି, କାନ ଅଡ଼କୁ ଲଙ୍ଗି ଟଣା ହୋଇଛି । ମୁହଁରେ ଶ୍ୟାମଳ ବର୍ଣ୍ଣ ଉପରେ ହାଲୁକା ପାଉଁଶିଆ, ଯେମିତି କେଉଁ ଅଟାକଳ ଦୁଆର ମୁହଁରେ ଥିଲା, ମୁହଁ ପୋଛି ଲେପି ଦେଇ ଚାଲି ଆସିଛି । କିନ୍ତୁ ଆଶ୍ଚର୍ଯ୍ୟ ଦିଶୁଛି ତା ଓଠ ଓ ନଖ, ମୋଟା ମୋଟା ଓଠ, କଳା ଚମ ଉପରେ ରକ୍ତନାଲି, ଲମ୍ବ ଲମ୍ବ ନଖ, ମୁନିଆ ମୁନିଆ, ରକ୍ତ ନାଲି । ଯେମିତି ଏଇ ବଣୁରି ଭିତରୁ କେଉଁଠି ଠାଏ ପାଟିରେ ନଖରେ ସେ କେଉଁ ହତଭାଗାକୁ ରକ୍ତାକ୍ତ କରୁଥିଲା, ସିଧା ସେଠୁ ଉଠି ଆସିଛି ଫୁରଫୁରମୁଣ୍ଡୀ, ଲମ୍ବ ଲମ୍ବ ଡଗ ଡଗ ଗୋଡ଼, ଜଙ୍ଘ ତଳଯାକେ ସ୍କାର୍ଟ ଖଣ୍ଡେ ପିନ୍ଧିଛି । ଟିକିଏ ତାଟକା ହେଲା ପରେ ମୁହଁ ଟେକି ଅନେଇଲା । ଝିଅଟି କୁତୁହଳରେ ତା ଉତ୍ତରକୁ ଅପେକ୍ଷା କରିଛି । କଣ ପଚାରିଲା ? କେତେବେଳେ ?

ଖୁବ୍ ମିଠା ସପୁରି ପରି ବାସ୍ନା ସ୍ୱରରେ କଣ ଗୋଟିଏ ମହକ ଗୁଣ୍ଡ ଦେଇ ଝିଅଟି କହିଲା, "ପଚାରିଲି ପରା, ଆପଣଙ୍କର କୌଣସି ସେବାରେ ମୁଁ ଲାଗିପାରନ୍ତି ନାହିଁ ?"

ପଦୋଉଣୀକୁ ବୁଝିଲା ଭଳି ଲାଗିଲା,—ସ୍ୱେ ମତେ ଚିହ୍ନିଲାଣି, ମୋ ସ୍ୱାମୀଙ୍କ ଚିହ୍ନିଥିବ । ହୁଏତ ତାଙ୍କର ତଳିଆ ଅଧସ୍ତନ କେହି । କିଛି ନ ବୁଝିଣ କହିଲା,—"ସେ କାହାନ୍ତି ?"

ଝିଅଟି ଆଶ୍ଚର୍ଯ୍ୟ ହେଲା । ପଚାରିଲା "କିଏ ?"

ପଦୋଉଣୀକୁ ଲାଜ ମାଡ଼ିଲା । ମୁହଁକୁ ତଳକୁ ପୋତି କହିଲା,

"ମିଷ୍ଟର ଶର୍ମାଙ୍କୁ ଖୋଜୁଥିଲି ?"

"କଣ କରନ୍ତି ?"

"ସୁପର ଏଗ୍‌ଜିକ୍ୟୁଟିଭ୍ ।"

"ଆଶ୍ଚର୍ଯ୍ୟ ! କିଏ କହିଥିଲା ? ଆଚ୍ଛା ଆସନ୍ତୁ ମୋ ସଙ୍ଗେ ମୋ ବସ୍‌ଙ୍କୁ ।"

"କିନ୍ତୁ ମୁଁ ତାଙ୍କୁ ଖୋଜୁଛି ।"

"ଚିନ୍ତା ନାହିଁ, ଆସନ୍ତୁ ।" ଲିଫ୍‌ଟ ଚଢ଼ି ପାଞ୍ଚମହଲା ଉପରକୁ । ଠାଏ ନାମଫଲକଟିଏ ମାରିଛି,—"ମିସ୍ ଅଞ୍ଜଳିନ୍ ମମ୍‌ପଲ୍ଲୀ ।"

ଗ୍ରେଟ ଟୋପିଟିଏ, ନିକ୍ସ, କାନ୍ଥ, ଛାତ, ତଳି, ଜିନିଷ ସବୁ ଆକାଶୀ ବର୍ଣ୍ଣ । କାନ୍ଥରେ ଗୋଟିଏ ଛବି, ନାଲି, ମାଟିଆ, କମଳା, ଶାଗୁଆ ଆଉ ହଳଦିଆ । ସ୍ତରକଣିଆ, ତିନକଣିଆ, ଗୋଲ, ଟୋପି ଟୋପି । କଣ ଗୋଟାଏ ଶୁଆ ? ନଡ଼ଡ଼ୁଙ୍ଗର ? କୋଠାବାଡ଼ି ? ହଠାତ୍ କାହିଁକି ଗ୍ରିଡଟା ଥର ଉଠିଥିଲା । ଅସ୍ପଷ୍ଟ ଧାରଣା ଆସିଥିଲା, ମୁଣ୍ଡଟା ଅଲଗା, ସେ ପୁଣି ପଛକୁ ମୋଡ଼ିହୁଛି । 'ଶରୀରଟା ମୋଡ଼ିଛି ଆଗକୁ । ହାତ ଦିଟା ବି ଦେହଠୁଁ ଅଲଗା, ଦିଗ ଭିନ୍ନେ । ଗୋଡ଼ ଦିଟା ଅନ୍ୟ ଆଡ଼େ । କିନ୍ତୁ ବେଶି ଆଶ୍ଚର୍ଯ୍ୟ ଲାଗେ ତା ଆଖି ଓ ତା ଛାତି । ଆଖି ସ୍ଥାନରେ ଦିଟା କଳା କଳା ଗୋଲ, ଶୂନ୍ୟ, ଆଖି ନାହିଁ । ଛାତି ଭିତରେ ହୃଦୟ ଥିବା ଜାଗାରେ ଗୋଟାଏ ମାଟିଆ ଟ୍ରାନ୍‌ଜିଷ୍ଟର ଯନ୍ତ୍ର ।

ଝିଅଟି ଟେଲିଫୋନ ଟେକି କହିଲା "ମୁଁ ମମ୍‌ପଲ୍ଲୀ କହୁଛି । ଝଟ୍ ଦିଟା କପି" ଅତି ଦକ୍ଷତା ଭାବରେ ସ୍ନେହଶୀତଳ ଆଖିରେ ତା ମୁହଁକୁ ଚାହିଁ ଦେଇ କହିଲା, "ଜାଣେ ନାହିଁ କାହିଁକି, କିନ୍ତୁ ଆପଣ ଖୁବ କ୍ଲାନ୍ତ ଜଣା ପଡ଼ୁଛନ୍ତି । କାମ କଥା ପଛେ ହେବ । ଆପଣ ଆଗ ଟିକିଏ ଧୂଆଧୋଇ ହୋଇପଡ଼ିଲେ ଭଲ ହେବ । ହେଇ ସେଇଟା ଧୂଆଧୋଇ ଘର ।

ମୋ ପରିଚୟ ଦେଲି ନାହିଁ ଯେ । ମୁଁ ଏଠି କାମ କରେ ।"

ହସି ଦେଇ ପଚୋଉଣୀ କହିଲା, "ଆପଣ ମୋ ପାଇଁ—"

"କିଛି ନାହିଁ କିଛି ନାହିଁ ।"

"ମିଷ୍ଟର ଶର୍ମା—"

"ହଉ ଆଗେ ସୁସ୍ଥ ହୁଅନ୍ତୁ, ଶାନ୍ତ ହୁଅନ୍ତୁ, ପଛେ କହିବେ । ମୁଁ ତ ଅଛି । ସେ ଯେଉଁଠି ଥାଆନ୍ତୁ ମମ୍‌ପଲ୍ଲୀ ଜବାବ ଦେଉଛି ତାଙ୍କୁ ଖୋଜି ବାହାର କରିବ । ଯାଉନ୍ତୁ ସେଇଟା ଧୂଆଧୋଇ ଘର । ମତେ ଲାଗୁଛି ସେଠି ସବୁ ପାଇବେ । ନ ହେଲେ ଯାହା ଦରକାର ହେବ ମତେ ଡାକିବେ ।"

ବିନା ଆପତ୍ତିରେ ବାଥ୍‌ରୁମ୍ ଭିତରେ ପଶି ସେ କବାଟ କଲିଲା ।

ଯାଉ ଯାଉ ସାମ୍ନାକୁ ଅନେଇଁ ଦେଲା । ତା ଆଡ଼କୁ ଅନେଇ ଆସୁଛି ଗୋଟିଏ କ୍ଳାନ୍ତ କାନ୍ଦୁରା ମୁହଁଟିଏ, ଆଖିରୁ ଲୁହରେ କଳା ବୋହିଆସି କରରେ ଲାଗି ଯାଉଛି ମୁଣ୍ଡବାଳ ଅଲଗ ।

ଆଇଲନ୍ ମମ୍‌ପିଲ୍ଲୀ ପ୍ରତି ତାର କୃତଜ୍ଞତା ଅସୀମ । ଏତେବେଳେ ଯାଇ ସେ ନିଜ ଅବସ୍ଥା ବୁଝି ପାରିଲା । ସେ ନିଜେ ସୁନ୍ଦର ନୁହେଁ ଜଣେ, ମମ୍‌ପିଲ୍ଲୀ ତାକୁ ଚିହ୍ନି ନାହିଁ, ତା ବିଷୟରେ କିଛି ଜାଣି ନାହିଁ, ପଚାରି ନାହିଁ, ଅଥଚ ଏତେ ଦୟା ଓ ସୌଜନ୍ୟ । ମମ୍‌ପିଲ୍ଲୀ-ମମ୍‌ପିଲ୍ଲୀ—କଣ ତା ମାନେ ? କି ଜାତି ସେ ? ଆଇଲନ୍ । ସେ ଖ୍ରୀଷ୍ଟିଆନ୍ । ଇଂରେଜ ଯିନା କହୁଛି, କି ଭାଷା ତାର ।

ବାଥ୍‌ରୁମ୍‌ଟି ଖୁବ୍ ସଫାସୁତୁରା, ସବୁ ଜିନିଷ ସଜାଡ଼ିକି ହୋଇ ନିଜ ନିଜ ସ୍ଥାନରେ । ବାଥ୍‌ରୁମ୍‌ର ଚେହେରା ଯଦି କାହାର ସଭ୍ୟତାର ମାପ ତେବେ ଆଇଲନ୍‌ର ବ୍ୟକ୍ତିତ୍ୱର ଆପଣା ଆଭିଜାତ୍ୟ ଅଛି ସନ୍ଦେହ ନାହିଁ ।

ମୁହଁରେ ଥଣ୍ଡା ପାଣି ମାରି ମୁଣ୍ଡବାଳ ସାଉଁଳେଇ ଦେହାକୁ ଶାନ୍ତଶୀତଳ ହୋଇ ସେ ଯେତେବେଳେ ଆଇଲନ୍ ମମ୍‌ପିଲ୍ଲୀ ପାଖକୁ ଲେଉଟି ଆସିଲା ଆଇଲନ୍ ହସି ଦେଇ କହିଲା, "ଟିକିଏ କଫି ପିଅନ୍ତୁ ।"

କଫି ପିଉ ପିଉ ଲକ୍ଷୁଥାଏ ଝିଅଟି ସତେ ଯେମିତି ତାର ଚିହ୍ନା ମଣିଷ । କି ସୁନ୍ଦର ହସ ! କି ସୁନ୍ଦର ଏକାମଗ୍ରକେ ଝକଝକ ଦାନ୍ତ ! ତେବେ ଓଠରେ ଏ ବଉଗ୍ର ନାଲି ବୋଲେ କାହିଁକି ? ନଖଟା କାହିଁକି ଏତେ ବଡ଼, ଏତେ ନାଲି ? ନିଶ୍ଚୟ ଗୋଟାଏ ଖିଆଲ । ନ ହେଲେ ବ୍ୟବହାରରେ ସିଧା ସତ ।

ଯେପରି ବାଧରେ କହିବାକୁ ପଡ଼ୁଛି ସେହିପରି ଥଙ୍ଗେଇ ଥଙ୍ଗେଇ ହୋଇ କହିଲା "ମିଷ୍ଟର ଶର୍ମାଙ୍କ ବିଷୟଟା—ପ୍ରକୃତରେ ଆପଣଙ୍କୁ ନ ଦେଖିବାଯାଏ ମୁଁ ତ ଆଶା ଛାଡ଼ି ଦେଇଥିଲି । ସେତେବେଳୁ ଏକର ସେକର ହେଉଛି ।"

ମମ୍‌ପିଲ୍ଲୀ ଗମ୍ଭୀର ହୋଇ କହିଲା 'ଦେଖନ୍ତୁ, ସାମସନ୍ ଆଣ୍ଡ ଗୋଲଷ୍ଟିନ୍ କମ୍ପାନୀରେ ସୁପର ଏକ୍‌ଜିକ୍ୟୁଟିଭ୍ ବୋଲି କୌଣସି ପଦବୀ ନାହିଁ ।"

"ନାହିଁ ।" ମୁହୂର୍ତ୍ତକେ ପଟୋଉଣୀର ନିର୍ଲିପ୍ତପଣ ଉଭେଇଗଲା, ସେ ଧଡ଼୍‌କିନା ଚୌକିରୁ ଉଠିପଡ଼ି କହିଲା "ତେବେ କଣ ହେବ ।"

ତାର କାନ୍ଧରେ ହାତଟିଏ ଥୋଇ ଆସ୍ତେ ଚାପି ଦେଇ ମମ୍‌ପିଲ୍ଲୀ କହିଲା "ବସନ୍ତୁ, ଅଧୀର ହେଲେ ଚଳିବ ?"

ତାର ପାଟିରେ କୋହ, ଆଖି ତାର ବାମ୍ପେଇଲାଣି, ତୁନି ହୋଇ ସେ ମୁଣ୍ଡ ହଲେଇଲା । ବୁଝେଇଦେଲା ଯେ ଅଧୀର ହେଲେ ଚଳିବ ନାହିଁ ସେ ଜାଣିଛି ।

"କହନ୍ତୁ, ଏ ଶର୍ମା ଆପଣଙ୍କର କଣ ? କାହିଁକି ଆପଣ ତାଙ୍କ ପାଇଁ ଏତେ ଉଦ୍‌ବିଗ୍ନ ?"

ସେ ସଂକ୍ଷେପରେ ତା କାହାଣୀ କହିଗଲା । ମିଷ୍ଟର ଶର୍ମା ତା ସ୍ୱାମୀ । କମ୍ପାନୀର ସଦରମହକୁମାକୁ ଆସିଲେଣି ଆଠମାସ ହେଲା । ଛଅମାସ ହେଲା ଚିଠି ଦେଇ ନାହାନ୍ତି, ତେଣୁ ସେ ଓ ଘରେ ସମସ୍ତେ ଶର୍ମାଙ୍କ ପାଇଁ ଉଦ୍‌ବିଗ୍ନ । ମାସର ଆଠ ତାରିଖରେ ଟଙ୍କା ମନିଅର୍ଡର ହୁଏ; କିନ୍ତୁ ଚିଠି ଖଣ୍ଡେ ବି ନାହିଁ । ତେଣୁ

ବସ୍ତାଳିଟି ଘଣ୍ଟା ବାଟରେ ଧଡ଼େଇ ସେ ନିଜେ ଖୋଜିବାକୁ ଆସିଛୁ । କହିଦେଇ ସେ ଲିଫ୍ଟରେ ଯାନ ହୋଇଗଲା । ସେ କଣ କଲା ? ଅଚିହ୍ନା ଲୋକ ଆଗରେ ପ୍ରକାରାନ୍ତରେ ସ୍ୱାମୀକୁ ଅଭିଯୁକ୍ତ କଲା ।

"ମିଷ୍ଟର ଶର୍ମା ନିଶ୍ଚୟ ଆପଣଙ୍କ ପରି ସ୍ତ୍ରୀ ପାଇ ଭାଗ୍ୟବାନ । କିନ୍ତୁ ସେଥିପାଇଁ ସେ ଯୋଗ୍ୟ କି ?

'ଚହୁଭ ଟାଣ କଥା ଏ କହିଦେଲା । କାହିଁକି ସେ ତାକୁ ସୁଯୋଗ ଦେଲା ? କହିଲା "ଗ୍ରୁଜଅ ଲାଗୁଛି, କାଲେ ବେମାର ଥିବେ ।"

"ଅସମ୍ଭବ । ତାହେଲେ ଟଙ୍କା ପଠାଉଥାନ୍ତେ କେମିତି ?"

"ହୁଏତ ନିଜେ ବେମାର ପଡ଼ି ଆମକୁ ମନ ଖରାପ କରିବାକୁ ସେ ଚାହୁଁ ନାହାନ୍ତି ।" ସେ ମୁହଁ ଥକଥକ କରି ତଳକୁ ପୋତିଲା ।

କରୁଣ ହୋଇ ପଚାରିଲି "ସେ କୋଉଠି ମିଳିବେ ଆପଣ କାହାକୁ ପଚାରି ଦେଲେ କହିପାରନ୍ତେ ନାହିଁ ?"

ମମ୍ ପିଲ୍ଲା କହିଲା "ଚେଷ୍ଟା ତ ନିଶ୍ଚୟ ହେବ । ପ୍ରଥମେ ଅସୁବିଧା ପଡ଼ିଲା, ସେ ଏଠି କି ଚାକିରି କରନ୍ତି ଜଣା ନାହିଁ । ହୁଏତ ସୁପର ଏକ୍ଜିକ୍ୟୁଟିଭ୍ କହି ସେ ଏଇଆ କହିବାକୁ ଚାହିଁଛନ୍ତି ଯେ କ ଖ ଗ ଘ ଚାରି ଶ୍ରେଣୀର କର୍ମଚାରୀ ଭିତରୁ ସେ କ ବା ଖ ଶ୍ରେଣୀରେ ମିଳିବେ । ସାମସନ୍ ଆଗୋନଷ୍ଟିସ କମ୍ପାନୀର ଦଶଟି ବିଭାଗ ଅଛି, ପ୍ରତି ବିଭାଗରେ କ ଓ ଖ ଶ୍ରେଣୀ ବି ଅଛି, ସମୁଦାୟ ସେଥିରେ ତିନିଶହ ଜଣ ଥିବେ । ସବୁ ବିଭାଗ ପାଇଁ ବି ଏଇ ଗୋଟିଏ କୋଠାରେ ଜାଗା ନାହିଁ । ସହରରେ ଦୂରରେ ଦୂରରେ ଆଉ ଦୁଇ ସ୍ଥାନରେ କୋଠା ଭଡ଼ା ନିଆ ହୋଇ ଚାରୋଟି ବିଭାଗ ସେଠି ବି ଅଛି ।"

"କାହିଁ କାହିଁ କୋଉଠି ସେ ଦୁଇ କୋଠା ?"

"କିନ୍ତୁ ଏଠି କଣ ଆମେ ଖୋଜି ପାରିଲେଇଁ ? ଆଗ ଏଠି ପାରିବା ।"

"କିନ୍ତୁ ନାଁକୁ ତ ଆପଣ ଚିହ୍ନି ପାରନ୍ତେ । କାଙ୍ଗାଳିଚରଣ ଶର୍ମା ।"

"କ୍ୟାନାଲଗ୍ରୁର୍ନ—ସେ ତ ତାଙ୍କ ଆଦ୍ୟ ନାଁ ହୋଇଥିବ, ଯେଉଁ ନାଁରେ ଆପଣ ଡାକିବେ । ଲୋକେ ଜାଣିଥିବେ ଶେଷ ନାଁ ଶର୍ମା ।"

"ହେଲା, ଶର୍ମା ନାଁରୁ ତ ସହଜେ ଧରି ହେବ । ଆପଣ କହିପାରିବେ ନାହିଁ ?"

"ଆଚ୍ଛା ଆପଣ କହନ୍ତୁ । ସେ କଣ ଦସ୍ତଖତ କରନ୍ତି ? ଅଗ୍ନି ଶର୍ମା ? ବସନ୍ତ ଶର୍ମା ?"

"ନା-ନା-ନା—ଖାଲି କେ. ଶର୍ମା—"

"କେ. ଶର୍ମା । ବେଶ୍ । କିନ୍ତୁ କେତେଜଣ ତ ଅଛନ୍ତି, ମୁଁ ବି କେତେଜଣ କେ. ଶର୍ମାଙ୍କୁ ଚିହ୍ନେ ।" ମମ୍ ପିଲ୍ଲାଇ ଚେହେରା କେତୋଟି ବର୍ଣ୍ଣନା କଲା, ଜଣେ

ସବୁଆ ଛାଂଟଛାଟିଆ, ଦାଢ଼ିଆ, ଗୋରା, କେତେ ବାଙ୍ଗରା, କଳା, ମୋଟା, ବଡ଼ ବଡ଼ ଦାନ୍ତ; କେତେ ମୁଣ୍ଡ ଚନ୍ଦା, ଆଖିରେ ଚଷମା, ଲମ୍ବା ମୁହଁ, ମୁହଁ ନା ସେମାନେ କେହି ନୁହନ୍ତି ।

ପଟୋଉଣୀ ଚେହେରାଟିଏ ବର୍ଣ୍ଣନା କଲା । କିନ୍ତୁ ବିଶେଷତ୍ୱ କଣ ବୋଲି କହିବ ? ବେଶୀ ଗୋରା ନୁହନ୍ତି, ବେଶୀ କଳା ନୁହନ୍ତି, ବେଶୀ ଡେଙ୍ଗା ନୁହନ୍ତି, ବେଶୀ ବାଙ୍ଗର ନୁହନ୍ତି, ସ୍ୱାସ୍ଥ୍ୟ ସାଧାରଣ, ଦାଢ଼ି ତ ରଖୁ ନ ଥିଲେ; କିନ୍ତୁ ତା ଆଗରୁ ମୁଣ୍ଡ ଦାଢ଼ି ଥିଲା, ପୁଣି ସାଦା । ଚଷମା ତ ଦେଉ ନ ଥିଲେ । "ବୟସ ପଇଁତିରିଶ ହେବ, ହଁ, ମୋଠୁ ଆଠ ବର୍ଷ ବଡ଼ । ଓଡ଼ିଆଭାଷୀ ଲୋକ, ଓଡ଼ିଶା ତ ଆମ ଘର, ଚିହ୍ନି ହେବ ନାହିଁ ?"

"କେମିତି ଚିହ୍ନିବା ଭଉଣୀ—କ୍ଷମା କରିବେ, ଭଉଣୀ ବୋଲି କହିଦେଲି । ଆମେ ଏକା ବୟସର କିନା—"

"ସତେ ?"

"ଦ୍ୱିତୀୟ ମହାଯୁଦ୍ଧ ସରିଲାବେଳେ ମୁଁ ମା ପେଟରେ ।" ଦୀର୍ଘଶ୍ୱାସ ପକାଇ କହିଲା "ଗ୍ରେଡ଼ । ସମସ୍ତେ ଇଂରେଜି କହନ୍ତି, ସମସ୍ତେ ଇଂରେଜି ପୋଷାକ ପିନ୍ଧନ୍ତି, କେମିତି ଜାଣିବା କାହା ଘର କେଉଁ ପ୍ରଦେଶରେ ?"

ସ୍ୱାଭାବିକ ପରି ହୋଇ ହଠାତ୍ ଆବିଷ୍କାର କଲାପରି ପଚାରିଲା 'କିନ୍ତୁ ସତ କଥା, ଫଟୋ ତ ଥିବ ଆପଣଙ୍କ ପାଖେ ?"

ପଟୋଉଣୀର ମୁହଁ ଶେତା ପଡ଼ିଗଲା । କହିଲା "ଫଟୋ ଅଛି ଘରେ, ଆଣିବାକୁ ଭୁଲିଗଲି ।"

ଆଶ୍ୱାସନା ଦେଇ ମମ୍ପିଲ୍ଲୀ କହିଲା "କିଛି ଚିନ୍ତା ନାହିଁ । ଆଜି ନ ହେଉ । ଚିଠି ଲେଖିଲେ ଘରୁ ତ ଆସିଯିବ । ହୁଏତ ଆଠ ଦଶ ଦିନ ଲାଗିବ । ଆସିବ ତ ?"

ପଟୋଉଣୀ ମୁହଁ ଶୁଖିଗଲା । ସେ ଆଉ ଅନୁମତିକୁ ଅପେକ୍ଷା କଲା ନାହିଁ, ଉଠି ପଡ଼ି ବାଥ୍ରୁମ୍‌କୁ ଚାଲିଗଲା ।

ଫେରିଲାବେଳକୁ ସେ ଘରେ ଆଉ ଜଣେଟିଏ, ମମ୍ପିଲ୍ଲୀ ବୟସର, କଳା ମିଶ୍‌ମିଶ୍, ଗୋଲ ମୁହଁ, କୁନ୍ଦିଲା ପରି ଦେହ, ମୁଣ୍ଡରେ ଚକା କୁଙ୍କୁମ ଟିପା, ବାରହାତ ବାଇଗଣୀ ଶାଢ଼ୀଟିଏ ପିନ୍ଧିଛି, ତେଲ ଚକ୍ ଚକ୍ ମୁଣ୍ଡ, ଗଣ୍ଠିରେ ଫୁଲ ଗଭା, ନାକରେ କାନରେ ଫୁଲ, ହାତରେ ଶଙ୍ଖା, କାଚ, ସରୁ ସୁନା କାଚ, ବେକରେ ସୁନା ହାର । ସାନ ସାନ ଦୂର ଦୂର ଛଡ଼ା ଗୋଲ ଗୋଲ ଆଖି ଓ ଚେପ୍‌ଟା ନାକ ସେ ମୁହଁକୁ ଗୋଟିଏ ମଧୁର ନିରୀହ ଗାମ୍ଭୀର୍ଯ୍ୟ ଦେଇଥିଲା ।

ମମ୍ପିଲ୍ଲୀ ଚିହ୍ନା କରେଇ ଦେଲା, କହିଲା "ମୋ ସାଙ୍ଗ ନଳିନୀ ରୁକ୍ମିଣୀ । ପିଲାଦିନୁ ଏକା ସଙ୍ଗେ ପଢ଼ିଲୁଁ, ବିଦେଶରେ ବି ଏକା ସଙ୍ଗେ ଥିଲୁ, ପୁଣି ସ୍ୱାଗୟ

ଏମିତ ଯେ ଏକାଠି ଏକା ସଙ୍ଗରେ ଚାକିରି କଲୁଁ ।" ଗେଲ୍ହାରେ ଅଭିନୟ ଦେଲ । କହିଲ "ଲୀଳା, ତୋ ଦେବ୍‌ର ସାହାଯ୍ୟରେ ଆସିବ ।" ପଟୋଉଣୀର କାହା କାହା ଆଖିକି ଗୁହିଁ କହିଲ "କମିଜଣେ କି ଏ ଲୀଳା ? ଦେବ୍‌କୁ ବସ ହେବ । ଦେବ୍ ଏଠି ଆମର ସହକର୍ମୀ ଜଣେ । ମନ ମାନିଲ ତ, ପୋଷାକ ବଦଳେଇ ପିନ୍ଧିଲ ଶାଢ଼ୀ ଆଉ ଗହଣା, ଲୀଳା ନାଁ ବ ବଦଳେଇ ଦେଲ, ରୁକ୍ମିଣୀ ଦେବୀ, କିନ୍ତୁ—" ତାକୁ ଲୁଣ୍ଠେଇ ଧରି, "ମୋର ସେହି ପୁରୁଣା ଲୀଳା, ତେଣୁ କହେଁ ଲୀଳା ରୁକ୍ମିଣୀ ।"

ଲୀଳା ରୁକ୍ମିଣୀ ଲଜ୍ଜାରେ ହୋଇ ବୋହୂ ମୁହଁ କଲ । କଣ କହିଥାନ୍ତା, ତା ଓଠ ଥରିଲ, କିଛି କହିଲ ନାହିଁ । ମମ୍‌ପିଲ୍ଲୀ କହିଲ—

"ଦେବ ଭାରି ବଢ଼ିଆ ପିଲ, ଏତେ ମେଳାପୀ । କେବେ ସିନା ବାହା ହେବ, ଅନ୍ତତଃ ଲୀଳାକୁ ଦଣ୍ଡେ ନ ଦେଖିଲେ ବଣା । ଆଉ କଣ ସେ ଲୀଳା ଅଛୁ ? ଖୋଲ ଅନେଇଛୁ ଅଫିସ୍ କେତେବେଳେ ଛୁଟି ହେବ । ସେଇଠୁ ଗୁଲିଲେ ଦହେଁ, ଗାଈ ପଛେ ପଛେ ବାଛୁରୀ ପରି । ମ୍ୟାଚ୍ ଦେଖି, ସିନେମା ଦେଖି, ପାର୍କ ବୁଲି, ସେଇଠୁ ହୋଟେଲ । ବାଃ କେଡ଼େ ମଜା । ସତ କହୁଚ, ହିଂସା ହଉଚ ।"

ଲୀଳା ପାଟିକଲ "ଧାତ୍-ଧାତ୍ ।"

"କଣ ? ଘୁମର ଫିଟେଇ ଦେଲି ? ସ୍ୱାକ୍ତ ଆଉ କି ଲାଜ ? ସେ ବ ତ ଆମର ଘର ଜଣେ, ମାନେ, ତୋର ପରା, ସ୍ୱାଙ୍ଗର ବର ହଜାଛୁ, ତତେ ଯେ—ବହଂ ମିଳାଚ, ତୋ ମନ ଆଜ ଯାହା ତା ସେ କଣ ବୁଝି ପାରୁ ନ ଥିବେ ? ସବୁ ବୁଝି ଥିବେ ।"

ଏତେବେଳକେ ପଟୋଉଣୀ ମୁରୁକି ମୁରୁକି ହସିଲ । କିନ୍ତୁ ମନ ଭିତରେ ବିଷାଦ ଅଙ୍କୁର ବଢ଼ି ବଢ଼ିଗଲ । ସେ ହେଉ ସେ ଲୀଳା, ନିଜକୁ ସେ ତା ସଙ୍ଗେ ତୁଳନା ନ କରି ରହି ପାରିଲ ନାହିଁ, ତାର ସୂର୍ଯ୍ୟ ଉଦେ ହେଲଣି, ତାର ଯେ କାହିଁ ମେଘଉଢ଼ାଳ କରିଛୁ, ସୂର୍ଯ୍ୟ ଅଛୁ କି ବୁଡ଼ିଛୁ ସେ ଜାଣେ ନାହିଁ ।

ଲୀଳା ଘଣ୍ଟା ଦେଖିଲ । ମମ୍‌ପିଲ୍ଲୀ କହିଲ "ଦେଖ, ପୁଣି ମୋର ଭୁଲି ଛି । ସାଢ଼େ ଚାରି ପରେ ଦଶ ମିନଟ୍ ହେଲଣି; ଦେବ୍‌କୁ ଫୋନ୍ କଲ ନାହିଁ ।"

ଟେଲିଫୋନ୍‌ର ଚକ ବୁଲେଇ ଦେବ୍‌ର ନମ୍ବର ଲଗେଇଲ । କହିଲ "ନା, ସେ ଗଲଣି । ହଉ ଲୀଳା, "ଦେଖା ହେଲେ ତାକୁ କହିବୁ, କ୍ୟାନାଲଚଣ୍ଡ୍ରୁ ।"

ପଟୋଉଣୀର କହିଲ "କାଙ୍ଗାଲ ଚରଣ ।"

"ହଉ, କାନାଲଚଣ୍ଡ୍ରି ଶର୍ମା, ଓଡ଼ିଶାରେ ଲୋକ, ଏଠି କାମ କରନ୍ତି—ଖୋଜବ । ସେ ତ ସବୁ ପାରେ ।" ପଟୋଉଣୀକୁ କହିଲ "ଆପଣ କୋଉଠିକ

ଯିବେ ?" ପଠୋଉଣୀ ତା ହୋଷ୍ଟେଲ ଠିକଣା କହିଲା । ମମ୍‌ପିଲ୍ଲୀ କହିଲା "ନା-ନା, ହୋଷ୍ଟେଲରେ ରହିବେ ନାହିଁ । ଆମ ଘରେ ରହିବେ, ସ୍କୁଲକୁ ମୁଁ ମୁଁ ଯିବି—ଆପଣଙ୍କ ଜିନିଷପତ୍ର ନେଇ ଆସିବି ।"

ପଠୋଉଣୀ ଆପତ୍ତି କଲା, "ଥାଉ, କାହିଁକି ?"

"ନା-ନା, ହୋଷ୍ଟେଲ ଭଲ ଲାଗିବ ନାହିଁ । ଆମ ଘର, ମୁଁ ଓ ମୋ ବୋଉ ଦୁହେଁ ଥାଉଁ, କାଲି ନିଶ୍ଚୟ ମିଷ୍ଟର ଶର୍ମା ମିଳିଯିବେ, ସେ ପର୍ଯ୍ୟନ୍ତ ତ ଆମେ ଏକାଠି ସୁଖ ଦୁଃଖ ହେବା, ନା କଣ ?"

"ଆପଣମାନେ ମୋ ପାଇଁ ହଇରାଣ ହେବେ, କାହିଁକି ? ମୁଁ ତ ବେଶ୍ ଅଛି—"

"ନା-ନା ହଇରାଣ କାହିଁକି ? କେହି ହଇରାଣ ହେବା ନାହିଁ । ଖାଲି ଆମ ଦେଶର ଖାଦ୍ୟ ଆପଣଙ୍କ ତଣ୍ଟିରେ ଗଳିଲେ ହେଲା, ଆମେ ତ ପୁଣି ନିରାମିଷ ଖାଉଁ । ନା ଜାତିରେ ବାଧା ପଡ଼ିବ ? ତେବେ ହୋଷ୍ଟେଲମାନଙ୍କରେ ତ ସବୁ ଜାତି ରହନ୍ତି, ମୋପ୍ଲା ପଠାଣ, ମୁସଲମ୍—"

"ଛି ଛି—" ପଠୋଉଣୀ କହିଲା, "ସେଗୁଡ଼ାକ କି ଅଧମ କଥା !"

ଆଇଲୀନ୍ ମମ୍‌ପିଲ୍ଲୀ ତାକୁ କୁଣ୍ଢେଇ ପକେଇଲା, କହିଲା "ତୁମେ ମୋର ଭଉଣୀ । ଆମର ଜାତି ଆମର ଧର୍ମ ଗୋଟିଏ, ମଣିଷ ।"

ବିଦେଶ ଜାଗାରେ ଆଇଲୀନ୍‌ର ସାହାଯ୍ୟ ପାଇ ପଠୋଉଣୀର ମନ ଭୁଲିଗଲା, ଆଶ୍ଚର୍ଯ୍ୟ ଲାଗୁଥାଏ କେତେ ଚଞ୍ଚଳ ଏ ଝିଅଟି ତାକୁ ଆପଣାର କରିନେଲା । ଅତି ସ୍ନେହୀ ମା' ଝିଅ ଦୋ'ଟି । ଆଗରୁ ଜଣାନାହିଁ ଶୁଣାନାହିଁ ସେମାନେ ତାକୁ ଆପଣାର କରିନେଲେ, ଅଥଚ ଏକଥା ଜଣେଇଜଣା ଯେ ସେ ସେମାନଙ୍କର କୌଣସି କାମରେ ଆସିବ ନାହିଁ । ମା ମେଶସ୍ମା ଦେବୀ ତାଙ୍କ ଠାକୁର ଘରେ ଆଖି ଛଳ ଛଳ କରି ଗଦଗଦ ହୋଇ ଯେତେବେଳେ ତା ପାଇଁ ଭଗବାନଙ୍କୁ ଗୁହାରି କଲେ ସେତେବେଳେ ତା ଆଖିରୁ ଦର ଦର ବୋହୁଥାଏ । ଖାଲି ଘର, ତଳେ ଗାଲିଚା ପଡ଼ିଛି । ଗୋଟିଏ ଅସ୍ଥାନ ଉପରେ ଥୁଆ ହୋଇଛି କଳା ଦରପୋଡ଼ା କାଠର ଛକଟିଏ, ପାଲିସ୍ ହୋଇଛି, ଗୋଟିଏ ପାହାଚ ତଳେ ଲେବାନ୍ ବତିଟିଏ କୁହୁଳି କୁହୁଳି ବାସ୍ନା ଛାଡ଼ୁଛି, ଜଳୁଛି ଗୋଟିଏ ମହମବତୀ । ଫୁଲ ଫଳ ନାହିଁ, ଆଧବଧ ନାହିଁ । ଆଣ୍ଠୁମାଡ଼ି ମେଶଅ ତା ଆଗରେ ବସିଛନ୍ତି । କଡ଼ରେ ଆଇଲୀନ, ଆଉ ପଠୋଉଣୀ । ଘଣ୍ଟି ବାଜୁ ନାହିଁ, ମନ୍ତ୍ର ପଢ଼ା ହେଉ ନାହିଁ । ହାତଯୋଡ଼ି କାତର ହୋଇ ମେଶଅ କଥା କହି ଲାଗିଛନ୍ତି ।

"ହେ ପ୍ରଭୁ, ତୁମର ଏ ଝିଅଟିର ଦୁଃଖ ଫେଡ଼ । ସୁରମାସ ହେବ ତା ସ୍ୱାମୀଠୁ ଚିଠି ପାଇ ନାହିଁ । ଶହ ଶହ ମାଇଲ ଦୂରରୁ ଧାଇଁ ଆସିଛି ତାକୁ ତଲାସିବ ଭେଟିବ ବୋଲି, ଦୁଃଖୀର ସହାୟ କିଏ ଅଛି ତୁମ ଛଡ଼ା ? ତୁମେ ହିଁ

ତ ସବୁ ଦେଖୁଛ ଜାଣୁଛ, ତୁମେ ହିଁ ତ ସବୁ କରୁଛ, ସମସ୍ତିଙ୍କି ଜନ୍ମ ଦେଉଛ, ପୋଷୁଛ, ପାଳୁଛ ! କିଏ ଅଛି ତୁମ ବିନା ଆଉ ? ତୁମେ ସ୍ତା ଦୁଃଖ ଦୂର କର ପ୍ରଭୁ, କାଲି ତାକୁ ତାର ସ୍ୱାମୀ ସଙ୍ଗେ ଭେଟେଇ ଦିଅ ।”

ଲୁହ ଜାଲୁ ଜାଲୁ ଆଖିରେ ପଟୋଉଣୀ ସେହି କାଠର ଛବିକୁ ଅନାଇଲା, ଲୋବାନ୍ ଧୂମର ଧୂଆଁ ତା ଆଗରେ ଗୋଟାଏ ଘୂରୁଥିବା ସରୁ ପର୍ଦ୍ଦା କରୁଛି, ପୁଣି ସାପେଇ ସାପେଇ ଉପରକୁ ଉଠି ଯାଉଛି । ପୁଣି ଶୁଭିଲା ମେଣଆଙ୍କ ସୁହାସ—

“ହେ ପ୍ରଭୁ, ଏ ଜଗତର ନାଥ, ଏ ସୃଷ୍ଟିର ନାଥ, ଏ ବିଶ୍ୱ ବ୍ରହ୍ମାଣ୍ଡର ସ୍ରଷ୍ଟା, ଏକ ଅଧିକାରୀ, ଏକ ରାଜା, ଜଗତର ପ୍ରାଣୀଙ୍କ ଦୁଃଖକୁ ଆପେ ଭୋଗିଥାଅ ତୁମେ । ହେ କରୁଣାମୟ, ପରର ହିତ ପାଇଁ ତୁମେ ତୁମ ପ୍ରିୟତମ ସନ୍ତାନମାନଙ୍କୁ ଶୂଳର ଦେଇଥାଅ । ହେ ଆର୍ତ୍ତିର ଏକମାତ୍ର ସହାୟ ଏକମାତ୍ର ତ୍ରାଣକର୍ତ୍ତା ଏ ଦୁଃଖୀର ଲୁହ ତୁମେ ପୋଛିଦିଅ—”

ପଟୋଉଣୀ ସେହି କାଠ ଛବିକୁ ଚାହିଁଛି । କାହିଁ କାଠ ଛବି ? ଏ ତ ସାକ୍ଷାତ ଜଗନ୍ନାଥଙ୍କ ମୁହଁ ଆଖି, ଧଳା ଗୋଲେଇ ଜ୍ୟୋତିମଣ୍ଡଳୀ ଭିତରୁ କଳା ଆଖିଯୋଡ଼ିକ ତାଆରି ଆଡ଼କୁ ଚାହିଁଛି । ସେ କାଠ ହୋଇ ରହିଲା, ଭୁଲିଗଲା ସେ କିଏ, କୁଆଡ଼େ ଆସିଛି, କୋଉଠି ଅଛି, ଯେମିତି ଶୂନ୍ୟରେ ନିସ୍ତବ୍ଧ ହୋଇ ସେ ଅଟକି ରହିଛି, ଚେତନା ନାହିଁ ।

ହୋସ୍ ହେଲାବେଳକୁ ଦେଖିଲା ସେଠି ସେ ଏକୁଟିଆ ଅଛି, ସାମ୍ନାରେ ସେହି କାଠ ଛବିଟି, ମହମବତୀଟି ଜଳୁଛି ।

ଲମ୍ବ ହୋଇ ସେ ଗୋଡ଼ତଳେ ପଡ଼ିଗଲା । ଉଠିଲା । ମୁହଁ ପୋଛିଲା ବାହାରିଗଲା । ମନରେ ଅଭୟ ଆସିଛି, ତା ସ୍ୱାମୀ ଭଲ ଅଛନ୍ତି । ସେ ତାକୁ ପଚାରନ୍ତୁ କି ନ ପଚାରନ୍ତୁ । ତାହେଲେ କାହିଁକି ସେ ଆଉ ଅପେକ୍ଷା କରିବ ? ନିଜର ଆଉ ଛୁଆ ଦିଟାଙ୍କର ହିତ ଖୋଜିବାକୁ ? ସେ ଭାର ବି ତାର ନୁହେଁ, ଯେଉଁ ଅନ୍ତର୍ଯାମୀ ସବୁଠି ଅଛି, ସବୁ ଦେଖୁଛି, ସବୁ ଭାର ନେଇଛି, ସେ ଭାର ତାର ।

ଖାଇଲାବେଳେ ରାତିରେ ସେହି କଥା ସେ ଆଇଲୀନ୍‌କୁ କହିଲା । ମେଣଆ ତାର ଉତ୍ତର ଦେଲେ । କହିଲେ “ସବୁ ଭାର ଈଶ୍ୱରଙ୍କର ଏଥିରେ ସନ୍ଦେହ ନାହିଁ ମା; କିନ୍ତୁ ମଣିଷ ବି ତ ତା ଜନ୍ମ ସାର୍ଥକ କରିବ । କେମିତି ? ସେ ଉଦ୍ୟମ କରିବ । ପାରୁପର୍ଯ୍ୟନ୍ତ ତାର ଶେଷ ନିଃଶ୍ୱାସ ଥିବାଯାକେ ସେ ତାର ସବୁ ବୁଦ୍ଧି ବୃତ୍ତି ଲଗାଇ ପରିଶ୍ରମ କରି ଚେଷ୍ଟା କରୁଥିବ । ଆଉ ବିଶ୍ୱାସ ରଖିଥିବ ଯେ ଈଶ୍ୱର ତାକୁ ସିଧା ରାସ୍ତା ଦେଖାଇବେ, ଅନ୍ଧାରରେ ଆଲୁଅ ଦେଖାଇବେ, ସତ୍ ବୁଦ୍ଧି ସତ୍-ବିଚାର ଦେବେ । ତୁ ଆସିଲୁ, ଠିକ୍ କଲୁ । ଈଶ୍ୱରଙ୍କୁ ସବୁ ଛାଡ଼ି ଦେଉଛୁ, ଭାରି ଠିକ୍ କଥା; କିନ୍ତୁ ଅଧାରୁ ହଟି ପଳେଇବୁ ସେ ଠିକ୍ ହେବ ନାହିଁ । ମୋର ବିଶ୍ୱାସ ନିଶ୍ଚୟ କାଲି ତୁ ତୋ ସ୍ୱାମୀଙ୍କୁ ଭେଟିବୁ ।”

ଆଇଲ୍ଲାନ୍ କହିଲା, "କାଲି ଅଫିସ ଖୋଲୁ ଖୋଲୁ ତୁମେ ମୁଁ ନିଜା ଦେବ୍ ଘରଜଣଯାକ ସେହି କାମରେ ଲାଗିଯିବା, ନିଶ୍ଚିନ୍ତ ରହ।"

ବେଳୁ ବେଳ ଏମାନଙ୍କ ସ୍ନେହରେ ସେ ଋଣୀ ହୋଇଯାଉଛି, ସେ ସ୍ନେହ ଯେପରି ଅଜଣା ଜୋରର କାଦୁଅ ଗଡ଼, ସେ ବୁଡ଼ି ବୁଡ଼ି ଯାଉଛି, ପଳାଇବାକୁ ଚାହେଁ। କେତେବେଳେ ଲାଗୁଛି ସେ ଓ ଏମାନେ ଏକ, ଅଭିନ୍ନ, ପୁଣି ଚେତ ଉଠୁଛି, ସେ ଓ ସେମାନେ ସମ୍ପୂର୍ଣ୍ଣ ଭିନ୍ନ ସେ କାହିଁ-ଅଇଲା। ଅନ୍ତର ସ୍ୱାଭାବିକ ହେଲା, ପରିସ୍ଥିତି ମନେ ପଡ଼ିଲା, ଲାଜ ମାଡ଼ିଲା। ଏ କଣ ସେ କହୁଛି ? ଆସି ଭୁଲିଯିବ ? ସେ କଣ ପାଗଳ ? ଏମାନେ କଣ ଭାବୁଥିବେ ? ଉଦାସ ହୋଇ କହିଲା "ଆଉ ପାରୁ ନାହିଁ ମା—"

ଟମରଆ ତାର ମା' ଡାକରେ ମୁହଁକୁ ତଳକୁ ପୋତିଲେ। କହିଲେ "ପାରିବୁ ମା, ସେ ବଳ ଦେବେ। କାହାର କେତେ ଯେ ଦୁଃଖ ! ଜାଣିଚୁ କିଏ ତାଙ୍କ ବିନା ? ମନେ ରଖିଥିବ, ତୁମର ଯେତେ ଦୁଃଖ ହୋଇଥାଉ ତାଙ୍କଠୁଁ ବଳି ଆଉ ଦୁଃଖ କାହାର ? ଜଗତର ସବୁ ଦୁଃଖରେ ସେ ଜର୍ଜରିତ, ଦୁଃଖର ପାହାଡ଼ ତାଙ୍କର ମୁଣ୍ଡରେ। ତଥାପି ସେ ଆପଣା କାମରେ ଟିକେହେଲେ ଭୁଲ୍ କରନ୍ତି ନାହିଁ, ସବୁ ଠିକ୍ ଚାଲେ, ସେ ସବୁ ବଳର ଉତ୍ସ, ତାଙ୍କ କଥା ଭାବି ଧୈର୍ଯ୍ୟ ଧର।"

ଆଇଲ୍ଲାନ୍ ସ୍ନେହରେ ତା ମା ମୁହଁକୁ ଅନାଇଁଲା। ପଟେ ଉଣୀ ଦୀର୍ଘଶ୍ୱାସ ପକାଇଲା।

ସକାଳ। ଅଫିସ ଯିବାବେଳ। ଘରେ ଆଇଲ୍ଲାନ୍ କେତେ ଯାଧାଯିଧା, ପୁଣି ସେ ବେଶ ହୋଇ ବିଚନ ଜନ୍ମ ପର ହୋଇ ପଦାକୁ ବାହାରିଲା।

ପୁଣି ଦିହେଁ ସାମସନ୍ ଆର୍ଗାନଷ୍ଟିସ୍ ଅଫିସରେ ପହଞ୍ଚିଲେ। ଆଗ ମାଣ୍ଟେଇ ରହିଲେ ଲିଫ୍ଟ ପାଖେ। କିଏ ଆସିବେ ସେମାନଙ୍କୁ ଦେଖିବେ। କେତେ କାମ ଭିଡ଼ ଲାଗି କେହି କେହି ଆଗରୁ ବି ଆସିଥାନ୍ତି। କିଏ ଲିଫ୍ଟ ପାଇଁ ଅପେକ୍ଷା କରେ ନାହିଁ ଆରପଟେ ସିଡ଼ିରେ ଚଢ଼େ। କମ୍ପାନୀ କାମରେ କାହାକୁ ଏଣେତେଣେ ବି ଯିବାକୁ ପଡ଼େ, ଲୋକଙ୍କୁ ଭେଟି କାମ ଛୁଣ୍ଡେଇ ଡେଶରେ ଅଫିସକୁ ଫେରନ୍ତି। ଶର୍ମା ମିଳିଲେ ନାହିଁ। ଆଇଲ୍ଲାନ୍ ତାକୁ ଯେନ ପ୍ରଥ ମାହାଲରେ ଏମୁଣ୍ଡ ସେମୁଣ୍ଡ ବୁଲି ଆସିଲା। ଅଫିସକୁ ଯେଉଁ କର୍ମଚାରୀ ଆସନ୍ତି ସେ ଭିତରେ ପଶି କବାଟ କଲନ୍ତି। ବାହାରେ ଟହଲୁଥିବା ଲୋକଙ୍କ ଭିତରେ ଶର୍ମା ନାହାନ୍ତି। କୋଠରୀମାନଙ୍କ ନାମଫଳକ ଯୋଡ଼ାଏ ସେମାନେ ଦେଖି ଦେଖି ଗଲେ। ପଞ୍ଚମ ମହାଲରେ ଆଇଲ୍ଲାନ୍ ନିଜ ବଖରାରେ ବସିଲେ। ଆଇଲ୍ଲାନ୍ ତା ଅକ୍ତକୁ ଖଣ୍ଡେ ଇଂରାଜୀ ପତ୍ରିକା ବଢ଼ାଇ ଦେଲା। ସେ କହିଲା ସେ ଦେଢ଼ଟାରୁ ଦିନଟା ଭିତରେ ଆଉ ଭିନ୍ନ ପ୍ରକାର ଖୋଜା ଆରମ୍ଭ କରିବ, କମ୍ପାନୀର ଏ କୋଠାରେ ଥିବା

ଛଅଟିଯାକ ବଖରାକୁ ସେ ଯିବ, ପ୍ରତି ବଖରାର 'କ' 'ଖ' ଶ୍ରେଣୀର କର୍ମଚାରୀଙ୍କ ତାଲିକା ସେ ଦେଖିବ, ଫୋନ୍‌ରେ ଡାକ ମଗାଇଲେ ମିଳିପାରେ, ଖାଲି ଛପା ତାଲିକାରେ ବି କାମ ହେବ ନାହିଁ। କାଙ୍ଗାଳିଚରଣ ଶର୍ମା ପରିବର୍ତ୍ତେ ଖାଲି କେ. ଶର୍ମା ବୋଲି ଲେଖାଥିବ। ଖାତା ଦେଖିଲେ ଜାଣିପାରିବ କେ. ମାନେ କାଙ୍ଗାଳିଚରଣ କି କିଷ୍ଟସ୍ୱାମୀ କି କେନେଥ୍। ସେଥିକିବେଳେ କାମ ଭିଡ଼ କମ୍, ଲୀଜା ଓ ଦେବ୍ ବି ସାହାଯ୍ୟ କରିବେ। ଦେଢ଼ଟାଯାକେ ତାର ବେଶୀ କାମ ଭିଡ଼।

ଆଇଲିନ୍ ତା କାମରେ ଲାଗିଲା, ଟେବୁଲରେ ଫାଇଲ୍ କାମ, କେତେବେଳେ ଚା ଆସେ।

ପଚୋଉଣୀ ପତ୍ରିକା ଉପରେ ମୁହଁ ବୁଲେଇ ଦେଇ ଗୋଟାଏ କଣରେ ବସିଥାଏ। କେତେବେଳେ ପଦାକୁ ବାହାରି ପଡ଼େ, ସେଠି ବି ଖୁବ୍ ଲମ୍ବା ହୋଇ ଦୁ ଧାଡ଼ି ଘର, ମଝିରେ ପିଣ୍ଡା ପରି ବାଟ, ଉପରେ ଛାତ, କେତେବେଳେ ଲିଫ୍ଟରେ ଓହ୍ଲାଏ। ତଳ ମହାଲରେ ବୁଲେ। ଲେଉଟି ମମ୍‌ପିଲ୍ଲୀ ବଖରାକୁ ଆସେ।

ଘଣ୍ଟାରେ ଗୋଟାଏ ପହରା। ଲୀଜା ଆସିଲା। କହିଲା "ଦେବ୍ ଭାରି କାର୍ଯ୍ୟବ୍ୟସ୍ତ ଥିଲା। ବର୍ତ୍ତମାନ ଫୋନ୍‌ରେ ପାଇଲି। ପଚାରିଲି ମିଷ୍ଟର ଶର୍ମା ବୋଲି ଜଣେ, କ କି ଖ ଶ୍ରେଣୀର, କାନାରିଜ୍ ଲୋକ, ଚିହ୍ନିଛ ତାଙ୍କୁ? କହିଲା 'ଚିହ୍ନିବି ନାହିଁ? କାନାରିଜ୍ ତ? ଆରେ କିଏ ତାଙ୍କୁ ନ ଚିହ୍ନେ? କେତେଥର ତାଙ୍କ ସଙ୍ଗେ ଟେନିସ୍ ଖେଳିଛି। ଭାରି ଭଲ ଖେଳନ୍ତି। ଦରକାର ଅଛି?' କିଛି କହିଲି ନାହିଁ। ଯାହଉ, ଆଉ ଚିନ୍ତା ନାହିଁ।"

ଆଇଲିନ୍ କହିଲା, "ହୁଣ୍ଡୀ ଅଉ ଗଛରେ ଫଳନ୍ତି କି? ସେ ପରା ଓଡ଼ିଶାର ଶର୍ମା?"

"କହିଲୁ ପରା କାନାରିଜ୍, ଶର୍ମା"

"ଧେତ୍‌ତେରିକା, କାଙ୍ଗାଳିଚରଣ, ତାଙ୍କ ନାଁ।"—ଆଇଲିନ୍ ମମ୍‌ପିଲ୍ଲୀ ପାଟିରେ "କାଙ୍ଗାଳି-ଚରଣ" ଶବ୍ଦଟି ଉଚ୍ଚାରଣ ହୁଏ ନାହିଁ। ପଚୋଉଣୀର ଶୁଖିଲା ମୁହଁକୁ ଚାହିଁ ସେ କହିଲା "ଲୀଜା ବୁଝିପାରି ନାହିଁ। ହଉ, ଚିନ୍ତା ନାହିଁ। ଖୋଜି ବାହାର କରିବା ଆମେ।" ତାପରେ ସେ ତାର ଯୋଜନା ବଖାଣିଲା, କହିଲା "ଚାଲ ଏଥର ଦେବ୍‌କୁ ଧରିବା।"

ସେମାନେ ଲିଫ୍ଟ ଆଡ଼କୁ ଚାଲିଲେ। ଗୋଟାଏ ଲିଫ୍ଟ ଠିଆ ହୋଇଛି। ଛ ମହାଲରୁ ଲୋକ ଆଣିଥିଲା, ପାଞ୍ଚ ମହାଲରୁ ଯୋଡ଼ା ପଶିଲେଣି। ଖଣ୍ଡେ ଦୂର ଅଛି। ଚାହିଁ ଦେଇ ପଚୋଉଣୀ ପାଟିକଲା—

"ହେ ତେମେ ଏଇଠି ତମକୁ ମୁଁ ଗାଇଜଯାକ—ଆରେ ରହ ରହ ରହ—" ଧଇଁସଇଁ ହୋଇ ଦଉଡ଼ିଲା।

କିନ୍ତୁ ଠିକ୍ ସେତିକିବେଳେ ଲିଫ୍‌ଟଟା ତଳକୁ ଓହ୍ଲେଇଗଲା । ଆଗରେ ଗୋଟାଏ କାଚର କାନ୍ଥ । ତା ସେପଟରେ ଶୂନ୍ୟ, ଅନ୍ଧାର ।

ଲୀଜା ଓ ଅଇଲୀନ୍ କାବା ହୋଇ ପରସ୍ପରଙ୍କ ମୁହଁକୁ ଅନାଇଁଲେ । ଓଡ଼ିଆ ଭାଷା ସେମାନେ ତାଙ୍କ ଜୀବନରେ କେବେ ଶୁଣି ନାହାନ୍ତି । ପଟୋଉଣୀ ବିକଳରେ ଛଟପଟ ହୋଇ ଏକର ସେକର ହେଉଛି, ଦୀର୍ଘଶ୍ୱାସ ଓ କାନ୍ଦଣା ଭିତରେ ଧୀରେ ଧୀରେ ବକିବକୋଉଛି । "ଚାଲିଗଲେ ! ହଜିଗଲେ ! ମୁଁ କଣ କରିବି ! କଣ କରିବି !" ଭୁଲିଯାଇଛି ସେ ଘର କି ବିଦେଶ, ଦିନ କି ରାତି । ତା ଚାପ ଦୀର୍ଘଶ୍ୱାସରେ ଉଚ୍ଛୁଳୁଛି । ଭାଷା ନ ବୁଝିଲେ ସୁଦ୍ଧା ଶବ୍ଦ ଓ ସ୍ୱରର ଅଭିବ୍ୟକ୍ତିରୁ ସେମାନଙ୍କର ଧାରଣା ହୋଇଥିଲା ଯେ ପଟୋଉଣୀ ତା ସ୍ୱାମୀକୁ ଚିହ୍ନି ପାରିଲା ବୋଲି ଭାବୁଛି । କିନ୍ତୁ ସବୁ ତ ଚିହ୍ନା ମୁହଁ ଭଳି ଲାଗିଲା. ମଝିରେ ଠିଆ ହୋଇଥିଲା ଦେବ । ତେବେ କଣରେ କିଏ ଆଉ ଥିବେ କି କାହା ପିଠି ଆଡ଼େ ଥିବେ, ଲିଫ୍‌ଟରେ ଜକାଜକି ଭିଡ଼ ।

ଆଇଲୀନ୍ ପଚାରିଲା "ଚିହ୍ନି ପାରିଲ ତା ଦେହକୁ ?" ଲିଫ୍‌ଟରେ ଅଧିକ କଥା କହି ହେଉ ନାହିଁ, ପଟୋଉଣୀ ମୁଣ୍ଡ ହଲେଇ ଜଣେଇ ଦେଲା, ହଁ । କିନ୍ତୁ ଦକ୍ଷିଣର ମୁଣ୍ଡହଲା ସଙ୍କେତ ଉତ୍ତର ଭାରତର ଓଲଟା, ବାଁରୁ ଡାହାଣକୁ ହେଲେ ତା ଅର୍ଥ 'ହଁ', ଆଗକୁ ପଛକୁ ହେଲେ ତା ଅର୍ଥ 'ନାହିଁ' ।

ଲୀଜା କହିଲା "ନା ସେ ଚିହ୍ନିପାରି ନାହାନ୍ତି ।"

ଆଇଲୀନ୍ କହିଲା "ନା "

ପଟୋଉଣୀ ତଣ୍ଟି ସଫା କରି ସଙ୍ଗେ ସଙ୍ଗେ ଇଂରେଜିରେ କହିଲା "ଚିହ୍ନିଲି, ମୁଁ ଚିହ୍ନିଲି । ସେ ମତେ ଦେଖି ପାରିଲେ ନାହିଁ ପରା । ଯିବା,, ଚାଲ ତଳକୁ ଯିବା ।"

ଆଇଲୀନ୍ ଧୀର ସ୍ୱରରେ କହିଲା "ଚିହ୍ନିଲ । ତାହେଲେ ତ ସହଜ । ମଝିରେ ଦେବ୍ ଥିଲା, ଆଉ କିଏ କିଏ ଥିଲେ ସେ କହି ପାରିବ ଯେ । କିନ୍ତୁ ବଡ଼ ବଡ଼ ଆଶ୍ଚର୍ଯ୍ୟ କଥା, ମତେ ଯେତେଜଣ ଦିଶୁଥିଲେ ସମସ୍ତେ ତ ଚିହ୍ନା ଚିହ୍ନା ଲାଗୁଥିଲେ । ମୋ ଜାଣିବାରେ କାନାଇଚନ୍ଦ୍ର ଶର୍ମା ତ କେହି ନ ଥିଲେ । ଆଚ୍ଛା ଚାଲ ଦେବକୁ ଧରୁଁ ।"

ପଟୋଉଣୀ କହିଲା "ନା, ତାଙ୍କୁ ଖୋଜିବା । ସେ ଏଇ କୋଠାରେ କେଉଁଠି ନିଶ୍ଚୟ ଥିବେ ।"

ଲୀଜା କହିଲା "ଭଗବାନ ସେଇଆ କରନ୍ତୁ । କିନ୍ତୁ କଥା ହେଲାଣି କେଉଁ ମହଲାକୁ ସେ ଯାଇଥିବେ ? ଲିଫ୍‌ଟ ତ ସବୁ ମହଲାରେ ରହି ରହି ତଳକୁ ଯିବ । ଆଚ୍ଛା ଆସ ।"

ଅନ୍ୟ ଗୋଟିଏ ଲିଫ୍‌ଟରେ ସେମାନେ ତଳ ମହଲାକୁ ଗଲେ । ବୁଲିବୁଲି ଦେଖି ପୁଣି ତଳକୁ । ପୁଣି ତଳକୁ । ଆଇଲୀନ୍ କହିଲା "ଚାଲ ଦେଖୁଁ

ଦୋମାହାଲର ହଲ୍ ଘରେ, ବହୁତ ଲୋକ କଫି ପିଉଥିବେ, ଆରାମ୍ କରୁଥିବେ, ଦେବ୍ ବି ଥାଇପାରେ ସେଇଠି ।"

ଲଜା ଥଟ୍ଟା କରି କହିଲା "ଆଚ୍ଛା ତୋର ଦେବ୍ ଦେବ୍, ସତେ ଯେମିତି ସେ ସବୁ ଜାଣେ !"

ଦୋମାହାଲରେ ବଡ଼ ହଲ ଘର । ଲୋକ ଭର୍ତ୍ତି । ସେମାନେ ଗପୁଛନ୍ତି, ମଦ, ଚାହା, କଫି, ଜଳଖିଆ ଖାଉଛନ୍ତି, ଯାହାର ଯାହା ଇଚ୍ଛା । ଏଇ ଅଧଘଣ୍ଟା ଟି ଏ ଘରେ ଅନେକ ରହିଥାନ୍ତି, ଶ୍ରେଣୀ ବିଭାଗ ନ ଥାଏ । କାମରୁ ଛୁଟି ଟିକିଏ ମିଳେ ଏତିକିବେଳେ, ଏଠି ସେମାନଙ୍କର ଅଳସ ଭାଙ୍ଗିବା, ଫୂର୍ତ୍ତି କରିବା ଜାଗା ।

ଧାଡ଼ ଧାଡ଼ ଟେବୁଲ ଚୌକି ମଝିରେ ତିନିହେଁ ଚାଲିଲେ ଘର ମଝିକୁ । ଲଜା ଡାକିଲା "ଦେବ୍ ! ଦେବ୍ !" ଖଣ୍ଡେ ଦୂରରେ ଜଣେ ଯୁବକ ମୁହଁ ଟେକିଲା । ତା ଚାହାଣୀ ପଟୋଉଣୀ ମୁହଁ ଉପରେ ପଡ଼ିଲା ମାତ୍ରେ ସେ ଟିକିଏ ଚମକି ପଡ଼ିଲା । ତା ମୁହଁର ଭଙ୍ଗୀ ବଦଳିଯାଇ ଆସିଲା ସତର୍କ ଭୟର ଚାହାଣୀ । ଆଇଲାନ୍ ତା ବି ଲକ୍ଷ୍ୟ କଲା । ପୁଣି ଦେଖିଲା ମୁହୂର୍ତ୍ତିକେ ସେ ମୁରୁକି ମୁରୁକି ହସିଲା । ତାର ସାଧାରଣ ଭଙ୍ଗୀ ଲେଉଟି ଆସିଲା । ସେହି ଆଡ଼କୁ ହାତ ବଢ଼ାଇ ପଟୋଉଣୀ ଇଂରେଜିରେ ପାଟିକଲା "ହେଇଟି ସେ ଏଠି ।" ତରତର ହୋଇ ଆଗେ ଆଗେ ସ୍ୟାଡ଼୍କୁ ମାଡ଼ ଯାଇ ଓଡ଼ିଆରେ ପାଟିକଲା "ହଇଓ !" ପାଖକୁ ଯାଇ କହିଲା "କାହା ହଉଚ କଣ ? ଗୁଣମାସ ହେଇଗଲା, ଥରେ ଖଣ୍ଡେ ଦେଲ ନାହିଁ । ତମକୁ ଖୋଜିବାକୁ ନିଜେ ଆଇଲି ପରା । ଆସ ଯିବା ।" ଲଜା ଓ ଆଇଲାନ୍ ଆଶ୍ଚର୍ଯ୍ୟ ହୋଇ ସେ ଦୁହିଙ୍କ ମୁହଁକୁ ଚାହିଁଥାନ୍ତି । ଦେଖୁଛନ୍ତି, ପଟୋଉଣୀ ଖୁସିରେ ତେଜି ଉଠିଲାଣି । ଦେବ୍ ବିସ୍ମିତ ହେଲା ପରି ତା ମୁହଁକୁ ଚାହିଁ ଠିଆ ହୋଇଛି, କଣେଇ କଣେଇ ସେ ଦୁହିଙ୍କ ମୁହଁକୁ ଅନେଇ ଦେଉଛି ।

"ପାଟି ଫିଟେଇବ ନାହିଁ ? ଚାଗିଛ ?" ପଟୋଉଣୀ ହସି ହସି ପଚାରୁଛି ।

ଗମ୍ଭୀର ମୁହଁ କରି ଦେବ୍ କଥା କହିଲା, ଆଗ ପଟୋଉଣୀକୁ, ଇଂରାଜୀରେ, "କିଏସେ ଆପଣ ଭଦ୍ରମହିଳା ? କି ଭାଷାରେ କହିଲେ ? କଣ କହିଲେ ?" ତାପରେ ଲଜାକୁ ଆଇଲାନ୍‌କୁ "କିଏ ସେ ? ମୋ ସଙ୍ଗେ କଣ ଲେଡ଼ା ?"

ଲଜା ଗମ୍ଭୀର ହୋଇ କହିଲା "ତାଙ୍କ ସ୍ୱାମୀ କେଉଁ କାନାଲଚଣ୍ଡ୍ ଶର୍ମା କୁଆଡ଼େ ଏଠି କାମ କରନ୍ତି—"

ଉପରେ ପଡ଼ି ପଚାରିଲା "ଓ ! ସେଥିପାଇଁ ତୁମେ ପଚାରୁଥିଲ କି ସେ କ୍ୟାନାଡିଜ୍ ଭଦ୍ରଲୋକ ଶର୍ମାଙ୍କ କଥା ?"

"ହଁ ଦେବ୍—"

ତା କଥା ମଝିରେ ପଠୋଉଣୀ ଇଂରାଜରେ ଚିତ୍କାର କଲା "ଦେବ୍ ! ଦେବ ! ତୁମେ ଏଠି ଦେବ ବୋଲାଉଛ ! ତୁମେ ବାହା ହେଉଛ ଏ ଝିଅକୁ ! ହା ଭଗବାନ ! ଆମେ ତୁମର କି ଅପରାଧ କଲୁଁ ? ମୁଁ ତୁମ ବାଟ ଚାହିଁଛି, ତୁମର ଝିଅ ବର୍ଷେ ଅନେଇଛନ୍ତି ବାପା ଆସିବ । କହ, ଏ କି ପାପ ? କାଙ୍ଗାଳି-ଚରଣ ଦେବତା ଶର୍ମା ହୋଇସାରି ହେଲଣି ଦେବ୍ !" ସେ କାନ୍ଦ ପକେଇଲା । ଆଉ ଡକାଣ ପାଟିକଲେ "ଦେବ୍ ! ଦେବ୍ !' 'କେତେ ଲୋକ ଚଉକି ଠେଲିଦେଇ ଉଠିପଡ଼ି ଆଗେଇ ଆସିଲେ । ଶୁଭିଲା "କଣ ହେଲା ? କଣ ହେଲା !" ଗମ୍ଭୀର ହୋଇ ଦେବ୍ ଇଂରାଜରେ କହିଲା "କି ହଠାହଠା କଥା ! ମୁଁ କେବେ ବାହା ହେଲି ଓ ଝିଅଙ୍କ ବାପା ହେଲି ? ଆପଣ ଏସବୁ କି ଅଦ୍ଭୁତ କଥା କହୁଛନ୍ତି, ମୋ ଇଜ୍ଜତ ହାନି କରୁଛନ୍ତି ଆଜ୍ଞା ? ଆପଣଙ୍କର ନିଶ୍ଚୟ ଭ୍ରମ ହୋଇଛି ନ ହେଲେ ମୁଣ୍ଡ ବିଗିଡ଼ିଛି । ମୋ ନାଁ କାର୍ତ୍ତିଦେବ୍, ମୁଁ ଆପଣଙ୍କୁ କେବେ ଚିହ୍ନିନାହିଁ କି ଦେଖି ନାହିଁ ।"

କାନ୍ଦ କାନ୍ଦ ପଠୋଉଣୀ କହିଲା "ହଉ, କାର୍ତ୍ତିଦେବ୍ ହୋଇଥା, କାର୍ତ୍ତି କର, ବାପ ଅଜାଙ୍କ ନାଁ ପକାଅ, ମୁଁ ଯାଉଛି, ଫଳ ପାଇଗଲ ।" କହିଁ କହିଁ ହୋଇ କାନ୍ଦ ପକାଇ କହିଲା "ଟାଉଛି ଥାଅ ।"

କେତେ ଲୋକ ତା ପାଖକୁ ଆସିଲେ । ପଚାରୁଛନ୍ତି କଣ ହେଲା ? କଣ ହେଲା ? ସେ ଜବାବ ଦେଉ ନାହିଁ । ଆସ୍ତେ ଦହାଡ଼ ହଲେଇ ବାଟ ଆଡ଼େଇଉଛି । କେତେ ଲୋକ ଘେରି ଗଲେଣି ଦେବ୍‌କୁ, ପଚାରୁଛନ୍ତି ଏସବୁ କି କଥା । ଦେବ ବୁଝେଉଛନ୍ତି । କୁଆଡ଼ର ପାଗଳୀ ସ୍ତ୍ରୀଲୋକଟିଏ ଆସି ତାଙ୍କୁ କହୁଛି ତୁ ମୋର ସ୍ୱାମୀ ତୋର ଝିଅ ତତେ ଅନେଇଁଛନ୍ତି । ଆଚ୍ଛା ମଣିଷ, କହିଲେ ବୁଝୁ ନାହିଁ । ପଚାର ଏ ଲୋକାକୁ । ଲୋକା ବୁଝେଉଛି । "କାଲଠୁଁ ସେ ଆସିଲଣି, ଅଇଲାନ୍ ଘରେ ରହୁଛି, କହୁଛି ସ୍ୱାମୀକି ଖୋଜି ଆସିଛି । ସ୍ୱାମୀ ନା କାଙ୍ଗାଳିଚରଣ୍ ଶର୍ମା, ଘର ଓଡ଼ିଶା ଏଠି ଚାକିରି କରେ, କଣ ସୁପର ଏକ୍‌ଜିକ୍ୟୁଟିଭ୍ ଚାକିରି । ବର୍ଷମାସ ହେବ ସ୍ୱାମୀ ଚିଠି ଦେଉନାହିଁ, ତେଣୁ ସେ ଓଡ଼ିଶାରୁ ଏତେ ବାଟ ଖୋଜି ଆସିଛି । ଆମେ କହିଲୁଁ ଦେବ୍‌କୁ ପଚାରିବା ସେ ବି ଖୋଜିବ । ଓଲଟି ଦେବ୍‌କୁ କହୁଛି ଏଇ ସେ—"

ଦେବ୍ ବୁଝେଉଛି "ନିଶ୍ଚୟ ପାଗଳୀ, ନ ହେଲେ ଏତେ ବଡ଼ ଭୁଲ ହୁଅନ୍ତା କାହିଁକି ?"

ପଠୋଉଣୀ କାନ୍ଦ କାନ୍ଦ ସତେ ଅବା ଝାଞ୍ଜି ପଡ଼ୁଛି, ତାକୁ କୁଣ୍ଢେଇ ଧରି ଆଇଲାନ୍ ନେଇଯାଉଛି । ସ୍ନେହରେ ଫୁସ୍ ଫୁସ୍ କରି କାନ ପାଖେ ଗାଳି ଦେଉଛି "ଛି ଛି ଏତେ ଲୋକଙ୍କ ଆଗରେ । ଏମିତି ପିଲାଙ୍କ ପରି କାନ୍ଦିଲେ ହେବ ନା ? ଲୋକେ କହିବେ ଅଭଦ୍ର, ପାଗଳ । ମୁହଁ ପୋଛ, ଆସ ଚାଲ ମୋ:

ବଖୁରିକୁ ।'' ପଟୋଉଣୀ ଆଖି ଅଧବୁଜା କରିଛି, ମୁହଁ ତଳକୁ ପୋତିଛି । ଆଇଜାକ୍ ପଟିଛ ପଛେ କାଠ କଣ୍ଢେଇ ପରି ବୁଲୁଛି । ଘରେ ପଶି କବାଟ ଭଜା ଟାଣ ହୋଇ ଆଇଜାକ୍ କହିଲା,

"ଶେଷରେ ବଟର ଦେବ୍‌କୁ ଧରି ପକେଇଲ ତୁମ ସ୍ୱାମୀ ବୋଲି । ଆଶ୍ଚର୍ଯ୍ୟ ।''

କାନ୍ଦୁ କାନ୍ଦୁ ପଟୋଉଣୀ କହିଲା "ସେ ଦେବ୍ ନୁହେଁ, ସେଇ ମୋ ସ୍ୱାମୀ । ପୈତୃକ ନାଁ କାଙ୍ଗାଲି ଚରଣ ଦେବତା, ବ୍ରାହ୍ମଣ ବୋଲି ଲେଖନ୍ତି ଶର୍ମା । ଘର ଛାଡ଼ି, ଷଷଜା ଛାଡ଼ି, ପୁଅ ଝିଅ ବାହାଙ୍କି ଛାଡ଼ି ସେ ଏଠି ହୋଇଛନ୍ତି କାର୍ତ୍ତିଦେବ, ତୁର୍କିଲ । ପୁଣି ବଡ଼ହେବେ । ହଉନୁ ।''

"ତୁମେ କହୁଛ ଜାଣି ନାହିଁ ଭଉଣୀ, ଦେବ୍ କେବେ ଓଡ଼ିଶା ଦେଖି ନାହିଁ । ଘର ରାଜସ୍ଥାନ, କ୍ଷତ୍ରିୟ, ପଢ଼ିଲା ଇନ୍ଦୋରରେ ଆଉ ଆମେଦାବାଦରେ । କାମ କରୁଥିଲା ହରିଆନାରେ, ବଦଳି ହେଲା ଏ ଦୂର ଦକ୍ଷିଣକୁ । ମତେ ସବୁ କହିଛି । ଲଜ୍ଜିତ ହେଲା ପରି କହିଲା, "ହଁ ମୁଁ ତାର ସବୁ କଥା ଜାଣେ । ଆଗ ମୋ ପାଖକୁ ହିଁ ବେଶି ଆସୁଥିଲା ତ, ସେଇଠୁ ଲୀଳା ସଙ୍ଗେ ବାହାଘର ପ୍ରସ୍ତାବ । ଲୀଳା ମୋର ଅତି ଆପଣାର ।''

"ଆଉ ତୁମ ଦେବ୍ ତୁମମାନଙ୍କ ପାଖେ'' ପଟୋଉଣୀ କହିଲା, "ତାର ଇଚ୍ଛା ନାହିଁ ତ ତାକୁ ମୁଁ ତୁମମାନଙ୍କଠୁ ଛଡ଼େଇନେବାକୁ ଆସି ନାହିଁ । ମୋ ସ୍ୱାମୀ କେବେ ଇନ୍ଦୋର କି ଆମେଦାବାଦ ଯିବାର ମୁଁ ଜାଣି ନାହିଁ । ସେ ପଢ଼ୁଥିଲେ ରେଭେନ୍‌ସା କଲେଜରେ କଟକରେ, ମୁଁ ଏମ୍. ଏ.ରେ ନାଁ ଲେଖାଇଲା ବର୍ଷ ସେ ଏମ. ଏ. ପାଶ୍ କଲେ । ମୋ ଆସିବା ଉଦ୍ଦେଶ୍ୟ ସଫଳ ହୋଇଛି । ମୁଁ ତାଙ୍କୁ ଦେଖିଲି, ଭଲ ଅଛନ୍ତି ଦେଖିଲି, ଆଜି ତ ମୁଁ ପଞ୍ଜ ଗାଡ଼ିରେ ନିଶ୍ଚୟ ଫେରିଯିବି । ପିଲାଏ ପଚାରିବେ, ଲୋକେ ପଚାରିବେ; କଣ କହିବି ଯେ !'' ପୁଣି ସେ କାନ୍ଦିଲା ।

ଆଇଜାକ କହିଲା "ଅସମ୍ଭବ କଥା । ଅସମ୍ଭବ କଥା ।'' ପୁଣି ସାନ ପିଲାଙ୍କୁ ଆଦେଶ ଦେଲା ପରି କହିଲା ।

"ଦେଖ ଭଉଣୀ । ମଣିଷ ହୋଇଥିଲେ ନିଜର ଦୁଃଖ ଛାତି ଭିତରେ ଚାପି ଲୁଚେଇ ରଖିବାକୁ ପଡ଼େ । ଦୁଃଖ ହିଁ ଆମ ମଣିଷଙ୍କର ଚରମ ସମ୍ପଦ, ଶ୍ରେଷ୍ଠ ସମ୍ବଳ, ଅତି ଗୋପନ, ନିଭୃତ, ଆପଣାର । ଦୁଃଖ ହିଁ ଆମ ଜୀବ । ପଦାରେ ଦେଖେଇଲେ ମର୍ଯ୍ୟାଦା ଯାଏ । ମୁଁ କହୁଛି । ଆଗ ପଶ ଏ ଗାଧୁଆ ଘରେ, ମୁହଁ ସଫା କର, ବାଳ କୁଣ୍ଡା, ଲୁଗା ସଜାଡ଼ ସବୁ ପ୍ରସାଧନ ଉପକରଣ ଅଛି, ବ୍ୟବହାର କର, ତାପରେ ହସି ହସି ପଦାକୁ ବାହାର, ତାପରେ କର୍ଣ୍ଣ, ଯାଅ—''

ସତକୁ ସତ ପନ୍ଦର ମିନଟ୍ ପରେ ସେ ଟିକିଏ ସଚେତନ ହୋଇ ପଦାକୁ ବାହାରିଲା । କଫି ଆସିଲା । ଦିହେଁ କଫି ପିଇଲେ ।

ତାହାରେ ସଚେତନ ହେଲେ ବି ପଟୋଉଣୀର ମନ ଭିତରେ ହା' ପଶି ଯାଇଥାଏ, ବକା ହୋଇ ବସିଥାଏ । ଯେତେବେଳେ ମଝିରେ ମଝିରେ ମନ ଭିତରେ କିଛି ଭାବ ହେଉଥାଏ ସେ ଭାବୁଥାଏ "ଏ କଣ ହେଲା !" ଖାଲି ଏଇ ଜନପଦ । ତାର ଲକ୍ଷ୍ୟ ଧରି ଉତ୍ତର ଘୂରୁଥାଏ—"ମୋ ଆଖି କଣ ଭୁଲ୍ ଦେଖିଲା ? ତାଙ୍କର ପରି କିନ୍ତୁ ସେ ନୁହନ୍ତି, ଏଇଆ କଣ ସତ ? ନା ସତେ କଣ ମୁଁ ପାଗଳ ? ଭାବୁଛି ମୁଁ ପାଗଳ ନୁହେଁ, କିନ୍ତୁ ପ୍ରକୃତରେ ପାଗଳ ? ନା ସେ କଣ ବଦଳି ଗଲେ ? ମଣିଷ କଣ ଏତେ ପିଶାଚ ବି ହୁଏ ? କିନ୍ତୁ ଯାହାହଉ; ମତେ ଦମ୍ଭ ହେବାକୁ ପଡ଼ିବ—ସ୍ନେହ ପରି କହୁଥିଲା ଆଉ ଖୋଜିବ, ନାଁ ଗାଁ ଠିକଣା ଖୋଜିବ···ଆଉ କି ଖୋଜା ? ···ଯାହା ପାଇଁ ଏତେ କଥା ଶେଷରେ ସେ ଏଇଆ କଲା ! ଦମ୍ଭ ଧରିବାକୁ ପଡ଼ିବ, ଆହା ପିଲା ଦିଟି !"

ଆଇଲାନ୍ କହିଯାଉଛି, "ମଣିଷର ଏଭଳି ଭୁଲ ବି ହୋଇଥାଏ । ତୁମେ ତୁମ ସ୍ୱାମୀ କଥା ହିଁ ସବୁବେଳେ ଭାବୁଛ, ଆଖି ଆଗରେ ତାଙ୍କର ରୂପ ହିଁ ନାଚୁଛି । ଯେଉଁଠି ତାଙ୍କ ଚେହେରା ସଙ୍ଗେ ସାମାନ୍ୟତମ ସାଦୃଶ୍ୟ ପାଇଲ । ତୁମ ମନ ଭାବିଲା ସେଇ ଗୋଟା ସୁଦ୍ଧା ସେ । ହୁଏତ ଦେବ୍ ଚେହେରାରେ ସେମିତି କିଛି ଥିବ । ସାଦୃଶ୍ୟ ନଥାଇ ସୁଦ୍ଧା ଭାବୁଥିବା ରୂପ ପଦାରେ ଦେଖିଲା ଭଳି ଲାଗିବା ଅସମ୍ଭବ ନୁହେଁ । ଗୋଟାଏ ରୂପକୁ ଭାବି ଭାବି ଚାରିଆଡ଼େ ସେଇ ରୂପ ଥିବାପରି ଦିଶିପାରେ । ତୁମେ ବହୁତ କଷ୍ଟ ଭୋଗିଲଣି, ସ୍ୱାମୀ କଥା ଭାବି ଭାବି ଏତେ ପର । ଦେବ୍ ବଚନ ଭାରି ବିଚିତ୍ର ହୋଇଥିବ । ଲୀଳା ବି । ତୁମର ଦୋଷ ନାହିଁ । ତୁମେ କଣ ଜାଣିକରି ଭୁଲ୍ କଲ ଯେ ଦୋଷୀ ହେବ ? ଅପ୍ରାଧିକର । ତେବେ ସେମାନେ ବୁଝିବା ଉଚିତ୍ । ତୁମ ସ୍ୱାମୀଙ୍କ ବିଷୟରେ ଅନୁସନ୍ଧାନ ଚାଲିଛି । ଖାତାପତ୍ର ଦେଖି ମତେ ଖବର ଦେବାକୁ ମୁଁ ସମ୍ପୃକ୍ତ କର୍ମଚାରୀମାନଙ୍କୁ କହି ଦେଉଛି । ଅବଶ୍ୟ ଏ କୋଠାରେ ଯଦି ସେ ଥିବେ । ନହେଲେ କାଲି ମୁଁ ଆଉ ଦୁଇ କୋଠାକୁ ଯାଇ ଲୋକଙ୍କୁ ଭେଟିବି । ତୁମେ ଆସିବା ଦରକାର ନାହିଁ, ଘରେ ରହିବ ।" ପଟୋଉଣୀଙ୍କୁ କିଛି ଶୁଭୁ ନ ଥାଏ । ମନରେ ଦୁଇଟା କଥା । "ମୋର ଏଇଆ ହେଲା ଶେଷରେ ? ନା ନା ଦମ୍ଭ ହେବ ।"

ଆଇଲାନ୍ ଗମ୍ଭୀର ହେଲାପରି ଦିଶୁଥାଏ । କଥା କହୁଛି କିନ୍ତୁ କଥାରେ ସରସତା ନାହିଁ । ଯୁକ୍ତି ଦର୍ଶାଉଛି କିନ୍ତୁ ଯୁକ୍ତିରେ କେଉଁଠି ଶିଥିଳତା ଆସିଲାଣି । ଯେତେ ଭାବିଲେ ମନେ ପଡ଼ୁନାହିଁ ଯେ ଅଡ଼ୁଆଟା କେଉଁଠି । ମନେ ପଡ଼ିଗଲା । ଦେବ୍ର ସେ ମୁହୂର୍ତ୍ତିକର ବଦଳିତ ଭାବ, ଯେତେବେଳେ ଏ ଦୁଇଟି ସହିତ ସେ ମୁହାଁମୁହିଁ ହୋଇଥିଲା, ସେହି ଟିକିଏ କେମିତି ଚମକିଲା ପରି, ଥରେ କେମିତି ଭୟ ।

"ନା ସେଇଟା ମୋ ନିଜ ଆଖିର ଭ୍ରମ ? ଦିବସ୍ୱପ୍ନ ଭ୍ରମ ।" ତଥାପି ତାକୁ ଅଡ଼ୁଆ ଅଡ଼ୁଆ ଲାଗୁଥାଏ । କେତେବେଳେ ନିଜ ଅଜାଣତରେ ଆଖି ଯାଇ ଭରା ଦେଉଥାଏ କାନ୍ଥର ସେ ଛବିଟା ଉପରେ । ଦେବ୍ କଥା ମନେ ପଡ଼ୁଛି । ଖାଲି ଚମକିଲ ସେତିକି ନୁହେଁ । ଏ ସ୍ତ୍ରୀ ଲୋକ କହୁଛି ଜଣେ ଦେବବ୍ରତ ଥିଲ ଶର୍ମା ହେଲ, ଏ ଜଣକ ଦେବ୍ । ଏ ସ୍ତ୍ରୀଲୋକଟି କହୁଛି ଯେ ଆଠମାସ ହେଲା ଆସିଲାଣି ଦେବ୍ କେବେ ଦ୍ୱରଆନାକୁ ଆସିଲା ? ଗତଣ । ହଁ ଆଠମାସ ବି ହେବ । କାହିଁ ଓଡ଼ିଶା ଆଉ କାହିଁ ରାଜସ୍ଥାନ ! ଅସମ୍ଭବ । ଦେବ୍ । ଦେବ୍ ତାର କଣ ? ଦୀର୍ଘଶ୍ୱାସ ପକାଇଲା । ଦେବ୍ ଆଉ ଦେବବ୍ରତ ଶର୍ମା । କିନ୍ତୁ ଦେବ୍‌କୁ କଣ ସେ ଚିହ୍ନି ନାହିଁ, ତା ଭିତର ଆଉ ବାହାର ? ମନ ଭିତରୁ କିଏ ଯେପରି କହୁଛି, ଦେବ୍ ପାନେ ପାଉ । ପୁଣି ସେ ଉଦ୍‌ଭଟ ଚିନ୍ତାକୁ ଦାବୁଛି । 'ଆହା ବିଚରା ଦେବ୍ ।' ଆଉ ଏ ବିଚରା ସ୍ତ୍ରୀଲୋକଟି, ତାର ଦୁଃଖ କଣ ମିଛ ? କିନ୍ତୁ ତାର ଚିନ୍ତାଟ ଦିବସ୍ୱପ୍ନ ଭୁଲ୍ । ହୁଏତ କାନାଳଚର୍ଣ୍ଣ ଶର୍ମା ଏଠି କେହି ନାହିଁ, ଆଉ କେଉଁଠି ଥିବ । ଯେଉଁଠିଥାଉ ସେ ଗୋଟିଏ ଅମଣିଷ । ସଂସାରରେ ମଣିଷ ବି ରହିବେ ଅମଣିଷ ବି ରହିବେ । କିନ୍ତୁ ଏ ସ୍ତ୍ରୀଲୋକ ଗୋଟାଏ ପୁରୁଷକୁ ଏତେ ଭଲ ପାଇବ କାହିଁକି ?

ତେଣୁ ଭାବୁଥିବ ସେ ଭଲ ପାଇବା ଯୋଗୁଁ ଶାସ୍ତି, କେହି ରକ୍ଷା କରି ପାରିବେ ନାହିଁ । ନାକ ଟେକି ଦେଇ ଆଇଲାନ୍ ମମ୍‌ପିଲ୍ଲୀ ତା ଚିନ୍ତାକୁ କବାଟ କିଳି ପଦାରେ ରଖିବାକୁ ଚେଷ୍ଟା କଲା । ଫାଇଲ୍ କାମରେ ମନ ଲଗାଇଲା ।

ସାଢ଼େ ଦଶ । ଟେଲିଫୋନ୍ ବାଜିଲା । କାନରେ ଦେଉ ଦେଉ ମମ୍‌ପିଲ୍ଲୀ ପଥର ହୋଇଗଲା । କଣ କହି ଆସୁଥିଲା କହିଲା ନାହିଁ । ପଟୋଇଣୀ ଆଡ଼କୁ ଗୋଟାଏ ଚଞ୍ଚଳ ଗୃହାଣୀ ଗ୍ରୁଟି ଦେଇ ସ୍ତବ୍ଧ ହୋଇ ଖବର ଶୁଣିଲା । ହଲ୍ ଘରର ବଘଟନ ସମ୍ବାଦ ମିଷ୍ଟର୍ ପିଶାରୋଟିଙ୍କ କାନରେ ପଡ଼ିଥିଲା । ସେ ଦେବର ସହକର୍ମୀ ଉଚ୍ଚତର ପଦ ପାଇଁ ଦେବର ପ୍ରତିଦ୍ୱନ୍ଦ୍ୱୀ । ନିଜେ ସେ ଗଲେ ମିଷ୍ଟର ଘୋଷପାଣ୍ଡେଙ୍କ ପାଖକୁ । ଘୋଷପାଣ୍ଡେ କର୍ମଚାରୀ ନିଯୁକ୍ତି ବିଭାଗର ଉପଦେଶକ । ତା'ପରେ ଦେବର ନଥି ଦେଖାଗଲା । ଓଡ଼ିଶାର ଲୋକ । ଓଡ଼ିଶାରୁ ହିଁ ବଦଳି ହୋଇ ଆସିଛି । ତା ନାଁ କାଙ୍ଗାଳଚରଣ ଶର୍ମା । ଆସିଲା ପରେ ଆଫିଡ଼ାଭିଟ୍ କରି ନୂଆ ନାଁ ନେଇଛି 'କାନ୍ତିଦେବ' । ପିଶାରୋଟି ପୁରା ସମ୍ବାଦଟି ଘରଆଡ଼େ ପ୍ରଚାର କରିଦେଲେ । ହଲ୍‌ଘରେ ବହୁତ କର୍ମଚାରୀ ଏକାଠି ହେଲେ । ସ୍ୱୟଂ ଜଣେ ବଡ଼ ଉପଦେଶକ ମିଷ୍ଟର ଗଉଡ଼୍ ହେଠିକି ଦେବକୁ ଡକେଇ ନେଲେ, ପିଶାରୋଟି ଡକେଇ ନେଲେ ଲୀଳାକୁ । ସେଇଠି, ଦେବକୁ ପଚରାଗଲା, ସେ ଲୀଳାକୁ କ୍ଷମା ମାଗିଲା । ସମସ୍ତଙ୍କୁ କ୍ଷମା ମାଗିଲା । ତଥାପି ଲୋକଙ୍କ ରାଗ ଅଟକିଲା ନାହିଁ । ଓଃ, କି ଭୟଙ୍କର ରାଗ । ହେଲା ମାଡ଼ । ଖୁବ୍ ।

ସିଶାଗ୍ରେଟି ନ ଥିଲେ ତ ଦେବ୍‌କୁ ଲୋକେ ମାରି ପକେଇଥାନ୍ତେ । ନୀଳା ପାଗଳ-ପର କାବା ହୋଇଯାଇଛି । କର୍ଟୀ ତାକୁ ତ ବଖୁସ୍କୁ ନେଇ ଯାଉଛି । ଟେଲିଫୋନ୍‌ରେ କହୁଛି ପେଗୀ । ସେ ବି ସେଠି ଥିଲା । ନୀଳା ସଙ୍ଗେ କର୍ଟୀର ବଖୁସ୍କୁ ଆସି ଫୋନ୍ କରୁଛି ।

ବହୁ କଷ୍ଟରେ ଆଇଲାନ୍ ତାର ଲୁହ ସମ୍ଭାଳିଲା । ଲାଗିଲା ଦୁନିଆ ଓଲଟ ପାଲଟ ହୋଇଯାଉଛି । ପଡୋଶଣୀଙ୍କ କିଛି ନ କହି ଧଡ଼୍‌କିନା ଉଠିପଡ଼ି ସେ କବାଟ ଖୋଲି ପଦାକୁ ବାହାରିଗଲା । ମନ ଭିତର କାନ୍ଦି ଉଠୁଛି "ନୀଳା ! ନୀଳା !"

ଦୃଢ଼ତା ବାଜିବ କବାଟ ଖୋଲିଲା । ଭିତରେ ପଶି କବାଟ ଆଉଜେଇଲା ତାର ସ୍ୱାମୀ । ଦୁଲିପଡ଼ ଠିଆ ହେଲା । ମୁଣ୍ଡବାଳ ଅଲଗା । ଦେହ ସେଥି ଦିଶୁଛି । ଡାହାଣ ଆଖି ଉପର ଫୁଲିଛି ! ବାଁପଟ କପାଳରେ ଆବୁ ଓ ରକ୍ତ । ଗାଲ ଠାଏ କଟି ଯାଇଛି । ଆଖି ନାଲି ପଡ଼ିଛି । ଆସ୍ତୁ ଆସ୍ତୁ କହିଲା "ଲାଲ ପିବା" । ସ୍ୱରରେ ବିରକ୍ତି ଓ କ୍ଳାନ୍ତି । ପଡୋଶଣୀ ତାକୁ ଡରି ଡରି ଅନାଇଲା କିଛି କହିପାରିଲା ନାହିଁ । ରୁନତାନ ତା ପଛେ ପଛେ ଗଲା ।



# ରଣାକୁହୁଡ଼

ସନ୍ଧ୍ୟା ଘର ଝଲୋଉଥିଲା । ସାନ ଆଲମାରୀ ଉପରେ ଟାଇମ୍‌ପିସ୍ ଘଣ୍ଟାଟିଏ ଥୁଆହୋଇଛି, ତା ଟିକଟିକ ମଧ୍ୟ ପଡ଼ିଗଲାଣି । ସେଇଟା କୁଆଡ଼େ ତାଙ୍କ କଲେଜ ବନ୍ଧୁ ଅଛି । ଦଶଟା ବାଜିଲାଣି । କ'ଣ କରୁଥିବେ ସେ ?

ଥରେ ଅଧେ ସେ ଲଜକୁଳା ହୋଇ ତାଙ୍କୁ କହୁଛି, "ତୁମ ଅଫିସ୍ ଭିତରଟା କେମିତି ଥରେ ଦେଖାନ୍ତ ନାହିଁ ? ତୁମେ ଯେଉଁଠି ବସ, କାମରେ— ଦିନରେ ସିନା ଲୋକ, ରାତିରେ ଯାଇହୁଅନ୍ତା ନାହିଁ ?"

ସେ ହସିଦେଇ କହୁଥିଲେ, "ହୁଣ୍ଡୀ ଆଉ ଗଛରେ ଫଳନ୍ତି କି ?"

ତାର କୁତୂହଳ ହୁଏ କେତେ କଥା ଜାଣିବାକୁ, କେମିତି ତା ସ୍ୱାମୀ ତାଙ୍କ ନିଜର ଓ ତା'ର ଉଜ୍ଜ୍ୱଳ ଭବିଷ୍ୟତ ଗଢ଼ୁଛନ୍ତି । ନିଶ୍ଚୟ ଗଢ଼ୁଛନ୍ତି, ସେଥିରେ ତା'ର ସନ୍ଦେହ ନାହିଁ । ସେ ନିଜେ ତ ବୁଝାନ୍ତି, ସକାଳେ ଓ ରାତିରେ ଖାଇ ବସିଲାବେଳେ—ଅନ୍ୟବେଳେ ତାଙ୍କ ଗପସପ ହେବାକୁ ସମୟ ନଥାଏ, ବଜାର କରି ନଗଲେ ବହି ପଢ଼ୁଥାନ୍ତି, କ'ଣ ଲେଖୁଥାନ୍ତି, କହନ୍ତି, କାଲିର କାମ ଏସବୁ । ସେ ବୁଝାନ୍ତି—"ଆମର ସାହା ଭଗବାନ, ଆଉ ଆମେ ନିଜେ । ଭବିଷ୍ୟତଟା ଗଢ଼ିବାକୁ ପଡ଼େ ନିଜକୁ । ଆଜି ଆଗ ଖାଲି ପରିଶ୍ରମ, ଖାଲି ଖେଣ୍ଟିଖାଣ୍ଟି ଚଳି କାମ କରିବାକୁ ପଡ଼ିବ । ମନ ଛକପକ ହେଉଥିବ, ଅଭାବ ଅସୁବିଧା ଦେହ ଘୋଳା ବାଧୁଥିବ । ସବୁ ପଛକୁ ପକାଇଦେବା, ଧୈର୍ଯ୍ୟଧରି ଅପେକ୍ଷା କରିବା, ଦିନ ଦିନକର କାମର ଫଳ ଏକାଠି ଠୁଳ ହେବ, ଆଖିଦୁରୁଣିଆ ହେବ, ସେତେବେଳେ ତୁମେ ବୁଝିବ ମୋ କଥା ସତ କି ମିଛ । କାହାର ଛଇଟଙ୍କ କାହା ବଢ଼େଇ ବଡ଼ଲୋକି ଦେଖି ଆମେ ହନ୍ତସନ୍ତ ହେବା ନାହିଁ, ଆମେ ଉନ୍ନତ କରିଯାଉଥିବା ନିରବରେ, ଖାଲି କାମ ଓ କାମର ଗୁଣବଳରେ, ତୁମେ ଦେଖିବ ।"

"ହେଉ, ଭଗବାନ ଉନ୍ନତ ଦେଲେ ଉନ୍ନତ ହେବ, ତୁମେ ସେଥିପାଇଁ ଧଇଁସଇଁ ହୋଇ କାମ କରନା, ଦେହଟା ଭଲ ଥାଉ, ମନ ଖୁସି ଥାଉ ।" ସେ କହେ ।

ସେ ତାଙ୍କୁ କି ଉପଦେଶ ଦେବ ? ସେ ତ ତାଙ୍କୁ ପୂଜା କରେ । ବୟସରେ ତାଠୁ ଆଠ ବର୍ଷ ବଡ଼, ତାକୁ ଡରେଇଲାଣି, ତା ସ୍ୱାମୀ ଧନଞ୍ଜୟଙ୍କୁ ସତେଇଲାଣି । ପାଠରେ ସେ ନିଜେ ଗାଁ ଇସ୍କୁଲରେ ମାଇନର ପାସ୍ ତା ସ୍ୱାମୀ ଏମ. ଏ. । କୃତାର୍ଥ । ଆକାରରେ ତା ସ୍ୱାମୀ ତାଠୁଁ ଗୋଟିଏ ଖଣ୍ଡେ ଉପରେ, ଦିଶନ୍ତି ସରୁଆ ସିନା,

ହାତ, ଗୋଡ଼ ସତେ କି ଲୁହାରେ ଗଢ଼ା, ଠିଆହେଲେ ଏକ୍‌ଦମ୍ ସିଧା, ଚାଲିଲେ କେଡ଼େ ଦମ୍ଭ ଆଉ ସ୍ଫୂର୍ତ୍ତି, ବର୍ଣ୍ଣରେ ଶ୍ୟାମଳ, ତାକୁ ଲାଗେ ତାଙ୍କ ବର୍ଣ୍ଣ କେଡ଼େ ସୁନ୍ଦର ମଧୁରିଆ ସେ ମୁହଁ ।

ସଂହିତା ସେ ମୁହଁକୁ ବାରମ୍ବାର ମନେପକାଏ, ଗର୍ବ ହୁଏ ସେ ତା'ର ପାଇଁ, ଗୋଟା ଦୁଇଟା ତା'ର ସମ୍ପତ୍ତି । ଓସାର ଉଚ୍ଚ କପାଳ, ଅଙ୍କା ହେଲପରି ବଙ୍କେଇ କଳା ଭ୍ରୂଲତା, ବଡ଼ ବଡ଼ ଆଖି, ବଡ଼ ଶୁଆଥଣ୍ଟିଆ ନାକ, ସେ ମୁହଁର ଠାଣି ଅସାଧାରଣ ବୁଦ୍ଧି ଓ ସାହସ ହିଁ ବୁଝାଏ ।

ଥଟ୍ଟାରେ ଗୀତା କହୁଥିଲା, "ତୋ ବରଟା କଳା ଭୂଆ", ଗୀତା ତା'ର ବହିନ । ସେ ହସିଥିଲା, ମନେ ମନେ କହୁଥିଲା, "ଆଉ ତୋ ବରଟା ? ହଳଦୀ ଗରଗର ଯେ, ମାଇଚିଆ ମୁହଁଟାଏ ତ, କ'ଣ ହେବ ?"

ଦିନ ସାଢ଼େ-ଦଶ ନହେଉଣୁ ସଂହିତାର ଏ ଓଳିର ସବୁକାମ ଶେଷ । ଧନଞ୍ଜୟ ଅଫିସରୁ ଫେରୁ ଫେରୁ ଛ'ଟା ବାଜିଯାଏ, ତା ଆଗରୁ ସେ ଜଳଖିଆ ଗଢ଼ିବ, ସେ ପର୍ଯ୍ୟନ୍ତ କାମ ନାହିଁ । ବାରମ୍ବାର ଘର ଓଳେଇବାକୁ ତାକୁ ଭଲ ଲାଗେ, ହାତ ଝଲ ଝଲ ହୁଏ, ତା ସଂସାରଟିକୁ ସେ ଝଟାମଟା କରିବ । ଛୋଟ ବସାଟିଏ, ଏକ ମହଲା କୋଠା, ସାନ ବାଟଘର, ତାକୁ ଲାଗି ଶୋଇବା-ଘର, ତା'ପରେ ଭଣ୍ଡାରଘର ଓ ଆଉ ସାନ ବଖରାଏ—ଠାକୁରଘର । ତା ସେପାଖେ ରନ୍ଧାଘର । ସାନ ଦୁଆରଟିଏ, ସେଠି ଠାକୁରଘର ସିଧା ଚଉରା ଉପରେ ବଡ଼ ତୁଳସୀ ଗଛଟିଏ । କଣକଥା ହୋଇ ଗାଧୁଆଘର । ପାଇଖାନା ନିକଟ ଖଣ୍ଡା ।

ବାହାଘର ପରେ ଶାଶୂ ଶଶୁରଙ୍କ ପାଖେ ଗାଁରେ ଦୁଇମାସ ରହିଲା ପରେ ସେ ଏ ବସାରେ ରହିଲାଣି ସାତ ମାସ, ସ୍ୱାମୀ ସଙ୍ଗେ ଚହ୍ଲାହେବାର ଏଇ ମୋଟେ ଦଶ ମାସ ଚାଲିଛି । ଦଶମାସ !

ଭାବୁ ଭାବୁ ତା ମୁହଁ ଲାଜରେ ନାଲି ପଡ଼ିଗଲା, ଗୁଚ୍ଛାଣି ଉପରେ ମୁଠା ଶିଥିଳ ହେଲା । ଖଟ ଏପାଖ କାନ୍ଥରେ ଗୋଟିଏ ସୁନ୍ଦର ଛବି, ଯଶୋଦା ତାଙ୍କର ନୂପୁରସିଞ୍ଜା, ମୁଣ୍ଡରେ ମୟୂର ପିଞ୍ଛ ଖୋସା ବୁଲୁବୁଲିଆ ପୁଅଟିକ କାଖେଇଛନ୍ତି । ଧନଞ୍ଜୟ ତାକୁ ଥରେ କହିଥିଲା । "ତୁମେ ଜାଣିଛ ? ଏ ଯେଉଁ ଯଶୋଦା ଛବିଟି ସେଇଟି ଅନେକାଂଶରେ ତୁମରି ପରି ଦିଶେ ।"

ସଂହିତା ଠିଆହୋଇ ଝରକା ଆଡ଼କୁ ଅନାଇଁ ରହିଲା । ସେପାଖେ ସଡ଼କ, ଗାଡ଼ି ମଟର ଚାଲିଛନ୍ତି । ସେ ଚାହିଁଥିଲା ଅପଣା ଭିତରର ଶୂନ୍ୟକୁ ।

କେଡ଼େ ବିଚିତ୍ର ମଣିଷଟିଏ ସେ ! ସବୁଥିକି ଏତେ ତୁଷିଆର ଏତେ ମାପଚୁପା ଏତେ ଗୁଡ଼ାଏ ବସ୍ତୁର କ'ଣ ଦରକାର ? ଧୈର୍ଯ୍ୟ, ସଂଯମ, ପରିଣାମ-ଚିନ୍ତା, ବହୁତ ବହୁତ ଅଛି ତାଙ୍କଠି । ଆଶ୍ଚର୍ଯ୍ୟ ଲାଗେ । ଦେ ହେଲେ ପ୍ରଶଂସା କରନ୍ତା ।

ମନକୁ ମନ ହସିପକାଉଥିଲି—କିଏ ପ୍ରଶଂସା କରିବ ? କିଏ ଜାଣିବ ? ସେମିତି ? ସେ କହନ୍ତି—"ଏତେ ଚଞ୍ଚଳ ଆମେ ବାପ ମା' ହେବା ଦରକାର ନାହିଁ । ଯେତେବେଳେ ବାପ ମା ହେବା, ସେତେବେଳେ ପିଲେ ଛୁଆ ବି ଆମର ଦରକାର ନାହିଁ । ମହଙ୍ଗା ସହର, କିଣାଖିଆ, ଘରଭଡ଼ା ତ କହିବା ନାହିଁ, ସବୁ ମିଶି ମାସକୁ ଦୁଇଶହ ଟଙ୍କା ବି ନୁହେଁ, ସେଥିରୁ ପୁଣି ଘରକୁ କିଛି ପଠାଇବାକୁ ପଡ଼ିବ । ଜାଣି ଜାଣି ଏତେ ଚଞ୍ଚଳ ଅଯଥା ନିଜର ଜଞ୍ଜାଳ କାହିଁକି ବଢ଼ାଇବା ? ତେବେ ସବୁଦିନେ ଯେ ଏ ଅବସ୍ଥା ରହିନଥିବ ଯେ । ଆଶା ଅଛି ଆଉ ଦି' ବର୍ଷ ଗଲେ ମୁଁ ବୋଧହୁଏ ତିନି ଶହ ଟଙ୍କା ପାଉଥିବି ।"

ଯଶୋଦା ମାତା ଓ ଶିଶୁ ଶ୍ରୀକୃଷ୍ଣଙ୍କ ଛବିକୁ ଅନାଇଁ ସହିତା ଦୀର୍ଘଶ୍ୱାସ ପକାଇଲି । ଅନ୍ୟମନସ୍କ ହୋଇ ଅଟକି ରହିଲି । କିଛିଏ ବେଳ ଗଲା, ମନେପଡ଼ିଲା, ସେ ତା' ସ୍ୱାମୀ କଥା ହିଁ ଭାବୁଛି । ତା ମନର ସେ ଗମ୍ଭୀର ଭିତରେ ସେ ଯେପରିକି ନିଜକୁ ନିଜେ କହୁଥାଏ, ତାଙ୍କୁ ସେ ଡରେ । ବାପା ଲେଖିଥିଲେ ପାଠପଢ଼ା ଶେଷ ହେଲା, ଯୋଗ୍ୟ ଜ୍ୱାଇଁ, ସେ ଭାରି ଖୁସି । ଭାବବିହ୍ୱଳ ହୋଇ ସେ କହିଥିଲେ —"ଧନ ତ ଖର୍ଚ୍ଚ ହୋଇଯାଏ, କାହାର ରହେ ? ଅସଲ ହେଲା ମଣିଷ ଆଉ ତା' ମଣିଷପଣିଆ । ଧନଞ୍ଜୟ ଯେ ମଣିଷ । ସେ ବହୁତ ଧନ ରୋଜଗାର କରିବ, ଧନ୍ୟ ଧନ୍ୟ ପୁରୁଷ ହେବ ସେ, ଆମର ଭାଗ୍ୟ ।" ବାପା ଗାଁ ସ୍କୁଲରେ ଶିକ୍ଷକ, ନିଜେ ଜାତକ ଦେଖି ଏତେ ଠିକ୍ ଠିକ୍ କହନ୍ତି ଯେ ତାଙ୍କ ପାଖକୁ ବହୁତ ଲୋକ ଆସନ୍ତି ।

କିନ୍ତୁ ମଣିଷ କ'ଣ ଏମିତି କଳପରି ନିର୍ଭୁଲ୍ ଆଉ କଣ୍ଟାକଣ୍ଟି ହୁଏ ?

ସେ ଲୋକ ପାନ, ବିଡ଼ି, ଚା' କିଛି ଖାଏ ନାହିଁ, ଆଇସ ଛୁଏଁ ନାହିଁ, ସିନେମା ଥିଏଟର କିଛି ଦେଖିଯାଏ ନାହିଁ, ବାବୁମାନଙ୍କ ସଙ୍ଗେ ଆଡ୍ଡା ଦେବାକୁ ଯାଏ ନାହିଁ, ତାସ ବି ଖେଳେ ନାହିଁ । ସେ ଅନ୍ଧାରୁଆରୁ ଉଠି ଗାଧାଏ, ଦି'ଓଳି ତୁଳସୀପତ୍ର ଖାଏ, ଦି'ଓଳି ଘଣ୍ଟାଏ ଘଣ୍ଟାଏ ଧର୍ମପୁସ୍ତକ ପଢ଼େ, ପୂଜା କରେ, ଧ୍ୟାନ କରେ, ଅନ୍ୟ ସମୟରେ କିଛି ଗୋଟାଏ କାମ କରୁଥାଏ । ହେଁ ହେଁ ହେବାକୁ ତା'ର ଇଚ୍ଛା ନଥାଏ । ସତେ ଯେମିତି ଅଜ୍ଞାନକାଳ କଣ ସେ ଜାଣେ ନାହିଁ । ସେ କହେ ସାଧୁ ବାକ୍ୟ, ନୀତି ଆଦର୍ଶର କଥା, ସଂସାରର ଦରକାରୀ କଥା । ସେ ତା' ଉପରେ ବି ନିର୍ଭର କରିବାକୁ ଚାହେଁ ନାହିଁ; ଘରେ ଥିଲାବେଳେ ରୋଷେଇ, ବାସନମଜା, ଲୁଗାକାଚ୍ଚ ଏସବୁ କାମରେ ବି ଭାଗ ନେବାକୁ ଉପରେ ପଡ଼ି ଚାଲିଆସେ । ଆପତ୍ତି କଲେ କହେ "ତୁମେ ଆସିଲ ବୋଲି ମୁଁ ପଙ୍ଗୁ ହେବି ସେଇଟା କ'ଣ ଉଚିତ ?" ତା' ସଙ୍ଗେ କଥା କହିଲାବେଳେ ବି ସାବଧାନ ହେବାକୁ ପଡ଼େ, ପରର ହାନି-ଲାଭ କି କୁତ୍ସା କଥା ପକାଇଲା ମାତ୍ରେ ସେ ସତର୍କ କରିଦିଏ ।

"ହସିଥାର, ପରର ଅଳଥା ତୁ ଶ୍ରରେ ମାରନା, ଅପ୍ରିୟ କହୁଥନା ।"

ତା'ର ନିର୍ଦ୍ଦେଶ ଅନୁସାରେ ସଂହିତା ପଢ଼େ ଗୀତା, ଭାଗବତ, କେତେବେଳେ କେଉଁ ପୁରାଣ, ତା'ଠୁଁ ଧର୍ମକଥା ଶୁଣେ । ସେ ଧନଞ୍ଜୟଙ୍କୁ ସମ୍ମାନ କରେ, ତା ପେଇଁ ଗର୍ବିତ ହୁଏ କିନ୍ତୁ ଡରମାଡ଼େ । ଦୃଢ଼ପ୍ରତିଜ୍ଞ ହୋଇ ସବୁ କାମ କରେ ଯେମିତି ତାର କିଛି ଭୁଲ୍ ନହୁଏ । ଭୁଲ୍ ହେଲେ ଧନଞ୍ଜୟ ଯେ ଗାଳିଦିଏ ତା ନୁହେଁ, ସେ ଖାଲି ତା ମୁହଁକୁ କେମିତି ଆଉ ପ୍ରକାରେ ଟିକିଏ ଅନେଇଁଦିଏ । ସେ ଚାହାଣିରେ ରାଗ ନଥାଏ; କିନ୍ତୁ ଲାଗେ ରାଗଠୁ ଅଧିକ କିଛି, ଯେମିତି ତା'ର ଘା ଉପରେ ଧନଞ୍ଜୟ ଗୋଟାଏ ଆଙ୍ଗୁଠି ମାଡ଼ିଦେଉଛି । କେବେ କ୍ୱଚିତ୍ ହେଲେ ବି ସଂହିତା ତା' ମନ ଭିତରେ ନ ଜାଣିଲାପରି ଭାବେ—ସତେ କ'ଣ ତା ସ୍ୱାମୀ ଗୋଟାସୁଦ୍ଧା ଦୟା ଓ ଉଦାରତାର ଅବତାର ? ତା ଗୁଡ଼ ଥରେ, ଓଠ ଥରେ ।

କିନ୍ତୁ ଅଫିସରୁ ଶୁଖିଲା ମୁହଁରେ ଫେରିଆସିଲାପରେ ତାଙ୍କ ଆଖିରେ ତାଙ୍କ ଓଠରେ ସେ ଯେଉଁ କଣା ହସ ! କେତେବେଳେ କଥାଭାଷା ହେଉ ହେଉ ହଠାତ୍ ତାଙ୍କର ସେ ଯେଉଁ ପିଲା ପରି ହସ ସରଳ, ନିଷ୍ପାପ, ମନଖୋଲା ! ସଂହିତାର ଅନ୍ତର ପୂରିଯାଏ । ସେତେ ଯାହା ଗୁଡ଼ି ଯୋଡ଼ାଇଥାଏ ତା ଅପସରିଯାଏ ।

ତାଙ୍କ ବିଚାର ଉପରେ ନିର୍ଦ୍ଦେଶ ଉପରେ ତା'ର ସମ୍ପୂର୍ଣ୍ଣ ନିର୍ଭର, ସେ ଯାହା କହୁଛନ୍ତି ସବୁ ଠିକ୍ । ଏଇ ତା'ର ଧର୍ମ । ତା ଜୀବନ ପୂର୍ଣ୍ଣ । ସେ ଭାଗ୍ୟବତୀ ।

ଘର ସଂସାର ପର୍ବର ଆରମ୍ଭ ଅଧ୍ୟାୟଟି ଏମିତି ଗୁନ୍ଥତାନ ହୋଇ ସେମାନଙ୍କୁ ବଢେଇ ଦେବାକୁ ପଡ଼ିବ, ଏଇଠି ଏ ରତ୍ନାକରର ସାନ ବସାରେ । ତାପରେ ସନ୍ତାନ ବି ହେବେ, ଧନ-ସମ୍ପତ୍ତି ବି ବଢ଼ିବ, ସେତେବେଳେ ନିଶ୍ଚୟ ସେମାନଙ୍କ ରହଣି ହେବ ଭଲେ ଘରେ, ଭଲେ ପରିସ୍ଥିତି ଭିତରେ ।

ସେ କୁଞ୍ଜ ଘରର କରୁଥିଲା । ତା' ସ୍ୱାମୀ ଆସିଲେ, କବାଟ କଡ଼ା ଖଡ଼ଖଡ଼ କଲେ, ସାଇକଲ ଘଣ୍ଟି ଟିଂ ଟିଂ କଲେ । ଏକାଠି ଏ ଶବ୍ଦ ସେ ଚହ୍ନିଛି । ସେ କବାଟ ଫିଟାଇଦେଲା । ଧନଞ୍ଜୟ ଭିତରକୁ ପଶିଆସି ସାଇକଲ ଆଣି କବାଟ ଦେଲାପରେ ଅନ୍ୟଦିନ ପରି ତା ଆଡ଼କୁ ମାଡ଼ିଆସିଲା ନାହିଁ । ବାଟପରେ କବାଟ ପାଖେ ଠିଆହୋଇ କହିଲା, "ଶୁଣ !"

ସେ ହସିହସି ଚାଲିଯାଉଥିଲା, କହିଲା, "ମୋ ରାଣଟି, ଆଜ ଥାଉ, ତାଓ୍ୱା ବସେଇ ଦେଇ ଆସିଛି ।"

"ହେଇ ହେଉ, ଶୁଣ ।"

ଯେ କେମିତି ଭଳେ ସ୍ୱର, ବିଚକଟିଆ ଶୁଭୁଛି । ସଂହିତା କାବାହୋଇ ଠିଆ ହୋଇପଡ଼ିଲା । ଧନଞ୍ଜୟ ମୁହଁକୁ ଅନାଇ ଦେଇ ତା ଗୁଡ଼ରୁ ରକ୍ତ ଶୁଖିଗଲା । କିଏ ସେ ସ୍ୱେଚ୍ଛ ମୁଖ, ନିର୍ମମ ମଣିଷ, ତା ଓଠ ଆଖି ସଂଘାତିକ ଯନ୍ତ୍ରଣାରେ ଜଳୁଛି ! କେବେ ତା ସ୍ୱାମୀ ମୁହଁରେ ଏ ଠାଣି ସେ ଦେଖି ନାହିଁ !

"ମୁଁ ନ ଥିଲାବେଳେ କିଏ ଆସିଥିଲେ ? କହ ।"

"କାହିଁ ନାହିଁ ତ !"

"ସତ କହୁଛ ? ଗୌତମବାବୁ ଚୈତନ୍ୟବାବୁ ଆସିନାହାଁନ୍ତି ? ଏଁ ?"

"ସେମାନେ କିଏ ? କ'ଣ ଆସିବାର ଥିଲା କି କାହାର ?"

"ତମେ ଜାଣିନା ?"

"କେଡ଼େ ଆଶ୍ଚର୍ଯ୍ୟ କଥା କହୁଛ ? ଘରେ ତ ଅଛୁ, କିଏ ଆସିଥିଲେ ଜାଣି ନଥାନ୍ତେ ? କେହି ତ ଦେଖାନାହିଁ ।"

"ତମେ ଦେଖିନା ? ଜଣେ ଗୋରାବାଙ୍ଗରା ଲୋକ, ଗୋଲମୁଣ୍ଡ, ଲମ୍ବାବାଳ, ଅଧାଜଣ, ଲମ୍ବା ଲମ୍ବା କାଳ ।"

ସହୃତା ଫାଇଁ କରି ହସିଦେଲା, ଧନଞ୍ଜୟର ଉଦ୍‌ବେଗ, ଉତ୍କଣ୍ଠା, ତା ସହିତ ଏ ତର୍ଜ୍ଜନା, ସେ ସମ୍ଭାଳି ପାରିଲା ନାହିଁ ।

ଧନଞ୍ଜୟ କୁହୁଳି ଉଠିଲା, ଦାନ୍ତ କଡ଼ମଡ଼ କରି କହିଲା, ହେଁ ! ତୁମେ ହସୁଛ ! ଦେଖିଛ ଆଉ ମନାକରୁଛ !"

ସହୃତା ଗାଲରେ ଥାପଡ଼ ଖାଇଲାପରି କାନ୍ଦ କାନ୍ଦ ହୋଇ କହିଲା, "କେତେବେଳେ କାହାକୁ ଦେଖିଲି ? ତମକୁ କ'ଣ ଘୋଟିଛି ?"

"ସଇତାନ ଘୋଟିଛି ।" ସେ ଗର୍ଜ୍ଜନ କଲା ।

"ଏଁ !"

ଭେଁ-କିନା ସହୃତା କାନ୍ଦପକାଇଲା ।

ଧନଞ୍ଜୟ ଭିତରକୁ ଯାଉ ଯାଉ କହିଲା—

"ଛଳନା, ଛଳନା, ମାଇକିନିଆ ଜାତଟା ଛଳନା, ତାଙ୍କ ହସ କାନ୍ଦ ସବୁ ମିଛ, ସବୁ ଅଭିନୟ ।"

ସହୃତା ମୁହୂର୍ତ୍ତିକେ କାନ୍ଦ ବନ୍ଦ କରି ପଥର ହୋଇଗଲା । ତା ପଛେ ପଛେ ଧାଇଁଯାଇ ତା ଗୋଡ଼ତଳେ ମୁଣ୍ଡ ବାଡ଼େଇ କହିଲା—

"ସତରେ ତମର କ'ଣ ହୋଇଛି କହିଲ । କ'ଣ ଏଗୁଡ଼ା ଗପୁଛ ?"

ତା'ର ଥିବା ନଥିବାକୁ ଗ୍ରାହ୍ୟ ନକରି ଧନଞ୍ଜୟ କହିଲା—"ସାମାନ୍ୟ ହସ ରୋକିଲାଭଳି ସଂଯମ ନାହିଁ, ତମେ ମୋ ଆଗରେ ମିଛ କହି ଉଦ୍ଧାର ପାଇଯିବ ?"

ସହୃତା ଠିଆହୋଇପଡ଼ିଲା । ଡାଣହୋଇ କହିଲା—"କ'ଣ ମିଛ କହିଲି ?"

"କ'ଣ ମିଛ କହିଲି ! ଗୌତମକୁ ସ୍ୱେ ଦେଖିନାହାନ୍ତି । ତେବେ ହସ ବାହାରିପଡ଼ିଲା କାହିଁକି ? ଚୈତନକୁ ବି ଦେଖିନଥିବେ ପରା । ଢେଙ୍ଗା ଧେଡ଼ଙ୍ଗା ଶେଥା ଗୋରା, ବଡ଼ ବଡ଼ ଦାନ୍ତ, ପୋଡ଼ଗନ୍ଧ ଭଳିଆ କଳା କଳା ଓଠ; ଦେଖିଲେ

ବଡ଼ କଣ୍ଡାଟାଏ । ଅଚ୍ଛା ହସ ବାହାରବ ଯେ । ଏଇ ହସ ତ ସେମାନେ ନେଇକର ଗଲେ । ଛି ଛି ଛି ଛି ଥୂ ।'' ସନ୍ଧ୍ୟା ରାଗରେ ନଆଁ ହୋଇଗଲା । ଅଶ୍ଳୀଳ ଅଶ୍ଳୀଳ ପାଟିରେ କହିଲା, ''ଭାଗ ସଂଯମ ସଂଯମ ହେଉଛ, ତୁମ ନିଜର ସଂଯମ ଆଗେ ସମ୍ଭାଳ । ତୁମ କଥାରୁ ଯାହା ବୁଝୁଛି, ତୁମେ କୋଉଠୁ କ'ଣ ଶୁଣିକରି ଆସିଛ ପରେ ଅବତରୁଛ । ଯୋଉ ଚୂଲପଣା ଛନ୍ଦରେ ଦ'ଟାଙ୍କ ନାଁ କହିଲ ଚେହେର ବର୍ଣ୍ଣନାକଲ କଏ ହେ। ସେ ଦ'ଟା ? କେବେ ତ ତାଙ୍କୁ ମୁଁ ଦେଖିନାହିଁ କି ତାଙ୍କ ନାଁ-ଗାଁ ଶୁଣିନାହିଁ । ସେ ଯଦ ସତରେ ଅସିଥାନ୍ତେ, ମୁଁ ତୁମକୁ କହି-ନଥାନ୍ତି । କ'ଣ ସ୍ନେ କଥା ?''

''ତେମେ ହସିଲ କାହିଁକି ? ମୋର ରାଗ ହେଲ, ତୁମେ ହସୁଛ ?'' ସନ୍ଧ୍ୟା ରାଗିଯାଇ କହିଲା, ''ହସିବ ନାହିଁ କ'ଣ ମୁଁ କାନ୍ଦିବ ଭାବୁଛ ? କି ସୁନ୍ଦର ନାଟକୀୟ ମଣିଷଟିଏ ବର୍ଣ୍ଣନା କରୁଛ, ବାଙ୍ଗର, ପୁଣି ଲମ୍ବାବାଳ, ଲମ୍ବାକଳି, ଅଧାନଣ—'' ତା ସ୍ୱର ଶୁଣି ଧନଞ୍ଜୟର ରାଗ ଅସ୍ତେ ଆସ୍ତେ କମୁଥିଲା । କହିଲା, ''ଜାଣିଚ ? ସେ ଦୁହେଁ ଆମ ଅଫିସ୍‌ରେ କାମକରନ୍ତି, ମୁଁ ଯେମିତି ସେ ସେମିତି ଗୋଟିଏ ଗୋଟିଏ କିରାଣି । ମୋ ପିଠିଆଡ଼େ ଘନହାତ ଦୂରରେ ବସନ୍ତି ।''

''ସେଇଠୁ ?''

''ସେମାନେ ଆଜି ଅଫିସରେ ନିଜ ନିଜ ଭିତରେ କଥାଭାଷା ହେଉଥିଲେ ।''

''ହୁଁ ।''

''କହୁଥିଲେ ସେମାନେ ଆଜି ତୁମକୁ ଦେଖିଲେ, ତୁମେ ତାଙ୍କୁ ଦେଖି ଭାରି ହସିଲ, ସେମାନେ ବି ହସିଲେ, ସେଇଠୁ ସେମାନେ ଚାଲିଗଲେ ।''

ସନ୍ଧ୍ୟା ରାଗରେ ଚତ୍କାର କଲା—

''ସତେ ! ଏଡ଼େ ସାହସ । ଡାକ ତାଙ୍କୁ ମୋ ଆଗକୁ ମୁଁ ଦେଖିବି, ଡାକ ।''

ଏତକରେ ତା'ର ତେଜ ପାଣି ହୋଇଗଲା । ସେ କାନ୍ଦି କାନ୍ଦି ହୋଇ କାନ୍ଦିଲା । କାନ୍ଦି କାନ୍ଦି କହିଲା, ''କଏ କାହାକୁ ଦେଖିଲା ନଦେଖିଲା କି ମିଛରେ କହିଲା କି କ'ଣ କଲା ସେଥିପାଇଁ ତୁମେ ମୋ ଉପରକୁ ତମତମ ହୋଇ ଧାଇଁଆସିଲ କେରା କରିବାକୁ ! ତେମେ ମତେ ମିଛୁଆ ବୋଲି ଭାବିଲ ! ତେବେ ମୁଁ କରିବି କ'ଣ ? ଯିବି କୁଆଡ଼େ !''

ଧନଞ୍ଜୟ ବଡ଼ ପାଟିରେ କହିଲା, ''ଗ୍ରୁଡ଼ଃ !''

ସେ ଶବ୍ଦର କିଛି ବିଶେଷ ଅର୍ଥ ନଥିଲା, କିନ୍ତୁ ସେ ସ୍ୱରର ଅର୍ଥ ଥିଲା ଯେ ଧନଞ୍ଜୟ ସନ୍ଧ୍ୟାକୁ ଦୋଷୀ ସାବ୍ୟସ୍ତ କଲା ନାହିଁ, ନିର୍ଦ୍ଦୋଷ ସାବ୍ୟସ୍ତ କଲାନାହିଁ, ଅପ୍ରୀତିକର ବୋଲି ଆଲୋଚନାକୁ ଖାଲି ଟାଳି ଦେଲା, ସେତିକି ।

ସନ୍ଧ୍ୟାର ମନ ଭିତରେ ଉଠିଥିଲା ତା ସ୍ୱାମୀର ଗୋଟିଏ ଭିନ୍ନ ରୂପ—ସେହି ଯାହା ତା ନିଜର ସ୍ନେହ ଆବେଗ ଆଶା ଉତ୍ସାହ ସେ ପାଖେ କେଉଁଠି ଛପି ଛପିକା

ଥାଏ, ଯାହାର ଖାଲି ଗ୍ରାଇ ଅବସ୍ଥାର ବେଳେବେଳେ ସେ ଦେଖେ, ଗ୍ରାନଥା ହୁଏ, ଆପେ ଆପେ ଥୁ ଥୁ କରି ନିଜକୁ କଲେ, ପୁଣି ଆଲୁଅ ଜକଜକ ଲହରିଟିଏ ପରି ସେ ମନସୁଖରେ ନାଚୁଥାଏ, ଖେଳୁଥାଏ ।

ଅପରିଚିତ ପୁରୁଷ; ତାଠୁଁ ଅଠବର୍ଷ ବଡ଼, ଆକାରରେ ବହୁତ ବଡ଼, ଆକୃତିରେ ପ୍ରକୃତିରେ ସମ୍ପୂର୍ଣ୍ଣ ଭିନ୍ନ, ଯେତେ ସହଜ ସରଳ ଜଣାପଡ଼ିଲେ ବି ତା ସହିତ ସହିତା ମିଶିପାରେ ନାହିଁ । ସୌମ୍ୟ ଶାନ୍ତ କଲ୍ୟାଣତମ ରୂପ ସେ ଆଦୌ ନୁହେଁ, ତା ପିଠିପଟ, ଠିକ୍ ଓଲଟା, କଦାକାର, ଭୀଷଣ, ନିର୍ମମ । ସେ ରୂପ ସଙ୍ଗେ ଭିତର ଆଦାନ-ପ୍ରଦାନ କରିବା ପାଇଁ ସହିତାକୁ ଭାଷା ଜଣାନାହିଁ; ନା ଶବ୍ଦରେ ନା ହାବଭାବରେ । ସେଠି ବିଶ୍ୱାସ, ନିର୍ଭର, ଅଭୟ ଖୋଜିବା ବୃଥା ।

କିଏ ତେବେ ତା'ର ହେବ ?

ଜୀବନ ଅଛି, ଶରୀର ଅଛି, କିନ୍ତୁ ସ୍ୱାଧୀନତା ନାହିଁ । ସେହି ଅପରିଚିତର ତା ଉପରେ ସମ୍ପୂର୍ଣ୍ଣ ଦଖଲ ଅଧିକାର, ଅନ୍ୟକଥା ସହିତା ଜାଣେ ନାହିଁ । କିଏ ଶୁଣିବ ? କିଏ ବୁଝିବ ? ଭଗବାନ ।

କିନ୍ତୁ ସେ କ'ଣ ଜାଣନ୍ତି ନାହିଁ ? ଏଇ ଯାହା ଘଟିଲା, ତାକୁ ବି ସେହି ଭଗବାନ ତ ଭିଆଇଲେ ନାହିଁକି ?

ମୁହଁ ପୋଛିଦେଇ ସ୍ୱାମୀ ଆଗରେ ଖିଆ ଜଳଖିଆ ଆଣି ଥୋଇଦେଇ ଚାଲିଗଲା । କୁଞ୍ଜ ପୂଜା ସେ ଯୋଡ଼ାଏ ମୋଟେ କରିଥିଲା, ଆଉ କରିବାକୁ ବେଳ ପାଇନାହିଁ, ହେବ ପଛେ କି ନହେବ । ଧୋଇଧାଇ ହୋଇ ଚଉରାମୂଳେ ଦୀପ ଥୋଇ ଦେଇ ଲମ୍ବହୋଇ ଗୋଡ଼ତଳେ ପଡ଼ିଗଲା । ମା ବୃନ୍ଦାବତୀ, ପରଂବ୍ରହ୍ମ ଭଗବାନ୍, କାହିଁକି ତୁମେ ଏହା ଭିଆଇଲ ? ମୁଁ କି ଦୋଷ କରିଥିଲି ? ହୁଏତ ପୂର୍ବ ଜନ୍ମରେ କେବେ କ'ଣ । ତୁମେ ରକ୍ଷାକର, ତୁମେ ସଜାଡ଼, ତାଙ୍କୁ ସଦ୍‌ବୁଦ୍ଧି ଦିଅ ।

ଧନଞ୍ଜୟ ଘୁମ୍ ହୋଇ ବସି ତା' ସ୍ତ୍ରୀର ସେ ମୁହଁମାଡ଼ି ଗୋଡ଼ତଳେ ପଡ଼ିଥିବା ଶରୀରର ପିଠିକୁ ଅନାଇଁ ଦେଖିଲା । କେଡ଼େ ନିରାଶ୍ରୟ, ନିରୀହ ସେ ଦିଶୁଛି ! ଧନଞ୍ଜୟର ରାଗ ଧୀରେ ଧୀରେ ଖସିପଡ଼ିଲେ, ମନରେ ଆସିଲା କରୁଣା । ତଥାପି ସେ ଆପଣା ମନକୁ ନିର୍ମଳ କରିପାରିଲା ନାହିଁ । ଗୌତମ ଆଉ ଚୈତନ —ଭଦ୍ରବେଶୀ ଛଳ ଲୋକ ଦି'ଟା, କାମ ମଝିରେ ବସି କେତେ କୁରୁଚିପୂର୍ଣ୍ଣ କଥା ଚର୍ଚ୍ଚା କରନ୍ତି ବିହେଁ, ଖାଲି ଚରିତ୍ରହୀନତା, ଉଚ୍ଛୃଙ୍ଖଳତା ଅମାତର କଥା, ଆପଣା ଆପଣାର ପାଗଳପଣ ହିସାବ କଷାକଷି କରି ତୁଳନା କରନ୍ତି, ବାହାଦୁରି ନିଅନ୍ତି; କିନ୍ତୁ ତାଙ୍କର କିଛି ଅନିଷ୍ଟ ହୁଏ ନାହିଁ । ଗୁଇଁଚତୁର ଲୋକ ଦି'ଟା, ଅଫିସରେ ତାଙ୍କ ଉପରେ ଲୋକେ କେଉଁଥିରେ ଖୁସି ହେବେ, ତା' ସେ ଭଲ ବୁଝନ୍ତି, ମିଛ କହି ଭୁଲାଇ ଜାଣନ୍ତି, ବେଳ ଘୁରପାଖ ବୁଦ୍ଧି ଅର୍ଥାତ୍ ଦୁର୍ବୁଦ୍ଧି । ଧନଞ୍ଜୟ ତାଙ୍କୁ

ଚିଡ଼େ, ସେମାନେ ତାଙ୍କୁ ହସରେ ଉଠାନ୍ତି, ସେ ମାଷ୍ଟରିଆ, ସେ ମହର୍ଛିଆ, ସେ ଓଲୁ, ସେ ବହି ଘୋଷା, ସେ ସ୍ୱପ୍ନବାଦୀ, ସେ ଯେଉଁ ଆଦର୍ଶ ଆଦର୍ଶ କହେ, ସଂସାର ଯାକ ଖୋଜି ବୁଲିଲେ କେଉଁଠି ତା' ମିଳିବ ନାହିଁ, ସେ ସବୁ କାମକୁ ଅନୁପଯୁକ୍ତ, ସେ ମଣିଷଠୁଁ ଟିକିଏ ସାନ, ବିକୃତ ଅଧାଡିଆର ହୋଇ ଆଉ ଏକ ପ୍ରକାର ଜନ୍ତୁ, ଇଙ୍ଗିତରେ, ଭାଷାରେ, ମନ୍ତବ୍ୟରେ କେତେପ୍ରକାର କରି ସେହି କଥା ତ ସେମାନେ ପ୍ରଚାର କରନ୍ତି । ସେମାନେ ଚାହାଁନ୍ତି ମୁହାଁମୁହିଁ ସେ ତାଙ୍କ ସଙ୍ଗେ କଳି କରୁ, ତାହେଲେ ତାକୁ ସେମାନେ ଥଣ୍ଡା କରିଦେବେ; କିନ୍ତୁ ନିଜ ପଟୁ ସେମାନଙ୍କର ତା' ପ୍ରତି ବ୍ୟବହାର ବି ସତର୍କ, ତାଙ୍କୁ ଦୋଷ ଦେଇ ପର ଆଗରେ ଅଭିଯୋଗ କରିହେବ ନାହିଁ ।

କିନ୍ତୁ ସେମାନେ ତ ତାକୁ କିଛି କହୁନାହାନ୍ତି, ତା ନାଁ ବି ଧରୁନାହାନ୍ତି । ଦୁହେଁ କଥା ହେଉଥିଲେ, ଫୁସ୍ ଫୁସ୍ କଥା, ଟୁପ୍ ଟୁପ୍ କଥା, କିନ୍ତୁ ସେ କଥାର ଶବ୍ଦ ଆଉ ସ୍ୱରହ୍ରାସ ଦୂରକୁ ବି ସହଜରେ ଶୁଭୁଥିଲା, ତେଣୁ ଶ୍ରୋତା ଆଉ ଚାରିଜଣ ପହଞ୍ଚି ଯାଇଥିଲେ, ବୁଢ଼ା ଗୋବିନ୍ଦବାବୁ, ଥଲ୍ଥଲପେଟା, ଗମ୍ଭୀର ମୁହଁ, ଟୋକାଙ୍କ ମଉଜ ଦୁଷ୍ଟାମି ଶୁଣିବାକୁ ତାଙ୍କର ଭାରି ଶରଧା । ମାଧବାଧରବାବୁ, ପଇଁଚାଳିଶ ବର୍ଷ ବୟସ, ଅଫିସରେ ବସି ଉପନ୍ୟାସ ପଢ଼ନ୍ତି । ଟିକିଏ ସୁବିଧା ପାଇଲେ ହିହି ହୋଇ ହସୁଥାନ୍ତି । ଯୁବକ ଦୁହେଁ, ହମିଦ୍ ଓ ରୁବେନ୍, ଅଳ୍ପଦିନ ହେଲା ଆସିଛନ୍ତି ।

ଚୈତନ ଆରମ୍ଭ କରିଥିଲା, "ଅଜି ଯାହା ହେଲା ।" ଗୌତମ— କହିଥିଲା "ଆପଣମାନେ ବିଶ୍ୱାସ କରନ୍ତୁ । ଚୈତନବାବୁ ଭାବୁଛନ୍ତି ଯେ ସେ ତାଙ୍କୁ ଦେଖି ଆକୃଷ୍ଟ ହେଲା, ଅଥଚ ସେ ଚାହିଁ ରହିଥାଏ ମୋ'ରି ମୁହଁକୁ, ହସୁଥାଏ ।" ସେମାନେ ବସାଟାର ଅବସ୍ଥିତି କହିଗଲେ, ଅବିକଳ ଯେଉଁ ଘର ପରେ ଯେଉଁ ଘର, ତା' ସାମ୍ନାରେ କରରେ, ସଡ଼କର ଆଗକୁ ପଛକୁ ଯାହା, ଠିକ୍ ଠିକ୍ ସବୁ । କି'ଣ କଳ୍ପନା ? ବସାଟା ବାହାରୁ ଯେମିତି ଦିଶିବ ତା ବି କହିଲେ । ଶୋଇବା-ଘର ଝରକାବାଟେ ଯାହା ଯାହା ଦିଶିବ, ତା ବି କହିଲେ । ସହିତାର ଚେହେରା ବର୍ଣ୍ଣନା କଲେ । ଉଃ ! ତା'ପରେ ତାଙ୍କ କାହାଣୀ । ଝରକାପାଖେ ପଦାକୁ ଅନାଇଁ ସେ ଠିଆ ହୋଇଥିଲା । ସେମାନେ ଅଟକି ଠିଆହେଲେ, ତା'ପରେ ଅନାଅନି ଆଉ ହସାହସି । ସେମାନେ ଆଉ ଟିକିଏ ଟିକିଏ ହୋଇ ଝରକା ଆଡ଼କୁ ଘୁଞ୍ଚିଆସିଲେ । ଅଦ୍ଭୁତ ଚାହାଣି । ଅଦ୍ଭୁତ ହସ ।

"ହସରେ ଶବ୍ଦ ନାହିଁ; କିନ୍ତୁ ଯେମିତି କ'ଣ ବିଜୁଳି ଶକ୍ତି ଅଛି, ଓଟାରି ନେଉଛି, ଓଟାରି ନେଉଛି ।"

ତା'ପରେ ସେମାନଙ୍କର ମନ୍ତବ୍ୟ ।

ଉଃ !

ଧନଞ୍ଜୟ ମୁଣ୍ଡରେ ହାତ ଦେଇ ବସିଥାଏ ।
ମିଛ ? ମିଛ ? ସବୁ ମିଛ ?
ମନେପଡ଼ୁଥାଏ, ସେ ଆଉ ସଂହିତା ।
ସୁନ୍ଦର ଫୁଲଟିଏ, ସରଳ, ନିଷ୍ପୃହ, ପବିତ୍ର,
ଦେବତାଙ୍କୁ ଦେବା ଫୁଲ ।

ସେହିଆଡ଼କୁ ତ ସେ ଭରସା କରିଥିଲା, ସେଥିପାଇଁ ତା'ର ଭବିଷ୍ୟତର ସ୍ୱପ୍ନ, ସେ ଆହୁରି ପରିଶ୍ରମ କରିବ, ଉନ୍ନତି କରିବ, ଯେମିତି ସେହି ଫୁଲଟି ରହିଥିବ ସବୁଦିନେ ଅମ୍ଳାନ । ପୁଣି ମନେ ପଡ଼ିଲା, ଆପଣା ଅନ୍ତର ଭିତରେ ସେ ଅନୁଭବ କରିଛି, ସଂହିତାକୁ ସେ ପ୍ରଚୁର ହସ ଖେଳ ଦେଇପାରିନାହିଁ; ଦେଇଥିଲେ ବୋଧହୁଏ ସେ ଖୁସି ହୋଇଥାନ୍ତା । କିନ୍ତୁ ଜୀବନର ହାଲୁକା ଦିଗଟାକୁ ତ ସେ ନାକ ଟେକେ—ସେ ଗୁଡ଼ାକ କ'ଣ ? ସଂହିତା ବି ତ କେବେ ଅଭିଯୋଗ କରିନାହିଁ । ସେ ତ ତା'ର ସବୁ ମତକୁ ଉତ୍ସାହ ଦେଇଛି ।

ତଥାପି—ଅନ୍ତତଃ ବହୁ ପକ୍ଷ ଧନଞ୍ଜୟ ଜାଣିଛି, ସଂହିତା ନହେଉ, ଯୌବନରେ ରକ୍ତର ନିଶା ମୁଣ୍ଡକୁ ଚହଟେ, କାମନା ଜଳେ, ଲୋକ କୁଆଡ଼େ ସେତେବେଳେ ଖୋଜେ ଦେହ ସୁଖ, ହସ ଖେଳ, ମଉଜ, ବିଳାସ ।

କେଜାଣି ! ତା'ର ଅନୁଭୂତ ମନେପଡ଼ୁନାହିଁ । ସେ ତ ଚାହେଁ ସଂଯମ, ନୀତି, ମଣିଷ ନିଜ ଦୁର୍ବଳତାକୁ ଦମନ କରି ଉପରକୁ ଉଠୁଥିବ । ସଂହିତାକୁ ସେ ତାଲିମ୍ କରୁଥିଲା, ମନେ ମନେ ଖୁସି ହେଉଥିଲା ।

ପୁଣି ସେହି ପ୍ରଶ୍ନ—ଗୌତମ ଚୈତନ କ'ଣ ମିଛ କହିଲେ ? ନା ସଂହିତା ମିଛୁଇ ?

ଧନଞ୍ଜୟ ଭୁଲିବାକୁ ଚେଷ୍ଟା କଲା । କ୍ରମେ ମନକୁ ବୁଝାଇଲା ଯଦିବା ସଂହିତା ମିଛ କହିଥିଲା, ତେବେ ତାକୁ ଡରି କହିଥିବ । ଏଭଳି ବି ସମ୍ଭବ, ଗୌତମ ଚୈତନ ତାକୁ ଦେଖିଛନ୍ତି, ସେ ବି ତାଙ୍କୁ ଦେଖିଛି; କିନ୍ତୁ ବେଶି କିଛି ଘଟିନାହିଁ, ଦୁଷ୍ଟ ଯୋଡ଼ାକ ବଢ଼ାଇ ବଢ଼ାଇ ବନେଇ ଚୂନେଇ କହିଥିବା ହିଁ ସମ୍ଭବ । ରାତିରେ ଶୋଇଲାବେଳେ ଧନଞ୍ଜୟ ଅନୁତାପ କଲା । ଦିହେଁ ଏକାଠି କାନ୍ଦିଲେ ।

ଅଧରାତି, ଧନଞ୍ଜୟ ଅନୁଭବ କଲା ତା' ହାତର ବେଢ଼ା ଭିତରେ ଗୋଟାଏ ନିର୍ଜୀବ ଶରୀର । ସେଠି ଉଚ୍ଛ୍ୱାସ ନାହିଁ, ଆବେଗ ନାହିଁ, ସ୍ପନ୍ଦନ ବି ନାହିଁ ।

ସଂହିତା ଆଖି ବୁଜିଥିଲା, ଆଖି କୋଣରୁ ବୋହୁଥିଲା ଧାର ଧାର ଲୁହ । ପୁଣି ସକାଳ, ପୁଣି ଦିନପରେ । ଅଭ୍ୟାସ ଅନୁସାରେ କାର୍ଯ୍ୟ ଠିକ୍ ଚାଲିଥାଏ, ଦୁହିଙ୍କ ଭିତରୁ କାହାରି କିଛି ବିଚ୍ୟୁତି ଘଟେ ନାହିଁ । ସଂହିତା ପୁଣି ହସିଲା, ଧନଞ୍ଜୟ ପୁଣି ତାକୁ ଆଗପରି ଗେହ୍ଲା ଆଦର କଲା । କିନ୍ତୁ ତାଙ୍କ ଜୀବନ ଉପରେ ହଠାତ୍ ଯେଉଁ ଛାଇଟା ଆସି ପଡ଼ିଥିଲା ସେଇଟା ସମ୍ପୂର୍ଣ୍ଣଭାବେ ଚାଲିଗଲା, ଏଭଳି

ନୁହେଁ । ସହୃତା ମନଭିତରେ ଧନଞ୍ଜୟଙ୍କୁ ଡରେ—ବିଶ୍ୱାସରେ ଫାଟ ଦିଶୁଛି, ହେଉପଛେ ସେ ଫାଟ ମୁଣ୍ଡବାଳ ପରି ସୂକ୍ଷ୍ମ । ସେଇ ଡର ସଙ୍ଗେ ସଙ୍ଗେ ଅଧା ଅନୁଭବରେ କ୍ଷୀଣ ଅସ୍ପଷ୍ଟ ହୋଇ ବାଜେଇ ଉଠେ ଧନଞ୍ଜୟ ବିରୁଦ୍ଧରେ ତା'ର ଅଭିଯୋଗ—ନିଜ ଜୀବନ ବିଷୟରେ ନୂଆ ମୂଲ୍ୟାଙ୍କନ ରୂପରେ । କାହିଁକି ସେ ଜନ୍ମ ହୋଇଥିଲି ? ମଣିଷ ଜୀବନରେ ସୁଖ କ'ଣ ? ଆନନ୍ଦ କ'ଣ ? ଭଗବାନଙ୍କୁ ଯେତେ ଡାକିଲେ ଶୁଣୁନାହାନ୍ତି କାହିଁକି ?

ଧନଞ୍ଜୟ ବି ଭାବେ ବେଳେବେଳେ—ଓଃ ! ଜୀବନ କେଡ଼େ ଜଗୁଡିଆ ! ମନ ବୁଝିବାଲୋକ କେହି ନାହିଁ । ସଂସାରରେ କାହାକୁ ବିଶ୍ୱାସ କରିବ ? ସହୃତା ପ୍ରତି ତା ବ୍ୟବହାର ସବୁବେଳେ ଦୟାର୍ଦ୍ର, ସ୍ନେହୀ, କିନ୍ତୁ ନୈତିକ ତା'ର ନାନା ଉପଦେଶ ଭିତରେ ମିଶିଯାଉଥାଏ ସଂସାରରେ ଲୋକଗୁଡ଼ାକ ସମସ୍ତେ ଅବିଶ୍ୱାସୀ, ଅନ୍ତତଃ ଅନେକେ । ସେଗୁଡ଼ାକ ସାପ, ବାଘ, ଆହୁରି ହିଂସ୍ର ଜନ୍ତୁ । ପୁଣି ମଣିଷର ନିଜର ମନ ସବୁବେଳେ ଏକା ସ୍ତରରେ ନଥାଏ, ପ୍ରତି ଲୋକଠି ଦୁଷ୍ଟ ବୃତ୍ତି ଲୁଚି ରହିଛି, ତାକୁ ଦମନ କରିବାକୁ ପଡ଼ିବ । କାମନା ବଳେଇ ପଡ଼ିଲେ ଭଗବାନଙ୍କୁ ଡାକିବା ଉଚିତ, ଶାସ୍ତ୍ର ପଢ଼ିବା ଦରକାର । ନିଜ ଭିତରେ ଯଦି ସଢ଼ିବ, ତେବେ କବାଟ କିଳିରହିଲେ ବି ଯୋକ ସାଲୁସାଲୁ ହେବେ । କେତେ କଣ କେତେ କଥା କହେ । ସହୃତାର ଗ୍ରୁଡ ଚରେ । ଉପଦେଶ ଗୁଡ଼ାକ ଶୁଭେ ଅଶୁଭ ବୋବାଳି ପରି ।

ତା'ପରେ ହଠାତ୍ ଦିନେ ସାଢ଼େ ପାଞ୍ଚଟାବେଳେ ଧନଞ୍ଜୟ ଘରକୁ ଆସିଲା, କିଛି କହିଲା ନାହିଁ । ଦାଣ୍ଡ କବାଟ କିଳିଦେଲା, ଭିତର ପିଣ୍ଡାରେ ସ୍ତ୍ରୀ ଆଗରେ ଠିଆହୋଇ ଜଳନ୍ତା ଆଖିରେ ତା ସ୍ତ୍ରୀ ଆଖିକୁ ଅନାଇଁ କହିଲା—"ସତ କହ ।"

ତା ଧମକ ଶୁଣି ସହୃତା କହିଲା, "କ'ଣ ?"

"ତୁମେ କହିବ ନା ମୁଁ କହିବି ?"

"କ'ଣ କହିବି ? କୋଉ କଥା ?"

"ଏକ ଗୌତମ ଆସି ନାହିଁ ? ପୁଣି ତୁମେ ଝରକା ପାଖରେ ଠିଆହୋଇ —ଓଃ ।" ସେ ଆଉ କହି ପାରିଲା ନାହିଁ, ତା ଆଖି ଓଠ, ମୁହଁ ଜଳିଯାଉଥାଏ, ମୁଣ୍ଡ ଭିତରେ ଫାଟି ଫାଟି ପଡ଼ୁଥାଏ, ପାଟି ଖନି ବାଜିଯାଉଥାଏ ।

ସହୃତା କଠୋର ହୋଇ କହିଲା, "ମଲା କୋଉ ଚୁଲିପଶା ସଇତାନ୍ ଛତର—ଗଉତମ ଫଉତମ, କିଏ ବା ସେଇଟା ? ସତେ ତମର ମୁଣ୍ଡ ଖରାପ ହେଲା ! କି ବୁଦ୍ଧି କରିବି ଲୋ ମା !"

ସେ ଭୁଲିପଡ଼ି ଦେଖାଇ ଘରକୁ ଗ୍ଲାନିଗଲା । ଧନଞ୍ଜୟ ପାଟିକଲା "ମୁଣ୍ଡ ଖରାପ ମୋର ନୁହେଁ, ତମର । ଏତେ ବୁଝାଇଲି, ଥରେ କ୍ଷମାକଲି, ଯୋଉ କଥାକୁ ସେଇକଥା, ଫେର ଗାଳିଭିରୁଡ଼ି, ମିଛ ?"

ସେ ପଟୁ ସଂହିତାର ପାଟି ଶୁଭିଲା "ହଉଥା ବକର ବକର, ଯାଉଚି ମୁଁ ଶୁଣିବାକୁ !"

"ଏତେ ସନ୍ଦେହରେ ନିଷ୍ଟୁର ପାରିବ ନାହିଁଟି, ମୁଁ କହିଦେଉଛି ।"

ସଂହିତା ଢଙ୍ଗରେ ଫଁ ଫଁ ହୋଇ ସାମ୍ନାରେ ଆସି ଠିଆହେଲା, ମୁହଁ ଲାଲ୍ ପଡ଼ିଯାଇଛି, ନାକପୁଡ଼ା, ଓଠ ଥରୁଛି । ତା'ର ଏ ରୂପ ଧନଞ୍ଜୟ କେବେ ଦେଖିନାହିଁ । ତା'ର ରୂପର ସୌନ୍ଦର୍ଯ୍ୟ ଆହୁରି ବଢ଼ିଯାଇଛି; କିନ୍ତୁ ସେ ଭୟଙ୍କର ଦିଶୁଛି । "କ'ଣ ମୋତେ କହୁଚ, କହ", ସଂହିତା କ୍ରୁଦ୍ଧସ୍ୱରେ ଭୂମିକା ପରି କଥା କହିଲା ।

ଧନଞ୍ଜୟ ଚୁପ ହୋଇ ଠିଆହେଲା । ସଂହିତା ପଚାରିଲା, "କୋଉଁ ଗୌତମ ? ସେଥର ବି ସେମିତିଆ କାଁହିଁ କହୁଥିଲ । ମୁଁ ଭୁଲି ନାହିଁ ଯେ । ସେ ଝରକା ପାଖେ ଠିଆହେଲା ? ଆଉ ମୁଁ !"

ଧନଞ୍ଜୟ ବାବା ହୋଇ ତା ମୁହଁକୁ ଅନାଇଲା, ତା ଆଖି ଡୋଳା ସତେ ଯେମିତି ଠେଲିହୋଇ ପଡୁଛି । ଆଜି ଅଫିସ୍‌ରେ ଗୌତମବାବୁ ଖୁବ୍ ବଖାଣ କରିଥିଲା । ପ୍ରକୃତରେ ଦିନ ବାରଟା ଆଗରୁ ସେ ଅଫିସକୁ ଆସିନଥିଲା । ସେ କହୁଥିଲା, ଝରକା ପାଖେ ସଂହିତା ସଙ୍ଗେ ତା'ର ଦି'ପଦ କଥାବାର୍ତ୍ତା ବି ହେଲା । ଗୌତମ ସେ ବିଷୟରେ ଅତି ଖରାପ ଇଙ୍ଗିତ ଦେଉଥିଲା । ସାରାଂଶ ଏତିକି ଯେ ସଂହିତା ତା ପ୍ରତି ଖୁବ୍ ଆକୃଷ୍ଟ ହୋଇଛି । କି ଭାଷାରେ ଧନଞ୍ଜୟ ଏତେକଥା ପ୍ରକାଶ କରିବ ? କହିଲା "ଗୌତମ କହୁଥିଲା ଆଜି ସେ ଝରକା ସେପାଖେ ଠିଆହୋଇ ତୁମ ସଙ୍ଗେ କଥାବାର୍ତ୍ତା ବି ହେଲା ।"

"ହେ ଭଗବାନ !" ସଂହିତା ପାଟିକଲା, ଲୁହ ଥପଥପ ବୋହିପଡୁଥାଏ, ସେମିତି ରାଗରେ ଫୁଲୁଥାଏ, କହିଲା "ଦେଖ, ମୁଣ୍ଡ ଥଣ୍ଡା କର, କିଏ ଶତ୍ରୁମାନେ ତମ ଆଗରେ ମିଛ କଥା କହି ତୁମ ମୁଣ୍ଡକୁ ପାଗଳ କରୁଛନ୍ତି । ତାଙ୍କ ତୁଣ୍ଡରେ ପୋକ ପଡ଼ୁ । ତୁମେ ଆଉ ତାଙ୍କ ମିଛକଥାକୁ କାନଦିଅନା, ନିଜେ ଏମିତି କଳବଳ ହୁଅନା, ମତେ କଳବଳ କରି ମାରନା ।" କହିଦେଇ ସେ ପୁଣି ବେପେଇ ଘରକୁ ଚାଲିଗଲା । ସେଠୁ ତାର କାନ୍ଦଣାର ଶବ୍ଦ ଶୁଭୁଥାଏ । ଧନଞ୍ଜୟ ଚୁପ୍‌ହୋଇ ବସିଲା । ସଂହିତାର ଆଜିର ବ୍ୟବହାରରେ ସେ କୌଣସି ପ୍ରକାର ଛଳନା ଦେଖିଲା ନାହିଁ । କିନ୍ତୁ ଗୌତମବାବୁ କ'ଣ ମିଛ କହିଲେ ?

ସେ ସଂହିତା ପାଖକୁ ଧୀରେ ଧୀରେ ଗଲା, ତା'ର ପିଠି ଆଉଁସିଲା, ତାକୁ ଟେକି ଠିଆକଲା । ଆଉଁସି ଆଉଁସି କହିଲେଇ କହିଲା "ଥାଉ କାନ୍ଦନାହିଁ, ଛି ।"

ସଂହିତା ଆହୁରି କାନ୍ଦିଲା ।

ତାକୁ ଆଣି ଶୋଇବାର ଖଟ ଉପରେ ବସାଇଲା । ଝରକା ବନ୍ଦ କଲା । କେତେବେଳ ଗଲା, ସଂହିତାର କାନ୍ଦ ବନ୍ଦ ହେଲା ।

ଧନଞ୍ଜୟ କହିଲା, "ହଉ, ତାହେଲେ ଗୌତମ ଯାହା ଗପୁଛି ସେସବୁତାକ ସବୁ ମିଛ ତ ?" ତା ସ୍ୱରରେ ରାଗ ନାହିଁ, ଖାଲି ଅବସାଦ।

ସହିତା ପୁଣି କାନ୍ଦି କାନ୍ଦି ହୋଇ କାନ୍ଦ କହିଲା, "ତମେ ମତେ କ'ଣ ଭାବୁଛ ? ମୁଁ ସେଇଆ ଆଶ୍ଚର୍ଯ୍ୟ ହେଉଛି। ମୋର କି ଦୋଷ ଦେଖିଲ ? କିଏ ଲଫଙ୍ଗା ଛତରା ତୁମ ଆଗରେ କ'ଣ କହିବ ତୁମେ ତା କଥା ବିଶ୍ୱାସ କରିବ, ଆଉ ମୋ କଥାକୁ ଅବିଶ୍ୱାସ କରିବ ? ତୁମେ ତା ମୁହଁରେ ଜୋତା ନ ଦେଇ ଓଲଟି ମତେ ଝିଙ୍ଗାସିବାକୁ ଆସିଛ ? ତୁମେ ପରା ପାଠ ପଢ଼ିଛ। ଏତେ ବୁଦ୍ଧିମାନ୍, ତୁମଠି ଏତେ ଜ୍ଞାନ, ତୁମେ ଏତିକେ ବୁଝିପାରୁନା କେମିତି ? ଆଉ ମୁଁ ବଞ୍ଚି ରହିବ କାହିଁକି ? କାହା ପାଇଁ ? ତୁମର ତ ମୋଠି ବିଶ୍ୱାସ ନାହିଁ, ଏ ଜୀବନ ଥାଇ ଆଉ କ'ଣ ହେବ ?"

ଧନଞ୍ଜୟର ମନରେ ନୂଆ ଆଶଙ୍କା ହେଲା। ଏ କ'ଣ ବଞ୍ଚିବା ମରିବା କଥା କହିଲଣି। ସ୍ତ୍ରୀଲୋକ ତ ଆତ୍ମହତ୍ୟା କରନ୍ତି ସେ ଶୁଣିଛି। ସେମିତି ଯଦି ବିନା କାରଣରେ ନିର୍ଦ୍ଦୋଷ ସହିତା ନାଁରେ ଗୌତମ ଚୌତନ କଥା ଗପୁଥିବେ ଆଉ ସେ ସତେ ସତେ ଆତ୍ମହତ୍ୟା କରିବ, ତେବେ ?

ସେ ତରତର ହୋଇ କହିଲା, "ତୁମେ କାହିଁକି ସେମିତି ବାୟାଣୀ ପରି ହେଉଛ ? କାହିଁକି ଭାବୁଛ ଗୌତମ କଥାକୁ ମୁଁ ବିଶ୍ୱାସ କଲି ବୋଲି ? ସେ ଅନ୍ୟମାନଙ୍କ ଆଗରେ ସେମିତି ଗପୁଥାଏ, ମୁଁ ଶୁଣିଲି, ତୁମକୁ ପଚାରିଲି, ପଚାରିବାରେ କ'ଣ ଦୋଷ ? ସେସବୁତାକ ପ୍ରକୃତରେ ଦୁଷ୍ଟ ଲୋକ, ମିଛୁଆ, ଲଲ୍‌ଫଲ୍‌ଆ ମୁଁ ଆଦୌ ତାଙ୍କ କଥା ବିଶ୍ୱାସ କରୁନାହିଁ। ତୁମେ ଚାଲ, ତୁମ କାମ କରିବ।"

"ମୁଁ ଆଦୌ ତା କଥା ବିଶ୍ୱାସ କରୁନାହିଁ।" ସେ ଜାଣିଲା ସେ ମିଛ କହିଲା। ସେ ମିଛ କହିବାକୁ ଘୃଣା କରେ। ନିଜକୁ ବୁଝାଇଲା, ଅନ୍ୟ ମଣିଷର ଜୀବନ ରକ୍ଷା ପାଇଁ ମିଛ କହିବା ଦରକାର ହେଲେ କହିଲେ ସେଥିରେ ପାପ ଲାଗେ ନାହିଁ ପରା।

ତଥାପି ସେ ଅନିଶ୍ଚିତ, ସତ ନା ମିଛ ?

ସହିତାକୁ ଅବିଶ୍ୱାସ କରୁନାହିଁ। ଗୌତମ କଥାକୁ ବି ଅବିଶ୍ୱାସ କରୁନାହିଁ—ଅତିରଞ୍ଜିତ ହୋଇପାରେ; କିନ୍ତୁ—ସମ୍ପୂର୍ଣ୍ଣ ମିଛ ନହୋଇ ବି ପାରେ। କିନ୍ତୁ ମନର ସନ୍ଦେହ ମନେ ମନେ ରଖିବାକୁ ପଡ଼ିବ, ନ ହେଲେ କାଳେ—। ସେ କଳ୍ପନା କଲା, କେଉଁଦିନ ଅଫିସକୁ ଯାଇଛି, ଆସି ଦେଖିଲାବେଳକୁ ସହିତା କ'ଣ ଖାଇଦେଇ କାଠହୋଇ ପଡ଼ିଛି, ତା ପରେ ପାହିଲେକ, ପୁଲିସ୍, ଗହଳ, ଖବରକାଗଜ, ହଟହଟା। ସେ ଛଟା ଗାଳିବ।

ପୁଣି ସକାଳ, ପୁଣି ଦିନ ପରେ ଦିନ। ସହିତା ଆଶ୍ଚର୍ଯ୍ୟ ହେଲା। ହଠାତ୍ ଧନଞ୍ଜୟଠି କିଛି ପରିବର୍ତ୍ତନ ସେ ବାରି ପାରୁଛି। ସେ ତା ପ୍ରତି ଟିକିଏ

ତ ନରମ ହେଉଛି, ବ୍ୟବହାରରେ ବେଶି ସୌଜନ୍ୟ, ଭଦ୍ରତା, ଟିକିଏ ବେଶି ଚେଷ୍ଟା ଆଦର । ତେବେ କ'ଣ ଧନଞ୍ଜୟ ପ୍ରକୃତରେ ନିଜ ଭୂଲ୍ ବୁଝି ଧାରଲା ? ଅନୁତାପ କରୁଛି ?

ସେ ଭଗବାନଙ୍କୁ ବାରମ୍ବାର କୃତଜ୍ଞତା ଜଣାଇଲା । ଭାବିଲା ତା ସ୍ୱାମୀ ଗୋଟାଏ ଗ୍ରହ କବଳରେ ପଡ଼ିଥିଲା, ଭଲ ସମୟ ଆସିଲାଣି । ଦୁଇଥର ଯୋଡ଼ାଏ ଘଟଣାରେ ସ୍ୱାମୀ ଯେଉଁ ତା ଗର୍ବ, ତା ଉତ୍ସାହ କମିଯାଇଥିଲା, ସେ ଆପଣାକୁ ବୋଧ ଦେଲା—ସବୁ ମଣିଷ ଗ୍ରହର ଅଧୀନ, ବେଳ ପଡ଼ିଲେ ସବୁ ମଣିଷ ଭୂଲ୍ କରନ୍ତି । ଯାହାହେଉ, ଗଲା କଥା ଗଲା ।

ସନ୍ଧ୍ୟା ପୁଣି ଦେଖୁଥାଏ ତା'ର ଆଶା, ସ୍ୱପ୍ନ, ପୁଣି ଏକାଠି ଠୁଳ କରୁଥାଏ ତା'ର ବିଶ୍ୱାସ, ନିର୍ଭର । ଅଭ୍ୟାସ କରୁ କରୁ ପୁଣି ତା'ର ଉତ୍ସାହ ଲେଉଟି ଆସୁଥାଏ ।

ଧନଞ୍ଜୟ ନିତ ଅଫିସ୍‌ରେ ଦେଖେ ଗୌତମଙ୍କୁ, ଚୈତନଙ୍କୁ, ସେମାନେ ଯେଉଁ ପୁରୁଣା କଥା କୁହାକୋହି ହୁଅନ୍ତି, ସେ ମନେ ମନେ ଜଳୁଥାଏ । ସେମାନେ କେବେ ତା ନାଁ ଧରି ନାହାନ୍ତି, କେବେ କୁହାକୋହି ହୋଇନାହାନ୍ତି ଯେ ଯେଉଁ ସ୍ତ୍ରୀଲୋକଟି ଝରକା ପାଖେ ଠିଆହୋଇଥିଲା ସେ ତା'ର ସ୍ତ୍ରୀ, ସେମାନେ କହୁଛନ୍ତି ସେ 'ଅପରିଚିତା', ସେ କିଏ, ତା ସ୍ୱାମୀ କିଏ ସେମାନେ ଜାଣନ୍ତି ନାହିଁ ।

ଦିନେ ଧନଞ୍ଜୟ କାମ କରୁଥିଲା ଶୁଣିଲା ଚୈତନ କହୁଛି ଗୌତମଙ୍କୁ "ଗୌତମବାବୁ, ଆପଣ ଆଉ ଅପରିଚିତା ଆଡ଼େ ଯାଇନାହାନ୍ତି ?"

"ଗଲି ଆଉ କୋଉଠି ? ବୋଧହୁଏ ନଯିବା ହିଁ ଭଲ ।"

"କାହିଁକି ?"

"ସ୍ତ୍ରୀଲୋକ ଯେତେବେଳେ ମୋହରେ ପଡ଼େ, ସେ ଖୁବ ଗୋଲ୍‌ମାଲ୍ କରେ ଭାଇ । ସେ ଅଧା ପାଗଳ ହୋଇଯାଏ । ଜାତି, କୁଳ, ମାନ, ସ୍ଥାନ, କାଳ, କିଛି ସେ ଭାବେ ନାହିଁ । ସେ ତ ବିପଦରେ ପଡ଼େ, ଯାହା ପାଇଁ ପାଗଳ ହୁଏ ତାକୁ ବି ବିପଦରେ ପକାଏ ।"

"କେମିତି ?"

"ନୁହେଁ ? ସେ କ'ଣ ଅପେକ୍ଷା କରିବ ନା ସତର୍କ ହେବ ନା ବୁଦ୍ଧି ଖେଳାଇବ ? ଅବସ୍ଥା ଭଲରେ ଭଲରେ ଗଲେ ତ ଭଲେ କଥା ନ ହେଲେ ଯୁଦ୍ଧୁପଟା ଚନ୍ଦ୍ରାପଡ଼ ହଟହଟା ହେବ ଯେ, କିଏ ପିଠିରେ ପଡ଼ିବ ?"

"ତ ଆପଣଙ୍କର କି ବିପଦ ?"

"ଆପଣ ତ ମାନିଲେ ନାହିଁ, ମୁଁ ମୂଳରୁ କହୁଛି ପ୍ରଥମଥର ଅପରିଚିତାକୁ ଆମେ ଦୁହେଁ ଯେତେବେଳେ ଦେଖିଲୁଁ ସେତେବେଳେ ତା'ର ବେଶି ନିଘା ଥିଲା ମୋ ଆଡ଼କୁ । ଆରଥର ଯେତେବେଳେ ମୁଁ ଏକୁଟିଆ ଥିଲି ଆଉ ଝରକା ପାଖେ ଝିକିଏ ଠିଆ ଠିଆ—ମାନେ—ହେଁ, ସେତେବେଳେ ମୁଁ ଦେଖିଲି ସେ ଖାଲି ମୋ'ରୁ

ପାଇଁ ଅନାଇଁ ବସିଛୁ, ଝୁରୁଛୁ । କହିଲି ପରେ ସେ ଆଉ ତା'ର ସ୍ୱାମୀ । ସ୍ୱାମୀଟା କୁଆଡ଼େ କେଉଁ ଅଫିସରେ କାମକରେ, କାଠୁଆଟା, ସବୁବେଳେ ଗଧ ପରି ଖଟେ, ପୁଣି ଘର ନିଷ୍ଠୁର । ସତରେ, ଅନେକ ଲୋକ ଅଛନ୍ତି ଯେଉଁମାନେ ବାହାହେବା ଆଦୌ ଉଚିତ୍ ନୁହେଁ; ସ୍ତ୍ରୀ ବୋଲି ଦିନେ ଅନାଇବେ ନାହିଁ, ସ୍ତ୍ରୀର ଗୋଟାଏ ଦେହ ଅଛି, ସେ ବି ସନ୍ଧକ୍ ଖୋଜେ, ଟିକିଏ ମଉଜ ମଜ୍‌ଲିସ୍ ଖୋଜେ ଏ ଧାରଣା ବି ସେମାନଙ୍କର ନାହିଁ, ସେଗୁଡ଼ାକ ଭାବନ୍ତି ସ୍ତ୍ରୀ ଗୋଟାଏ ଫାଇଲ୍ ।"

"ସ୍ତ୍ରୀ ଗୋଟାଏ ଫାଇଲ୍ !"

"ହଁ ହୋ, ସେଇଆ । ମଝିରେ ମଝିରେ ଦିଅ ଦି ଦି ଧାଡ଼ି ନୋଟ୍ ଲେଖି ପଠେଇଦିଅ; ଆଉ କିଛି ସମ୍ପର୍କ ନାହିଁ ।"

"ତେଣୁ ଆପଣ—"

"ସୁବିଧା, ସୁଯୋଗ, ସତର୍କତା, ସମସ୍ତ । ସନ୍ଧାନ କରୁଛୁ ଆଜ୍ଞା । କାରଣ ମୁଁ ଜାଣେ ସେ ବିଚରା ମୋଠୁଁ ଖାଲି ମିଠା କଥା ଦି'ପଦ ଲୋଡ଼ୁ ନାହିଁ । ତା ଆଖି, ତା ମୁହଁ ମତେ ପରିଷ୍କାର କରି ଯେ କଥା ବୁଝାଇ ଦେଉଥିଲା । ଅନ୍ତତଃ ଘଣ୍ଟାଏ ଦରକାର । ବାହାରେ ନୁହେଁ, ଭିତରେ । ପ୍ରକୃତରେ ଭାଇ, ମୁଁ ଚାଲି-ଆସିଲି ସିନା, ମତେ କାନ୍ଦ୍ କାନ୍ଦ୍ ଲାଗିଲା । କେଡ଼େ ଅନୁରାଗୀଟିଏ ସେ ଅପରିଚିତା । ତା ପ୍ରତି ମୋର ଖୁବ୍ ମନଟା କେମିତି କେମିତି—ମାନେ—"

"ଓ, ଗୌତମବାବୁ, ତା ମାନେ ସେ ଫୁର୍ତ୍ତି ଫାଜିଲମି ନୁହେଁ, ଆପଣ ପ୍ରକୃତରେ ତାକୁ ଭଲପାଉଛନ୍ତି ।" ଗୌତମବାବୁ ଦୀର୍ଘଶ୍ୱାସ ପକାଇଲେ ।

ଧନଞ୍ଜୟ ଡାକିଲା—"ଗୌତମବାବୁ !"

"କ'ଣ ?"

"କି କଥା ପଢ଼ୁଛ ?"

"ଆପଣ ସେଥିରୁ କ'ଣ ପାଇବେ ? ସେ ଜୀବନର ଦର୍ଶନ, ଶାସ୍ତ୍ର ପୁରାଣ ତ ନୁହେଁ ଯେ ଆପଣଙ୍କୁ ଭଲ ଲାଗିବ !"

"କୁହନ୍ତୁ କୁହନ୍ତୁ ।"

"ଆରେ ବାବୁ, ଆପଣ ହେଲେ ତପସ୍ୱୀ, କର୍ମଯୋଗୀ, ଆଦର୍ଶବାଦୀ, କେତେକଥା । ଆପଣ ସ୍ୱର୍ଗକଥା ହେଲେ ଶୁଣିବେ, ଆମର ସେ ମର୍ତ୍ତ୍ୟମଣ୍ଡଳ କଥା, ଆପଣ ବୁଝି ପାରିବେ ନାହିଁ ।"

ଗୌତମ ଚୈତନ ଉଭୟ ହସିଲେ ।

ଧନଞ୍ଜୟ କହିଲା—"ମୋ କାନରେ ବି ଟିକିଏ ଟିକିଏ ପଡ଼ୁଛି ଯେ !"

ଗୌତମ କହିଲା, "ହଉ, ଶ୍ରୋତାଙ୍କ ମତାମତ ଶୁଣେଁ ।"

"ଧୂଆଁ ବିଷୟରେ ଆଉ ମତାମତ କ'ଣ ? ସେ ତ କଳ୍ପନାର ଧୂଆଁ । ମନଗଢ଼ା ।"

"ଭୁଲ୍ ଧନଞ୍ଜୟ ବାବୁ, ନିଆଁ ନଥିଲେ ଧୂଆଁ ହେବ ନାହିଁ । ସେ କଳ୍ପନା ନୁହେଁ, ସତକଥା ।"

"ସେ ଲୁଚ୍ଛା ଗପ, କଣ୍ଠା ମିଛ, ତାହା ମିଛ ।"

"ହୁଃ । ନିଜେ କିଛି ନ ଜାଣି ନ ଶୁଣି କହିଦେଲେ କଥା ମିଛ । ଶୁଂଘିଶୁଂଘି କହିଦେଲ ସୈନ୍ଧବ ଲୁଣ । ସେମିତିଆ ।"

"ତା ହେଲେ କ'ଣ ସତ ?"

"ଶୁଣନ୍ତୁ, ଆପଣଙ୍କର କ'ଣ ଥାଏ । ସୂତ୍ରରେ ବି କ'ଣ ମିଳେ, କାର୍ଯ୍ୟ ଅସଲ, ଫଳ ଅସଲ । ଆପଣଙ୍କର ସେ ଅଭିଜ୍ଞତା ନାହିଁ, ଆପଣ ଶୁଣିଲେ ବି ବୁଝି ପାରିବେ ନାହିଁ ।"

"ଆଖିରେ ଦେଖିଲେ ଯେ ପାରି ସେ ବୁଝିବ ।"

"ଫେର୍ ଭୁଲ୍ କଲେ ଧନଞ୍ଜୟବାବୁ, ସଂସାରର ଯେତେ ଜ୍ଞାନ ସବୁ ଆଖିରେ ଦେଖା ଜ୍ଞାନ ନୁହେଁ । ସବୁ କଥା ବି ଆପଣଙ୍କୁ ଆଖିରେ ଦେଖାଇ ହେବ ନାହିଁ ।"

ଧନଞ୍ଜୟ ତା କାର୍ଯ୍ୟରେ ମନଦେଲ ।

ପାଞ୍ଚଦିନ ଗଲା । ଦିନେ ଗୌତମବାବୁ ଡେରିରେ ଅଫିସକୁ ଆସିଲେ । ତରକି ତରକି ଏ ପାଖ ସେ ପାଖ ଅନାଇଁ ଅନାଇଁ ସେ ଆସି ନିଜ ଚୌକିରେ ବସିପଡ଼ିଲେ, ଫାଇଲ୍ ଓଟାରି ନେଇ ଥୋଡ଼ାଏ ଲେଖାଲେଖି କରିପକାଇଲେ । ଘଣ୍ଟାଏ ପରେ ଚୈତନବାବୁ ବି କିଛି କାମ ସାରି ତାଙ୍କ ପାଖକୁ ଘୁଞ୍ଚି ଆସି ବସିଲେ । ଚୈତନବାବୁ ପଚାରିଲେ, "ଆଜି ଏତେ ଡେରି ? ଜାଣନ୍ତି, ଆପଣ ଆଜି ଆସୁ ଆସୁ ଦେଢ଼ଟା ବାଜିଗଲା ।"

ଧନଞ୍ଜୟର ପିଠିଆଡ଼େ ସେମାନେ, ସେ ଶୁଣିପାରିଲା ।

ଗୌତମବାବୁ ପଚାରିଲେ, "ମତେ କିଏ ଖୋଜୁଥିଲା କି ?"

ଚୈତନବାବୁ କହିଲେ, "ହିଁ, ବଡ଼ବାବୁ ଦି' ଥର ଡକାଇଥିଲେ, ମୁଁ କହିଲି ସେ ଫାଇଲ୍ ଧରି ଗୋଟାଏ ବିଷୟ ବୁଝିବା ପାଇଁ ହେଇ ସେ ଘର ଅଫିସକୁ ଯାଇଛନ୍ତି । ଆଉ ଥରେ କହିଲି, ସେ ତ କଣ କହୁଥିଲେ ବଡ଼ବାବୁ ତାଙ୍କୁ କହିଥିଲେ ଫାଇଲ୍‌ଟା ଶୀଘ୍ର କରିଦେବା ପାଇଁ, ସେଇ କାମରେ ସେ ତଥ୍ୟ ସଂଗ୍ରହ କରିବାକୁ ଯାଇଥିବେ ।"

"ଧନ୍ୟବାଦ ।"

ଏଥିପାଇଁ ଧନ୍ୟବାଦ କ'ଣ ? ସେ ତ ତା' ମନକୁ ହେବା କଥା । କାଲି ମୁଁ ରହିଲେ ଆପଣ ମୋ ପାଇଁ କହିବେ । ହାଜିରା ବହିଟା ବି ଅଟକାଇ ରଖିଛି, ହାତରୁ ଛାଡ଼ିନାହିଁ ଆପଣା ଦସ୍ତଖତ କରି ସାଢ଼େ ଦଶ ପକାଇଦିଅନ୍ତୁ ।"

ଯାଇହଉ ବଞ୍ଚେଇଦେଲେ, ନ ହେଲେ ଆଜିକ ଛୁଟି ନେବାକୁ ପଡ଼ିଥାନ୍ତା ।"

"କାହିଁ କ'ଣ ହେଲା କଣ ?"

"ସେଇ ଅପରଚିତା—"

ଧନଞ୍ଜୟ କାନ ଡେରିଲା । ଉତ୍କଣ୍ଠାରେ ନିଃଶ୍ୱାସ ବନ୍ଦ ହୋଇଯାଉଥାଏ । ଚୈତନ୍ୟବାବୁ ପଚାରିଲେ, "ଏଁ ! କ'ଣ ହେଲା ? କ'ଣ ହେଲା ?"

ଗୌତମବାବୁ କହିଲେ, "ସବୁ ବାହାରୁ ବାହାରୁ ପ୍ରକୃତରେ ଆଜ ଟିକିଏ ଡେରି ହେଲା, ବୋଧହୁଏ ସାଢ଼େ ଏଗାର, କାମ ଥିଲା । ତା ହେଲେ ବି ବାରଟାବେଳେ ଏଠି ପହଞ୍ଚି ହୋଇଥାନ୍ତା । କିନ୍ତୁ ବାଟରେ, ଯେମିତି ସେ ଅପରିଚିତାର ଘର ହୋଇଛି, ଆଉ ମନଟା ସମ୍ଭାଳି ହେଲା ନାହିଁ । ତାଙ୍କ ଘରର ସେଇଁ ଝରକା—ଆପଣ ତ ଦେଖିଛନ୍ତି ପର୍ଦ୍ଦାଟା କରକୁ ଓଟରି ହୋଇଥାଏ । ସଡ଼କ ଆଡ଼କୁ ଅନାଇଁ ଠିଆହୋଇ ରହିଥାଏ—ସେଇ—ସେ ଅପରିଚିତା ।"

"ଅହା ବିଚାରି !"

"ସାଇକଲରୁ ଓହ୍ଲାଇପଡ଼ିଲି, ଗଳାଖଙ୍କାରିଲି, ସେ ମୋ ମୁହଁକୁ ଅନାଇଁ ହସିଦେଲା ।"

"ଓଃ !"

ଧନଞ୍ଜୟ ଦୁଇ ପାପୁଲିରେ ମୁହଁଭରି ଦେଇ ତଳକୁ ମୁହଁ ପୋତି ତା' ଟେବୁଲ ଉପରେ ଝୁଙ୍କି ପଡ଼ିଥାଏ ଏକ ଧ୍ୟାନରେ ସେ କଥା ଶୁଣୁଥାଏ ।

"ସେଉଠୁ"—ଗୌତମବାବୁ ଚୁପ୍ ହେଲେ ।

ଚୈତନବାବୁ ପଚାରିଲେ, "ସେଉଠୁ କ'ଣ ହେଲା ?

"କହିବି ନା ?"

"କୁହନ୍ତୁ କୁହନ୍ତୁ ।"

"ଭାବିଲି ଯାହା ହେବ ସାହସ କରିବି ତ । ତ' ହାତରେ ଏମିତି କରି ଠାରିଦେଲି, କବାଟ ଫିଟାଅ । ଭାବିଲି ଆଉ କେହି ତ ନଥିବା କଥା, ଯଦି କେହି ଥିବ, ବାହାରିବ, ପାଣି ଗିଲାସେ ମାଗିଲେ କ'ଣ ପାପ ହେବ ? ମୋ ଠାର ଦେଖି ତା ମୁହଁରେ ହସ ଆଉରି ତ କହିଲେ ନ ସରେ, ସେ ପରି କାଲ୍‌କାଲିଆ ହୋଇ ଧାଇଁଗଲା !"

"ସେଉଠୁ ?"

"କହୁନାହିଁ ମୁଁ ସାଇକେଲ ଟେକ ପିଣ୍ଡା ଉପରକୁ ନେଲାବେଳକୁ ସେ କବାଟ ବନ୍ଦ ହେଲା ।"

"ଆଁ !"

ଟିକିଏ ଦମ୍ ମାରି ଚୈତନବାବୁ ପଚାରିଲେ, "ତା'ପରେ କ'ଣ ହେଲା ଗୌତମବାବୁ ?"

ଗୌତମବାବୁ ହସିଲେ, କହିଲେ "ଆଉ କ'ଣ ?"

"ନାଇଁ ନାଇଁ କହନ୍ତୁ କହନ୍ତୁ ।"

"କ'ଣ ଆଉ କହିବ ?"

"କେତେବେଳେ ସେଠୁ ଆସିଲେ ?"

"ସେଠୁ ତ ସିଧା ଅଫିସକୁ ।"

"ସବୁ ନିରାପଦ ତ ?"

"ଆପଦ ଆଉ କ'ଣ ? ମୁଁ ସେ ଘର ଭିତରକୁ ଗଲାବେଳେ କି ସେଠୁ ବାହାରିଲାବେଳେ ତ କାହାରିକି ଦେଖି ନାହିଁ, କିଏ ବା ମତେ କାହିଁକି ଲକ୍ଷ୍ୟ କରନ୍ତା ? ଘରେ ତ କେହି ନଥିଲେ, କେବଳ ସେ, ତା ସ୍ୱାମୀ ଅଫିସ୍‌କୁ ଯାଇଥିଲା । ବାଣ୍ଡଘରେ ସାଇକଲ, ଥୋଇଥିଲି, କହିଥିଲି ସେ ନିଶ୍ଚୟ ଚକର ଧୂଳି ଚିହ୍ନ ଓଲେଇ ଦେଇଥିବ, ଆଉ ବିପଦ କ'ଣ ।"

ଧନଞ୍ଜୟବାବୁ ସବୁ ଶୁଣୁଥାଏ, ତା' ମୁଣ୍ଡ ଚାଟଯାଉଥାଏ, ତାର ଅବସ୍ଥା ନଥାଏ ।

ହଠାତ୍ ଗୌତମବାବୁ, ଫୁସ୍ ଫୁସ୍ କରି ଚିଁଛରେଇଲେ—

"ଚୈତନବାବୁ, ସର୍ବନାଶ, ସର୍ବନାଶ ।"

"କ'ଣ ହେଲା ?"

"ଦେଖିଲେ ମତେ ? ହେଇ ଅନାନ୍ତୁ, ପ୍ୟାଣ୍ଟ ଉପରେ ସେ ହାଓ୍ୱାଇନ୍ । ହାଓ୍ୱାଇନ୍ ତଳେ କଣ ? ମୋ ଗେଞ୍ଜି କାହିଁ ?"

"ଗେଞ୍ଜି ? ହଃ । କିଏ ଦେଖୁଛି ? ତରତରରେ ଘରୁ ଆସିଛନ୍ତି । ଡେରିହେଲା ବୋଲି ଗେଞ୍ଜି ନ ପିନ୍ଧି ହାଓ୍ୱାଇନ୍ କାମିଜ୍ ଗଳେଇ ପକାଇ ଆସିଛନ୍ତି ।"

"ଅସମ୍ଭବ କଥା । ଗେଞ୍ଜି ନ ପିନ୍ଧି ମୁଁ ଆସନ୍ତି ନାଁ ?"

"କୁଆଡ଼େ ଗଲା ?"

"ଅପରିଚିତା ଘରେ । ଓହ୍ଲେଇଥିଲି ତ । ଆସିଲାବେଳେ ମନର ଯେଉଁ ଅବସ୍ଥା, କେତେବେଳେ କିଏ ଆସିବ ଦେଖିବ ବୋଲି ମନ ଛନଛନ, ଗେଞ୍ଜି ଟା ଆଉ ପିନ୍ଧିବାକୁ ମନେ ନାହିଁ । କ'ଣ ହେବ ?"

"ଗେଞ୍ଜି କ'ଣ ସେ ଘରେ ଆଉ ନଥିବ ଯେ ଆପଣ ଡରୁଛନ୍ତି ?"

"ନିଜ ପାଇଁ ଡରୁନାହିଁ, ମତେ କିଏ ଦେଖିଛି କି । କିନ୍ତୁ ସେହି ବିଚରା ଅପରିଚିତା ପାଇଁ । କାଲେ ତା ସ୍ୱାମୀ ଦେଖିବ ।"

"ସେ କେମିତି ଚିହ୍ନିବ ଗେଞ୍ଜି ଟା ତା'ର ନୁହେଁ ବୋଲି ?"

"ସେଇଟା ମତେ ପଚାରୁଛନ୍ତି ଆପଣ ? ଧୋବା ଚିହ୍ନ ନାହିଁ ? ହେଇଟି ମୋ ହାଓ୍ୱାଇନ୍ କାମିଜ୍ ବେକପାଖେ ଦେଖୁନାହାନ୍ତି, ଯୋଡ଼ାଏ ତାରା ଚିହ୍ନ ଅଛି । ସେ ଗେଞ୍ଜିରେ ବି ସେମିତି ଚିହ୍ନ ଅଛି । ପିଠିରେ ଦି'ଟା ସାନ ସାନ କଣା ଅଛି ।"

"ପିଠି କଣା ବି ଆପଣ ଲକ୍ଷ୍ୟ କରିଛନ୍ତି ? ଏତେ ଜିଘା ?"

"ନଘା ନକଲେ ଏ ଦୁନିଆରେ ଆମେ ବଞ୍ଚି ପାରିବା ? ଛାଡ଼ନ୍ତୁ, ବର୍ତ୍ତମାନ ଉପାୟ କ'ଣ ?

"ଯିବେ ଆଜି ଅଫିସରେ ?"

"ହଁ ପଦ—ଦିନ ବେଳ, ସବୁଥର ତ ଭାଗ୍ୟ ପ୍ରସନ୍ନ ହୁଏ ନାହିଁ । ହୁଏତ ଗେଞ୍ଜି ଛାଡ଼ିବାଟା ହିଁ ମୋ ପକ୍ଷରେ ଦୁର୍ଭାଗ୍ୟର ଯନ୍ତ୍ରା, ଗେଞ୍ଜି ଖୋଜିଗଲେ ମୁଁ ସେ ଯନ୍ତ୍ରାରେ ପଡ଼ିବ । ବେଳହେଲଣି ଅଢ଼େଇ; ମୁଁ ଛୁଟିନେଇ କମ୍ପା କହିପୋଛି ଯାଉ ଯାଉ ଆହୁରି ଘଣ୍ଟାଏ, ବଡ଼ବାବୁ ବି ଦି'ଥର ଡାକଲେଣି, ଛାଡ଼ିବେ ନାହିଁ ! ନାଁ, ଆଉ ଆଜି ଯାଇହେବ ନାହିଁ, ଫେର୍ କାଲି ସେ ଝରକାବାଟେ ଡାକିବାକୁ ଚେଷ୍ଟା କରିବ । ତା' ଆଗରୁ ତା' ସ୍ୱାମୀ ନ ଦେଖିଲେ ଭାଗ୍ୟ । ସେ ନିଜେ ଯଦି ଜାଣନ୍ତା ମୁଁ ଗେଞ୍ଜିଟା ଛାଡ଼ିଦେଇ ଅଛି, ତେବେ ତ ଚିନ୍ତା ନଥିଲା ।"

ଧନଞ୍ଜୟ ଠିଆହୋଇ ପଡ଼ିଥାଏ । ବସିପଡ଼ିଲା, ଦରଖାସ୍ତଟିଏ ଲେଖି ଦେଲା ଯେ ତା' ଦେହ ଖରାପହେଲା, ଦିନସାକର ବାକି ଘଣ୍ଟାତକ ତାକୁ ଛୁଟି ଦିଆଯାଉ । ଦରଖାସ୍ତ ପଠେଇଦେଇ ସେ ତା' ସାଇକଲ ଆଣିବାକୁ ଗଲା ।

ଦିନ ଅଢ଼େଇ ବାଜିଥାଏ; ଦାଣ୍ଡ କବାଟରେ ସାଇକଲ ଚକର ଛାଇଛାଇ ଓ ସଙ୍ଗେ ସଙ୍ଗେ ଧନଞ୍ଜୟର ପାଟି ଶୁଣି ସେ ଖଟ ଉପରୁ ଧଡ଼ପଡ଼ ହୋଇ ଉଠିଲା, ମହାଭାରତ ପଢ଼ୁଥିଲା, ବହିଟି ଥୋଇଦେଲା, ଯାଇ କବାଟ ଫିଟାଇ ଦେଲା । କହିଲା; "ଆଜି ସଅଳ ଛୁଟି ହୋଇଗଲା ?"

ଧନଞ୍ଜୟ କବାଟରେ ପିଠି ଡିଗିଦେଇ ନିଜ ସାଇକଲକୁ କାରପଟିଆ କରି ଧରି ଆଗ ଦାଣ୍ଡଘରର ଚଟାଣକୁ ନିରେଖି ନିରେଖି ଦେଖିଲା, କହିଲା "ଏଠି ସାଇକଲ ଚିହ୍ନ କୋଉଠୁ ଆଇଲା ?"

ସହିତା ତା' ମୁହଁକୁ ଦେଖି କାବା ହେଲା, ତା କଥା ଶୁଣି କହିଲା, "ସାଇକଲ ଚିହ୍ନ କୋଉଠୁ ଆସିବ ? ମୁଁ ପରା ସତରଥର କରି ଘର ଓଳେଉଛି ଦୁଆର ଓଳେଉଛି ?"

"କାହିଁକି ଏତେ ଓଳିଆ ଓଳି ଶୁଣେ ?"

କି କଥା ! ଓଳାଇବା କ'ଣ ନୂଆ ନା କ'ଣ ମ ?"

ଧନଞ୍ଜୟ କବାଟ ବନ୍ଦ କଲା, ଶୋଇବା ଘରକୁ ଗଲା, ବାଲେଇ ମୁଣ୍ଡା ଖୋଳିଲାପରି ବ୍ୟଗ୍ରଆଡ଼ ତନ୍ନତନ୍ନ କରି ଖୋଜିଲା ।

"କ'ଣ ହଜେଇଛ ? ହଜିଛି କିଛି ?" ସହିତା ପଚାରିଲା । ଧନଞ୍ଜୟ ଜଣ୍ଟୁ ଗର୍ଜନ ପରି ଗୋଟାଏ ଗର୍ଜନ ଛାଡ଼ିଲା ।

ଲୁଗା ଅଲଣୁଣି, ତଳ, ଖଟ ଉପର ସବୁ ସେ ଖୋଜିଗଲା । ତା'ପରେ, ଠିକ୍ ଖଟ ଦାଢ଼ତଳୁ, ଯେଉଁପଟେ ଖଟଟା କାନ୍ଥର ଅତି ପାଖ, ସେଠୁ ଗୋଟାଇ ଆଣିଲା ଗୋଟାଏ ଗେଞ୍ଜି । ଘର ମଝିରେ ଠିଆହେଲା, ଗେଞ୍ଜିଟାର ବେକପାଖ

ଚଳିଦିଲା, ସେଠି ଘୋଡ଼ାଏ ଗାଈ ଚହ୍ଲା, ତା ପିଠି ପଟେ ଦେଖିଲା, ସେଠି ଘୋଡ଼ାଏ ଜଣେ ।

"ଦେଖା ସରିଲା ? କାହା ଗେଞ୍ଜି ଏଇ ?"

"ତମ ଗେଞ୍ଜି ତ ନୁହେଁ । ତୁମକୁ ତ ହ'ବା ବି ନାହିଁ । ଧୋବା ଭୁଲ୍‌ରେ ଦେଇଗଲା ? ନା, ତାହେଲେ ତ ବାସିଧୋବ ହୋଇଥାନ୍ତା । ଏକଟା ତ କାହାର ପାଳଟା ଗେଞ୍ଜି !"

"କୋଉଠୁ ଆସିଲା ଏଠିକି ଏ ଶୋଇବାଘର ଖଟ ପାଖକୁ ? କହ ! କହ ।"

"ମତେ କାହିଁକି ଧମକାଉଛ ? ମୁଁ କେମିତି ଜାଣିବି କୋଉଠୁ ଆସିଲା ? ମୁଁ ତ କାବା ହେଉଛି !"

"କାବା ହେଉଛ ! ଏଁ !" ଧନଞ୍ଜୟ ଓଠ କାମୁଡ଼ି ଆଖି ତରାଟି ଦି' ଯାହୁଣ୍ଡ ମାଡ଼ିଆସି ରଡ଼ି ଛାଡ଼ିଲା, କହିଲା, "ସତେ ! ଜାଣିନା କହୁ ? ଆଜ ଆଉ ରକ୍ଷା ନାହିଁ", ଘରଯାକ ଏପଟ ସେପଟ ହୋଇ ତରତର ହୋଇ ଯା' ଆସ କଲା, ସତେ ଯେମିତି ସେ ପିଞ୍ଜରା ଭିତରେ ବାଘ, ପଦାକୁ ଯିବାକୁ ବାଟ ନାହିଁ, କ'ଣ ସେ କରିବ ଜାଣିପାରୁ ନାହିଁ । ମୁହଁ ଉପରେ ବାରମ୍ବାର ଭ୍ରୁକୁଟୀ ପରି କେତେ ଭୟଙ୍କର ଠାଣି ଫୁଟିଉଠୁଛି; କାନ୍ଧ ମାଡ଼ୁଛି, ଡାକୁଛି; କ'ଣ ହିଂସାତ୍ମକ କାମ କରିଦେବାକୁ ଚାହେଁ ପରି, ତା ହାତ ବାନ୍ଧୁଛି, ପାଦର ଗତି ଆହୁରି ତରତର, ମନକୁ ମନ କହିଯାଉଛି—"ନାଁ ! ନାଁ ! ପାରିବ ନାହିଁ, ପାରିବ ନାହିଁ, ପାରିବ ନାହିଁ ।" ଧକେଇ ହେଉଛି । ପୁଣି ଠାଏ ଠିଆହୋଇପଡ଼ି କହିଲା—

"ଏ ଗେଞ୍ଜି ମୁଁ ଚିହ୍ନିଛି । ନିଜେ ତା'ର ରୂପ ଶବ୍ଦ ଶୁଣିଆସିଲି । ସେ ଚିହ୍ନଟ ବି କହିଥିଲା । ସେ ତ ଆଉ ଜାଣେ ନାହିଁ ଯେ ଏ ସ୍ତ୍ରୀ ଲୋକଟାକୁ ମୁଁ ବାହା ହୋଇଥିଲି !! ସେ ତ ଜାଣେ ନାହିଁ ଏ ସ୍ତ୍ରୀଲୋକଟାର ସ୍ୱାମୀ କିଏ ! ତରତରରେ ଗେଞ୍ଜିଟା ଛାଡ଼ିଗଲା, କାଳେ ସ୍ତ୍ରୀଲୋକଟା ନଜାଣୁ ତା ସ୍ୱାମୀ ଦେଖିପକାଇବ ବୋଲି ସେ ଗ୍ରୁନଅ । ହାଃ ହାଃ ହାଃ ହାଃ", ଧନଞ୍ଜୟ ଅଟ୍ଟହାସ କଲା, ପାଗଳର ହସ । ମଝିରେ ସହସା ଦି' ଚାରିଥର ପାଟିକରି ଗାରଥାଏ "କିଏ ? କିଏ ସେ ?", ପୁଣି କହିଲା, ଏ ଗେଞ୍ଜି ଏଠିକି କେମିତି ଆସିଲା ? କେହି କ'ଣ ଝରକାବାଟେ ଗଳେଇ ଫୋପାଡ଼ି ଦେଲା ?"

"ଝରକା ବାଟେ ଭିତରକୁ ଛାଟି ଫୋପାଡ଼ି ଦେଇଥିବ, ଆଉ କିଏ ଘଟେଇଥିବ, ହେ ଭଗବାନ ! କି ଷଡ଼ଯନ୍ତ୍ର !"

ଧନଞ୍ଜୟ ତା' ହାତ ଛାଡ଼ିଦେଇ ତା ମୁହଁ ପାଖକୁ ମୁହଁ ନେଇ ଗର୍ଜନ ଛାଡ଼ିଲା "କଳଙ୍କିନି ! ନିର୍ଲଜ୍ଜ ବଦମାସ ଧୂର୍ତ୍ତ ଭଣ୍ଡ ମିଛୁଆ ଛତରଖାଇ—" ସେତେବେଳେ କ'ଣ ଯେ ତା ମୁହଁ ଆଖି ହୋଇଗଲା, ତା ଠାଣି ହୋଇଗଲା,

ସହତା "ମାଗ୍ଗେ !" ବୋଲି କହି ଗଛ କାଟିଲା ପରି ତଳେ ପଡ଼ିଗଲା, ତା ମୁହଁ ଫିକା ହୋଇଗଲା । ସେ ବେହୋସ୍ !

"କ'ଣ କଲି ! ମାରିପକାଇଲି ! ହେ ଶୁଣ !" ଧନଞ୍ଜୟ ତା' କଡରେ ବସିପଡ଼ିଲା, ଭେ ଭେ କାନ୍ଦିଲା, ନିଜ ମୁଣ୍ଡ ବାଳକୁ ଓଟାରିଲା । ସେ ତାକୁ ବୁଝିକଥା କିଛି କହୁଚି, ଖାଲି ତା' ହାତକୁ ଚିପି ଧରିଥିଲା । କିନ୍ତୁ ତା,ର ଭ୍ରାନ୍ତି ହେଉଥାଏ ସେ ସଂହତାକୁ ମାରିପକାଇଛି, ତା ତଣ୍ଟିକୁ ଚିପିଚିପି ମାରିଛି, ତାକୁ ଝୁଣି ଝୁଣି ମାରିଛି, ସ୍ତ୍ରୀକୁ ହତ୍ୟା କରିଛି ।

"ମୁଁ ଖୁଣୀ ! ଖୁଣୀ ! ପୁଲିସ୍ ! ମତେ ଫାଶୀ ଦିଅ !"

ହଠାତ୍ ପୁଣି କ'ଣ ମନେପଡ଼ିଗଲା, ସେ ଧାଇଁଯାଇ ପାଣି ଆଣି ତା' ସ୍ତ୍ରୀ ମୁଣ୍ଡରେ ମୁହଁରେ ଢାଳିଲା । ସହତା ଆଖି ଖୋଲିଲା । ପୁଣି ବନ୍ଦ କଲା । ଧନଞ୍ଜୟ ତାକୁ ଗୋଟେଇ ନେଇ ଚୁଆକୁ ଜାକିଲା ପରି କୋଳରେ ଥୋଇ ଧରିଲା, କେତେ କ'ଣ ଗେହ୍ଲା ଆଦର କଥା କହିଗଲା ।

ସହତାର ଚେତା ହେଲା । ସେ ତା' ସ୍ୱାମୀର ମୁହଁକୁ ଅନାଇଲା, ଆସ୍ତେ ଦୁଇ ହାତରେ ତା'ର ଅଣ୍ଟାକୁ ବେଢ଼େଇ ଧରିଲା । ସେଇ ମୁହଁରେ ସେଇ ଦେହରେ ସେ ଦେଖିଲା ତା'ର ପରିଚିତ ଆଶ୍ରୟ । ଧନଞ୍ଜୟ ଘରଆଡ଼କୁ ଅନାଇଲା । ପୁଣି ସବୁ ମନେପଡ଼ିଗଲା । ତାମୁହଁର ଭଙ୍ଗୀ କଠୋର ହୋଇଗଲା, ତା' ଦେହ ଘୃଣାରେ ଥରିଲା । ଚଢ଼ିଆସୁଥିବା ରାଗକୁ ପୁଣି ତାର ଭୟର ଆଶଙ୍କା ଦାବିଦେଲା । ଭାବିଲା, ସ୍ୱେ ଗୋଟାଏ ଶରୀର ନୁହଁ, ଗୋଟିଏ ମନୁଷ୍ୟ, ସେ ଆଉ ତାର ସହତା ବାଟ ପାଇଁ ପ୍ରସ୍ତୁତ ହେଲା, ଆଶଙ୍କାରେ ତା' ମନ ମରିଯାଇଥାଏ । କିନ୍ତୁ ପାଟି ଫିଟାଇବାକୁ ଇଚ୍ଛା ହେଉନଥାଏ, ଭାବୁଥାଏ—ତାଙ୍କ ମତ ଠିକ୍ ନାହିଁ, ପ୍ରତିବାଦ କଲେ ସେ ଅତୁରଥରେ ବାସ୍ତ ହେବେ, କିଛି କହିଲେ ପୁଣି ରକ୍ତଜରେ ନିଆଁ ଲଗିଲାପରି ଜାଳେ ହେବ, ଯାହା ଭାବୁଛନ୍ତି ସେଇଆ କରନ୍ତୁ । କିନ୍ତୁ କ'ଣ ସ୍ୱେ ନାଳା ! କୁଆଡ଼ୁ ଆସିଲେ କେଉଁ ଗୌତମ କେଉଁ ଚୈତନ ତା'ର କପାଳରେ ନିଆଁ ଲଗାଇବାକୁ ? କିଏ ସେ ପିଶାଚ ଦ'ଟା ? କାହିଁକି ସ୍ୱେ ଅଦୋଉଡ ସେମାନଙ୍କର ? କୁଆଡ଼ୁ ଆସିପାରେ ସେ ଅଲକ୍ଷଣା ଗେଞ୍ଜିଟା ! ନିଶ୍ଚୟ କେହି ଝରକାବାଟେ ଫୋପାଡ଼ିଦେଇ ପଳାଇଛି । ସେ ଯେତେବେଳେ ଦେଖାଇଘରେ ଥିଲି କି ବାସନ ମାଜୁଥିଲି କି ଆଉ କ'ଣ କରୁଥିଲି, ସେତିକିବେଳେ ହେବ ।

ଗେଞ୍ଜିଟା ଚଟାଣରେ ପଡ଼ିଛି । ସହତା ତାକୁ ଆଉ ଛୁଇଁଲାନାହିଁ । ଘୁଞ୍ଚୁଣୀରେ ଓଲେଇ ଦୁଆର କଣରେ ଫୋପାଡ଼ିଦେଲା ।

ଧନଞ୍ଜୟ ଅନାଇଦେଲା, କହିଲା "ଓଃ!" ପୁଣି ତେଜଉଠୁଥିବା ରାଗକୁ ଦାବିରଖି ସେ ସେ ଚେଞ୍ଜିରେ ଦିଆସିଲି ଲଗାଇଦେଲା ।

ସହତା କହିଲା—"ଭଲ ହେଲା ।" ତା ଗୁଡ ହାଲୁକା ଲଗିଲା । ଧନଞ୍ଜୟର ସ୍ନାୟୁସବୁ ରାଗରେ ଟଣକି ଉଠିଲା, ଓଠ କାମୁଡ଼ି ସେ ପୁଣି ମନ୍ଦିରର ଭିତରକୁ ଗଲା ।

ଟିକିଏ ବେଳ ପରେ ସହିତା କହିଲା, "ତୁମେ କ'ଣ କରୁଛ ?" "ତୁମେ ଲୁଗା ଟ୍ରଙ୍କ୍, ଗହଣା ଟ୍ରଙ୍କ୍, ତୁମେ ବଡ଼ ସିନ୍ଦୁକ, ଏସବୁତା ସବୁ ସଜାଉଛ ?"

ଧନଞ୍ଜୟ କହିଲା, "ହଁ ।"

ସହିତା ତର୍ଜି ଉଠି କହିଲା—"କାହିଁକି ?"

"ଏଁ ! କ'ଣ କହୁଚ !"

"ସବୁବେଳେ ନୁହେଁ, କେବଳ କେତେବେଳେ । ଆପଣମାନଙ୍କ କଡ଼ରେ ରହିଲେ ସୁସ୍ଥ ରହିପାରେ । ମୋ ପାଖକୁ ଗଲେ ପୁଣି ମାତିବ । ଦରକାର ତାକୁ ଗୋଡ଼େ ଗୋଡ଼େ ଜଗିବା । ମୁଁ ତ ଦଶଟାରୁ ଛ'ଟା ଘରେ ନଥିବି, ଅଫିସରୁ ଫେରିଲେ ହାଟ ବଜାର ଅଛି । ବସାରେ ଆଉ କେହି ବି ନାହିଁ । ତେଣୁ ଏଠି ସେ ଥାଉ । ମୁଁ ଯାଉଛି । ବର୍ତ୍ତମାନ ଗଲେ ପୁଣି ବସ୍ ଧରିବି ।"

"ଏଇ ରାତି ରାତି ! ଇଚ୍ଛା ନ ଗଲେ ନଚଲେ ବାପା ?"

"ଅଫିସ୍ ଅଛି ଯେ ।"

ସହିତା ଆସିଲା । ବାପା ମା' ଦୂରେଇଗଲେ ।

"ତୁମେ ଆସୁ ଆସୁ ନଖାଇ ଚାଲିଯିବ ?"

"କାଲି ଅଫିସ୍ ।"

"ଛୁଟି ନଅ ।"

"ଯାଏଁ ।"

ସହିତା ଆତୁର ହୋଇ କାନ୍ଦପକାଇ କହିଲା—

"ସତେ ଚାଲିଯାଉଛ ? ଆଉ ମୁଁ ? ମତେ କେବେ ନେବ ?"

ଧନଞ୍ଜୟ ତା' ମୁହଁକୁ ଅନାଇଲା । ଲଣ୍ଠନ ଆଲୁଅ ତା' ମୁହଁରେ ଦେହରେ ପଡ଼ୁଛି । ମୁହୂର୍ତ୍ତକେ ସେ ଆପଣାକୁ ଭୁଲିଗଲା, ଅନ୍ତରର ସେହି ବୁଦ୍ଧିକୁ ଭୁଲିଗଲା—ଏଇ ମୁହଁ, ଏଇ ଦେହ—ତା'ର ହୃଦୟ, ତା'ର ପ୍ରେମର ଏକମାତ୍ର ଆଧାର, ତା'ର ଅସ୍ତିତ୍ୱର ଆଶ୍ରା—ଏଇ ସହିତା । ପୁଣି ଓଟାରନେଲା କିଏ ତାକୁ, ଅନ୍ଧାର ଘେର ଭିତରର ଗୌରବ ଭିତରକୁ, ସେ ଚାଲି ପଡ଼ିଲା କିଛି କହିଲା ନାହିଁ, ତା' ଓଠ ଥରୁଥାଏ ।

"କେବେ ଆସିବ ? କେବେ ମତେ ନେବ ?" ସାନ ପିଲା ତା'ପରେ ବି, ପ୍ୟାଣ୍ଟ ହାଓ୍ୱାଇନ୍ ପିନ୍ଧି ସାଇକଲ ଚଢ଼ି ଯେଉଁମାନେ ସାଢ଼େ ଦଶଟା ବେଳେ ଅଫିସ୍ ଯାଆନ୍ତି, ତା' ଭିତରୁ ଜଣେ ଲୋକର ନାଁ ଧନଞ୍ଜୟ । ବର୍ଷ ପରେ ବର୍ଷ ବିତିଯାଏ, ଅଫିସ ଉଠିଲୁ ଭିନେ ଅଫିସ୍ । ଚାକିରିରେ ଏ ପାହାଚରୁ ସେ ପାହାଚ—ବହୁତ ଲୋକ, ବହୁତ ପ୍ୟାଣ୍ଟ ହାଓ୍ୱାଇନ୍, ବହୁତ ଅଫିସ୍, ବହୁତ ପାହାଚ । ଦୂରରୁ ବାରି ହୁଏ ନାହିଁ କାହାଠୁଁ କେମିତି ସେ ଭିନେ । ସତେ ଯେମିତି ଜନାପଲ, ଜନାଧାର, କିଏ ଡଗ ଡଗ ହୋଇ ଚାଲିଛି ତ ଚାଲିଛି, କିଏ

କେଉଁଠି ଘେର ବୁଲୁଛୁ ତ ବୁଲୁଛୁ, ଡାର ଦୁଏ ନାହିଁ କେମିତ ଗୋଟିଏ କନ୍ଦାଠୁଁ ଅନ୍ୟ ଗୋଟିଏ ଭିନେ, ଖାଲି ଆକାରରେ କିଏ ସାନ, କିଏ ବଡ଼ ।

ପାଞ୍ଚ ବର୍ଷ—ଦଶ ବର୍ଷ—କୋଡ଼ିଏ ବର୍ଷ—କାନ ଉପରେ କପାଳ ଉପରେ ଅଗ୍ରଏ ଅଗ୍ରଏ ଚନ୍ଦନ, ମୁଣ୍ଡ ମଝିରେ ଅଗ୍ରଏ ଚନ୍ଦା—ସମସ୍ତେ ଜାଣନ୍ତି ସେ ଏକୁଟିଆ ମଣିଷଟିଏ, ତା'ର ସ୍ତ୍ରୀ ମରିଛି । ଆଉ ବାହା ହେଲି ନାହିଁ, ଅବିବାହିତ ଲୋକ ପରି ଥାଏ । ପାଖ ଲୋକ, ଜାଣିବା ଲୋକ କହନ୍ତି, ସେ ଯେତେବେଳେ ନୂଆ ହୋଇ ବାହା ହୋଇ ଆସିଥିଲି, ତା' ଅଫିସରେ କେତେଜଣ ଖଚଡ଼ା ସହକର୍ମୀ ମଜା ଦେଖିବା ଲାଗି ମିଛକଥା ଫାନ୍ଦ ତା' ଶୁଣନ୍ତାରେ କୁହାକୋହି ହୋଇ ତା' ମନରେ ସ୍ତ୍ରୀ ପ୍ରତି ସନ୍ଦେହ ସୃଷ୍ଟି କଲେ, ବନେ ତାଙ୍କର ଭିତରୁ ଜଣେ ତା' ଶୋଇବାଘର ଝରକା ବାଟେ ନଜର ଗୋଟାଏ ପୁରୁଣା ଗେଞ୍ଜି ଘର ଭିତରକୁ ଫୋପାଡ଼ି ଦେଇ ପଳାଇଲେ, ସ୍ତ୍ରୀ ଲୋକଟି ବଡ଼ବି ସେ ଘରେ ନଥିଲି, ଦେଖିନାହିଁ କି ଜାଣିନାହିଁ, ସେହି ଦୁଷ୍ଟ ଲୋକ ଅଫିସକୁ ଯାଇ ତା' ସ୍ୱାମୀ ଶୁଣିଲି ଭଳି ତାଙ୍କ ସାଙ୍ଗକୁ ମିଛରେ କହିଲେ ଯେ ସେ ସେଘର ଭିତରକୁ ଯାଇଥିଲି । ଆସିଲି-ବେଳେ ତରତରରେ ଗେଞ୍ଜିଟା ଫୋପାଡ଼ି ଦେଇ ଆସିଛି, ଧନଞ୍ଜୟ ଘରକୁ ଆସି ସ୍ତ୍ରୀକୁ ଦୋଷ ଦେଲି, ଅପମାନ ଦେଲି, ତାକୁ ତା' ବାପଘରେ ଛାଡ଼ି ଦେଇ ଆସିଲି ।



# ବଦଳ ପାଣି

ବଡ଼ ବଢ଼ି ଆସିଛି, କାଠଯୋଡ଼ିରେ ପାଣି ଛବିଶ ଫୁଟ୍ । କୁଆଖାଇ ବଢ଼ି ସଡ଼କକୁ ଲଙ୍ଘିଛି । ଧର୍ମଶାଳା, ଅଳ, ଭଦ୍ରଖ ଭଣ୍ଡାରିପୋଖରୀ କୁଆଡ଼େ କୁଆଡ଼େ କଣ ପ୍ରଳୟ ହେଲଣି, ଖବର କେଉଁଠୁ କିଛି ମିଳୁ ନାହିଁ । ଗୃକର ଭଗିଆ କହିଲା, "ମାର୍କେଟରେ ଲୋକେ କୁହାକୋହି ହେଉଛନ୍ତି, ସେ ଶୁଣି ଆସିଛି । "ଆମର ସେ ଅଳ ଆଡ଼ ମା, ଡାଆଣିଆ ବଙ୍ଗଳାକୁ ଯାଉ ଯାଉ ଦିଁ ହାତ । ଥିବଟି ମା ! ସେ ବଗାହ ଜାଣେ ।" ଗୃକର ଭଗିଆ ମାଂସ କିଣି ଆଣିଛି ।

"ନାଲି ମୋହର ଦେଖି ଆଣିଲୁଟିରେ ?"

"ହଁ ମା ! କୁଆଡ଼େ ଗୋରୁ ଗାଈ ମଣିଷ ବ ଭସି ଯାଇଚନ ।"

"ହଇରେ ସତ୍ କାହିଁ ? ଯା ଆଉ ଥରେ ଯା ।"

ସେ ଘଷୁ ଘାଗଡ଼ା ଗଳାରେ ପାଟି ଶୁଣିଲ, "ବଟର୍ ଆଣିଚ କି ନାହିଁ ?" ଡର ଡର ଭଗିଆ କହିଲା, ତୁନି ତୁନି, "ଭୁଲିଗଲି ମା, ଏଇ ନଈ ବଢ଼ି ଖବରଟା ଶୁଣି । ହଉ ହେଲା, ଆଉ ଥରେ ପଳେଇ ଯାଉଚି—"

ମେଦିନୀ ଦେବୀ ତାଙ୍କ ମାଉଁସିଆ ଗାଲକୁ ଝାଡ଼ି ଦେଇ କହିଲେ, "ରୁ ଚୁଲିପଶାଟା ତ ସେମିତିଅଟା, ପାଞ୍ଚଟା ଆଣିଲେ ସାତଟା ଭୁଲିଯିବୁ । ବଟର ତ ଆଣିଲୁ ନାହିଁ, ଈଶ୍ରୁ ବାବୁଙ୍କ ପାଉଁରୁଟି ଟୋଷ୍ଟ ଦେବ କେମିତି ? ସାଇଲୁ ରୁ ମଣିଷଟା, ଯା ଯା ଧାଁ—"

ବିଦ୍ୟାଭୂଷଣ ଓରଫ ଚକ୍ରିବାବୁ ଦାଣ୍ଡଘରେ ସୋଫା ପିଠିକି ଆଉଜା ପଡ଼ି ଖବର କାଗଜ ପଢ଼ୁଥାନ୍ତି । ରେଡ଼ିଓ ଖୋଲାଥାଏ, ବଜା ଯାଇଥାଏ ଅତି ଧୀର ହୋଇ । ଦୂର ଦିଲ୍ଲୀ ସହରରେ ରେଡ଼ିଓ ଘରେ ସଙ୍ଗୀତରେ ଉନ୍ମାଦିନୀ ହେଲାପରି ସ୍ୱରରେ ଗ୍ରୁଟିପିଟି ହେଉଥାଏ କେଉଁ ପ୍ରସିଦ୍ଧ ଗାୟିକା । ଚକ୍ରିବାବୁଙ୍କ ତୁଣ୍ଡରେ ଥାଏ ଝଣ୍ଡିଏ ସିଗାରେଟ୍, ପାଖରେ ଗୋଲ ବେତ ଟେବୁଲ ଉପରେ ସିଗାରେଟ୍ ଟିଣ ଥୁଆ ହୋଇଥାଏ । ମୁଗ ବର୍ଷାର ସକାଳ, କାହ୍ନା ଝିପି ଝିପି ।

ହଁ, ଖବର କାଗଜରେ ବଢ଼ି କଥା କିଛି ଲେଖିଛି । ହାଲ୍ତ ଏତିକି, ବେଶି କିଛି ଜଣା ପଡ଼ିନାହିଁ, ସାହାଯ୍ୟ ତ ନିଶ୍ଚୟ ଦିଆଯିବ; ଯେତେ ହାହା କରିବା କଥା ସବୁ କରାଯିବ । ତେବେ, ସ୍ୱେ ଓଡ଼ିଶାରେ ବଢ଼ିଟା ଅପରିହାର୍ଯ୍ୟ, ବଢ଼ିରେ ବଢ଼ିରେ ଏ ଦେଶଟା ଅଭ୍ୟାସ ହୋଇଛି କିନା, ତା ଛଡ଼ା ବଢ଼ିର ଅସୁନ୍ଦର ମୂର୍ତ୍ତିଟା ଦେଖି ତା ଉପକାରଟା ଭୁଲିଗଲେ ଚଳିବ ନାହିଁ, ଜମିରେ କେତେ ପଟୁ ପକାଏ !

ଜମିକ ସାର ଯୋଗାଏ ! ନାନା ବଡ଼ ବଡ଼ ଲୋକ ଏମିତ କେତେ କେତେ ମନ୍ତବ୍ୟ ଦେଇଛନ୍ତି ।

ଚୁଙ୍ଗିବାବୁ ମନକୁ ମନ କହିଲେ—"ହୁଁ ।"

ଘର ବାହାରର କାଉନ୍ଦା ପାଗ ଘର ଭିତରର ଉଷୁମକୁ ସତେଜ ଆହୁରି ଉପଭୋଗ୍ୟ କରି ଦେଇଥିଲା । ଲମ୍ବେଇ ଲମ୍ବେଇ ଡାକ ଛାଡ଼ିଲେ—"କଣ ଗୁ ହଉଛ ?"

ଘର ଭିତରୁ ମଧୁରିଆ ସ୍ୱରରେ ଶୁଭିଲା "ହୁଁ ହୁଁ ଯାଉଚ ଯାଉଚ— ।" କଳା ମେଘଟା ହଠାତ୍ ଫୁଲି ଉଠୁଛି ଆଖି ଆଗରେ, କୋଠା ଗହଳ ଗଛର ମଥାଡ଼ ଟପି ସାମନାରେ ସେ ଆକାଶରେ । ତା'ର ବୁଢ଼ିଟା ବଡ଼ ବଡ଼ ଧଳା ଜଣ ଉପରକୁ ଉଠି ପୁଣି ତଳକୁ ଓହ୍ଲାଇ ପଡ଼ୁଛି । ତ୍ରିପଣ୍ଡ କଳା ମୁହଁରେ ଦନ୍ତା ବଡ଼ ବଡ଼ ମୋଟା ମୋଟା ଧଳା ବାଙ୍କୁଲି ଜଣ । ବାଃ ।

ଚୁଙ୍ଗିବାବୁଙ୍କର ନୂଆ ଖିଆଲ ମନେ ପଡ଼ିଲା । ଆସନ୍ତା ଗୋଟିଏ ଭଜା କୁକୁଡ଼ା, ସତେକି ଗୋଟାପୁଞ୍ଜା, ତା ପେଟ ଭିତରେ ପୂରି ହୋଇଥାନ୍ତା ଆଉ ଗୋଟିଏ ସାନ କୁକୁଡ଼ା । ତା ପେଟ ଭିତରେ ଥାଆନ୍ତା ପିଆଜ ଡିମ୍ବ, କସ୍‌ମିସ୍, ଅଖରୋଟ୍,—କେମିତ ଲାଗନ୍ତା ? ସେ କୁକୁଡ଼ା ପାଖେ ଅନ୍ୟ ପ୍ଲେଟରେ ଥାଆନ୍ତା ପେନ୍ଥାଏ ଅଙ୍ଗୁର, ନାଲି ନାଲି ଆପଲ୍, ପ୍ଲମ୍, ଆଉ ଗୋଟାଏ ପ୍ଲେଟ୍‌ରେ ପୁଡ଼ିଂ, ଭଲ ଜାଗାଟାଏ ପେଗ୍, ପଇସା ଥିଲେ ବି ଖାଇବାକୁ ଜନଷ ମିଳେ ନାହିଁ । ଅପେକ୍ଷା କରିବାକୁ ପଡ଼ିବ । ଶିଳ୍ପର ପ୍ରସାର ହେବ । ସହରମାନ ଆହୁରି ବଢ଼ିବ, ତା' ପରେ ଢେର ହେଉଛି । ଚୁହା ଜଳଖିଆ ଆସୁନାହିଁ । କପ୍ ପ୍ଲେଟ୍‌ର ଟୁଁ ଟାଁ ଶୁଭିଲାଣି, ତା ସଙ୍ଗେ ସଙ୍ଗେ ଦଶପଟ ଚୁନା କାଚର ଝଣ ଝଣ । ମେଦ୍ନୀର କଚଟି ଗୋଲ । ଗୋଲପାଣି ପରି ଚୁହା ଉପରୁ ବାମ୍ପ । ଇସ୍, ଏ ବରଷା, ଆଉ ଏ ନଈ ବଢ଼ିଟା !

"ପେଗ୍ କଣ ? ଖାଲି ଚା ? ଗରମ ପାଣି ?"

ମେଦ୍ନୀ ହସିଲେ । ଗୋଳିଆ ଗୋଳିଆ ଦାନ୍ତ । ଧଳା ଝକ୍ ଝକ୍ । ଏକା ମସ୍ତକେ । ଆଉ ସେହି ଓଠ ଯୋଡ଼ିକ । କାନ ତଳେ ଓହ୍ଲାଇଛି ସୁନାର ଗୋଲ ବଳୟ । ମେଦ୍ନୀର ଦେହର ଚନ୍ଦ୍ରା ବାସ୍ନା ଆସି ହାବୁକା ମାରୁଛି, —ନା, ଖାଲି ତା ଦେହର ନୁହେଁ, କେତେ କାର୍ଯ୍ୟାଳୟରେ କେତେ ଲୋକଙ୍କ ଶ୍ରମରେ ତିଆରି ବାସ୍ନା । ଦେହ ଲାଗି ସାବୁନ, ମୁଣ୍ଡ ଲାଗି ତେଲ, ମୁହଁ ଲାଗି ପ୍ରସାଧନ । ଚୁଙ୍ଗିବାବୁ ଅନୁଭବ କଲେ, ଦେହ ଭିତର ଉଷୁମ ହୋଇ ଉଠିଲାଣି । ସିଗାରେଟ୍ ଥୋଇ ଦେଇ ହିନ୍ଦୀ ସଙ୍ଗୀତ ଗୁଣୁ ଗୁଣୁ ହୋଇ ଅଧା ହସିଲା ଭଙ୍ଗୀରେ ଭିତରପଟ୍ କବାଟଟି ବନ୍ଦ କରିବାକୁ ଉଠି ଠିଆ ହେଲେ । ହରିଣୀ ପରି ଖେପା ମାରି ମେଦ୍ନୀ ହସି ହସି ଧାଇଁଗଲେ ଦୁଆର ମୁହଁକୁ । କହିଲେ "ଥାଉ ଥାଉ— ମୋର ତେଣେ କେତେ କାମ ପଡ଼ିଛି ।'

"ଓଃ ! କାମ କାମ !—"

"ନାହିଁ କଣ ତା ମନକୁ ହେବ ?"

"କଥା କାହିଁ ?" କଥା ତାଙ୍କର ପାଞ୍ଚ ବର୍ଷର ଝିଅ ।

"ତା ସାଙ୍ଗ ଘରକୁ ବୁଲି ଯାଇଛି ଏଇ ଗୌରାଙ୍ଗବାବୁଙ୍କ ଘରକୁ ମ ।"

"ବର୍ଷାରେ ଗୁଡ଼ା ଦେଲି ?"

"ତାକୁ କଣ ସେକ ହେବ ? ଯାହାନ୍ତୁ ପହରୁ ଲଗେଇଚ । ଗିଡ ଗିଡ ଗିଡ । ଛତା ନେଇଚ । ସାଙ୍ଗରେ ଦନେଇ ଯାଇଚ । ଯାଉ ଖେଳୁ ଟିକଏ ପିଲାଲୋକ ।"

"ଅଉ ନନ୍ଦ ?" ଦଶ ବର୍ଷର ପୁଅ, ସାହେବୀ ଇସ୍କୁଲରେ ପଢ଼େ ।

"ତାଙ୍କର ପରୀ ଆଜି ସକାଳୁଅ । ଡ୍ରାଇଭର ଅଧଘଣ୍ଟାଏ ହେବ ନେଇ-ଗଲାଣି ।"

ଚାରିଆଡ଼ ଅନ୍ଧାର କରି ବର୍ଷା ଖୁବ ଜୋର୍‌ରେ ହେଲାଣି । ବାପରେ କି ତୋଡ଼ ! ଚହିଁବାକୁ ରେଡ଼ିଓ ଖୁବ ମୋଡ଼ି ଦେଲେ । ଖବର ଦିଲ୍ଲୀରୁ ଖପିଆସିଲା ଓଡ଼ିଶାକୁ । ରେଡ଼ିଓ ସମ୍ବାଦ ଦେଉଛି । ଏପରି ବଡ଼ ଝଡ଼ବନ୍ୟା ଲୋକଙ୍କ ଜାଣତା ଭିତରେ କେବେ ଆସି ନଥିଲା । ଘର ମାନ ଫାଟି ଯାଉଛି । ଚାରିଆଡ଼େ ଜଳାର୍ଣ୍ଣବ ହୋଇଛି । ବନ୍ଧୁ ଗୃହପାଳିତ ପଶୁ ଦାନ । ମନୁଷ୍ୟ ବି ମରୁଛନ୍ତି । ଗାଁକୁ ଗାଁ ନଷ୍ଟ ହେଲା । ଫସଲ ସଢ଼ି ଗଲା । ହଜାର ହଜାର ସଂଖ୍ୟାରେ ଲୋକେ ବାସହୀନ, ଆହାରହୀନ, । କଲିକତା ମାନ୍ଦ୍ରାଜ ରେଲପଥ ସ୍ଥାନେ ସ୍ଥାନେ ଭାଙ୍ଗି-ଯାଇଛି, ବାଟ ବନ୍ଦ ।

ଝମ୍ ଝମ୍ ବର୍ଷାରେ ଭିଜି ଭିଜି ସାଇକଲ୍ ଚଢ଼ି ଆସି ପହଞ୍ଚିଲା ଭଗିଆ । ସେ ଥରର୍ ଥରୁଛି । ଦର ଦର ପାଣି ବୋହିଯାଉଛି ।

"ଓଃ । ଏତେ ଡେରି କଲୁ ?" ମେଦିନୀ କହିଲେ ।

ଭଗିଆ କୈଫିୟତ ଦେଲା, ଏ ମୋଟା ବରଷା, ମୁହଁରେ ଠାଇଠାଇ ଚଟକଣି କସେଇ ଦେଉଚି, ସାଇକଲରେ ଆସୁ ଆସୁ ବାଟ ଦିଶୁ ନାହିଁ । ଭଗିଆର ପିନ୍ଧାଲୁଗା ତା ଚମରେ ଲାଗି ଯାଇଛି । ନାକ ଫୁଲାଇ ମୁହଁ ଭୃକୁଣ୍ଡା କରି ମେଦିନୀ କହିଲେ, "ହଉ ହଉ ଯା ବଦଳି ପକେଇବୁ ।'

ଲୁଗା ପାଲଟି ପକାଇ ପକାଇ ଭିତର ପିଣ୍ଡାକୁ ଆସି ଭଗିଆ କହିଲା, "ଯାହାଙ୍କ ଘର ଭାସି ଯାଇଥିବ, କୋଉ ବନ୍ଧ ଉପରେ, କୂଦ ଉପରେ, ଓଦା ସଢ଼ସଢ଼ ହୋଇ ବସିଥିବେ ମା ! ଖିଆ ନାହିଁ, ପିଆ ନାହିଁ, ଚାରିଆଡ଼େ ପାଣି, ଆଉ ଏ ବରଷା ତାଙ୍କର ଉପରେ ଅଜାଡ଼ୁଥିବ ଗଳଗଳ, ହାଇରେ ଦଇବ !"

ମେଦିନୀ ପାଉଁରୁଟି କାଟୁ କାଟୁ କହିଲେ, "ଭାଗ୍ୟ । ତାକୁ କାହା ବଶ !"

ଭଗିଆ କହିଲା, "ଆମ ଆଡ଼ କ'ଣ ହୋଇଥିବ କେଜାଣି ? କୋଉ ଏ ବଢ଼ିରେ ଯାଇ ହବ ? କିଏ ବଞ୍ଚିଥିବ, କିଏ ମରିଥିବ । କହୁଚନ୍ତି ବନ୍ଧ ପଛେ ପଛେ ମାଡ଼ିଆସିବ ବାଢ଼ି, ସେଇଠୁ ଆଉ କି ରକ୍ଷା ହବ । କହୁଚନ୍ତି ଶହ ଶହ ଗୋରୁ ଗାଈଙ୍କ ମଢ଼ ଭାସୁଚି ଯେ, ଗନ୍ଧରେ ପେଟରୁ ଭାତ ଉଠି ଆସୁଚି । କୂଅ, ପୋଖରୀ ତ ପାଣିରେ ବୁଡ଼ିଚି, ପିଇବାକୁ ସେଇ ଗୋଳିପାଣି । ଘର ତ ଯାଇଚି, ଗଛମୂଳେ କାଦୁଅ ଉପରେ ବସା । ଭାତ ନା ଚୁଡ଼ା ? ଯାହା ତାହା ପତର ଚୋବେଇ ଚୋବେଇ ପ୍ରାଣ ଧରିଚନ୍ତି, କାହିଁବାଡ଼ ବି ମିଳେ ନାହିଁ, ସୁଅକୁ ଦେଖିଲେ ଚଲକାମନ୍ଦେ, ହା ପକ୍ଷୀ ଯାଉଥିବ, କିଏ ଆସିପାରୁଚି ନା ଯାଇ ପାରୁଚି । ଏମିତି ଧୋଇରେ ଯିବ ବୋଲି କି ଫସଲଟା ଏଥର ହୋଇଥିଲା ମା, ଯେମିତି ଦିଆଲି କି ସେମିତି ନଳିତା । ଗଲା ।"

"କାହିଁକି ସେମିତି ଗୋଟାଏ ଗଡ଼ର ଗଡ଼ର ହଉଚୁ କହିଲୁ ? ମନ ହଉଚି ତ ଯାଆ, ଏକା ଗୋଟାଏ ବଦଳା ଠିକଣା କରି ଦେଇଯିବୁ । ଆଉ ଦରମା ଫରମା ମାଗିବୁ ନାହିଁ, ମାସ ମଝିରେ ସେସବୁ କଥା ନାହିଁ ।"

"ତମର କୋଉ ମାସ ପୁରିବାକୁ ପଟରେଇ ଅଛି ମା ? ଲକ୍ଷ୍ମୀଙ୍କ ଭଣ୍ଡାର ତମରି ହାତରେ ଅଛି, ଯେତେବେଳେ ମନକଲେ ହାତ ଅଗରେ । ହଁ, ସେ ମାଇକଟରେ ଅହରି କଣ କୁହାକୋହି ହଉଚନ୍ତି ମା,—ବଢ଼ିରେ ଯାହାଙ୍କର ସବୁ ଯାଇଚି, ତାଙ୍କ ପାଇଁ ସାହାଯ୍ୟ କରିବାକୁ ପାଣ୍ଠି ଠୁଳ ହେଉଛି, ସେଥିପାଇଁ ଚନ୍ଦା ଅସୁଲ ହେଉଛି—"

କଥାରେ ବାଧା ଦେଇ ମେଦନୀ କହିଲେ, "ସରକାର ତ ବଳେ ବୁଝିବେ, ଆଉ ଫେର୍ ଚନ୍ଦା ! ଆମେ ଇନ୍‌କମ୍ ଟିକସ୍ ଦଉନୁ କି ?"

ଭଗିଆ କହିଲା, "ସରକାର ଦଅନ୍ତୁ, ହେଲେ ମଣିଷ ଛଟପଟ ହେଲାବେଳେ ଆଉ ମଣିଷଙ୍କ ପ୍ରାଣ ସମ୍ଭାଳି ହଉଚି କୋଉଠି, ଯେ ଦଉଚି ସେ ତା ନିଜ ଆତ୍ମାଶାନ୍ତି ପାଇଁ ଦଉଚି । ତେଣେ ହଜାର ହଜାର ମଣିଷ ଶୋକକଷ୍ଟପାଶରେ କାଦୁଅରେ ଗଡ଼ୁଚନ୍ତି । ପିଲଙ୍କ ମୁହଁରେ ମୁଢ଼ି ମୁଠିଏ ଦବାକୁ ନାହିଁ, ଏଣେ ଶୁଖିଲା ପାଟଲରେ ମଣିଷ ସୁଖରେ ବସିଛନ୍ତି, ଆଜିକାଲି ବେଳକୁ ପାଟିକି କେମିତି ଆଧାର ଯିବ ! ଯାହାହଉ, ଯେ ଯାହା ପାରୁ, ଦବା ଭଲ । ସରକାର ପାଞ୍ଚ ଦେଲେ, ବାହାରୁ ମଣିଷ ଦଅନ୍ତୁ ପଛେ ଟଙ୍କ, ପାଞ୍ଚ ଟଙ୍କା ଆଠ ହବ ତ, ସେଇ ଲୋକଙ୍କ ସେବାରେ ତ ଲାଗିବ । ଏତେବେଳେ ନ ଦେଲେ ଆଉ କେତେବେଳେ ଦବ ? "ତମର ବି କିଛି ଦଅ ମା, ବାବୁଙ୍କୁ କହ !"

ମେଘଟା ପ୍ରବଳ ଜୋର୍‌ରେ କଟୁଛି । ଘୁରିଅଡ଼ ଅନ୍ଧାର ବଲ୍ ବଲ୍ ମେଦନୀ କହିଲେ, "ତୋ କାମ ତୁ ବୁଝ୍ ଭଗିଆ, ଆଉ ବେଶି କଥା ଗପ ନା । ଓଃ ! ଦାତାକର୍ଣ୍ଣ !"

ଟେବୁଲ୍ ଉପରେ ଜଳଖିଆ ସଜା ହୋଇ ଥୁଆ ହୋଇଛି, କିଛି ଟୋଷ୍ଟ୍

ବିସ୍କୁଟ, ସିଦ୍ଧାଅଣ୍ଡା, ଅମ୍ଲେଟ, କଟା ସେଓ । କଫରେ ଚିନି । ଚୁଙ୍ଗିବାବୁ ଖାଉଛନ୍ତି । ମେଡ଼ମ ଠିଆହୋଇ କଥା ଗପୁଛନ୍ତି । ମେଘ ଅନ୍ଧାର ଲାଗି ଇଲେକ୍ଟ୍ରିକ୍ ଆଲୁଅ ଜଳୁଛି । ମେଡ଼ମ ହସିଦେଇ କହିଲେ, "ଶୁଣ ମ, ଆମ ଝିଅ କଣ କହୁଚ,…ବଢ଼ି ହେଉଚ ମୋ ସେ କହୁଚ ସମସ୍ତେ ଖାଲି ଖାଇବା ଖାଦ୍ୟ ଖାଉଥିବେ, ସୁନ୍ଦା ବାଉଥିବେ, ଅକାଡ଼ି ପକାଉଥିବେ । ବଢ଼ି ତ ସାଇକଲମାନଙ୍କୁ ହେଲାଣି, ସେଥିପାଇଁ କଣ କେହି ଲଗା ?"

ଗମ୍ଭୀର ହୋଇ ଚୁଙ୍ଗିବାବୁ କହିଲେ, "ସତେରେ ବଡ଼ ବଢ଼ି ହେଉଛି, ଏମିତି ବଢ଼ି ଶହେବର୍ଷରେ ଦେଖା ନ ଥିଲା ।"

ମେଡ଼ମ ମୁହଁ ଫୁଲେଇ କୃତ୍ରିମ ଅଭିମାନରେ କହିଲେ, "ସେଥିକୁ ତମ ସାଙ୍ଗରେ ଲାଗେଇଚି ଟିକିଏ ବୁଲି ନେଇଯିବ, ନଈବଢ଼ିଟା ଦେଖି ଆସିବା, ହଜାର ହଜାର ଲୋକ ଫୁର୍ତ୍ତିରେ ମଉଜରେ ଦେଖୁଚନ୍ତି, ଆମର ନୋହିଲା ।"

ସେତିକି ବେଳେ ଚଡ଼ ଚଡ଼ ଡାକ ହୋଇ ବିଜୁଳି ମାରିଲା, ଆଲୁଅ ନିଭିଗଲା, ପଙ୍ଖା ବନ୍ଦ ହୋଇଗଲା । ସକାଳ ନଅଟାବେଳେ ଝରକା ବାଟେ ଘର ଭିତରକୁ ପଶି ଆସିଲା ସତେକି ସନ୍ଧ୍ୟା ଅଗର ମହଲଣ ପଡ଼ିଥିବା ମାନ୍ଦା ଆଲୁଅ । ଚୁଙ୍ଗିବାବୁ କହିଲେ, "ନଈବଢ଼ିରେ କଣଟାଏ ଦେଖିଲା ଭଳି ଅଛି ଯେ, ଖାଲି ଗୋଳିଆ ପାଣି ନା ଆଉ କିଛି ? ଅନୁମାନ କର ଦୂର ଦିଗନ୍ତ ଯାକେ ଖାଲି ଗୋଳିଆ ସୁନ୍ଦା ପାଣି, ସେତିକି ।"

ଦୁହେଁଯାକ ତୁନି ତାନି ହୋଇ ବରଷାର ଧୂମାଳିକୁ ଅନାଇଁ ଦେଖିଲେ । ଝରକା ସେପାଖେ ଦୁଇଶ ହାତଯାକେ ଛନଛନିଆ ଫୁଲ ବଗିଚା, ବରଷାରେ ଝଞ୍ଜି ଖେଳ ହୋଇ ବୁଦାଗୁଡ଼ାକ, ଲଟାଗୁଡ଼ାକ ବଢ଼ି ଉଠିଛି ।

ଚୁଙ୍ଗିବାବୁ କହିଲେ, "ଗଛକୁ ଖୁବ ଭଲ, ଏମିତି ପାଣି ତା ଜୀବନରେ ପାଇ ନ ଥିଲା ।"

ମେଡ଼ମ ପାଟିକରି ଉଠିଲେ, "ଦେଖ ଦେଖ, ଫାଟକ ଏପାଖେ ସେପାଖେ ଏ କଣ ନଈ ସୁଅ ? ବାପ୍ ରେ, ଏତେ ପାଣି !"

"ନଇଁଷ୍ଟୋରଟା ଖୁବ ବଢ଼ିଚି ।"

"ଭଲ ହେଉ, ଧୋଇଦେଇଯିବ । ଯାହାହେଉ ଏ ବାଲିଆ ମାଟିକୁ ପଟୁ ଦରକାର ଥିଲା ।"

"ବାଲି ଚରପାରେ—"

"ନାଇଁମ, କୁଆଡ଼ୁ କୁଆଡ଼ର ସାର ବୋହି ଆସିବ, ବଗିଚା ଭିତରେ ତ ଆଉ ସୁଅ ନାହିଁ, ପାଣି ଥମ୍ଭି ଥମ୍ଭି ରହିବ ।"

ହଠାତ୍ ଚମକିପଡ଼ି ଚୁଙ୍ଗିବାବୁ କହିଲେ "ଦେଖ କଥା ନହସରେ ଭୁଲି ଯାଉଛେ, ଏତିକି ବରଷାବେଳେ କିଏ ଯାଇ ଗୌରାଙ୍ଗବାବୁଙ୍କ ଘରେ । ବିଜୁଳି, ମେଘ, ଏ ପାଗରେ କିଏ ଘରୁ ବାହାରେ ? ଫୋନ୍ କଲ, କଣ ସେ କରୁଛୁ ?"

ମେଦନୀ ଫୋନ୍ କଲେ । ଫୋନ୍‌ର ମୁହଁପାଖେ ଓଠଦେଇ କାନରେ ଫୋନ୍ ଲଗାଇ ଅଳ୍ପ ଛଳାଇ ପରି ମେଦନୀ ଠିଆ ହୋଇଛନ୍ତି । ଅଧା ଦଗ୍ରେଷ୍ଟି ଉଲ୍ଲାସମୟ ସ୍ୱରରେ କହୁଛନ୍ତି—'ହ୍ୟାଲୋ !' ଚକ୍ରିବାବୁ ତାଙ୍କ ଆଡ଼କୁ ଅନାଇଁ ରହିଛନ୍ତି । ହଠାତ୍ ମେଦିନୀଙ୍କ ମୁହଁ ବିବର୍ଣ୍ଣ ପଡ଼ିଗଲା । ଫୋନ୍ ଥୋଇ ଦେଇ କହିଲେ—

'କିଆ କୁଆଡ଼େ ଗଲା ? ଦନେଇ କୁଆଡ଼େ ଗଲା ? କୁଆଡ଼େ ଘଣ୍ଟାଏ ହେଲା ଆଇଲେଣି ।'

ଚକ୍ରିବାବୁଙ୍କ ଛାତି ଭିତରଟା ଦବିଗଲା । ତା'ପରେ କହିଲେ "ଦନେଇଟା ହୁଣ୍ଡାଟାଏ ନା, ଭୁସ୍ କରି ପିଲାଟାଙ୍କୁ କାଖେଇ ବାହାରି ପଡ଼ିଥିବ, ତାପରେ ଯେମିତି ବରଷାର ତୋଡ଼ ଦେଖିଚି ସେମିତି ଆଉ କାହା ପିଣ୍ଡାରେ ଯାଇ ନାଖି ଯାଇଚି, ଆଉ କଣ ।" ଡାକଲେ "ଭଗିଆ—ଭଗିଆ—"

ଭଗିଆ ଛତା ଧରି ବାହାରିଗଲା । ପୁଣି ଅଧଘଣ୍ଟାଏ । ଘରେ ଦିହେଁ ଛଟପଟ । ଆଉ ଦିଥର ଗୌରାଙ୍ଗବାବୁଙ୍କ ଘରକୁ ଫୋନ୍ ହେଲଣି, ଆଖପାଖ ଅନ୍ୟାନ୍ୟ ବନ୍ଧୁମାନଙ୍କ ପାଖକୁ ଫୋନ୍ ସରିଲାଣି । ବର୍ଷା ଗ୍ରୁଡ଼ି ଆସୁଛି । ଖବର କାଗଜବାଲା ଆସି ଖବରକାଗଜ ଦେଇଗଲା । ଚକ୍ରିବାବୁ ବିରକ୍ତ ହୋଇ ପାଟି କଲେ, "ଏତେ ଡେରି ? ଏମିତି ହେଲେ ଏ ଖବରକାଗଜ ଆଉ ଚଳିବ ନାହିଁ ।"

"ଭାରି ବରଷା ହେଲା ଆଜ୍ଞା !" ଖବରକାଗଜବାଲା ଖସିଗଲା । ଦିରକ୍ତଟା ମୁଣ୍ଡ ଭିତରେ କୁହୁଳି କୁହୁଳି ଉଠୁଛି । ଚକ୍ରିବାବୁ ପାଟିକଲେ, "ଦୁନିଆ ସେଇଆ ହେଲଣି । ଯେ ଯାଉଚି ଗଲା, ରହିଲା ସିଆଡ଼େ । ଡ୍ରାଇଭର୍‌ଟାକୁ ଦେଖ । ନଟକୁ ତ ଛାଡ଼ିଦେବ, ସେଉଠୁ ଗଲା କୁଆଡ଼େ ? କୋଉଠି ବନ୍ଧୁ ସଖୋଳି ଯାଇଥିବ ତ । ଦରକାର ନାହିଁ ସେମିତି ଡ୍ରାଇଭର, ଆଜି ତାକୁ ବିଦା କରୁଚ ରଇଥା । ଭଗିଆଟା ତ ନବାବ୍ ।"

ଖବରକାଗଜଟା ମୁହଁ ପାଖରେ ପଡ଼ିଛି । ମେଦନୀ ସେହିଆଡ଼କୁ ଅନାଇଛନ୍ତି । କହିଲେ "ଇସ୍ !" ଫଟୋ ବାହାରିଛି, ନଇବଢ଼ି ଦୁର୍ଦ୍ଦଶାର ନାନା ଛବି । ଭଙ୍ଗା ପିଣ୍ଡିର ପରି ପଲା ତଳେ ଜଳୁ ଜଳୁ ହୋଇ ଅନାଇଁ ରହିଛି ଏହି ଯେଉଁ ବୁଢ଼ୀଟି, ସାମ୍ନାରେ ଚଳକାପରି ପାଣି, ଓଡ଼ିଶା ଦେଶର ନଇବଢ଼ିର କରୁଣ କାହାଣୀ ସତେକି ତାଠିଁ ରୂପ ନେଇଛି । ହେଇ ସେଠି ପାହାଡ଼ ଉପରେ ମେଲାଯାଇଛି ଲୋକ, ମେଣ୍ଢାମେଣ୍ଢ ଠେଲା ଠେଲି, ସ୍ଥିରକରେ ଜଳାଶ୍ରିତ । ଦୂରକୁ ଦୂରକୁ ଲମ୍ବିଥିବା ସ୍ଥିର ପାଣିର ଦୃଶ୍ୟ, ସ୍ଥାନେ ସ୍ଥାନେ ଗଛର ଅଗ ଦିଶୁଛି, ସତେକି ଗଛ ହିଁ ନୁହେଁ, ସାନ ସାନ ଘାସ ଅରମା । ଆରେ ବାପ୍‌ରେ ! ଏଇ କଣ ରେଲ୍ ଲାଇନ ! ନା ଏ କେଉଁ ହଜାର ପଞ୍ଜରା ହାଡ଼ ଶୂନ୍ୟେ ଶୂନ୍ୟେ ଝୁଲୁଛି ?

ଆଉ ଏଇପରି ଡଙ୍ଗା,—ବୁଡ଼ ଉଠା କରେଇ, ହାଣ୍ଡି ଭେଳା । ବହୁତ ଫଟୋ । ଆଉ ଏ କଣ ?

ମେଦନୀ ଦେବୀ ସେହି ଗୋଟିକିଆ ମଣିଷର ଛବି ଆଡ଼କୁ ତାଟକା ହୋଇ ଚାହିଁ ରହିଲେ । ମଣିଷ ନୁହେଁ, ମୁର୍ଦ୍ଦାର । ଗୋଟିଏ ହାତ ଉପରକୁ ଟେକା ରହିଛି । ଚାରିଆଡ଼େ ପାଣି, ମଝିରେ ଝଙ୍କାଳିଆ ଗଛଟିଏ ବେକେ ପାଣିରେ ଠିଆ ହୋଇଛି । ତାର କେଉଁ ଯୋଡ଼ିକ ସନ୍ଧିରେ ଆଶ୍ରା ନେଇଛି ଏଇ ମୁର୍ଦ୍ଦାର । ସତେ କି ଏ ପ୍ରଳୟ ପାଣିରେ ସେଇଥିପାଇଁ ସେ କେଉଁ ଯୋଡ଼ିକ ଆଗରୁ ଖଞ୍ଜା ହୋଇଥିଲା । କିଏ ସେ ମଣିଷ ? କେଉଁଠି ଥିଲା ତା ଘର ? କିଏ ତାର ଆପଣାର ଲୋକ ? କୁଆଡ଼ୁ ଆସି ସେ ସେ ଗଛ କେଉଁଠାରେ ଚିରନିଦ୍ରାରେ ଶୋଇଲା ? ଦୁନିଆରେ କେଉଁଠି ହେଲେ ମଣିଷ କି ମଣିଷ ସମ୍ପର୍କର ଚିହ୍ନବର୍ଣ୍ଣ ହିଁ ନାହିଁ ।

ମଣିଷ ନୁହେଁ, ସମଗ୍ର ମଣିଷ ଜାତିର ପ୍ରତୀକ ସେ ମୁର୍ଦ୍ଦାର ।

ଏକା ସଙ୍ଗରେ ମେଦନୀ ଦେବୀ ଓ ଚନ୍ଦ୍ରକିବାବୁ ସେହି ଛବିଟାକୁ ଅନାଇଛନ୍ତି । ଗୋଟାଏ ଲମ୍ବା ଦୀର୍ଘଶ୍ୱାସ ଛାଡ଼ି ମେଦନୀ ଦେବୀ ସେ ଭୁନଡାଙ୍ଗ ଅବସ୍ଥା ଭାଙ୍ଗି-ଦେଲେ । ତାପରେ ସେ ବିଳାପ କଲାପରି କୁହେଇ କୁହେଇ କହିଦେଲେ—"କିଆ କାହିଁ ? ମୋ କିଆ କାହିଁ ?"

ଏତିକିବେଳେ ଫାଟକ ପାଖ ମୁହଁରେ ଧଳା ହୋଇ କଣ ଗୋଟାଏ ଭାସିଗଲା ପରି ଦିଶିଲା, ଦୁଇହାତ ଲମ୍ବ ହେବ । ଶୁଭିଲା ପଦାରେ ଭଗିଆ ପାଟି କଲା "ବାବୁ-ବାବୁ-ମା-ମା—" ଆଉ ପାଗଳ ପରି ସେହି ବରଷାରେ ଡେଇଁ ଗୁଡ଼ି ଫାଟକ ପାଖକୁ ଦୌଡ଼ିଯାଇ ପୁଣି ବାଁ ଆଡ଼କୁ ଦୌଡ଼ି ଦୌଡ଼ି ଗଲା । ମେଦିନୀ ଦେବୀଙ୍କ ଛାତି ଭିତରେ ଧମାଧମ ହାତୁଡ଼ି ମାଡ଼ରେ ଭାଙ୍ଗିପଡ଼ିଲା । ଦେହ ଭୁହାଇ ଭୁହାଇ କମ୍ପି ଉଠିଲା, ଦୁର୍ବଳ ସ୍ୱରେ "କିଆ—କିଆ" କହୁ କହୁ ସେ କଅଁଳ କନା ଟଳିପଡ଼ି ଆଖି ବୁଜିଦେଲେ, କିନ୍ତୁ ସେ ବେହୋସ୍ ହେବାପାଇଁ ଚନ୍ଦ୍ରକିବାବୁ ଅପେକ୍ଷା କଲେ ନାହିଁ. ତାଙ୍କ ଆଖି ଆଗରେ ସତେକି ବାଣ ଫୁଟି ନାଲି ନେଳି ଫୁଲ ଛୁଞ୍ଚାଡ଼ି ନେଲା । ତେଣେ ହାତରେ ଆପଣା ମୁଣ୍ଡବାଳକୁ ମୁଠେଇ ଓଟାରି ଓଟାରି ସେ ବଣ ଜନ୍ତୁ ପରି ଗର୍ଜନଟାଏ ଛାଡ଼ି ସେହି ମେଘ ମାଡ଼ ଭିତରେ ଫାଟକ ଆଡ଼କୁ ଧାଇଁ ଭଗିଆ ପଛେ ପଛେ ଦୌଡ଼ି ଦୌଡ଼ି ଗଲେ ।

କିଛି ସମୟପରେ ମେଦିନୀ ଦେବୀଙ୍କର ଚେତା ହେଲା । ସେ ଆଖି ଖୋଲିଲେ । ଆଗ କିଛି ବୁଝି ପାରିଲେ ନାହିଁ । ତାପରେ ମୁଣ୍ଡ ଭିତରେ ଘଟନାର ଖିଅଗୁଡ଼ାକ ସତେକି ଏକାଠି ଯୋଡ଼ି ହେଲା । ନଇଷ୍ଟୋର ନାଳର ବନ୍ଧମୁହଁରେ କିଆ ଭାସି ଯାଇଛି । ଦନେଇ ପରସ୍ତା କରି ବସିଥିବ । କିଆ ପାଣି ଦେଖିଲେ ମାତେ, ଯାଇଥିବ ଗୁଲି ସଡ଼କ ଦାଣ୍ଡକୁ । ତାପରେ

"କଅ-କଅ ରେ ! ଆହା ହାହା—" ଗ୍ରଥ ଫଟରେ ଆର୍ତ୍ତଚିତ୍କାର ଉଠିଲା, ଅସରା ଅସର ଲୁହ ବୋହିଗଲା । ଏକା ମୁହୂର୍ତ୍ତିରେ ଲାଗିଲା—ସେ ନିଃସହାୟା—କାଙ୍ଗାଳୁଣୀ—ଛଟିପିଟି ହୋଇ ଗଡ଼ ଗଡ଼ ମୁଣ୍ଡ ବାଡ଼େଇ କନ୍ଦି କନ୍ଦି ହୋଇ କାନ୍ଦ କାନ୍ଦ ସେ ପୁଣି ସ୍ଥିର ହୋଇ ବସିଲେ । ଘରେ ଉଁ ଚୁଁ ଶବ୍ଦ ବି ନାହିଁ, କେହ କୁଆଡ଼େ ନାହାନ୍ତି, ଖାଲି ବରଷାର ଗଭ ଗଭ ଲାଗି ରହିଛି । ତାଙ୍କର ଏ କାନ୍ଦଣା କାହାରିକି ଶୁଭିବ ନାହିଁ, ତାଙ୍କର ଏ ଦଶା କେହି ଦେଖିବେ ନାହିଁ ।

ଘରେ ବିଜୁଳି ଆଲୁଅ ଜଳୁଛି, ସାମ୍ନାରେ ପଡ଼ିଛି ସେହି ଖବରକାଗଜଟା, ସେଥିରେ ସେହି ଛବି, ଚଳିକାମସ୍ତ ପ୍ରଳୟ ଭିତରେ ବୋକଦ୍ଧ ଡାଳ ଉପରେ ଝୁଲିଆହୋଇଛି ଗୋଟିକଅ ମୂର୍ଦ୍ଧାରଟାଏ ।

ସେହି ଘର ଆଉ ତାର ସାଜସଜ୍ଜାକୁ ମେଦନୀ ଦେବୀ ଲୁହଜାଲ ଭିତରେ ଅଚିହ୍ନା ଗୃହାଣିରେ ଅନାଇଁ ରହିଲେ, ମୁହୂର୍ତ୍ତିକେ ସେ ପର ହୋଇଯାଇଛି । ଆଉ ଆପଣାର ହୋଇଛି ଏଇ ଛବିର ଦୃଶ୍ୟ, ଯେତେ କି ତାହାର କେଉଁ କଣରେ ସେ ଛପି ରହିଛନ୍ତି । ଏମିତି ଏଇ ମୂର୍ଦ୍ଧାର ପରି କୁଆଡ଼ୁ କେତେ କଏ ଅଖିବୁଜି ଭାସି ଭାସି ଚାଲି ଯାଉଛନ୍ତି, କେତେ କଅ—ଉପରେ ପାଣି ତଳେ ପାଣି ତାହାର ଭିତରେ ଏ ସଂସାର କେଉଁ ଅତଳରେ ବୁଡ଼ି ରହିଛି, ଘର ଯାଇଛି, ଜମି ଯାଇଛି, ବଳ ଯାଇଛି, ଅସ୍ତିତ୍ୱ ତୁଟିଛି—

"ଓଃ, କଅ ଲୋ !" ଏଥର ସେ ଘର କମ୍ପେଇ ଗର୍ଜି ଗର୍ଜି କାନ୍ଦିଲେ ।

"କଣ ହେଲା ? କଣ ହେଲା ? ସେମିତି କାହିଁକି ହଉଚ ?" ଚୁନ୍ନିବାବୁ କାନ ପାଖେ ପାଟି କରୁଛନ୍ତି । "ମା—ମା—ମା" ଭଗିଅ ଆଉ ଦନେଇ ଡାକୁଛନ୍ତି । କଅ ଠିଆହୋଇ ଚିଁ ଚିଁ ରେଇ, ଚିଁ ଚିଁ ରେଇ କାନ୍ଦୁଛି । "ହୋ, ଶୁଣ, କାନ୍ଦ ବନ୍ଦ କର ।" ଏଇ ତ, ସାମ୍ନାରେ କଅ । ଧୀରେ ଧୀରେ ଚେତନା ଭିତରକୁ ଗଲା ଗଲା । ପାଗଳ ପରି ଧାଇଁ ଯାଇ ମେଦନୀ ଦେବୀ କଅକୁ ଭିଡ଼ି ଧରି ବାରମ୍ବାର ଗେଲ କଲେ । ଅସରାକୁ ଅସରା ଲୁହ ବୋହି ଯାଉଥାଏ । କଅ ମରି ନାହିଁ, ଏଇ ଗୋଟାସୁଦ୍ଧା କଅ, ଏଡ଼େ ପ୍ରଳୟ ଭିତରେ ମଣିଷ ଜାତି ମରି ନାହିଁ, ଯେତେ କ୍ଷତି ହେଉ ବଡ଼ ଗୁଡ଼ିଗଲେ ପୁଣି ସେ ଝାଙ୍କୁଡ଼ି ହୋଇଉଠିବ, ଯେମିତି ଏ ଦୁଇଟା ଧାରଣା ମେଦନୀ ଦେବୀଙ୍କ ସତ୍ତା ଭିତରେହିଁ ଏକାଠି ହୋଇ-ଯାଇଛି । ବଡ଼ ବରଷା ହେବାରୁ ଦନେଇ କଅକୁ ଘେନି ଚେମ ବାବୁଙ୍କ ଘରେ ରହି ଯାଇଥିଲା । ଚେମବାବୁ ଚୁନ୍ନିବାବୁଙ୍କ ସାଙ୍ଗ । ଆଉ ସେଇଟା ପାହା ଭାସିଗଲା ସେ ବଟଗ ଧଳା ବୁଢ଼ୀ ଛେଳିଟିଏ, କେମିତି ଏ ପାଣିରେ ପଶି ଯାଇଥିଲା, ମରି ଯାଇଛି । ଚୁନ୍ନିବାବୁ ଓ ଭଗିଅ ଉଭୟେ ବୁଝାଇଲେ ।

ଭଗିଆର ଦୃଷ୍ଟି ବି ସେହି ଖବରକାଗଜର ଛବିଗୁଡ଼ାକ ଉପରେ ପଡ଼ୁଥାଏ ।

ସେ ତାକୁ ଓଲଟାଇ ଓଲଟାଇ ଦେଖୁଥାଏ । କହୁଲା "ହେ ମାହାପୁରୁ—ସେ କେତେ ଭୟଙ୍କାରଅ—ଏତେ ବଡ଼ ଅପୁରୁଣୀ ବଡ଼ କାହିଁ କେବେ ଦେଖା ନ ଥିଲା —ସବୁ ସରଗଲା—ସରଗଲା—"

ଚୂର୍ଣ୍ଣିବାବୁ ଦୀର୍ଘଶ୍ବାସ ପକାଇ କହୁଲେ 'ଆହା—'

କଆର ମୁଣ୍ଡ ଅର୍ଦ୍ଧେକ ଆର୍ଦ୍ଧେକ ମେଦନୀ ଦେଖା ସେହୁ ଛବକୁ ଅନାଉଁଥାନ୍ତି, ଛାତି ଥରେଇ ଥରେଇ ତୁହାକୁ ତୁହା ଫଁ ଫଁ ଦୀର୍ଘଶ୍ବାସ ଉଠୁଥାଏ, ହୃଦୟ ଭିତରେ କେଉଁଠି କଣ କାଚ୍ଚକାଡ଼ ଭାଙ୍ଗି ପଡ଼ୁଛି, ମୁଣ୍ଡ ତଳକୁ ଓହଳି ପଡ଼ୁଛି, ସତେ କି ଛୁଆଟିକି ଧରି ସେ ଆପେ ଏହୁ ପ୍ରଳୟ ବଡ଼ ଭିତରୁ ପଳାଇ ଆସିଛନ୍ତି, ଆଉ ସମସ୍ତେ ରହିଯାଇଛନ୍ତି ସେଠି, ଆପଣାର କେତେ ମଣିଷ, କେତେ ଜୀଅନ୍ତା, କେତେ ମଲା ।

ଚର୍ଣ୍ଣିବାବୁଙ୍କ ମୁହଁକୁ ଅନାଇଁ କ୍ଷୀଣ କରୁଣ ସ୍ବରରେ ସେ କହୁଲେ—

"ଶୁଖିଲାରେ ବୁଡ଼ିରେ ରହ ଶୁଣ୍ଡରେ ଖାଲି ପଦେ ଆହା ପଦ । ଆଉ କଛ ତୁମର କରିବାର ନାହିଁ ?"

ତାଙ୍କର ଆଖିରେ ଥିଲା ତୀବ୍ର ଜଳନ୍ତା ଭର୍ତ୍ସନା ।

ଚୂର୍ଣ୍ଣିବାବୁ ଚମକି ପଡ଼ି ବଳାବଳେଇଲା ପରି କହୁଲେ, "ଏଁ !" ଆଉ ଭଗିଅ ଆଁ କରି ଅନାଉଁଥିଲା; ସତେକି ତାର ଫାଙ୍କ ଫାଙ୍କ ଲମ୍ବ ଲମ୍ବ ଦାନ୍ତମୂଳାକ ସବୁ ପଦାକୁ ବାହାରି ପଡ଼ୁଥାଏ, ତାର ଅନନ୍ଦ ସଙ୍ଗେ ମିଶି ଯାଉଥାଏ କାବା କାବା ଭାବ ।



# ସତ ହୋଇ ପାରିଥାନ୍ତା

ସନ୍ଧ୍ୟା ସାଢ଼େ ସାତ, ଦୁ ଘଣ୍ଟା ହେବ ଅନ୍ଧାର ପଡ଼ିଲାଣି, ଖୁବ ଶୀତ, ସଞ୍ଜ ଛ'ଟା ବେଳୁ ବିଜୁଳି ଆଲୁଅ କଟିଲାଣି ସେ ଗୃହଅଙ୍ଗେ ଅନ୍ଧାର, ଅଥଚ ଏପର୍ଯ୍ୟନ୍ତ ପଦ୍ମା କଲେଜରୁ ଫେରିଲା ନାହିଁ । ପ୍ରବୋଧ ବାବୁ ଛଟପଟ ହୋଇ ପୁଣି ଥରେ ଧାଇଁଗଲେ ରୋଷେଇ ଘରକୁ ସ୍ତ୍ରୀଙ୍କ ପାଖକୁ, ପୁଣି ପଚାରିଲେ, "ଆଚ୍ଛା, ତୁମେ ତ କହୁଥିଲ ସେ ତୁମକୁ କହିକରି ଯାଇଛି ଯେ କଲେଜରୁ ଫେରୁ ଫେରୁ ତାର ଟିକିଏ ଡେରି ହେବ ବୋଲି, କେତେବେଳେ ସେଠୁ ବାହାରିବ, କାହା ସାଙ୍ଗରେ କେମିତି ଏତେ ବାଟ ଆସିବ, କେତେବେଳେ ଏଠି ପହଞ୍ଚିବ, ଏସବୁ କିଛି ପଚାରିଥିଲ ତାକୁ ?"

ତାଙ୍କ ସ୍ତ୍ରୀ ଲଣ୍ଠନ ଆଲୁଅରେ ହାଣ୍ଡିରେ ଚାଉଳ ପକାଉଥିଲେ, କହିଲେ "ମଲା, ତମକୁ ତ କହିଲି ସେ ଆଜି କହିକରି ଯାଇଛି, କଲେଜରେ ତାଙ୍କର ସବୁ କଣ କାମ ଅଛି ଯେ ଟିକିଏ ଡେରି ହେବ, ମୁଁ ଏତେ ଫଟେଇ ହୋଇଥାନ୍ତି କାହିଁକି ? ସେ କଣ ନିହାତି ସାନ ପିଲା ହୋଇଛି ? ନା କଲେଜକୁ ନୂଆ ଯା ଆସ କରୁଛି ନା ଗୋଟିଏ ବୋଲି ପିଲା ଯେ କଲେଜରେ ଏକୁଟିଆ ପଡ଼ିଯାଇଛି ? ଆଉ ମାନେ ତ ଥିବେ, ସେସବୁ ବ୍ୟବସ୍ଥା କରିବେ ନାହିଁ ?"

ପ୍ରବୋଧ ବାବୁ ଗର୍ଜନ ଛାଡ଼ିଲେ, "ଏଇଥିକୁ କହନ୍ତି ସ୍ତ୍ରୀ, ନିପଟ ଓଲୁ, ମୂର୍ଖ, ବୁଦ୍ଧି ବିଚାର ବୋଲି ଟିକିଏ ବି ନାହିଁ, ଆଗକୁ ଦୃଷ୍ଟି ନାହିଁ । ଆରେ ବାବୁ, ସହର ଜାଗା ସ୍ୱେ, କେତେବେଳେ କୋଉ ବିପଦ, ଖବର କାଗଜରେ ନିତି କେତେ ଭୟାନକ ଖବର ବାହାରୁଛି, କେତେ କଣ ଘଟିଯାଉଛି, ସ୍ୱେ ଆଖି ବୁଜି ବସିଥିବେ, ନାକରେ ତେଲ ପକେଇ ବସିଥିବେ—"

ତାଙ୍କ ସ୍ତ୍ରୀ କନ୍ଦୁଣା ହେବା କହିଲେ, "ଅନ୍ଧାରଟାରେ କାହିଁ ସେମିତି ମୋ ଉପରେ ଝଡ଼େଇ ହଉଚ ହୋ ? କାହିଁ ଏଣୁ ତେଣୁ ଗୁଡ଼ାଏ ଭାବୁଚ ? ମନ କଲେ ଝିଅ ମୋର ଆସୁଥିବ । କାହିଁକି ଡେରି ହେଲା ସେ ଆସିଲେ ପଚାରି ବୁଝିବ ସିନା, ମୁଁ କଣ କହିବି ? ଲେକ୍‌ଚରର୍ ହୋଇଛି, ମୁଁ ସିନା ପାଠ ପଢ଼ି ନାହିଁ, ତାର କଣ ଦାୟିତ୍ୱଜ୍ଞାନ ନାହିଁ ? ଆଠଟା ବେଳେ ତ ଆଲୁଅ ଆସିବ, ଆଉ ଅଧ ଘଣ୍ଟାଏ ତ, ଯଦି ସେତେବେଳକୁ ଘରେ ନ ପହଞ୍ଚିଥିବ ତେବେ ବାବୁକୁ ତମ ସାଇକଲଟା ଦେଇ ପଠେଇ ଦେବ କାଲେ ମାଧବୀ ଘରେ ସେ ଟିକିଏ ଅଟକି ଯାଇଥିବ,—ନା କଣ ?"

ମାଧବୀ ଆଉ ଗୋଟିଏ ଲେକଚରର୍, ତା ଘର ସେଠୁ ମାଇଲିଏ ଦୂର ।

ପ୍ରବୋଧବାବୁ କହିଲେ, "ବାବୁକୁ ପଢେଇବ ନୁହେଁ ? ଇସ୍କୁଲରେ ଶେଷ ବର୍ଷର ପଢ଼ା, ପାଠ ମାଗ୍ନ କରି ସେ ଧାଇଁବ ! ଥରେ ସାଇକଲ୍ ଖଣ୍ଡ ପାଇ ପଦାକୁ ବାହାରିଲେ କୁଆଡ଼େ କୁଆଡ଼େ ବୁଲି ବନ୍ଧୁ ସଙ୍ଗୋଳା ସଙ୍ଗୋଳ କେତେବେଳେ ଫେରିବ ତା ପାଇଁ ଫେର୍ ମୋର ଦୁଶ୍ଚିନ୍ତା ବଢ଼ିବ, ନା ? ସେକଥା ହେବ ନାହିଁ । ମଲି ମଣିଷ । ଅଫିସ୍ ଯାଇ କାମ କରି କରି କ୍ଳାନ୍ତ ହୋଇ ଫେରି ଏ ବୟସରେ ଦେହ ଯେମିତି ଲାଗୁଛି ମନ ଜାଣେ, ତହିଁରେ ପୁଣି ବାର ଦୁଶ୍ଚିନ୍ତା, ଯେତେ ଯାହା କଲେ କେମିତି ଘର ଚଳିବ ଭାବି ଭାବି ମୁଣ୍ଡ ପାଗଳ, ସତେ ଯେପରି ଗାତ ମେଲି ହୋଇଛି । ଏ ମହଙ୍ଗା କାଳରେ ଯାହା ଆଣି ପକାଅ ସବୁ କୁଆଡ଼େ ଗଳି ପଳେଉଛି, ରାଜୁଟା ଅଉ ବର୍ଷେ ରାଉରକେଲାରେ ପଢ଼ିଲେ ଯାଇ ଇଞ୍ଜିନିଅରିଂ ପାଶ୍ କରିବ, ଏଣେ ପଦ୍ମା ପାଇଁ ବରଘର କୋଉଠି ଜୁଟୁ ନାହିଁ, ତିନି ବର୍ଷ ହେଲି ଖୋଜି ଖୋଜି ବୃଥା, ଲେକ୍‌ଚରର୍ ହେଲାଣି, ରୂପରେ ଗୁଣରେ ସବୁଥିରେ ଲକ୍ଷ୍ମୀଟିଏ, ତହିଁରେ ବରବାଲାଙ୍କର କହାଏ ?, ଦଅ ଦଅ, ଏତେ ଦଅ ସେତେ ଦଅ, ହଜାର,—ଲକ୍ଷ,—ତୁମେ ନଦେଲେ ଆଉ କିଏ ଦେବ । ଦେଖା ଲୋକ କଣ ଉଣା ନା କଣ ? ଗାଁ ଗାଁକେ ବଡ଼ ଚାଷୀଙ୍କ ହାତରେ ଟଙ୍କା, ବେପାରୀଙ୍କ ହାତରେ ଟଙ୍କା, କଣ୍ଟ୍ରାକ୍ଟର ବେଉସାଦାରଙ୍କ ହାତରେ ଟଙ୍କା, ପ୍ରକାର ପ୍ରକାର ଚାକିରିଆଙ୍କ ହାତରେ ଟଙ୍କା, ପାଠପଢ଼ା ଝିଅ ଆଜିକାଲି ଘରେ ଘରେ, ଅଣ୍ଟାରେ ପଇସା ନାହିଁ ତ କଥା ପକାଉଛ କାହିଁକି ? ବଜାର ଭାଉ କଣ ହେଲାଣି ଜାଣିନା ? ଏଇଆ ଦେଖି ଦେଖି ଭାବି ଭାବି ତ ହାଲୁକ ଶୁଖୁଛି, ତହିଁରେ ଘରେ ଟିକେ ବୋଲି ଶାନ୍ତି ନାହିଁ—"

"ନାହିଁକି ଏମିତି ବଡ଼ର ବଡ଼ର ହଉଚ କହିଲ, ସେ ବଚରା ଆସୁଥିବ ଶୁଣିବ, କଣ ସେ ଭାବିବ ! ତାକୁ ବାହା କର ବୋଲି ସେ ତମ ସାଙ୍ଗେ ଗୋଳ କରୁଛି ? ସେ ତ କହୁଚି ସେ ଜମା ବାହାହେବ ନାହିଁ । ସତେତରେ ତ, ବାହା ହେଲେ ସଂସାର ଜଞ୍ଜାଳ ଛିନା, କୋଉ ସୁଖ କି ? ମୋ ନିଜ କଥାରୁ ମୁଁ ବୁଝୁନାହିଁ ! ସତେ ମୋ ଝିଅ ବାହାହେବ ? ମୁଁ ତ କିଛି ଭାବୁ ନାହିଁ, ସବୁ ଭଗବାନଙ୍କ ଉପରେ ଛାଡ଼ି ଦେଇଛି, ତାଙ୍କର ଦୟା ହେଲେ ସେ ତା ପାଇଁ ବରଘର ଠିକଣା କରି ତାର ହାତକୁ ଦି'ହାତ କରିବେ, ତମୁକୁ କହି କହି ତେମେ କୋଉ କରିପାରିଲ ନା ତମ ଦ୍ୱାରା କରି ହେବ !"

ପ୍ରବୋଧ ବାବୁ ଦାଣ୍ଡ ପିଣ୍ଡାକୁ ଚାଲିଗଲେ । ପୁଣି ମନ ଘାଣ୍ଟି ହେଲା, ଝିଅଟା ଫେରିଲା ନାହିଁ । କ୍ୱଚିତ୍ ହେଲେ ବି ଏପରି କ'ଣ ପୂର୍ବେ କେବେ ଘଟି ନାହିଁ ଯେତେବେଳେ ସେ ଫେରୁ ଫେରୁ ଟିକିଏ ଡେରି ହୋଇ ଯାଇଛି ? କିନ୍ତୁ ଏତେ ଡେରି ? ଇଚ୍ଛା ହେଉଥିଲା ସେହି ସବୁ ସ୍ମୃତି ମନେ ପକାଇ ଆଶ୍ୱସ୍ତ ହେବାକୁ ସେ ତାଙ୍କ ସ୍ତ୍ରୀଙ୍କ ସଙ୍ଗେ କଥା ଲମ୍ବେଇଥାନ୍ତେ, ତାଙ୍କଠୁଁ ସହାନୁଭୂତି ପାଇଥାନ୍ତେ, କିନ୍ତୁ କଥା ତ ଭିନେ ବାଟ ଧରିଥିଲା ଓ ଆଶ୍ୱାସ ସହାନୁଭୂତି

ଫେରିବାରେ ଉପୁଜିଥିଲା ଅପ୍ରିୟତା ଓ ଦୁଶ୍ଚିନ୍ତା, ତେଣୁ ସେ ଏକ ପ୍ରକାର ପଳାଇ
ଆସିଥିଲେ । ଦାଣ୍ଡ ଅନ୍ଧାର । ରାସ୍ତା ଦୁଇ କଡ଼େ ଏତେ ଲୋକଙ୍କର ଏତେ ଘର
ଥାଇ ସବୁ ସେହି ଅନ୍ଧାରରେ ବୁଡ଼ି ଯାଇଛି, ସେମିତି ନିଗ୍ରୁଟିଆ ଶୂନ୍‌ଶାନ୍ ଲାଗୁଛି
ଯେମିତି ଏଠି ଲାଗୁଥିଲା ସେ ଏଠି ଘରଟିଏ ତୋଳାଇ ରହିଲାବେଳେ ।
ସେତେବେଳେ ଏ ଜାଗା ଥିଲା ସହରର ଗୋଟିଏ ଉପେକ୍ଷିତ, ଉପାନ୍ତ ଅଞ୍ଚଳ,—
ଖାଲି ପଡ଼ିଆ, ସ୍ଥାନେ ସ୍ଥାନେ ଛେ, ସାମ୍ନାସାମ୍ନେ ଆଦୌ ଘର ନଥିଲା, ବାଆଁ
ଡାହାଣେ ଲମ୍ବି ରହିଥିଲା ପାଣି ଜୋର, ତା ଦି ପାଖେ ଧାନବିଲ, ପଡ଼ିଆ, ଅରମା
ତା ଆର କଡ଼େ ଖାଲି ପଡ଼ିଆ, ତା ପଛକୁ କେତେ ଦୂରରେ ସହରର ଅନ୍ୟ ବସ୍ତିର
ଧାଡ଼ି । ଏବେ ବି ପାଣି ଜୋର ଅଛି, କିନ୍ତୁ ତା ଦି ପାଖେ ଅତଡ଼ାରେ ଢାଲୁରେ
ଘର ସବୁ ତୋଳା ହେଲଣି । ସେତେବେଳେ ଜୋର ଏ ପାଖ ଏ ରାସ୍ତା ଏକରେ
ମଧ୍ୟ ତାଙ୍କ ଘର ଆଖ ପାଖରେ ଫାଙ୍କା ଜାଗା ପଡ଼ିଥିଲା, କାହିଁ ଦୂର ଦୂର ଗୁଡ଼ି
ଗୋଟିଏ ଗୋଟିଏ ଘର । ଜାଗା ତାଙ୍କୁ ସେଇଠି ମିଳିଲା, ଘର ତୋଳିବାକୁ
ସରକାରରୁ ଋଣ ମିଳିଲା, ଯଦିଓ ସୁଧର ହାର ଚଢ଼ା, ସାନ ହେଉ ପଛେ, ଘର
ଖଣ୍ଡେ କରି ହେଲା, ଅନ୍ୟ କେଉଁଠି ମୁଣ୍ଡ ଲୁଚେଇବାକୁ ସ୍ଥାନ ନାହିଁ, ଦେଢ଼ ଖଣ୍ଡ ଘାଁ
ଭିତରେ ସାତ ଆଠ ଜଣଙ୍କ ଦାବି, କେଉଁ ଅଂଶ କିଏ ମାଡ଼ି ବସିଛି, କେଉଁ ଚେନାକ
ପଡ଼ିଆ ପଡ଼ିଛି, ଝଙ୍ଗାରେ ଥିବା ଲୋକେ ଅଳିଆ କୁଢ଼ାନ୍ତି, ଗାଁରେ ତ ଜୀବିକା ନଥିଲା,
ଘର ବା କାହିଁକି କରନ୍ତେ ?

କିନ୍ତୁ "ଏ ଜୀବନରେ ଏଇ ମୋର ଘର, ମୋ ଆଶ୍ରୟ, ମୋ ସମ୍ପତ୍ତି"
ବୋଲି ଆତ୍ମସନ୍ତୋଷ ଅନୁଭବ କଲାବେଳକୁ ମାଡ଼ି ପଡୁଥିଲା ଶୂନ୍‌ଶାନ୍ ନିର୍ଜନତା,
ତାଙ୍କ ନିଜର ସବୁ ଦାରିଦ୍ର୍ୟ, ଅଭାବ, ପରାଜୟ, ନୈରାଶ୍ୟ, କ୍ଷତି, ମନସ୍ତାପ ତାଙ୍କ
ଆଗରେ ଖୋଲି ଦେଖାଇଦେବାକୁ ତାହା ଯେପରି କି ସଦା-ପ୍ରସ୍ତୁତ ନିର୍ମଳ ଦର୍ପଣ;
ନିଜକୁ ନିଜ ଉପରେ ପକାଏ, ନିଜ ଦୁଃଖ ଅନୁଶୋଚନାରେ ବୁଡ଼ାଏ । ସେ
ନିର୍ଜନତା ଓ ତହିଁରୁ ନିରାଶ୍ରୟତାର ଧାରଣା ଆହୁରି ବଢ଼ି ଯାଇଥିଲା ସେତେବେଳେ
ଅନ୍ଧାର ରାତିରେ । ବାରମ୍ବାର ତାଙ୍କର ମନେ ପଡୁଥିଲା ନାନା କଳ୍ପିତ ସମ୍ଭାବିତ
ବିଘଟନ,—ଏ ନିର୍ଜନ ଜାଗାରେ କେତେବେଳେ କେଉଁ ବିପଦ ପଡ଼ିଲେ କିଏ
କରିପାରିବ ! କ୍ରମେ ଏ ସ୍ଥାନ ଆରେଇ ଯାଇଥିଲା, ଅ-ସହରି ମେଲାଖୋଲା ଫାଙ୍କା
ଅରଣା ପଣ, ନିର୍ଜନତା,—ନିଜ ସ୍ଥିତି ତାହାରି ଭିତରେ ଖାପି ଯାଇଥିଲା । ଆଶା
ନାହିଁ ନିରାଶା ନାହିଁ, ଯେତେବେଳେ ଯେ ହେଉ, ଖାଲି ସ୍ଥିତିର ଚେତନା ।

ସେହିପରି ଲାଗିଲା ତାଙ୍କୁ, କିନ୍ତୁ ମନଟାକୁ ପୁଣି ଝୁଲୁ ବୁଲୁ ହୋଇ ଅଶାନ୍ତ
ଉବୁକି ଉଠିଲା, ଅସ୍ଥିର ଲାଗିଲା,—ପଦ୍ମା ରହିଲା କୁଆଡ଼େ ? ଆସୁ ନାହିଁ
କାହିଁକି ! ତା ସଙ୍ଗେ ସଙ୍ଗେ ମନରେ ଘୋଟିଗଲା ସେହି ଗୋଟିଏ ପ୍ରକାର ଭାବ,
ତାଙ୍କ ନିଜ ଇଚ୍ଛା ରୁଚି କଳନା ଓ ପ୍ରତ୍ୟାଶା ଅନୁସାରେ କିଛି ନ ଘଟିବାର ସ୍ମରଣ,

ସବୁ କିପରି ଅନିଶ୍ଚିତ, ଅପ୍ରତ୍ୟାଶିତ, ଆକସ୍ମିକ, ମଝିରେ ନିଜ ଅଭିମାନ, ଦୁଃଖ, ବ୍ୟର୍ଥତା ଅନୁଭୂତ ସବୁ ଆଉଟି ହୋଇ ହୋଇଯାଏ ଗୋଟିଏ ବିହ୍ୱଳତା, ବସ୍ତୁର ବୁଦ୍ଧି କାମ କରେ ନାହିଁ । ଜୀବନଟା ଯାକ ସେପରି ନୂଆ କଣ କିଛି ଘଟିବ ବୋଲି ଅପେକ୍ଷା, କଣ ଘଟିବ, ପ୍ରିୟ କି ଅପ୍ରିୟ, ଭୟଙ୍କର, କିଛି ଜଣାନାହିଁ । ବୟସ ଷାଠିଏ ଆଡ଼କୁ ଆଗେଇଲା, ଆଉ ପାଞ୍ଚ ବର୍ଷରେ ଏ ଚାକିରି ବି ସରିଯିବ, ଚାକିରି ଆରମ୍ଭ କଲାଦିନୁ ଦରମା ଆଗ ଅପେକ୍ଷା ବହୁତ ବଢ଼ିଛି, ମଝିରେ ଚାକିରିଟା ସେପରି କିଛି ବଡ଼ ପଦବୀର ନୁହେଁ, କିନ୍ତୁ ତଥାପି ତା ଯଥେଷ୍ଟ ହେଲା ନାହିଁ, ଚାରି ନିଅଣ୍ଟ । ଏତେ ବର୍ଷ ଏ ଧନ୍ଦା କରି ଭବିଷ୍ୟତ ପାଇଁ ରଖି ହେଲା ବା କ'ଣ ? ଦରଦାମ୍ ହୁହୁ କରି ବଢ଼ି ଚାଲିଛି, ଦରମା ଟଙ୍କା ପରିମାଣରେ ବଢ଼ିଲେ ସୁଦ୍ଧା ମୂଲ୍ୟରେ ଆଗଠୁଁ କମିଛି ହିଁ । ସମାଜରେ ଯେଉଁମାନଙ୍କ ତୁଳନାରେ ମର୍ଯ୍ୟାଦା କି ପ୍ରତିପତ୍ତିରେ ସେ ଥିଲେ ଉଚ୍ଚରେ ସେମାନଙ୍କ ସହିତ ତାରତମ୍ୟରେ ଓଲଟ ପାଲଟ ଘଟିଛି । ସେମାନେ ଅନେକେ ଅନ୍ୟାନ୍ୟ ନାନା ଧନ୍ଦା କରି ତାଙ୍କଠୁଁ ଅଧିକ ଉଚ୍ଚରେ । ସେମାନେ ଧନୀ ଦର୍ପନମୀ ପ୍ରତିପତ୍ତିଶାଳୀ ।

ତେବେ ସେ କେଉଁଠି ? ବଡ଼ ପୁଅ ବ୍ରଜେନ୍ଦ୍ର କି ବୋହୂ ଯଦି ପାଖରେ ଥାଆନ୍ତେ ! ବ୍ରଜେନ୍ଦ୍ର ଦିଲ୍ଲୀରେ ଚାକିରି କରେ, ତା ସ୍ତ୍ରୀ ତାର ଦୁଇ ପୁଅ ତା ପାଖରେ ଥାନ୍ତି । ଚିଠି ଦିଏ, କେବେ କେବେ କିଛି ଟଙ୍କା, ବିଶେଷ ନୁହେଁ, ନିୟମିତ ବି ନୁହେଁ, ଲେଖେ ସେଠିକା ଚଳାଚଳ ପାଇଁ ଖର୍ଚ୍ଚ ଭେଟେଇବାକୁ ତାର ନାକ ତୁରୁତୁରୁ ହୁଏ, ଆସିଥିଲା ଦେଢ଼ବର୍ଷ ତଳେ ସାତ ଦିନ ପାଇଁ, ଯାହା ହେଉ ତାଙ୍କ ମନକୁ ଦମ୍ଭ ଦେବାକୁ ସେତିକି ମାତ୍ର, ବ୍ରଜେନ୍ଦ୍ର ।

ଏଠି ଯାହା ତାହା କରି ଏ ଘରଟି କଲେ ନଗ୍ରୁଟିଆ ପୁରୀ ସହରର ଦରଜାଗ ଅଞ୍ଚଳରୁ ଦୂରତା, କାଳେ ଏଠି ଚୋର ଡକାଇତି ହବ ବୋଲି ଆଶଙ୍କା ଓ ଉଦ୍‌ବେଗ, ସେସବୁ ଥିଲା ଏଠାକାର ଗୋଟାଏ ଦିଗ । ଆରପାଖେ ଥିଲା ସହରରେ ରହି ମଧ୍ୟ ମେଲା ଖୋଲାରେ ଚଳିବାର ଗୋଟିଏ ଶାନ୍ତିପୂର୍ଣ୍ଣ ଅନୁଭୂତି । ସକାଳେ ଏଠି ପୂର୍ବ ଦିଗରେ ଦିଗ୍‌ବଳୟରୁ ସୂର୍ଯ୍ୟୋଦୟ ହେବାର ଦିଶେ, ଖରା ଆସି ବଢେଇ ହୋଇ ପଡ଼େ, ଦିନ ଶେଷରେ ପଶ୍ଚିମରେ ଦିଶେ ସୂର୍ଯ୍ୟାସ୍ତ, ଦିନ ଓ ରାତିର ନାନା ସମୟରେ ନାନା ଛବି ମେଲାଇ ଋତୁମାନେ ଯା ଆସ କରନ୍ତି, ସୁଖ ଦୁଃଖ, ଭଲ ମନ୍ଦ ଯେତେବେଳେ ଆସି ମନକୁ ଯେପରି ହଲାଇ ଦେଇ ପୁଣି ସବୁ ମାଟିଆ ପଡ଼ି ଯାଇ ଗୋଟାଏ ନାଁ-ଜଣା ନାହିଁ ବସ୍ତୁ ଭିତରେ ମାଟିଆ ପାଲଟି ଯାଇ କୁଆଡ଼େ ମିଶିଯାଏ, ସବୁ ଖାପିଯାଏ, ଆରେଇ ଯାଏ, ଲାଗେ ଯେପରି ଅନାଦି କାଳରୁ ଚାଲି ଆସିଛି ଏ ଜୀବନ ଏ ସଂସାର, ଚଳନ୍ତି ଘଟଣା ଘଟିଲା ବେଳେ ନୂଆ ଲାଗୁ, ଯେତେଥାଉ ତାଠିଁ ଚମକ, ତାତ୍ପର୍ଯ୍ୟଶୂନ୍ୟ ହୋଇ କୁଆଡ଼େ ତାର ସ୍ମୃତି ପାଶୋର ହୋଇଯାଏ । ସେତେବେଳେ ଲାଗୁଥିଲା, ସେ ସହରରେ ନାହାନ୍ତି, ସେହି ଗଣ୍ଡ

ମଫସଲରେ ହିଁ ଅଛନ୍ତି, ଯେଉଁଠି ତାଙ୍କ ପିତୃପୁରୁଷ ବି ରହୁଥିଲେ—ଯେଉଁଠି ପୁରୁଷକୁ ପୁରୁଷ କରୁ ପରିବର୍ତ୍ତନ ଘଟିବାର ଶୁଣା ନ ଥିଲା, ଘଟିଥିବ ବା କରୁ, କିନ୍ତୁ ଜନଶ୍ରୁତିରେ ନଥିଲା ।

କିନ୍ତୁ କଣ ହୋଇଗଲା ଏଠି ? ଗୃହୁଁ ଗୃହୁଁ ଠିଆ ହୋଇଗଲା ସବୁ ଖୋଲା ଜାଗାରେ କୋଠା, ଢିପ ଢାଲୁ ସମତଳ କରାଗଲା, ଖାଲଢିପ ପୋତାଗଲା, ତୋଟା ଅରମା ପଦା ହେଲା, ଖାଲି ଘର ଘର । ସହର କାହିଁକା କାହିଁ ବଢ଼ିଗଲା । ଆଉ ଏ ଘରୁ ସୂର୍ଯ୍ୟୋଦୟ କି ସୂର୍ଯ୍ୟାସ୍ତ ଦେଖି ହୁଏ ନାହିଁ, ବଡ଼ ବଡ଼ କୋଠା ଦୃଷ୍ଟିରୁନ୍ଧି ଦେଇ ଠିଆ ହୋଇଛନ୍ତି, ଆଉ ନାହିଁ ନିର୍ଜନତା, ଗୃହଅଡ଼େ ଲୋକ ହାଉଜାଉ ଲାଗେ, କେତେବେଳେ କାନ ଅତରା ପକାଇ କୁଆଡ଼ୁ କୁଆଡ଼ୁ ଶୁଭେ ମାଇକ୍ ବାଟେ ତୀବ୍ର ହୃଦ୍ରୀ ରେକର୍ଡ଼ ଗୀତର ଚିତ୍କାର । କେଉଁଠୁ କାହା ସଂକୀର୍ତ୍ତନ କି ଭଜନ ସଙ୍ଗୀତର ଗର୍ଜନ, କେଉଁଠୁ କେତେ କର୍କଶ ଯାନ୍ତ୍ରିକ ଶବ୍ଦ, ସବୁ ସ୍ୱର ମାଡ଼ି ଆସନ୍ତି ଦୂରଦୂରାନ୍ତରେ ମଣିଷଙ୍କ ମୁଣ୍ଡ ଭିତରକୁ ଦଖଲ କରିବାକୁ, କାହାର ମତାମତକୁ ଅପେକ୍ଷା କରନ୍ତି ନାହିଁ । କେତେ କାରଖାନା ବସିଲା, ପବନରେ ଖେଳି ବୁଲିଲା ନାନା ଅସ୍ୱସ୍ତିକର ଗନ୍ଧ, ପ୍ରକାର ପ୍ରକାର । ମାଟି ରାସ୍ତା ଫରସୁ ପକ୍କା ସଡ଼କ ହେଲା, ଲାଗିଲା ସୁବିଧା ବଢ଼ିଲା, କିନ୍ତୁ ରାସ୍ତାରେ ଧାଇଁ ବୁଲିଲା ମୁଣ୍ଡବୁଲା ବେଗରେ ନାନା ମଟର ଗାଡ଼ି, ସ୍କୁଟର, ରିକ୍ସା, ଶଗଡ଼, ବେଲ ଦେଖି ଚାଲିକୁ ନ ଜେଲିଲେ କେତେବେଳେ କେଉଁ ଗାଡ଼ି ଆସି ମଣିଷ ଉପରେ ପିଟି ହେବ, ପ୍ରାଣ ନେବ, ଜଣା ନାହିଁ । ପ୍ରତିଦିନ ସଡ଼କ ଦୁର୍ଘଟଣା, ଗାଡ଼ିକି ଗାଡ଼ି ଚାଇ ହୁଏ, ରାସ୍ତାରେ ଗଲାବେଳେ ସବୁବେଳେ ମଣିଷ ଦଳ ଦଳ । ବଢ଼ି ବଢ଼ି ଗ୍ୱଲିଲା ପ୍ରକାର ପ୍ରକାର ଟ୍ରେନ୍, ଡକାୟତି, ଲୁଟ୍‌ପାଟ୍, ଶଇତାନ—ମଦ ନିଶା, ବ୍ୟଭିଚାର, ଗୁଣ୍ଡାମି, କେତେ ସ୍ଥାନର କେତେ ଖବର ଖବରକାଗଜରେ ବାହାରେ, ପଢ଼ିଲେ ଦେହ ଶୀତେଇ ଉଠେ—କେଡ଼େ ଭୟଙ୍କର କଥା ! —ଅଥଚ ସତେ ଯେପରି କୌଣସି ପ୍ରତିକାର ନାହିଁ, ଯେତେ ଅନ୍ୟାୟ ଘଟିଗଲେ ଯାଉ, ସବୁ ଯେପରିକି ଭାଗ୍ୟ । ଜୀବପତ୍ତି, ମାନ ମହତ ଧନ ଜୀବନ,—ସବୁ ହୋଇଗଲା ଅନିଶ୍ଚିତ, କେତେବେଳେ ହଠାତ୍ ବିନା ସୂଚନାରେ ଅନ୍ତର୍ହିତ ହୋଇଯାଏ । କ'ଣ ଏ ଉନ୍ନତି ଅଙ୍କେସ୍ତ ଅନିଶ୍ଚିତତା ଓ ହିଂସ୍ରିକାର ଯୁଗ ? ଏ ଯୁଗ ଆଲୁଅର କି ଅନ୍ଧାରର ? ସଭ୍ୟତା ଓ ଶାନ୍ତିର କି ଅସଭ୍ୟତା, ହିଂସ୍ରତା ଓ ଅଶାନ୍ତିର ?

ସବୁ ଶୁଣା ଖବର ସବୁ ପଢ଼ା ଖବର ମନ ଉପରେ ତେରଛା ହୋଇ ବାଜି ଛୁଟିକି ପଳାଏ, ଭିତରକୁ ଭେଦେ ନାହିଁ, ଲାଗେ ସେ ସବୁ ବାହାରର, ପରର, ନିଜର ନୁହେଁ । ତାକୁ ଆପଣାର କରି ଆଦରି ନେଇ ସେ କେବେ ନିଜ ଦୁଃଖ ନିଜ ଧନ୍ଦା ଛାଡ଼ି ଅଟକି ରହି ନଥିଲେ । କିନ୍ତୁ ସେତେବେଳେ ଅନ୍ଧାର ସଡ଼କକୁ

ସ୍ବୃହିଁ ଉଦ୍‌ବେଗ ଓ ଦୁଶ୍ଚିନ୍ତାରେ ଟଳ ଟଳ ହେଉଥିଲାବେଳେ ସେପରି ଗୋଟିଏ ଘଟଣା ତାଙ୍କ ଚେତନା ଭିତରେ ରୂପ ନେଉଥିଲା, ଲାଗୁଥିଲା ସେ ସବୁ ଦେଖୁଛନ୍ତି । ହେଉ ଯେ,—ତାହାର ଗେହ୍ଲା ଝିଅ, ସାଙ୍ଗ ଝିଅମାନଙ୍କ ସଙ୍ଗେ ସିନେମା ଦେଖି ଯାଇଥିଲା, ସନ୍ଧ୍ୟା ୭ଟା ବେଳେ ସିନେମା ଭାଙ୍ଗିଲା ସେ ଫେରିଲା । ସେ ଓ ତାର ସାଙ୍ଗର ଝିଅଟିଏ ଗୋଟିଏ ରିକ୍ସାରେ ବସି ଆସୁଥିଲେ । ସାଙ୍ଗର ଝିଅଟି ବାଟରେ ତା ଘର ପାଖେ ଓହ୍ଲାଇଗଲା ଏଣିକି ରିକ୍ସାରେ ସେ ଏକୁଟିଆ । ଆଗରେ ଖଣ୍ଡେ ବାଟ ରାସ୍ତାରେ ଆଲୁଅ ଜଳୁନି, ଅନ୍ଧାର । ହଠାତ୍ ଆଗରେ କିଏ ସବୁ ବେଢ଼ିଗଲେ—ମୁହୂର୍ତ୍ତିକେ କଣ ଘଟିଗଲା, କୁଆଡେ ଗଲା ରିକ୍ସାବାଲା, କୁଆଡ଼େ ରହିଲା ରିକ୍ସା, ପାଟିବନ୍ଦ, ମୁହଁ ଆଖି ବନ୍ଧା, ତା ହାତଗୋଡ଼ ଚପି ଧରିଛନ୍ତି କେଉଁମାନେ, ଶୂନ୍ୟେ ଶୂନ୍ୟେ ଅନ୍ଧାରେ ଅନ୍ଧାରେ ତାକୁ ଟେକି ନେଇ କୁଆଡ଼େ ଧାଉଁଛନ୍ତି ଗୁଡ଼ାଏ ଭୟଙ୍କର ହିଂସ୍ର ଜନ୍ତୁ, ଶିକାର ଧରିଥିବା ଲୋଭିଲା ମଣିଷଖିଆ ଜନ୍ତୁଗୁଡ଼ାଏ, ଫଁ ଫଁ-ସଁ ସଁ ତତଲା ନିଶ୍ୱାସରେ ପୋଡ଼ି ପକାଉଛନ୍ତି, ନଖରେ ଦାନ୍ତରେ ଫାଡ଼ି ପକାଉଛନ୍ତି, ତତଲା ଜିଭରେ ଚାଟି ପକାଉଛନ୍ତି ଲୁହା ଷଣ୍ଢ ଆସି ପରି ଜାବରେ ମୁଠାମୁଠା କେଣ୍ଡା କେଣ୍ଡା କରି ଲୁଣ୍ଠାକରି ପକାଉଛନ୍ତି, ଲୁଗାପଟା ଛିନ୍ନଭିନ୍ନ, ଅନ୍ଧାରରୁ ଆହୁରି ଅନ୍ଧାରକୁ, ତାପରେ ମାଡ଼ି ବସୁଛନ୍ତି, ଯନ୍ତ୍ରଣା କି ଯନ୍ତ୍ରଣା । ଘୃଣା, ରାଗ, ଭୟ, ଯନ୍ତ୍ରଣା ଉପରେ ଯନ୍ତ୍ରଣା, ଚେତା ବୁଡ଼ି ଯାଉଛି । ଅନ୍ଧାରରେ ମୂର୍ଚ୍ଛାର ପରି ପଡ଼ି ରହିଛି ଅଚେତ ଲଙ୍ଗଳା କ୍ଷତବିକ୍ଷତ କାଳୁଆ ଶରୀରଟା ପାଣିଜୋର ଦାଢ଼ରେ ଅସନା କାଦୁଅରେ । ଅନ୍ଧାରର ଭୂତମାନେ ଅନ୍ତର୍ଦ୍ଧାନ ହୋଇଛନ୍ତି । ସେମାନେ ଆଉ ମିଳିବେ ନାହିଁ । ସହର ଗୋଟାକଯାକ ଚେଇଁଛି, ଚାରିଆଡ଼େ ସହରର ଆଲୁଅ ସବୁ ଜଳୁଛି । କେତେବେଳ ପରେ ଚେତା ପାଇ ଉଠୁଛି ଦେହଟା, ଛିଣ୍ଡା ଲୁଗାପଟା ଗୋଟାଉଛି, ଠିଙ୍ଗି ହେଉଛି, ଘୁଷୁରି ଘୁଷୁରି, ବସି, ଉଠି ବଙ୍କେଇ ବଙ୍କେଇ, ଗ୍ରେଟେଇ ଗ୍ରେଟେଇ, ଟଳିଟଳି ମଠେଇ ମଠେଇ ହୋଇ ଚାଲି ଗୋଟିଏ ଗୋଟିଏ ହୋଇ ସଡ଼କ ଧରୁଛି, ସଡ଼କରେ ଚାଲୁଛି । ତାର ଦେହ ମୁହଁ ଜଳି ଯାଉଛି, ମନ ପୋଡ଼ି ଯାଉଛି, ମୁଣ୍ଡ ବାଉଳା ହୋଇ ଯାଇଛି, କାନ୍ଦବ ବାହାରୁ ନାହିଁ, ସେ ଚାଲୁଛି ନା ଠେଲି ହୋଇ ଯାଉଛି ଜାଣେ ନାହିଁ, ଗୋଟିଏ ଘର ଆଗରେ ସେ ଠିଆ ହୋଇଛି, ଡାକ ଛାଡୁଛି “ବାପା ! ବାପା !”

ସେହି ଡାକରେ ପ୍ରବୋଧ ବାବୁଙ୍କ ଗୁଢ଼ ଭିତର ଯେପରି ଓଲଟି ପଡ଼ିଲା, ସେ ଅସ୍ୱାଭାବିକ ସ୍ୱରରେ ଚିତ୍କାର କଲେ “ପଦ୍ମା ! ପଦ୍ମା !” ଆଗରେ ପଦ୍ମା ଠିଆ ହୋଇଛି, ପଛରେ ଖଣ୍ଡେ ଦୂର ଗୁଡ଼ି ସାଇକଲ ଧରି ଲୋକଟିଏ । ସେ ଲୋକଟି ଚାଲିଗଲା, ଆଲୁଅ ଆସିଲାଣି, ରାସ୍ତାରେ ଆଲୁଅ ଜଳୁଛି, ରିକ୍ସାବାଲାଟିଏ ଘଣ୍ଟି ଲଗାଇ ସାରି ରିକ୍ସାରେ ଚଢ଼ିଲା, ରିକ୍ସା ଗଲା ।

ପ୍ରବୋଧ ବାବୁ ନିଦରୁ ଉଠିଲା ପରେ ପଦ୍ମାଙ୍କୁ ମୁଣ୍ଡରୁ ପାଦ ଯାଏ ଅନେଇ ଗଲେ, ହଁ, ଗୋଟାସୁଦ୍ଧା ପଦ୍ମା ତ, ଯେଉଁ ବେଶରେ ସେ ତା କଲେଜକୁ ଯାଏ, ତା ହାତରେ ତା ବ୍ୟାଗ । ସେ ଧାଇଁଯାଇ ଝିଅକୁ କୁଣ୍ଢେଇ ଧରିଲେ, କଥା କହି ପାରିଲେ ନାହିଁ । ପଛଆଡୁ ତାଙ୍କ ସ୍ତ୍ରୀ କହିଲେ "ହଇଲୋ ତୁ ଜାଣୁଚୁ ଆମେ ଦକ ଦକ ହେଉଁ ଅଛୁ ତୁ ଏତେ ଡେରିରେ ଘରକୁ ଫେରୁଚୁ ? ଅଇଛୁ ତୋ ବାପାଙ୍କୁ ପଠେଇଥାନ୍ତି ।" ତାଙ୍କ ସାନପୁଅ ରାଜୁ କହିଲା "ସତରେ ତୁ ଖୁବ ଡେରି କଲୁ ଅପା—"

ପଦ୍ମା କହିଲା "କଣ କରିବି ବୋଉ, ଆମ ମାନ୍ଦାକିନୀ ମ୍ୟାଡାମ ନୁହନ୍ତି, ରିକ୍ସାରେ ସେ ଆଉ ମୁଁ ଫେରିଲୁ, ତାଙ୍କ ଘରେ ପହଞ୍ଚିଲାକ୍ଷଣି କହିଲେ—ଏତେ ଦିନକେ ଆମ ଘରକୁ ଆସିଚୁ, ଚତୋଇ ପିଠା କରିବି ବୋଲି ସବୁ ସଜେଇ ରଖା ହୋଇଚି, ଦଣ୍ଟା କରିଦିଏଁ ଖାଇଦେଇ ଯିବୁ । ତାଙ୍କର ଏତେ ସ୍ନେହ, ଲଙ୍ଘି ପାରିଲି ନାହିଁ, କଣ ଭାବନ୍ତେ । ଅଟକି ଗଲି । ଆଲୁଅ ତ ଲିଭିଗଲା, କହିଲେ ଏ ଅନ୍ଧାରଟାରେ କେମିତି ଯିବୁ ମ ? ଆଉ ଟିକିଏ ରହ, ଆଲୁଅ ଆସୁ, ତୋ ସାଙ୍ଗରେ ସାଇକଲରେ ଆମ ଲୋକ ବଟିଆ ଯିବ ଛାଡ଼ିଦେଇ ଆସିବ । ଆଲୁଅ ଆସୁ ଆସୁ ଆଜି ଆଠ ବାଜିଲା, କଣ କରିବା ଯେ ବିଜୁଳି ବାଟ ବ୍ୟବସ୍ଥାକୁ କହ, ଆମର କି ଦୋଷ ? ତଥାପି ସାଢ଼େ ସାତ ଯେମିତି ବାଜିଲା ମୁଁ ଜିଗର କଲି, ବଟିଆ ଗଲା କିନ୍ତୁ ଅନ୍ଧାରରେ ରିକ୍ସା ପାଇଲା ନାହିଁ । ଆଠଟାବେଳେ ଯେମିତି ଆଲୁଅ ଆସିଲା ସେମିତି ଫେର୍ ପଠେଇଲେ, ରିକ୍ସା ବି ହାବୁଡ଼ି ଗଲା ଆଉ ମୁଁ ଆସିଲି, ବଟିଆ ଛାଡ଼ି ଦେଇଗଲା ।

ପ୍ରବୋଧ ବାବୁ ଶୁନ ହୋଇ ମୁଣ୍ଡ ଟୁଙ୍ଗାରିଲେ ।

ତାଙ୍କ ସ୍ତ୍ରୀ କହିଲେ, "ଯେ ଯାହା ଭାବୁ ପଛେ ଆଉ କେବେ ଏମିତି ଅଟକି ଯିବୁ ନାହିଁ ଝିଅ । ଚାଲ୍ ଚାଲ୍ ।"



# ଚତୁରଙ୍ଗ ପ୍ରକାଶନୀ ଓ ଗ୍ରନ୍ଥାଳୟର ସାହିତ୍ୟ ସମ୍ଭାର

| | |
|---|---|
| ଶ୍ରେଷ୍ଠଗଳ୍ପ | ସୁରେନ୍ଦ୍ର ମହାନ୍ତି |
| ଶ୍ରେଷ୍ଠଗଳ୍ପ | କିଶୋରୀ ଚରଣ ଦାସ |
| ଶ୍ରେଷ୍ଠଗଳ୍ପ | ବିଭୂତି ପଟ୍ଟନାୟକ |
| ଶ୍ରେଷ୍ଠଗଳ୍ପ | କୃଷ୍ଣପ୍ରସାଦ ମିଶ୍ର |
| ଶ୍ରେଷ୍ଠଗଳ୍ପ | ପ୍ରତିଭା ବସୁ |
| ଶ୍ରେଷ୍ଠଗଳ୍ପ | ମୋପାଁସା |
| ଶ୍ରେଷ୍ଠ କବିତା | ରମାକାନ୍ତ ରଥ |
| ଶ୍ରେଷ୍ଠ କବିତା | ସୀତାକାନ୍ତ ମହାପାତ୍ର |
| ଶ୍ରେଷ୍ଠ କବିତା | ଜଗନ୍ନାଥ ପ୍ରସାଦ ଦାସ |
| ଶ୍ରେଷ୍ଠ କବିତା | ସଚ୍ଚି ରାଉତରାୟ |
| ଗର୍ଭଗୃହ | ହରପ୍ରସାଦ ଦାସ |
| ଶ୍ରେଷ୍ଠ ଏକାଙ୍କିକା | ଗୋପାଳ ଛୋଟରାୟ |
| ବୁଲ୍‌ଡୋଜର୍ସ | ମନୋଜ ଦାସ |
| ମାୟାବୀ ହୃଦୟ | ବିଭୂତି ପଟ୍ଟନାୟକ |
| ସନ୍ଧ୍ୟାଦୀପର ଶିଖା | ବିଭୂତି ପଟ୍ଟନାୟକ |
| ଆଦମ ଅରଣ୍ୟ | ବିଭୂତି ପଟ୍ଟନାୟକ |
| ଭୂମେ ତୃଷ୍ଣାର ଜଳ | ବିଭୂତି ପଟ୍ଟନାୟକ |
| ଅଶୋକ ବନର ସୀତା | ବିଭୂତି ପଟ୍ଟନାୟକ |
| ଅନ୍ଧକାର | କଣ୍ଟେଶ୍ୱର ଚରଣ ଦାସ |
| ଧରଣୀର କାନ୍ଦ | ଶାନ୍ତନୁ କୁମାର ଆଚାର୍ଯ୍ୟ |
| କଏ ? | ଅନୁବାଦ—ଡ଼ କାଶୀନାଥ ମିଶ୍ର |
| ଚତୁର୍ଥବନ୍ଧୁ ଓ ଅନ୍ୟାନ୍ୟ କାହାଣୀ | ମନୋଜ ଦାସ |
| ସେଲୁନାର ପୃଥ୍ୱୀ | ମନୋଜ ଦାସ |
| ଗୋଧୂଳିର ବାଘ | ମନୋଜ ଦାସ |
| ବାବା ଉଦୟାନନ୍ଦଙ୍କ ଅଭିନବ ପ୍ରବଚନମାଳା | ମହାପାତ୍ର ନୀଳମଣି ସାହୁ |
| ପ୍ରଥମ ଓ ଶେଷ | ଅଖିଳ ମୋହନ ପଟ୍ଟନାୟକ |
| ଲାଲ୍ ମାଛ | ଦେବଦାସ ଛୋଟରାୟ |
| ମୋପାଁସାଙ୍କ ଅନ୍ୟାନ୍ୟ ଗଳ୍ପ | ଶକୁନ୍ତଳା ବଳିୟାର ସିଂ |
| ଓଡ଼ିଆ ଉପନ୍ୟାସର ସମାଜତାତ୍ତ୍ୱିକ ରୂପରେଖ | ବିଭୂତି ପଟ୍ଟନାୟକ |
| ସୁନ୍ଦର ଦାସ | ଜଗନ୍ନାଥ ପ୍ରସାଦ ଦାସ |
| ଜନ୍ମରୁ ଭଗବାନ ସ୍ୱୟଂ | ସତ୍ୟନାରାୟଣ ମହାନ୍ତି |





କଟକ ଜିଲ୍ଲା ନାଗବାଲି ଗ୍ରାମରେ ୧୯୧୪ ମସିହା ଏପ୍ରିଲ ୨୦ ତାରିଖରେ ଜନ୍ମ। ଇଂରେଜି ଭାଷା ଓ ସାହିତ୍ୟରେ କୃତିତ୍ୱର ସହ ଏମ୍. ଏ. ପାଶ୍ କରି ୧୯୩୮ ମସିହାରେ ଓଡ଼ିଶା ପ୍ରଶାସନିକ ସେବାରେ ଯୋଗଦାନ ଏବଂ ୧୯୬୯ ମସିହାରେ ଚାକିରିରୁ ଅବସର ଗ୍ରହଣ। ୧୯୫୫ ମସିହାରେ 'ଅମୃତର ସନ୍ତାନ' ଉପନ୍ୟାସ ପାଇଁ ପ୍ରଥମ କେନ୍ଦ୍ର ସାହିତ୍ୟ ଏକାଡେମୀ ପୁରସ୍କାର ଲାଭ—୧୯୭୪ ମସିହାରେ ମହାକାବ୍ୟିକ ଉପନ୍ୟାସ 'ମାଟି ମଟାଳ' ଲାଗି ଜ୍ଞାନପୀଠ ପୁରସ୍କାର ଦ୍ୱାରା ସମ୍ମାନିତ। ୧୯୮୧ ମସିହାରେ କେନ୍ଦ୍ର ସରକାରଙ୍କ ଦ୍ୱାରା ପଦ୍ମଭୂଷଣ ଉପାଧିରେ ବିଭୂଷିତ ଏହି ମହାନ ସାହିତ୍ୟିକଙ୍କର ୧୯୯୧ ମସିହା ଅଗଷ୍ଟ ୨୦ ତାରିଖରେ ଜୀବନାବସାନ।

ଓଡ଼ିଶାର ବରିଷ୍ଠ ଔପନ୍ୟାସିକ କାହ୍ନୁଚରଣଙ୍କ ଅନୁଜ ଗୋପୀନାଥ କେବଳ ଏ ଶତାବ୍ଦୀର ଶ୍ରେଷ୍ଠ ଓଡ଼ିଆ କଥା ସାହିତ୍ୟିକ ନୁହନ୍ତି, ଭାରତୀୟ କଥା ସାହିତ୍ୟରେ ମଧ୍ୟ ସେ ଜଣେ ଅଗ୍ରଗଣ୍ୟ କଥାଶିଳ୍ପୀ। ଇଂରେଜି ଭାଷାରେ ଅନୂଦିତ ତାଙ୍କର ଯୁଗାନ୍ତକାରୀ ଉପନ୍ୟାସ 'ପରଜା' ପାଇଁ ସେ ଆନ୍ତର୍ଜାତିକ ଖ୍ୟାତିର ଅଧିକାରୀ। ଏହି ଯୁଗସ୍ରଷ୍ଟା କଥାଶିଳ୍ପୀଙ୍କର ନିର୍ବାଚିତ କ୍ଷୁଦ୍ରଗଳ୍ପର ପ୍ରଥମ ସାର୍ଥକ ସଙ୍କଳନ 'ଶ୍ରେଷ୍ଠଗଳ୍ପ'।

* *